

HISTORY OF THE SIKHS

# ଶିଖ ଇତିହାସ

ମୂଳ ରଚନା

ଜ୍ଞାନୀ ଅମର ସିଂହଜୀ











ଅନୁସୃଜନ

ଶ୍ରୀମତୀ ସାଧନା ପତ୍ରୀ

ੴ ਵਾਹਿਗੁਰੂ ਜੀ ਕੀ ਫ਼ਤਹ ॥




**ਡਾ. ਰੂਪ ਸਿੰਘ**

ਮੁੱਖ ਸਕੱਤਰ,
ਸ਼੍ਰੋਮਣੀ ਗੁਰਦੁਆਰਾ ਪ੍ਰਬੰਧਕ ਕਮੇਟੀ,
ਸ੍ਰੀ ਅੰਮ੍ਰਿਤਸਰ ਸਾਹਿਬ।


ਨੰ: SPL-18

ਮਿਤੀ 27-02-18

## ਸੰਦੇਸ਼

ਸਿੱਖ ਧਰਮ ਦਾ ਆਰੰਭ ਦੁਨੀਆਂ ਦੇ ਧਾਰਮਿਕ ਇਤਿਹਾਸ ਅੰਦਰ ਅਜਿਹੇ ਇਤਿਹਾਸ ਦਾ ਅਰੰਭ ਹੈ ਜਿਸਨੇ ਸਮੁੱਚੀ ਮਾਨਵਤਾ ਨੂੰ ਆਪਣੇ ਕਲਾਵੇ ਵਿੱਚ ਲੈ ਕੇ, ਸਰਬੱਤ ਦੇ ਭਲੇ ਦੀ ਕਾਮਨਾ ਕੀਤੀ ਹੈ। ਖਲਸਾ ਪੰਥ ਦੀ ਸਾਜਨਾ ਦੇ ਨਾਲ ਮਜਲੂਮਾਂ ਦੀ ਰੱਖਿਆ ਅਤੇ ਜਾਲਮਾਂ ਨੂੰ ਲਲਕਾਰ ਦਾ ਅਜਿਹਾ ਇਤਿਹਾਸਕ ਬਦਲਾਵ ਦੇਖਣ ਨੂੰ ਮਿਲਿਆ ਕਿ ਜੋ ਧਾੜਵੀ ਕਦੇ ਬੇਖੌਫ ਹਿੰਦੁਸਤਾਨ 'ਤੇ ਹਮਲੇ ਕਰਦੇ ਸਨ, ਹੁਣ ਉਨ੍ਹਾਂ ਦੇ ਹੌਸਲੇ ਪਸਤ ਹੋ ਚੁੱਕੇ ਸਨ। 18ਵੀਂ ਸਦੀ ਦੌਰਾਨ ਸਿੱਖਾਂ ਦੇ ਸਿਰਾਂ ਦੇ ਮੁੱਲ ਪਾਏ ਗਏ, ਬੱਚਿਆਂ ਦੇ ਟੋਟੇ-ਟੋਟੇ ਕਰਕੇ ਬੀਬੀਆਂ ਦੇ ਗਲ੍ਹਾਂ 'ਚ ਹਾਰ ਪਾਏ ਗਏ ਦੂਸਰੇ ਸ਼ਬਦਾਂ ਵਿੱਚ ਜੁਲਮ ਦੀ ਇੰਤਹਾ ਕੀਤੀ ਗਈ। ਸਿੱਖ ਮਿਸਲਾਂ ਦੀ ਅਰੰਭ ਅਤੇ ਸਿੱਖ ਰਾਜ ਦੀ ਸਥਾਪਨਾ ਤੋਂ ਪਤਨ ਅਤੇ ਗੁਰਦੁਆਰਾ ਪ੍ਰਬੰਧ ਸੁਧਾਰ ਲਹਿਰ, ਸਿੱਖ ਇਤਿਹਾਸ ਦੇ ਚੋਣਵੇਂ ਪੱਖਾਂ ਵਿੱਚੋਂ ਹਨ। ਸਿੱਖ ਇਤਿਹਾਸ ਦੀ ਗੌਰਵਮਈ ਗਾਥਾ ਨੇ ਦੁਨੀਆ ਦੇ ਇਤਿਹਾਸ ਅੰਦਰ ਅਜਿਹੇ ਮੀਲ ਪੱਥਰ ਸਥਾਪਿਤ ਕੀਤੇ ਹਨ ਜਿਨ੍ਹਾਂ ਦਾ ਕੋਈ ਸਾਨੀ ਨਹੀਂ ਹੈ।

ਸਿੱਖ ਧਰਮ ਦੇ ਇਸ ਇਤਿਹਾਸਕ ਪੜਾਅ ਉੱਪਰ ਅਨੇਕਾਂ ਪੁਸਤਕਾਂ ਲਿਖੀਆਂ ਗਈਆਂ ਹਨ। ਇਨ੍ਹਾਂ ਪੁਸਤਕਾਂ ਤੋਂ ਸਾਡੇ ਖੋਜਾਰਥੀ ਅਤੇ ਸਿੱਖ ਸੰਗਤਾਂ ਲਾਹਾ ਪ੍ਰਾਪਤ ਕਰ ਰਹੀਆਂ ਹਨ। ਸਿੱਖ ਇਤਿਹਾਸ ਨੂੰ ਹੋਰਨਾਂ ਭਾਸ਼ਾਵਾਂ ਵਿੱਚ ਲਿਖਣ ਦੀ ਅਤਿਅੰਤ ਜਰੂਰਤ ਹੈ ਤਾਂ ਜੋ ਦੁਨੀਆਂ ਦੇ ਲੋਕ ਸਿੱਖ ਇਤਿਹਾਸ ਤੋਂ ਵਾਕਿਫ ਹੋ ਸਕਣ। ਗਿਆਨੀ ਅਮਰ ਸਿੰਘ ਜੀ ਦੁਆਰਾ ਹਿੰਦੀ ਵਿੱਚ ਛਪੇ ਸਿੱਖ ਇਤਿਹਾਸ ਨੂੰ ਬੀਬੀ ਸਾਧਨਾ ਪੱਤਰੀ ਜੀ ਨੇ ਉੜੀਆ ਭਾਸ਼ਾ ਵਿੱਚ ਉਲਥਾ ਕਰਕੇ ਸ਼ਲਾਘਾਯੋਗ ਕਾਰਜ ਕੀਤਾ ਹੈ। ਇਸ ਪੁਸਤਕ ਨਾਲ ਜਿੱਥੇ ਉੜੀਆ ਭਾਸ਼ਾ ਦੇ ਲੋਕ ਸਿੱਖ ਇਤਿਹਾਸ ਤੋਂ ਜਾਣੂ ਹੋਣਗੇ ਉਥੇ ਸਚਿੱਤਰ ਪੁਸਤਕ ਹੋਣ ਕਰਕੇ ਇਹ ਬੱਚਿਆਂ ਦੇ ਲਈ ਖਾਸ ਖਿੱਚ ਦਾ ਕੇਂਦਰ ਰਹੇਗੀ। ਲੇਖਿਕਾ ਦਾ ਇਹ ਉਪਰਾਲਾ ਸ਼ਲਾਘਾਯੋਗ ਹੈ। ਮੈਂ ਇਸ ਪੁਸਤਕ ਦੇ ਲਈ ਲੇਖਿਕਾ ਨੂੰ ਵਧਾਈ ਦੇਣ ਦੇ ਨਾਲ-ਨਾਲ ਇਨ੍ਹਾਂ ਦੀ ਤੰਦਰੁਸਤ ਜਿੰਦਗੀ ਲਈ ਪਰਮਾਤਮਾਂ ਅੱਗੇ ਅਰਦਾਸ ਕਰਦਾ ਹਾਂ ਤਾਂ ਜੋ ਇਹ ਇਸੇ ਪ੍ਰਕਾਰ ਸਿੱਖ ਧਰਮ ਅਤੇ ਇਤਿਹਾਸ ਦੀ ਸੇਵਾ ਕਰਦੇ ਰਹਿਣ।

ਡਾ. ਰੂਪ ਸਿੰਘ
ਮੁੱਖ ਸਕੱਤਰ,
ਸ਼੍ਰੋਮਣੀ ਗੁਰਦੁਆਰਾ ਪ੍ਰਬੰਧਕ ਕਮੇਟੀ,
ਸ੍ਰੀ ਅੰਮ੍ਰਿਤਸਰ।


ਫ਼ੋਨ : +91-183-2553951, ਫੈਕਸ : +91-183-2553919, ਮੋ: +91-98146-37979
Email : roopsz@yahoo.com, sikhscholar@gmail.com

ੴ ਵਾਹਿਗੁਰੂ ਜੀ ਕੀ ਫ਼ਤਹ ॥



ਡਾ. ਰੂਪ ਸਿੰਘ

ਮੁੱਖ ਸਕੱਤਰ,
ਸ਼੍ਰੋਮਣੀ ਗੁਰਦੁਆਰਾ ਪ੍ਰਬੰਧਕ ਕਮੇਟੀ,
ਸ੍ਰੀ ਅੰਮ੍ਰਿਤਸਰ ਸਾਹਿਬ।

ਨੰ: 514-18 ਮਿਤੀ 27-02-18

# ସନ୍ଦେଶ

ଶିଖ ଧର୍ମର ପ୍ରାଥମିକ ଦୁନିଆରୁ ଧାର୍ମିକ ଇତିହାସ ମଧରେ ଆଜିର ଇତିହାସ ଆରମ୍ଭ ହୋଇଛି, ଯାହାକି ସମଗ୍ର ମାନବତାକୁ ନିଜ ମଧରେ ରଖି ସମସ୍ତଙ୍କ ମଙ୍ଗଳ କାମନା କରିଛି। ଖାଲ୍‌ସା ପନ୍ଥର ସୃଜନ ସହିତ ଅସହାୟ ପ୍ରାଣୀଙ୍କୁ ରକ୍ଷା ଏବଂ ଅତ୍ୟାଚାରୀଙ୍କୁ ସମ୍ମୁଖୀନ କରି ସେମାନଙ୍କ ସହିତ ଲଢ଼ିବା ଏହି ଇତିହାସରେ ପରିବର୍ତ୍ତନ ଦେଖିବାକୁ ମିଳିଛି। ଯାହାର ନମୂନା ଭାରତୀୟଙ୍କୁ ନିର୍ଭୀକ କରାଇ ନିଜେ ଶତ୍ରୁଙ୍କ ସହିତ ଲଢ଼ି ଦୁଷ୍ଟମାନଙ୍କର ଶକ୍ତିକୁ ଦୁର୍ବଳ କରାଇଥିଲେ। ୧୮୦୦ ଶତାବ୍ଦୀ ସମୟରେ ଶିଖମାନଙ୍କର ମସ୍ତକର ମୂଲ୍ୟ ମିଳୁଥିଲା, ନିର୍ବୋଧ ବାଳକଙ୍କୁ ଖଣ୍ଡ ଖଣ୍ଡ କରି ମା'ମାନଙ୍କ ଗଳାରେ ହାର କରି ପିନ୍ଧା ଯାଉଥିଲା। ଅନ୍ୟ ଅର୍ଥରେ ଅତ୍ୟାଚାରର ପରୀକ୍ଷା କରାଯାଇଛି। ଶିଖ ପନ୍ଥର ଆରମ୍ଭ ତଥା ଶିଖ ରାଜ୍ୟର ଉତ୍‌ଥାନ ପତନ ଓ ଗୁରୁଦାରର ପ୍ରବନ୍ଧ ସୁଧାର ଲହର, ଶିଖ ଇତିହାସର ନିର୍ବାଚନ ପକ୍ଷ ମଧରେ ରହିଛି। ଶିଖ ଇତିହାସର ଗୌରବମୟ ଗାଥା ଦୁନିଆର ଇତିହାସ ମଧରେ ବର୍ତ୍ତମାନ ମାଇଲ୍ ଖୁଣ୍ଟ ସ୍ଥାପିତ ହୋଇଛି ଯାହାର କୌଣସି ତୁଳନା ନାହିଁ।

ଶିଖ ଧର୍ମର ଏହି ଐତିହାସିକ ସୋପାନରେ ଅନେକ ପୁସ୍ତକ ଲେଖାଯାଇଛି। ଏହି ପୁସ୍ତକ ମଧ୍ୟରୁ ଆମର ଅନେକ ଅନ୍ୱେଷଣୀ ତଥା ଶିଖ ସଙ୍ଗତ ଲାଭାନ୍ୱିତ ହେଉଛନ୍ତି। ଶିଖ ଇତିହାସକୁ ଅନ୍ୟ ଭାଷା ମଧରେ ଲେଖିବା ଅତ୍ୟନ୍ତ ଜରୁରୀ ରହିଛି ଯାହାଦ୍ୱାରା ଦୁନିଆର ଅନ୍ୟମାନଙ୍କୁ ଶିଖ ଇତିହାସ ବିଷୟରେ ଜଣାପଡ଼ିବ। ଜ୍ଞାନୀ ଅମର ସିଂହଜୀଙ୍କ ଦ୍ୱାରା ଛପା ଯାଇଥିବା ଶିଖ ଇତିହାସକୁ ଶ୍ରୀମତୀ ସାଧନା ପତ୍ରୀ ଯିଏକି ଓଡ଼ିଆ ଭାଷାରେ ଅନୁସୃଜନ କରି ପ୍ରଶଂସନୀୟ କାର୍ଯ୍ୟ କରିଛନ୍ତି।

ଏହି ପୁସ୍ତକ ମଧରେ ଯାହାକି ଓଡ଼ିଆ ଭାଷୀଙ୍କ ପାଇଁ ଇତିହାସର ଜ୍ଞାନ ପ୍ରାପ୍ତ ହେବ ତଥା ପୁସ୍ତକଟି ସଚିତ୍ର କାରଣରୁ ପିଲାମାନଙ୍କ ପାଇଁ ଆକର୍ଷଣୀୟ ହୋଇପାରିବ।

ମୁଁ ଏହି ପୁସ୍ତକ ପାଇଁ ଲେଖିକାଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ସହ ପରମାତ୍ମାଙ୍କ ନିକଟରେ ତାଙ୍କର ସୁସ୍ଥ ଜୀବନ କାମନା କରୁଛି ଯାହାଦ୍ୱାରା ସେ ଏହି ପ୍ରକାର ଶିଖଧର୍ମ ତଥା ଇତିହାସର ସେବା କରି ଚାଲିବେ।

ਡਾ. ਰੂਪ ਸਿੰਘ
ਮੁੱਖ ਸਕੱਤਰ,
ਸ਼੍ਰੋਮਣੀ ਗੁਰਦੁਆਰਾ ਪ੍ਰਬੰਧਕ ਕਮੇਟੀ,
ਸ੍ਰੀ ਅੰਮ੍ਰਿਤਸਰ।

ਫ਼ੋਨ : +91-183-2553951, ਫ਼ੈਕਸ : +91-183-2553919, ਮੋ: +91-98146-37979
Email : roopsz@yahoo.com, sikhscholar@gmail.com

# HISTORY OF THE SIKHS

# ଶିଖ ଇତିହାସ

(କେଉଁଠାରୁ କେଉଁଯାଏ...)

ମୂଳ ରଚନା :

ଜ୍ଞାନୀ ଅମର ସିଂହ ଜୀ (ପଞ୍ଜାବୀ)

ଅନୁସୃଜନ :

ସାଧନା ପତ୍ରୀ

HISTORY OF THE SIKHS

**ଶିଖ ଇତିହାସ**


ମୂଳ ରଚନା :

**ଜ୍ଞାନୀ ଅମର ସିଂହ ଜୀ (ପଞ୍ଜାବୀ)**

ଅନୁସୃଜନ:

**ଶ୍ରୀମତୀ ସାଧନା ପତ୍ରୀ**



ପ୍ରକାଶକ: ଗୁରୁ ନାନକ ପବ୍ଲିକେଶନ୍

ଘର ନଂ ଏ-୩୦୩, ଈଶା ଆପାର୍ଟମେଣ୍ଟ, ବେହେରା ସାହି, ନୟାପଲ୍ଲୀ, ଭୁବନେଶ୍ୱର-୧୨

ପ୍ରଥମ ସଂସ୍କରଣ: ୧ ଏପ୍ରିଲ୍ ୨୦୧୮

ମୂଲ୍ୟ: ₹ ୩୫୦/- (ତିନିଶହ ପଚାଶ ଟଙ୍କା ମାତ୍ର)

---

**HISTORY OF THE SIKHS**

Author: **Gyani Amar Singh Ji (Punjabi)**

Transcreation by **Sadhana Patri (Padhy)**





Published by Guru Nanak Publication, House No- A-303, Esha Appartment, Behera Sahi, Nayapalli, Bhubaneswar-12

Email: sadhanapatri@gmail.com

Contact No: 08908202641, 09438123608

Whatsapp No: 08908202641

First Edition: 1st April 2018

Price: ₹ 350/- (Rupees Three Hundred Fifty Only)


---

# ACKNOWLEDGMENT

I am amazingly fortunate to have gotten the opportunity to translate the 'History of the Sikhs' into Odia language and to enlighten people about it. This book has been very transformative for me. The book would not have been possible without the support from few fine Sikh dignitaries, who cared about enlighten more and more people about the Sikh History. I also came across many elevated people of world who have shown their sincere interest to learn about the History of the Sikhs.

I express my gratitude to the people who chose to believe in my work and supported me.

Baba Shamsher Singh Ji (Arati Sahib Gurudwar, Puri, Odisha,
Dr. Roop Singh Ji, Chief Secretary, SGPC (SriAmritsar Sahib),
Baba Hari Singh Ji & group (Sri Ganga Nagar, Rajsthan),

Sri Arya Kumar Harshvardhan,

Sd. Angrez Singh Ji (Advocate,10th. Guru Marg Resercher), Moga (Punjab),

Sd. Harvajan Singh Ji (Vikashpuri, Delhi).

I would also like to convey thanks to Mr. Binod Padhy, my husband and Meenakshi, my daughter without whose support my work would have been very difficult to complete.

**Sadhana Patri**

## ੴ (୧ଓଁକାର) ସତ୍‌ଗୁରୁ ପ୍ରସାଦ

ଏହି ପୁସ୍ତକ ମଧ୍ୟରେ (ସମ୍ଭବତଃ ୧୭୫୬) ଅମୃତ ଛକିବା (ପାନ) ସମୟ ଠାରୁ ବର୍ତ୍ତମାନ ଯାଏଁ (ସମ୍ଭବତଃ ୨୦୨୫)ର ପରିସ୍ଥିତି ବର୍ଣ୍ଣନା କରାଯାଇଛି। ଅମୃତ ଛକିବା (ପାନ) ପରେ ସିଂହମାନେ କେମିତି ଉଠିଲେ ? ବନ୍ଦା ବାହାଦୁର, ଭାଇ ମନି ସିଂହ, ଭାଇ ତାରୁ ସିଂହ ଇତ୍ୟାଦିଙ୍କର ଶହୀଦ ବିଷୟରେ। ମସ୍ସା ରଂଘଡ଼, ଦୁରାନୀ ଓ ଦୁରାନୀମାନଙ୍କର ଆକ୍ରମଣ ଘଲୁଘାରେ, ଶିଖ ମିସଲ, ଶିଖ- ଶାସନ , ଶିଖ ରାଜାର ଶାସନ ସମାପ୍ତ, ପୁଣି ନାମଧାରୀ, ସିଂହସଭା, ଅକାଳୀ ଲହର ଓ ପଞ୍ଜାବୀ ରାଜ୍ୟର ବର୍ତ୍ତମାନ ଯାଏଁ ପୂର୍ଣ୍ଣ ବିବରଣୀ ଏହି ପୁସ୍ତକ ମଧ୍ୟରେ ବର୍ଣ୍ଣନା କରାଯାଇଛି।

# ଜୀବନର ଚଲାପଥେ

ସ୍ୱପ୍ନର ବାଲିଘର ସଜାଡୁ ସଜାଡୁ ବାରମ୍ବାର ବାଲିଘରଟି ଭାଙ୍ଗ ଯାଉଛି । କିନ୍ତୁ ଆଶା ମଉଳି ଯାଉନି । ଦିବାସ୍ୱପ୍ନର ଝଡ଼ଝଞ୍ଜା, କର୍ମ ଜଞ୍ଜାଳ ମଧ୍ୟରେ ବାରମ୍ବାର ଝୁଣ୍ଟିବାକୁ ପଡ଼ିଛି । ନଦୀର ଚୋରାବାଲିରେ ପାଦ ଦବି ଯାଉଛି । କିନ୍ତୁ ନିରାଶ ଦିବାସ୍ୱପ୍ନ ମାନସିକ ଯନ୍ତ୍ରଣାର ଚୋଟ ଓ ଶାରୀରିକ ଯନ୍ତ୍ରଣାର ବ୍ୟଥା, ଆର୍ଥିକ ସମସ୍ୟାର ଝଡ଼ଝଞ୍ଜା ଭିତରେ ଯିବା ବାଟରେ ଅନବରତ ଲହୁକୁ ପୋଛି ଦେଇଛନ୍ତି ଗୁରୁ ସାହେବ । ଗୁରୁଦ୍ୱାରରେ ପହଞ୍ଚି ସବୁ ସମସ୍ୟା ତାଙ୍କରି ଚରଣରେ ଢାଳିଦେଇ ଭାବ ବିହ୍ୱଳ ହୋଇ ପଡ଼ିଛି । ଦୁନିଆକୁ ଚିହ୍ନି ସାରିବା ପରେ ଗୁରୁଙ୍କର ଚରଣ ରେଣୁ ଖୋଜିବାକୁ ଚେଷ୍ଟା କରିଛି । ଶ୍ରୀ ଗୁରୁଜୀଙ୍କ ଶ୍ରୀ ଗୁରୁବାଣୀ, କୀର୍ତ୍ତନ, ଶିଖଗୁରୁଙ୍କ ଇତିହାସ ତଥା ଶିଖ ବୀର ସହୀଦମାନଙ୍କ ହୃଦୟସ୍ପର୍ଶୀ ଗାଥା ଏବଂ ଇତିହାସକୁ ଓଡ଼ିଆ ଭାଷାରେ ଓଡ଼ିଶାବାସୀଙ୍କ ପାଇଁ ଦୁଇପଦ ଲେଖିବା ପାଇଁ ଚେଷ୍ଟା କରିଛି ।

ଏବେ ଟିକିଏ ଫେରିବା ପଚିଶି ବର୍ଷ ପୂର୍ବର ସମୟକୁ । ଶ୍ରୀ ବିନୋଦ ପାଢ଼ୀଙ୍କୁ ବାହା ହୋଇ ୧୯୯୦ ମସିହା ପରେ ମୋତେ ଓଡ଼ିଶା ଛାଡ଼ି ଗାଙ୍ଗଟକ୍, ସିକିମ୍ ଯିବାକୁ ହେଲା ସ୍ୱାମୀଙ୍କ ସହିତ । ସରକାରୀ ଚାକିରୀ, ଯିବାକୁ ପଡ଼ିଲା କିନ୍ତୁ ଧାର୍ମିକ ମନୋବୃତ୍ତି ସକାଶେ ଖୋଜି ଚାଲିଲି କୌଣସି ଏକ ସ୍ଥାନ ଯେଉଁଠି ମନ ଟିକେ ଶାନ୍ତି ପାଇବ । ବିଭିନ୍ନ ଜାଗା ଆଖପାଖରେ ଦେଖିଲି କିନ୍ତୁ ମନ ଯାହା ଚାହୁଁଥିଲା ତାହା ସେହି ସବୁ ଜାଗାରେ ମିଳିଲା ନାହିଁ । ଦିନେ ଗଲି ଶିଖ ପ୍ରାର୍ଥନାସ୍ଥଳୀ ଗୁରୁଦ୍ୱାରକୁ । ସତେ ଯେମିତି ସେହି ସ୍ଥାନ ଓ ପରିବେଶ ମୋତେ ଅପେକ୍ଷା କରିଥିଲା ।

ମନ ଭିତରେ ଆନନ୍ଦ ଶିହରି ଉଠିଲା, ଆଖି ଛଳଛଳ ହୋଇଗଲା । ମୁଁ ସେହି ଶାନ୍ତ ପରିବେଶରେ ହଜିଗଲି । ସ୍ୱାମୀଙ୍କର କୌଣସି ଆପତ୍ତି ନ ଥିଲା । ସବୁ ଦିନର ଦିନଚର୍ଯ୍ୟାରେ, ଗୁରୁଦ୍ୱାର ଯିବା ହୋଇଗଲା ଏକ ଧରାବନ୍ଧା ରୁଟିନ୍ । ୨୦୦୭-୨୦୦୮ ମସିହା ସୁଦ୍ଧା ଗୋଟିଏ ପରେ ଗୋଟିଏ ଅସହାୟ ପରିସ୍ଥିତି ଭିତରେ ଜୀବନର ଦିନ

ଆଗକୁ ଆଗକୁ ମାଡ଼ି ଚାଲିଥାଏ ଓ ଅନେକ ପରିବର୍ତ୍ତନ ଆଣିଦିଏ ମୋ ଜୀବନରେ। ୮ ବର୍ଷର ପୁଅଟିଏ ବୋନମ୍ୟାରୋ କ୍ୟାନ୍ସରରେ ଚାଲିଗଲା। ନିଜ ଶାରୀରିକ କଷ୍ଟ, ଗୋଟିଏ ପରେ ଗୋଟିଏ ଛଅଟି ଅପରେସନ୍... କହି ବସିଲେ ସରିବ ନାହିଁ। କିନ୍ତୁ ନିଜର ଦୁଃଖ ପ୍ରକାଶ କରିବାକୁ କାହା ପାଖକୁ ଯିବି ? ନିଜର ଏକାମତ୍ର ସାହା ଭରସା ରୂପେ ବାଛି ନେଲି ଗୁରୁ ମହାରାଜଙ୍କୁ। ସେଇଠି ଗୁରୁଦ୍ୱାରରେ ଗୁରୁ ଗ୍ରନ୍ଥସାହିବଙ୍କ ପାଖରେ ଯାଇ ବସି, ମନେମନେ କଥାହୁଏ ଓ ମାର୍ଗଦର୍ଶନ ପାଇଁ ପ୍ରାର୍ଥନା କରେ, ସେବା କରେ ଗୁରୁଙ୍କ ପାଖରେ। ମନ ବୁଝିଯାଏ କିଛି ସମୟ ପାଇଁ। କିନ୍ତୁ ଗୁରୁଙ୍କ ଭାଷା ଭଲଭାବେ ବୁଝି ପାରେ ନାହିଁ।

ମୋର ଶାରୀରିକ କଷ୍ଟ ଅଛି, 'ଯୋ ନର ଦୁଃଖ ମେ ଦୁଃଖ ନେହିଁ ମାନେ...', କିନ୍ତୁ ଏହି କାର୍ଯ୍ୟ କରିବା ଦ୍ୱାରା ମୋର ମାନସିକ ସ୍ତରରେ ଉନ୍ନତି ହୋଇପାରିଛି। ସବୁ ପ୍ରକାର ଶାରୀରିକ ବାଧାବିଘ୍ନ ଥାଇ ମଧ୍ୟ ଗୁରୁଙ୍କ ଆଶୀର୍ବାଦରୁ ସାହସ ଆପେ ଆପେ ଆସି ଯାଇଛି।

ଏତେ ଅସୁବିଧାର ସମ୍ମୁଖୀନ ହୋଇ, ନିରନ୍ତର ଏହି ଉଦ୍ଦେଶ୍ୟକୁ ପୂର୍ଣ୍ଣ କରିବା ପାଇଁ ନିଜ ଜୀବନକୁ ଗୁରୁଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛି ଏବଂ ସେଇଥିପାଇଁ ଗାଙ୍ଗଟକ୍‌ରେ ଥିବା ନିଜର ସ୍କୁଲ୍‌କୁ ଛାଡ଼ି ବିଗତ ଚାରିବର୍ଷ ହେବ ଚାଲି ଆସିଛି ଭୁବନେଶ୍ୱର। ଏହି କାର୍ଯ୍ୟ ଦ୍ୱାରା ରୋଜଗାର କରିବାର କୌଣସି ପ୍ରକାର ଚିନ୍ତା କରୁ ନାହିଁ... କେବଳ ଗୁରୁଙ୍କ ଆଶୀର୍ବାଦ ପ୍ରସାଦ ପାଇବାର ଏକ ମାତ୍ର ଲାଳସା ମୋତେ ଏହି ପଥରେ ଆଗେଇ ନେଉଛି।

ଚଲାପଥରେ ଅନେକ ଭୁଲ୍ କରିଛି। ବର୍ତ୍ତମାନ ମଧ୍ୟ ଭୁଲ୍ କରୁଛି। ଏହା ଭିତରେ ଯଦି କିଛି ଭୁଲ୍‌ତ୍ରୁଟି ରହି ଯାଇଥିବ ଦୟାକରି ପାଠକମାନେ ମୋତେ କ୍ଷମା କରିବେ ଓ ଆଗାମୀ ସଂସ୍କରଣ ପାଇଁ ସଂଶୋଧନ ପ୍ରସ୍ତାବକୁ ଅନୁରୋଧ।

– ସାଧନା

# ଭୂମିକା

ੴ (୧ଓଁକାର)

**୧ଓଁକାର ଶ୍ରୀ ୱାହିଗୁରୁ ଜୀ କୀ ଫତହି**

ନିଜର ଇତିହାସକୁ ଦେଖି ବୁଝିପାରିବ କି ଶିଖ ଇତିହାସ ବଳିଦାନର ଗୋଟିଏ ଜ୍ୱଳନ୍ତ ଉଦାହରଣର ଉଚ୍ଚତମ ସୋପାନ ଅଟେ। ଶିଖ ଧାରଣ କରିବା ପୂର୍ବରୁ ପ୍ରଥମେ ନିଜର ଶିର (ମସ୍ତକ)କୁ ଗୁରୁଙ୍କୁ ଅର୍ପଣ କରିବା ସର୍ତ୍ତ କରିବା ହିଁ ଶିଖ ଧର୍ମର ଗୌରବତାର ଅନୁମାନ କରାଯାଉଛି କି ଶିଖମାନେ କିପରି ନିର୍ଭୀକ ଭାବେ ନିର୍ଭୀକତାର କୋଳରେ ବସି ପ୍ରସ୍ଫୁଟିତ ହୋଇ ଗଲେ। ଏହି ଜାତିର ଅପୂର୍ବମୟ ବଳିଦାନ ଏହାର ପ୍ରତ୍ୟକ୍ଷ ପ୍ରମାଣ ଅଟେ।

ଶିଖ ଆଦର୍ଶତା ଧାରଣ କରିଥିବା ଶିଖମାନଙ୍କ ସକାଶେ ଏହି ଦୁନିଆରେ ଆଉ କ'ଣ ଅଛି ? ଶରୀର ଗୁରୁଙ୍କର, ମନ ଗୁରୁଙ୍କର, ଧନ ଗୁରୁଙ୍କର ପୁଣି ଶିଖମାନେ ଏହା ଠାରୁ ବଡ଼ ପ୍ରେମ କାହାକୁ କରିବେ ? ସେଥିଯୋଗୁଁ ସେ ନିଜର ଧର୍ମ ସକାଶେ ସବୁକିଛି ବଳିଦାନ କରିଦିଏ। ଶିଖ ଇତିହାସରେ ଏହାର ଜ୍ୱଳନ୍ତ ଉଦାହରଣ ମିଳିଛି- ଶିଖମାନେ ଜୀବନ ବଳିଦାନ କରି ନିଜ ଧର୍ମର ରକ୍ଷା କରିଆସିଛନ୍ତି ଓ କରି ଚାଲିବେ। ଗୁରୁବାଣୀର ଜ୍ୟୋତିରେ ଶିଖମାନଙ୍କର ବିଶ୍ୱାସ ହୋଇଯାଏ କି ଏହି ଦୁନିଆ ପ୍ରତି ଉପକାର, ସତ୍ୟ ଓ ଧର୍ମର ସହ ସତ୍ୟତାର ରୋଜଗାର କେବଳ ମାନବ ଧର୍ମ, ଜୀବନକୁ ସଫଳ କରାଇବ। ଧର୍ମ ନଷ୍ଟ ନ କରିବା ହିଁ ଶିଖ ଧର୍ମର ପ୍ରକୃତ ଓ ସତ୍ୟ ଆଦର୍ଶ ଅଟେ।

ଏହି ଜ୍ୟୋତିର୍ମୟ ଶିଖ ଆଦର୍ଶତା ଯୋଗୁଁ ଶିଖମାନଙ୍କର ଜୀବନ ଶ୍ରେଷ୍ଠ ସଦାଚାରୀ ଯୁକ୍ତ ଓ ଆଦର୍ଶବାଦୀ କରାଇଛି। ଯିଏ ସମୟ ନଷ୍ଟ କରେ ନାହିଁ, ଆଉ ସମୟକୁ ସଦୁପଯୋଗ କରି, ଶହୀଦମାନଙ୍କର ମୃତ୍ୟୁ ଧାରଣ କରି ଦେଶ ଓ ଜାତିର ନାମ ଶ୍ରେଷ୍ଠ କରିଆସିଛନ୍ତି।

କବୀର ଜୀ ଏହି ଆଦର୍ଶତାକୁ ବର୍ଣ୍ଣନା କରିଛନ୍ତି-

କବୀର ମରତା ମରତା ଜଗୁ ମୁଆ ମରି ଭି ନ ଜାନିଆ କୋଇ।।
ଐସେ ମରନେ ଜୋ ମରୈ ବହୁରି ନ ମରନା ହୋଇ।।

(ସଲୋକ କବୀର ଜୀ)।୨୯।

ଦୁନିଆର ଅନ୍ୟ ଧର୍ମର ଇତିହାସ ନଜର ନିକ୍ଷେପଣ କରିଲେ ଜଣାପଡ଼ିବ କି, ଅନ୍ୟ ଧର୍ମ ରାଜଶକ୍ତି ଓ ଶାସକୀୟ ଶକ୍ତି ଚାପ ଦ୍ୱାରା ଦୁନିଆ ବିସ୍ତାରିତ ଅଟେ। କିନ୍ତୁ ଶିଖ ଧର୍ମ କେବଳ ସମ୍ପୂର୍ଣ୍ଣ ଭାବେ ବଳିଦାନ, ନିଜର ଆତ୍ମ ବଳିଦାନ ସହ ଭାବନାର ଚାପ ସହ ସଂଘର୍ଷ ଦ୍ୱାରା ଅଗ୍ରଗତି ହୋଇଛି। ଅତ୍ୟାଚାରୀମାନଙ୍କ ଅତ୍ୟାଚାରକୁ ଶାନ୍ତିପୂର୍ଣ୍ଣ ଭାବେ ସହ୍ୟ କରି ଓ ତଲବାରର

ଶକ୍ତି ଦ୍ୱାରା ନିଜକୁ ନିଜେ ଓ ନିଜର ଦେଶ ସକାଶେ ଏହି ଧର୍ମ ଅଟେ।

ଶ୍ରୀ ଗୁରୁ ଅର୍ଜୁନ ଦେବଜୀ ଓ ଗୁରୁ ଶ୍ରୀ ତେଗ୍‌ବାହାଦୁରଜୀଙ୍କ ଶହୀଦ ଜାତିକୁ ଶାନ୍ତିମୟର ଶିକ୍ଷା ଦେଉଛି ଓ ଶାନ୍ତିମୟ ସହ ଧର୍ମ ରକ୍ଷା କରିବା ଶିକ୍ଷା ଦେଉଛି, କିନ୍ତୁ ଯଦି ଅତ୍ୟାଚାରୀର ଅତ୍ୟାଚାର ସହ ପୁଣି ମଧ ବନ୍ଦ ନ ହେବା ଯୋଗୁଁ ଷଷ୍ଠ ଶ୍ରୀଗୁରୁ ହରିଗୋବିନ୍ଦ ସାହିବ୍ ଜୀ ଓ ଦଶମ ପିତା ଗୁରୁ ମହାରାଜ ଶ୍ରୀ ଗୁରୁ ଗୋବିନ୍ଦ ସିଂହ ସାହିବ୍ ଜୀ ମହାରାଜ ଶୂରବୀରତାର ଶିକ୍ଷା ଶିଖ ଜାତିକୁ ଶିକ୍ଷା ପ୍ରଦାନ କରାଇ ଜାତି ପାଇଁ ଲଢ଼ି ମରିବା ଓ ମରି ସରିଯିବାର ଶିକ୍ଷା ଦେଲେ। କାରଣ କଠୋର ହାତ ବ୍ୟତୀତ ଅତ୍ୟାଚାରୀମାନଙ୍କର ବୁଦ୍ଧି କେବେବି ଠିକ୍ ହୋଇ ପାରିନଥାନ୍ତା। ଚୂଡ଼ାମଣି ଧାରୀ ୧୦ମ ପିତା ତାଙ୍କର ଜଫରନାମା (ବିଜୟ ପତ୍ର) ମଧରେ ବହୁତ ସୁନ୍ଦର ବ୍ୟାଖ୍ୟା କରିଛନ୍ତି-

ଚୁ କାର ଅଜ ହମା ହୀଲତେ-ଦର-ଗୁଜଶତ।
ହଲାଲ ଅସତ ବୁରଦନ ବ ଶମଶୀର ଦସତ।

ଅର୍ଥାତ୍ ଯେତେବେଳେ ସମସ୍ତ ଉପାୟ ବ୍ୟର୍ଥ ହୋଇଯାଏ ସେତେବେଳେ ତଲବାରର ସାହାଯ୍ୟ ନେବା ଉଚିତ।

ଶତ୍ରୁ ବହୁତ ଏହା ଭାବି ଶିଖମାନେ ବିଚାର କରନ୍ତି ନାହିଁ ସେମାନେ ନ୍ୟାୟ, ଅଧିକାରକୁ ମୁଖ୍ୟତଃ ପ୍ରାଧାନ୍ୟ ଦେଇ ବିଜୟ ପ୍ରାପ୍ତ କରାନ୍ତି। ଯଦି ଭାଇ ମନୀ ସିଂହ, ଭାଇ ତାରୁ ସିଂହ ତଥା ଆହୁରି ଏମିତି ସିଦ୍ଧିପ୍ରାପ୍ତ ଶିଖ ଶାନ୍ତିମୟ ପ୍ରଣାଳୀ ସହ ଶତ୍ରୁମାନଙ୍କୁ ଆଶ୍ଚର୍ଯ୍ୟ କରିଦେଲେ ତାହା ଦେଖି ବାବା ବନ୍ଦା ସିଂହ ବାହାଦୁର, ବାବା ଦୀପ ସିଂହ, ଭାଇ ମହତାବ୍ ସିଂହ ଓ ସୁଖା ସିଂହ ସମସ୍ତଙ୍କ ବିଜୟରେ ମଧ ଶିଖ ବାହାଦୂରୀକୁ ଉଜ୍ଜ୍ୱଳ ଓ ତେଜୋଦୀପ୍ତ କରାଇଥିଲେ।

ପୁସ୍ତକ ମଧରେ କଲଗୀଧର ଚୂଡ଼ାମଣି ଧାରୀ ମହାରାଜଙ୍କ ଅମୃତ ଚଖାଇବା( ପାନ) ଠାରୁ ସମ୍ବତ ୧୭୫୬ ବୈଶାଖୀ ଠାରୁ ବର୍ତ୍ତମାନ ୨୦୨୫ ସମ୍ବତ ଯାଏଁ ନିଜର ପ୍ରେମୀ ପାଠକଙ୍କ ଜ୍ଞାତ ସକାଶେ ଏଠାରେ ପରିବେଷଣ କରାଯାଇଛି। ଆମର ଇତିହାସ ଦୁନିଆର ଅନ୍ୟ ଇତିହାସ ଭଳି କେବଳ ସାଧାରଣ ଇତିହାସ ନୁହେଁ, ପରନ୍ତୁ ରକ୍ତର କାଳିରେ ଲେଖା ହୋଇଥିବା ଏହି ଇତିହାସ ଅଟେ। ଏହା କେବଳ ଶିଖ ଇତିହାସ ଠାରେ ମିଳିବ। ଏହି ଇତିହାସ ଜାତିକୁ ଇଞ୍ଜେକ୍‌ସନ ଭଳି କାର୍ଯ୍ୟ କରେ ଓ ସମୟ ଅନୁସାରେ ପନ୍ଥକୁ ଅଗ୍ରସର ତଥା ନେତୃତ୍ୱ କରାଇଥାଏ ଓ କରିଚାଲିବ।

ପନ୍ଥର ଦାସ (ସେବକ)
ଜ୍ଞାନୀ ଅମର ସିଂହ
ସେବିକା- ସାଧନା ପତ୍ରୀ।

# ପ୍ରସ୍ତାବ

- ସେହି ଶୂରବୀର ବାହାଦୁର ସିଂହମାନଙ୍କୁ ଯେଉଁମାନେ ଶିଖଧର୍ମର ରକ୍ଷା ନିମନ୍ତେ ନିଜର ଜୀବନ ବଳିଦାନ ଦେବା ସକାଶେ କୁଣ୍ଠାବୋଧ କରି ନ ଥିଲେ।
- ସେହି ହଟ ଜିଦ୍ଦି ସିଂହମାନେ ଯେଉଁମାନେ କରତ ଚକ୍ରରେ ଚଢ଼ି ଚଢ଼ି ଋବୁକ୍ ଖାଇ ତଥା ବହୁତ ଅସହନୀୟ କଷ୍ଟ ସହ୍ୟ କରି ତଥା ଶିଖ ଧର୍ମର ସମ୍ମାନନୀୟ କେଶ ଓ ଧର୍ମକୁ ଦୃଢ଼ତା ସହ ପାଳନ ତଥା ରକ୍ଷା କରିଥିଲେ ଓ ଧର୍ମ ନଷ୍ଟ କରି ନ ଥିଲେ।
- ସେହି ଦୃଢ଼ଶାଳୀ ବିଶ୍ୱସନୀୟ ସିଂହାଣୀମାନେ ଯେଉଁମାନେ ନିଜର ସ୍ନେହର ସନ୍ତାନମାନଙ୍କର ଶରୀରକୁ ଖଣ୍ଡ ଖଣ୍ଡ କରି ଗଳାରେ ଝୁଲାଇ ଦିଆଗଲା। ଦେଢ଼ ଦେଢ଼ ମହଣ ଶସ୍ୟ ପେଷି ଋଲିଲେ। ଅଳ୍ପଖଣ୍ଡ ରୁଟି ଖାଇ ବଞ୍ଚିରହିଲେ କିନ୍ତୁ ନିଜର ସତ୍‌ଗୁରୁଙ୍କ ଶରଣ ଛାଡ଼ି ନ ଥିଲେ। ଦୁଃଖକଷ୍ଟକୁ ଡରି ନିଜର ଧର୍ମ ତ୍ୟାଗ କରି ନ ଥିଲେ।
- ସେହି ଅପୂର୍ବ ଓ ଉଦ୍ୟମୀ ସିଂହମାନେ ଯେଉଁମାନେ ସତ୍ୟ, ଧର୍ମ ଓ ନ୍ୟାୟ ସକାଶେ ଯୁଦ୍ଧ ଭୂମିରେ ଅଙ୍ଗକୁ ଖଣ୍ଡ ଖଣ୍ଡ କରି ଶହୀଦ ପ୍ରାପ୍ତ କରିଲେ। ଦେଶ ଓ ଧର୍ମର ସମ୍ମାନକୁ ଉଚ୍ଚା କରି ନିଜ ନିଜର ଜୀବନ ବଳିଦାନ ଓ ନିଶ୍ଚୟ କରିବା ସଙ୍କଳ୍ପ ସହିତ ଆଗକୁ ବଢ଼ିଋଲିଲେ।
- ସେହି ନିର୍ଭୀକ ସିଂହମାନଙ୍କୁ ଗଛରେ ବାନ୍ଧି ଜୀବିତ ଜାଳି ଦିଆଯାଉଥିଲା। କିମା କିମା(ଛୋଟ ଛୋଟ ଖଣ୍ଡ) ହୋଇଗଲେ ମଧ୍ୟ ପଛକୁ ଫେରି ନ ଥିଲେ। ଅତ୍ୟାଋରୀ ନିର୍ମମତାକୁ ହସି ହସି ସହ୍ୟ କରିଲେ ଓ ନିଜ ଧର୍ମର ନାମ ଉଚ୍ଚା କରିଲେ।

## ଦୃଢ଼ ଲକ୍ଷ୍ୟ

ସେହି ମନୁଷ୍ୟ ଦୁନିଆରେ ପ୍ରଗତି କରିଥାଏ, ଯିଏକି ଦୃଢ଼ ଲକ୍ଷ୍ୟ ସହ ଏକାଗ୍ରତା ହୋଇଥାଏ ଓ କର୍ମଠ ମଧ୍ୟ ସେ ହୋଇପାରେ, ଯାହାର ବିଶ୍ୱାସ ଦୃଢ଼ ଥାଏ। ଜଣେ ଇଂରାଜୀ ଲେଖକ ଲେଖିଛନ୍ତି-

Not Gold can make a nation great or strong. But men who for honour's sake stand fast & suffer long.

ଅର୍ଥାତ୍ କୌଣସି ଜାତିର ସେନା ଅଥବା ଧନ ନୁହେଁ କେବଳ ସେହି ବ୍ୟକ୍ତି ଶକ୍ତିଶାଳୀ ହୋଇପାରେ। ଯିଏକି ନିଜର ଅସ୍ତିତ୍ୱ (Existence) ସକାଶେ ଲମ୍ବା ସମୟ ଯାଏଁ ଦୃଢ଼ତା ସହ ସମସ୍ୟାକୁ ସହ୍ୟ କରିଛନ୍ତିଲେ।

ଶିଖ ଇତିହାସ ମଧ୍ୟରେ ଏହାର ଅତୁଳନୀୟ ପ୍ରମାଣ ଅଟେ ଓ ଏହା ନିଜ ମଧ୍ୟରେ ଦୃଢ଼ତାର ଗୋଟିଏ ବିରାଟ ସମୁଦ୍ର ଅଟେ। ଏହାର ପ୍ରମାଣ କେଉଁଠାରେ ମିଳିପାରିବ ନାହିଁ।

ଶିଖ ଇତିହାସର ଜ୍ୱଳନ୍ତ ଉଦାହରଣ ଜୀବନୀ ଓ କର୍ତ୍ତୃତ୍ୱର ସମସ୍ୟା ସହ ସତ୍ୟ ସହାୟକ ଓ ପ୍ରେରଣା ତଥା ପ୍ରକୃତ ବନ୍ଧୁ ଭଳି କାର୍ଯ୍ୟ କରେ। ନିଜର ଜାତି ଓ ଭାଇମାନଙ୍କ ପ୍ରତି ନିଜର କର୍ମ ପାଳନ କରି ନିଜର ଜାତିର ପ୍ରଗତି ଉଦ୍ଦେଶ୍ୟ ଓ କ୍ଷତିର ଭଲ ମନ୍ଦ ଜ୍ଞାନ ବୁଝିବା ଓ ପ୍ରତ୍ୟେକ ସମସ୍ୟାର ସମ୍ମୁଖୀନ ହେବା ପରୀକ୍ଷା ନିରୀକ୍ଷା ସହ ଠିକ୍ ଭାବେ ଆମର ଇତିହାସ ଆମ୍ଭମାନଙ୍କୁ ଜ୍ଞାତ କରାଇ ଦେଉଛି।

# ଶିଖ ଇତିହାସ

## ଶିଖ ପନ୍ଥ କେଉଁଠାରୁ କେଉଁଯାଏ

ନଅ ଜଣ ଗୁରୁ ମହାରାଜ ନିଜର ଶୁଭ ଉପଦେଶକୁ ଆହୁରି ନିର୍ମଳ ଓ ଶୁଦ୍ଧ ଓ ପବିତ୍ର କାର୍ଯ୍ୟକାରୀ ଦ୍ୱାରା ନିଜର ଶିଖମାନଙ୍କୁ ତଥା ଦୁନିଆ ସମ୍ମୁଖରେ ସମ୍ପୂର୍ଣ୍ଣ ମାନବତାର ଆଦର୍ଶତା ପ୍ରସ୍ତୁତ କରିଥିଲେ। ଶ୍ରୀ ଦଶମ ପିତା ମହାରାଜ ସେହି ଆଦର୍ଶକୁ ଜାଗ୍ରତ କରିଲେ ଓ ନିଜର ବାଣୀ ମଧ୍ୟରେ ସେ ପୂର୍ଣ୍ଣ ଆଦର୍ଶତାର ବ୍ୟାଖ୍ୟା ଏମିତି ଭାବେ କରିଥିଲେ-

ଜାଗତି ଜୋତ ଜପୈ ନିସ ବାସୁର, ଏକ ବିନା ମନ ନୈକ ନ ଆନୈ।
ପୂର୍ଣ୍ଣ ପ୍ରେମ ପ୍ରତୀତ ସଜୈ ବ୍ରତ, ଗୌର ମଢ଼ୀ ମଟ ଭୁଲ୍ ନ ମାନୈ।
ତୀର୍ଥ ଦାନ ଦୟା ତପ ସଂଯମ, ଏକ ବିନା ନହ ଏକ ପଛା ନୈ।
ପୂର୍ଣ୍ଣ ଜ୍ୟୋତ ଜଗୈ ଘଟ ମୈ, ତବ ଖାଲସ ତାହି ନଖାଲସ ଜାନୈ।

(ଦଶମ ଗ୍ରନ୍ଥ)

ଇତିହାସ ମଧ୍ୟରେ ଦର୍ଶାଯାଇଅଛି କି ଗୁରୁ ନାନକ ଦେବ ମହାରାଜ ହିନ୍ଦୁ ସମ୍ପ୍ରଦାୟ ମଧ୍ୟରେ ଭରି ରହିଥିବା ଭେଦଭାବ, ପୂଜାରୀମାନଙ୍କ ଦ୍ୱାରା ଭ୍ରମ ଇତ୍ୟାଦି ପୁରୁଣା ରୀତି ଓ କୁସଂସ୍କାରକୁ ରଦ୍ଦ କରାଇଥିଲେ।

ଶିଖ ମାର୍ଗକୁ ନଅ ଗୁରୁମାନେ ନିଜ ନିଜର ଜ୍ୟୋତି ଦ୍ୱାରା ଜାଗ୍ରତ କରାଇ ଅଗ୍ରସର କରାଇଦେଲେ। ଶିଖ ମାର୍ଗର ସିଧାସଳଖ ସ୍ୱଚ୍ଛ କରିଦେଲେ। କିନ୍ତୁ ଶିଖମାନଙ୍କ ମଧ୍ୟରେ ଏକ ଜାତୀୟତା ବୋଧ ଜାଗ୍ରତ କରାଇ ତାହାକୁ ପକ୍କା ଭାବେ ଦୃଢ଼ କରାଇବା ଦାୟିତ୍ୱ ଅକାଳ ପୁରୁଷ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀଙ୍କୁ ସମର୍ପି ଦେଇଥିଲେ।

ଦଶମ ପିତା ମହାରାଜ ଶ୍ରୀ ଗୁରୁ ଗୋବିନ୍ଦ ସିଂହ ମହାରାଜ ଶିଖମାନଙ୍କ ପନ୍ଥର ଜାତି ଓ ଏକତାର ବିଜୁଳି ଏମିତି ତୀବ୍ର ଭାବେ ଭରି ଦେଇଥିଲେ। ଯାହାକି ବିଜୟ-ଶାନ୍ତି ପସନ୍ଦ ଶିଖମାନଙ୍କୁ ଦୁନିଆର ବାହାଦୁର ଜାତିର ଧାଡ଼ିରେ ଛିଡ଼ା କରାଇଦେଲେ। ଶ୍ରୀ ଗୁରୁ ତେଗ୍ ବାହାଦୁରଜୀଙ୍କ ଶହୀଦ ସମୟରେ ଗୁରୁ ଗୋବିନ୍ଦ ସିଂହ ମହାରାଜଙ୍କୁ କେବଳ ୯ବର୍ଷ ବୟସ ହୋଇଥିଲା। ସେହି ସମୟରେ ଦିଲ୍ଲୀ ରାଜ ସିଂହାସନରେ ମୋଗଲ ଶାସକର ଅତ୍ୟଧିକ ଅତ୍ୟାଚାରୀ ଓ ନିଷ୍ଠୁର ଜିଦ୍‌ଖୋର ବାଦଶାହ ଔରଙ୍ଗଜେବର ଶାସନ ଥିଲା। ସେ ଅନ୍ୟକୁ ନଷ୍ଟ ବିନଷ୍ଟ କରି କେବଳ ନିଜ ଧର୍ମର ଅଗ୍ରଗତି ଓ ପ୍ରଗତି ଚାହୁଁଥିଲା। ତାହାର ଶକ୍ତି ଓ ଗର୍ବ ସୂର୍ଯ୍ୟର ମସ୍ତକରେ ଥିଲା। ଏତେ ମହାନ୍ ଶକ୍ତିର ବିରୋଧରେ ଜେହାଦ୍‌ର ମୁଦ୍ଦା ଉଠାଇବା ଗୁରୁ ସାହିବ୍‌ଙ୍କ ଘର ମଧ୍ୟରେ ଘୋର ବିରୋଧ ଧୀର ମଲ୍ଲ ଓ ରାମ ରାଏ ମଧ୍ୟ ଔରଙ୍ଗଜେବ୍‌ର ହାତରେ ଖେଳନା ହୋଇ ଗୁରୁଗାଦୀର ବିରୋଧରେ ଅନେକ ପ୍ରକାରର ଷଡ଼ଯନ୍ତ୍ର କରି ଚାଲିଥିଲେ। ପୁଣି ଦିଲ୍ଲୀ, ପଞ୍ଜାବ ଓ କାବୁଲ୍‌ଠାରୁ ଦୂର ଦୂରାନ୍ତରୁ ପୀରମାନେ, ଗାଜୀମାନେ ଓ ଜେହାଦୀମାନଙ୍କ ଦ୍ୱାରା ହିନ୍ଦୁସ୍ତାନ ଭର୍ତ୍ତି ହୋଇ ରହିଥିଲା। ସେ ସମସ୍ତେ ଔରଙ୍ଗଜେବ୍‌ର କ୍ରୀତଦାସ ହୋଇ ରହିଥିଲେ ଓ ସେ ସମସ୍ତେ ଔରଙ୍ଗଜେବ୍‌ର ହୁକୁମ୍‌ରେ ନିଃଶ୍ୱାସ ନେଉଥିଲେ। ହିନ୍ଦୁ ରାଜାମାନେ , ଧନାଢ଼୍ୟ ବ୍ୟକ୍ତିମାନେ, ମନ୍ତ୍ରୀମାନେ ସ୍ୱାଭିମାନ ସହ ନୀଚପ୍ରକୃତିର ହୋଇ ହିନ୍ଦୁ ଧର୍ମ ସକାଶେ ମୁସଲମାନମାନଙ୍କ ଠାରୁ ମଧ୍ୟ ହୀନ ପ୍ରକୃତିର ହୋଇଯାଇଥିଲେ। ସେମାନଙ୍କ ପାଖରେ ନିଜର ସ୍ୱଦେଶ ପ୍ରେମ ଓ ଭାବନା, ନିଜର ପ୍ରାଚୀନ ଧର୍ମ ଓ ଦେଶଭକ୍ତି ଆଂଶିକ ଭାବରେ ମଧ୍ୟ ରହି ନ ଥିଲା। ସେମାନେ ସେହି ମୋଗଲ ଶାସନର ଆଦେଶକୁ ଜୀ- ହଜୁର ଭାବେ କୁକୁର ଭଳି ଲାଞ୍ଜ ହଲେଇ ଦେଶ ଓ ଜାତିର ବହୁତ ବଡ଼ ଧୋକାବାଜୀ ହୋଇ ରହିଥିଲେ।

ବର୍ତ୍ତମାନ ବିଚାର କରନ୍ତୁ ଏହି ପରିସ୍ଥିତିରେ ସେହି ଅତ୍ୟାଚାରୀମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନ ସହ ଧ୍ୱଜା ଉଠାଇବା ବ୍ୟକ୍ତି ମହାନ୍ ଶକ୍ତିଙ୍କ କେତେ ସାହସିକତା, ନିର୍ଭୀକତା ଓ ସ୍ୱଚ୍ଛତା ସହ ସମର୍ଥ ହୋଇପାରିଥିବ ? ଏମିତି ବାତାବରଣ ମଧ୍ୟରେ ସତ୍ୟତାର ସ୍ୱର ଉତ୍ତୋଳନର ପ୍ରକଟ କରାଇବା ବ୍ୟକ୍ତିଙ୍କର ଆତ୍ମା କେତେ ମହାନତା ହୋଇପାରିଥିବ ?

ଏଥିରୁ ସ୍ପଷ୍ଟ ହୋଇପାରୁଛି କି ସେହି ମହାନ୍ ଶକ୍ତି ମହାବଳୀ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ ଗରିବ ଓ ନିଆଶ୍ରା ଜନତା ଯେଉଁମାନେ କି ଦଳି ଚକଟି ହୋଇ

ବଞ୍ଚି ରହୁଥିଲେ ସେମାନଙ୍କୁ ଉଦ୍ଧାର ସକାଶେ ସ୍ଥିର କରିଲେ, ତାହା ତାଙ୍କର ବିଶେଷ କାମ ଥିଲା। ସେହି ଶକ୍ତି କୌଣସି ଦେବୀ, ଦେବତାଙ୍କ ଶକ୍ତି ମଧ୍ୟରେ ନ ଥିଲା। ଗୁରୁ ମହାରାଜ ନିଜ ମଧ୍ୟରେ ସୁପ୍ତ ସ୍ୱାଭିମାନକୁ ଜାଗ୍ରତ କରାଇଲେ, ବୀର ରସର ପ୍ରଚାର କରାଇଲେ ଓ ତଲବାର(କୃପାଣ) ଧାରଣ ଓ ଚାଳନାକୁ ଆଦେଶ ଦେଲେ-

ଖଗ ଖଂଡ଼ ବିହଂଡ଼ଂ ଖଳ ଦଲ ଖଂଡଂ ଅତି ରଣ ମଂଡ଼ ବରବଂଡ଼ଂ।
ଭୁଜ ଦଂଡ଼ ଅଖଂଡ଼ଂ ତେଜ ପ୍ରଚଣ୍ଡଂ ଜ୍ୟୋତି ଅମଂଡ଼ଂ ଭାନ ପ୍ରଭଂ।।
ସୁଖ ସଂତା କରଣଂ ଦୂରମତି ହରଣଂ କଲବିଖ ହରଣଂ ଅସି ସରଣଂ।
ଜୈ ଜୈ ଜଗ କାରଣ ସ୍ରିଷ୍ଟ ଉବାରଣ ମମ ପ୍ରିତପାରଣ ଜୈ ତେଗଂ।।(୨)

ଚୂଡ଼ାମଣୀ ଧାରୀ ୧୦ମ ପିତା ମହାରାଜ ଦେଶର ଏହି ଦୁଃଖଦାୟୀ ଦୁର୍ଦ୍ଦଶାକୁ ସୁଧାରିବା ପାଇଁ ନିଜର ବିଚାରକୁ ଶିଖମାନଙ୍କୁ ପାହାଡ଼ୀ ରାଜାମାନଙ୍କୁ ପଣ୍ଡିତ ଓ ବିଦ୍ୱାନ୍‌ମାନଙ୍କୁ ସମ୍ମୁଖରେ ପ୍ରକଟ କରାଇଲେ। ଦେବୀ ପ୍ରକଟ କରିବା ପାଖଣ୍ଡିମାନଙ୍କୁ ମଧ୍ୟ ସତ୍‌ଗୁରୁଜୀ ତତ୍ ସମ୍ପୂର୍ଣ୍ଣ ସଂପୃକ୍ତ ନଗ୍ନ କରାଇଥିଲେ। ଦେବୀ ପୂଜନର ପ୍ରସ୍ତାବ ଦେବା ପଣ୍ଡିତ କେଶୋ ଦାସ ଲକ୍ଷ ଲକ୍ଷ ଟଙ୍କାର ସାମଗ୍ରୀ ଜାଳିସାରିବା ପରେ ମଧ୍ୟ ଦେବୀ ପ୍ରକଟ ହୋଇ ନ ଥିଲେ ଓ କେତେ ମାସ ଯାଏ ଆଜି କାଲି କହି କହି ସମୟ ବିତାଇ ଚାଲିଲା। ସେତେବେଳେ ସତ୍‌ଗୁରୁଜୀ ପ୍ରଶ୍ନ କରିଥିଲେ। କିନ୍ତୁ ସେ ସମୟକୁ ଟାଳି କହିଲା-

"ମହାରାଜ! ଦେବୀ ପ୍ରକଟ ହେବେ, ଯଦି କୌଣସି ଜଣେ କୁଳୀନ ଓ ମହାପୁରୁଷଙ୍କୁ ବଳି ଦିଆଯିବ"। ପଣ୍ଡିତଙ୍କ ଇସାରା ସେତେବେଳେ ସାହିବଜାଦା ଅଜିତ୍ ସିଂହଙ୍କ ତରଫକୁ ଥିଲା ଓ ତାହାର ବିଚାର ଥିଲା କି ସତ୍‌ଗୁରୁଜୀ ଏହି କଥା ପ୍ରସ୍ତାବରେ ରାଜି ହୋଇଯିବେ ନାହିଁ ଓ ମୋତେ ଏହି ପାଖଣ୍ଡକୁ ନିର୍ଣ୍ଣୟ ବ୍ୟତୀତ ଶେଷ କରିବା ଅବସର ପ୍ରାପ୍ତ ହୋଇଯିବ, କିନ୍ତୁ ଅନ୍ତର୍ଯାମୀ ସତ୍‌ଗୁରୁଜୀଙ୍କୁ କିଏ ଛଳ କପଟ କରିପାରିବ?

ଦଶମ ଗୁରୁ ମହାରାଜ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ କହିଲେ- ପଣ୍ଡିତଜୀ! ଆପଣଙ୍କ ଠାରୁ ଅଧିକ ଉତ୍ତମ ଓ କୁଳୀନ ପୁରୁଷ ଆଉ କିଏ ହୋଇପାରିବ? ସେଥିଯୋଗୁଁ ଆପଣଙ୍କୁ ବଳି ଦେଇ ଆମେ ଦେବୀ ପ୍ରକଟ କରାଇନେବୁ। ପଣ୍ଡିତଜୀ ଏହି କଥା ଶୁଣି, ମଳମୂତ୍ର ତ୍ୟାଗ କରିବାର ବାହାନା କରି ସେଠାରୁ ଚାଲିଗଲା। ସେ ଆଉ ଫେରି ନ ଥିଲା। ସତ୍‌ଗୁରୁଜୀ ସମସ୍ତ ଅବଶିଷ୍ଟାଂଶ ସାମଗ୍ରୀ ଏକାଥରରେ ଯଜ୍ଞକୁଣ୍ଡରେ ଢାଳିଦେଲେ। ଯାହା ଦ୍ୱାରା ଅଗ୍ନିଝାସ ବହୁତ ଜ୍ୱାଳା ସହିତ ବାହାରିଲା

ଓ ତାହାର ଆଲୋକ ପ୍ରକାଶ ଦେଖି କେତେ ଲୋକଙ୍କୁ ଦେବୀ ପ୍ରକଟ ହେବାର ଭ୍ରମ ହୋଇଗଲା । ସତ୍‌ଗୁରୁଜୀ ଲୋକମାନଙ୍କ ଭ୍ରମ ଦୂର କରିବା ପାଇଁ କହିଲେ ଓ ଆଦେଶ ଦେଲେ କି ଏହା ସେହି ପ୍ରଭୁଙ୍କର ନିଜର ପ୍ରକାଶ ଥିଲା-

"ଅନହଦ ରୂପ ଅନାହଦ ବାନୀ ।
ଚରଣ ସରନ ଜିହ ବସତ ଭବାନୀ" ।

ଗୁରୁ ମହାରାଜ କହିଥିଲେ କି ଅକାଳ ପୁରୁଷ ଯିଏ ସମଗ୍ର ବ୍ରହ୍ମାଣ୍ଡର ଶାସକ(ମାଲିକ) ଅଟନ୍ତି ।

ତାହାଙ୍କ ଦ୍ୱାରରେ ଅନେକ ଭବାନୀମାନେ(ଦେବୀ) ଶ୍ରୀଚରଣ ତଳେ ବିନମ୍ର ଭାବରେ ଶରଣାଗତ ହୋଇ ନମସ୍କାର କରୁଛନ୍ତି । ସେଥିଯୋଗୁଁ ଆମ୍ଭେ(ମୁଁ) ସମସ୍ତ କାର୍ଯ୍ୟ ସେହି ଅକାଳ ପୁରୁଷଙ୍କ ଶ୍ରୀଚରଣ ଆଶ୍ରିତ ହୋଇ କରୁଛି ।

ତାହା ପରେ ଗୁରୁ ମହାରାଜ ସମସ୍ତଙ୍କୁ ଜଣାଇ ଆଦେଶ ଦେବା ଆରମ୍ଭ କରିଦେଲେ । ଆମ୍ଭେମାନେ ଅତ୍ୟାଚାର ନିଷ୍ଠୁରତାର ବିରୋଧରେ ଏକତ୍ରିତ ହୋଇ ଯିବା ଉଚିତ ଓ ଯଦି ଏକତ୍ରିତ ହୋଇ ରହିବା ତାହାହେଲେ ଗୋଟିଏ ଛତା ତଳେ ରହି ଏକତ୍ରିତ ଭାବେ ସାହସିକତା ଓ ନିର୍ଭୀକତା ସହ ଅତ୍ୟାଚାରୀମାନଙ୍କ ସହ ସାମନା କରିବା ଉଚିତ ।

ଗୁରୁ ମହାରାଜ କହିଥିଲେ- କାପୁରୁଷ, ଭୟାଳୁ ଓ ସ୍ୱାଭିମାନୀ(ସମ୍ମାନ) ସହ ହୀନ ଭାବେ ବଞ୍ଚିବା ଜୀବନର ମୃତ୍ୟୁ ହଜାର ଗୁଣରେ ଉଚିତ ଅଟେ । ଆପଣଙ୍କୁ ଘୋଡ଼ା ଚଢ଼ିବା ଆଦେଶ ନାହିଁ, ଆପଣଙ୍କୁ ଜୋର ଶବ୍ଦ ସହ କଥା ହେବା, ଶୀଘ୍ର ଚାଲିବା ଓ ବାଜା ବଜାଇବା, ଶୁଣିବା ଇତ୍ୟାଦି ଆଜ୍ଞା ନାହିଁ । ତାହାହେଲେ କୁହନ୍ତୁ, ଆପଣଙ୍କର ଏହି ଜୀବନର ଅର୍ଥ କ'ଣ ? ଉଠ, ଖଣ୍ଡନ କରିଦିଅ ଏହିପରି ନିୟମକୁ ଓ ଆକ୍ରମଣ କର ଏହିପରି ଆଦେଶ ଦେବା ବ୍ୟକ୍ତିମାନଙ୍କୁ । ଆପଣମାନେ ନିଜକୁ ନିଜେ ଏହି ଏହାକୁ ପ୍ରସ୍ତୁତ କରିଦଅ-

**ଭୈ କାହୁ କଉ ଦେତ ନହି ନହି ଭୈ ମାନତ ଆନ ।**

ସତ୍‌ଗୁରୁ ମହାରାଜଙ୍କ ଏହି ପ୍ରଚାରର ଏହା ପ୍ରଭାବ ହେଲା କି ଦବି ହୋଇ ରହିଥିବା ବ୍ୟକ୍ତିମାନଙ୍କର ମନରେ ଆକ୍ରୋଶିତ ହୋଇଗଲେ ଓ ସବୁକିଛି ଭୁଲି ଗୁରୁଜୀଙ୍କ କାର୍ଯ୍ୟକ୍ରମରେ ଯୋଗ ଦେବାକୁ ଲାଗିଲେ ।

ବର୍ତ୍ତମାନ ସତ୍‌ଗୁରୁ ସେହି ଉତ୍ସାହୀ ଲୋକମାନଙ୍କ ମଧ୍ୟରେ (ମୃତ୍ୟୁକୁ ଖାତିର ନ କରିବା ବ୍ୟକ୍ତି) ବାଛିବା କାର୍ଯ୍ୟକ୍ରମ କରିଲେ। ଏହି ପ୍ରସ୍ତାବକୁ ସତ୍‌ଗୁରୁ ମହାରାଜ କେତେଦିନ ଯାଏଁ ବିଚାର କରିଲେ। କେତେଦିନ ପରେ ସେ ପ୍ରାଧାନ୍ୟ ସହ ଆଦେଶ ପଠାଇଲେ ସମ୍ବତ ୧୭୫୬ର ବୈଶାଖୀ ଅବସରରେ ଦେଶର ମହାନ୍ ଆବଶ୍ୟକତାକୁ ପୂରଣ କରିବା ସକାଶେ ଶିଖ ସଙ୍ଗତମାନଙ୍କୁ ବହୁ ସଂଖ୍ୟାରେ ଏକତ୍ରିତ କରାଇବା ନିଷ୍ପତ୍ତି କରିଲେ। ସତ୍‌ଗୁରୁ ମହାରାଜଙ୍କର ଆଦେଶନାମା ଅନୁସାରେ ଦୂର ଦୂରରୁ ଶିଖ ସଙ୍ଗତ ଶ୍ରୀ ଆନନ୍ଦପୁର ସାହିବ୍ ଠାରେ ବହୁ ଉତ୍ସାହ ସହ ପହଞ୍ଚିଲେ। ବୈଶାଖୀର ବହୁ ସମାଗମର ଦରବାରକୁ ସୁସଜ୍ଜିତ ସକାଶେ କେଶଗଡ଼ର ବିଶାଳ ପଡ଼ିଆ ବଛାଗଲା। ଶ୍ରୀ ଗୁରୁ ମହାରାଜଙ୍କ ଆଦେଶ ଅନୁଯାୟୀ ତମ୍ବୁ ଲଗାଗଲା ଓ ସଙ୍ଗତମାନଙ୍କ ସକାଶେ ଦରି, ଗାଲିଚା ବିଛାଇ ଦିଆଗଲା। ସେହି ସୁସଜ୍ଜିତ ସ୍ଥଳ ମଧ୍ୟରେ ଚୂଡ଼ାମଣୀଧାରୀ ଶ୍ରୀ ଗୁରୁ ଗୋବିନ୍ଦ ସିଂହ ମହାରାଜଙ୍କର ସୁନେଲୀ ଗାଦି ସଜାଇ ଦିଆଗଲା। ଯାହାର ଦ୍ୱାର ବହୁତ ଦୂରଯାଏଁ ଲମ୍ବିଥିଲା। ଯାହାର ଦ୍ୱାର ସ୍ୱର ଶବ୍ଦର ତଟକୁ ଥିଲା। ରାତିରେ ମଧ୍ୟ ଶ୍ରୀ ଗୁରୁଜୀ ସେହି ତମ୍ବୁ ମଧ୍ୟରେ ବିରାଜମାନ ହୋଇ କିଛି ଭାବୁଥିଲେ, କେହି ନିକଟବର୍ତ୍ତୀ ମଧ୍ୟ ନିକଟରେ ନ ଥିଲେ।

ତାହା କି ପ୍ରକାର ଭାବନା ଥିଲା ? ତାହା ଥିଲା, ଯାହାକୁ ସତ୍‌ଗୁରୁ ମହାରାଜ, ବିଲୁଆକୁ ସିଂହ ଓ ଚଢ଼େଇକୁ ବାଜପକ୍ଷୀ (ଇଗଲ) ଭାବେ ପରିବର୍ତ୍ତନ କରିବାକୁ ଚାହୁଁଥିଲେ। ଭାବ ଦବି, ଦଳିତ ହୋଇ, ଭୟାଳୁ ଲୋକ, ଅତ୍ୟାଚାରୀ ଓ ନିଷ୍ଠୁର ସହ ଲଢ଼ି, ଆକ୍ରମଣ କରି ବିଜୟ ପ୍ରାପ୍ତ ବିଚାର ନ ଥିଲା, କେବଳ ସ୍ୱୟଂ ପ୍ରସ୍ତୁତ କରିଥିବା ବାହାଦୁରଙ୍କୁ ବକ୍‌ସିସ୍ ସହ ନାମାଙ୍କନ କରିବା ଓ ପରିଚିତ ହେବାର ଇଚ୍ଛା ଥିଲା।

## ଅମୃତ ପାନ (ଅମୃତ ଛକାନା)

କାର୍ଯ୍ୟକ୍ରମ ଅନୁଯାୟୀ ଅମୃତ ସମୟ ରଣଜୀତ୍ ନଗାଡ଼ା ଉପରେ ପ୍ରହାର କରାଗଲା ଓ ପାହାଡ଼ସବୁ ଗୁଞ୍ଜି ଉଠିଲା। ଯାହାକି ଧର୍ମ ବିରୋଧୀ ଓ ଅତ୍ୟାଚାରୀ ଓ ଦୁଷ୍ଟମାନଙ୍କର ହୃଦୟ କମ୍ପି ଉଠିଲା। ଶିଖ ସଙ୍ଗତ ସତଲୁଜ ନଦୀରେ ସ୍ନାନ ସାରି ବାଣୀ ପାଠ କରି(ଦିବାନ) ଦରବାରରେ ଚକମକ ହୋଇଥିଲା ଓ କୀର୍ତ୍ତନିଆମାନେ

ପରମାତ୍ମାଙ୍କ ଗୁଣ, ଯଶର ପବିତ୍ର କୀର୍ତ୍ତନ ଶ୍ରୀ ଆସାକୀ ବାରର କୀର୍ତ୍ତନ ଆରମ୍ଭ କରିଦେଲେ। ସବୁ ସଙ୍ଗତମାନେ ପବିତ୍ର ବାଣୀର କୀର୍ତ୍ତନ ଆନନ୍ଦରେ ମଜି ରହିଲେ ଓ ଯେମିତି ଯେମିତି ଆଶା କୀ ବାରର କୀର୍ତ୍ତନର ଭୋଗର ସମୟ ନିକଟ ହେଉଥିଲା ସେମିତି ସେମିତି ଶ୍ରଦ୍ଧାଳୁମାନଙ୍କର ଦର୍ଶନର ଇଚ୍ଛା ପ୍ରବଳ ହେଉଥିଲା। ସମସ୍ତଙ୍କ ଚକ୍ଷୁ ଦର୍ଶନ ସକାଶେ ଉତ୍ସୁକତା ସହ ଅପେକ୍ଷା କରୁଥିଲେ କି ଗୁରୁଜୀ କେତେବେଳେ ତମ୍ବୁ ମଧରୁ ବାହାରି ଦର୍ଶନ ଦେବେ। ଶିଖମାନଙ୍କର ହୃଦୟ ଗୁରୁଜୀଙ୍କ ଅମୃତମୟ ଉପଦେଶ ଗ୍ରହଣ କରିବା ପାଇଁ ଉତ୍ସୁକତା ହୋଇ ରହିଥିଲେ। କାହାରି କାହାରି ମନରେ ଏହି ବିଚାର ଥିଲା କି ସତ୍‌ଗୁରୁଙ୍କ ତରଫରୁ ଦୂରରୁ ନିର୍ଦ୍ଦିଷ୍ଟ ହୁକୁମନାମା ପଠାଇ ସଙ୍ଗତମାନଙ୍କୁ ଡକାଇ ଆଣିବା କାରଣ କ'ଣ ହୋଇପାରେ ? ପରନ୍ତୁ ପ୍ରତୀକ୍ଷାରେ ଥିଲେ।

ଏହି ସମୟରେ କୀର୍ତ୍ତନ ସମାପ୍ତ ହେଲା ଓ ଦଶମ ପିତା ଶ୍ରୀ ଗୁରୁ ମହାରାଜ ଗୁରୁ ଗୋବିନ୍ଦ ସିଂହ ଧୀରେ ଧୀରେ ତମ୍ବୁରୁ ବାହାରି ଆସିଲେ। ଚୂଡ଼ାମଣୀ ଧାରକଙ୍କ ଚେହେରା ଆଜି କିଛି ଅଲଗା ପ୍ରତୀତ ହେଉଥିଲା। ମସ୍ତକ ଉପରେ ଦାୟିତ୍ୱର ବୋଝ, ଜିଜ୍ଞାସୁ ଚେହେରା, ଚିନ୍ତାଯୁକ୍ତ ନିଆଁଖଣ୍ଡ ଜଳୁଥିବା ନେତ୍ରକୁ ଦେଖି ସୂର୍ଯ୍ୟଙ୍କ ତେଜ ମଧ ଧିମା ପଡ଼ିଗଲା।

ଶ୍ରୀ ଆଶା ଜୀ ବାର ର ସମାପ୍ତି ପରେ ଅରଦାସ(ପ୍ରାର୍ଥନା) ଶେଷ ହେଲା। ଶ୍ରୀ ଗୁରୁଜୀ ନିଜ କରକମଳରେ ଚମକୁଥିବା ତଲବାର(କୃପାଣ)ସହ ଗୁରୁଗାଦି (Stage)ରେ ଛିଡ଼ା ହୋଇ ଗର୍ଜନ ସ୍ୱରରେ ସଙ୍ଗତମାନଙ୍କୁ ସମ୍ବୋଧନ ସ୍ୱରରେ କହିଲେ- ଗୁରୁ ନାନକ ପ୍ରେମୀମାନେ ! ଓ ଗୁରୁ ଘରର ଶ୍ରଦ୍ଧାଳୁମାନେ ! ଦେଶର ଖରାପ, ଦୁର୍ଦ୍ଦଶାକୁ ସୁଧାରିବା ଓ ଅତ୍ୟାଚାରୀଙ୍କଠାରୁ ରକ୍ଷା ପାଇବା ସକାଶେ ମୋତେ ଆଜି ଗୋଟିଏ ଶିର(ମସ୍ତକ)ର ଆବଶ୍ୟକତା ହେଉଛି। ଆସ କିଏ ସୁରବୀର, ଯିଏ କି ନିଜର ଶିର(ମସ୍ତକ) ଭେଟି କରିପାରିବ।

ଏହା ଶୁଣି ସମସ୍ତ ସଙ୍ଗତମାନେ ଭାବିଲେ କି ସେମାନେ ସମୁଦ୍ରରେ ବୁଡ଼ିଗଲେ ଓ ପୂରା ସମାରୋହ କ୍ଷେତ୍ର(ପଡ଼ିଆ, ପେଣ୍ଡାଲ) ସ୍ତବ୍ଧ ହୋଇଗଲା।

ଚୂଡ଼ାମଣୀ ଧାରୀ ମହାରାଜ ନିଜର ଦାବି ପୁଣି ଦୋହରାଇଲେ। ତା'ପରେ ଜଣେ ପ୍ରକୃତ ଶିଖ ଗୁରୁପ୍ରେମୀ ଯାହାର ନାମ ଭାଇ ଦୟାରାମ ଥିଲା, ସାମନାକୁ ଆସିଲେ ଓ ଶିର ନୁଆଁଇ ଶ୍ରୀ ଚରଣରେ ରଖି କହିଲେ- ସଚ୍ଚା ପାତଶାହ (ହେ ମୋର ସତ୍‌ଗୁରୁ) ଏହି ସେବକର ଶିର ହାଜିର୍ ହେଉଛି।



ଶ୍ରୀ ଗୁରୁ ଗୋବିନ୍ଦ ସିଂହ ମହାରାଜ ସ୍ୱୟଂ ଅମୃତ ପ୍ରସ୍ତୁତ କରୁଛନ୍ତି ଓ
ମାତା ଜୀତୋଜୀ ଫେଣା ଶାକର୍ ମିଶାଇ୍ ଅମୃତକୁ ଅଧିକ ସ୍ୱାଦିଷ୍ଟ କରୁଛନ୍ତି ।
(ପାଞ୍ଚ ପ୍ରେମୀଙ୍କ ସହ)



ସତ୍‌ଗୁରୁ ଜୀ ଗୋବିନ୍ଦ ରାୟ ସ୍ୱୟଂ ପ୍ରେମୀଙ୍କ ନିକଟରୁ ଅମୃତ ପାନ କରି
ଗୋବିନ୍ଦ ସିଂହ ହୋଇଗଲେ



ଶ୍ରୀ ଗୁରୁ ଗୋବିନ୍ଦ ସିଂହ ମହାରାଜ ସ୍ୱୟଂ ଅମୃତ ପ୍ରସ୍ତୁତ କରୁଛନ୍ତି ଓ
ମାତା ଜୀତୋଜୀ ଫେଣା ଶାକର୍ ମିଶାଇ଼ ଅମୃତକୁ ଅଧିକ ସ୍ୱାଦିଷ୍ଟ କରୁଛନ୍ତି ।
(ପାଞ୍ଚ ପ୍ରେମୀଙ୍କ ସହ)

ସତ୍‌ଗୁରୁ ଜୀ ଗୋବିନ୍ଦ ରାୟ ସ୍ୱୟଂ ପ୍ରେମୀଙ୍କ ନିକଟରୁ ଅମୃତ ପାନ କରି
ଗୋବିନ୍ଦ ସିଂହ ହୋଇଗଲେ

ଗୁରୁଜୀ ଉତ୍ସାହିତ ହୋଇ ତାହାର ବାହୁକୁ ଧରିଲେ ଓ ଟାଣି ଟାଣି ତମ୍ବୁ ଭିତରକୁ ନେଇଗଲେ। ଜୋର ତଲବାର ପ୍ରୟୋଗ କରିବା ଶବ୍ଦ ବାହାରକୁ ଆସିଲା। ଦୟାରାମର ମସ୍ତକ ଅଲଗା ହୋଇଗଲା। ଶରୀର ଜମିରେ ପଡ଼ିଗଲା। ରକ୍ତର ଧାର ତମ୍ବୁ ମଧ୍ୟରୁ ବାହାରକୁ ବାହାରିବାକୁ ଲାଗିଲା।

ଶ୍ରୀ ଗୁରୁଜୀ ପୁଣି ଦ୍ୱିତୀୟଥର ପେଣ୍ଡାଲ ଉପରକୁ ଆସିଲେ ଓ ଆଉ ଗୋଟିଏ ମସ୍ତକ ଦାବିକଲେ। ଏହିପରି ପୁଣି ତୃତୀୟ, ଚତୁର୍ଥ ଓ ପଞ୍ଚମ ଥର ଶିର ଦାବି କଲେ। ପ୍ରତ୍ୟେକ ଥର ଜଣେ ଜଣେ ଶିଖ ନିଜ ନିଜର ଶିର ଭେଟି ଚଢ଼ାଇଲେ ଓ ଶ୍ରୀ ଗୁରୁଜୀ ସେମିତି ଭାବରେ ତମ୍ବୁ ଭିତରକୁ ଯାଇ ଗୋଟିଏ ଥର ୫ଟକା ଦେଇଥିଲେ।

ଶେଷରେ ଷଷ୍ଠ ଥର ଗୁରୁ ଗୋବିନ୍ଦ ସିଂହ ଜୀ ସଙ୍ଗତଙ୍କ ଦରବାରକୁ ଆସିଲେ ଓ ତାଙ୍କ ସହିତ ୫ଟି ଶିରଦାତା ମଧ୍ୟ ଶସ୍ତ୍ର, ବସ୍ତ୍ର ସହ ସୁସଜ୍ଜିତ ହୋଇ ଗୁରୁଜୀଙ୍କ ସହିତ ଶୋଭା ପାଉଥିଲେ। ଏହି ଅଦ୍‌ଭୁତ କୌତୁକ ଦେଖି ସମସ୍ତ ସଙ୍ଗତବୃନ୍ଦଙ୍କ ମଧ୍ୟରୁ ଗୋଟିଏ ସ୍ୱର ଆସିଲା- ଧନ୍ୟ ଗୁରୁ! ଧନ୍ୟ ଶିଖ ବୃନ୍ଦ!

ପୁଣି ଗୁରୁଜୀ ଉଚ୍ଚ ସ୍ୱରରେ କହିଲେ- ମୁଁ ଶିଖଙ୍କ ଭେଦ ପରୀକ୍ଷା କରୁଥିଲି। ବର୍ତ୍ତମାନ ଆମ୍ଭକୁ ବିଶ୍ୱାସ ହୋଇଗଲା କି ଖାଲସା ସମର୍ପିତ(ଆଶୀର୍ବାଦ) ପ୍ରସ୍ତୁତ ହୋଇ, ସ୍ଥିର ଅବସ୍ଥାରେ ପହଞ୍ଚିଗଲା। ଯେତେବେଳେ ଶ୍ରୀ ଗୁରୁ ନାନକ ଦେବ୍ ମହାରାଜ ଶିଖମାନଙ୍କୁ ପରୀକ୍ଷା କରିଥିଲେ, ସେତେବେଳେ କେବଳ ଜଣେ ଶିଖ ଠିକ୍ ଭାବେ ପ୍ରସ୍ତୁତ ହୋଇଥିଲା, କିନ୍ତୁ ଆଜି ଆମ୍ଭର ପରୀକ୍ଷାରେ ୫ଜଣ ଉତ୍ତୀର୍ଣ୍ଣ ହେଲେ। ଆଜିଠାରୁ ଏମାନଙ୍କୁ 'ପାଞ୍ଚ ପ୍ୟାରୋ' ଉପାଧି ଦିଆଯାଉଛି ଓ ବର୍ତ୍ତମାନ ଏମାନଙ୍କୁ ଅମୃତ ଚଖାଇ (ଅମୃତ ଛକାନା ପାନ) ଅମର କରାଯିବ।

ଏତିକିବେଳେ କଡ଼ା ପ୍ରସାଦ(ଅଟା ହାଲୁଆର ଭୋଗ) ଆସିଗଲା। ଗୁରୁଜୀ ଖାଣ୍ଟି ଲୁହାର ବାସନରେ ସତଲୁଜ ନଦୀର ସ୍ୱଚ୍ଛ ଜଳ ରଖି ଖଣ୍ଡାରେ ରଗଡ଼ିବାକୁ ଲାଗିଲେ ଓ ପାଞ୍ଚବାଣୀ(ଜପୁ, ଜାପ, ୧୦ସବୟେ, ଚୌପାଇ ଓ ଆନନ୍ଦ ସାହିବ୍)ର ପାଠ କରିଲେ। ପୁଣି ମାତା ଜୀତୋଜୀ ଆସିଲେ। ସେହି ଅମୃତରେ ଶାକର ଖଣ୍ଡ(ଯାହାକି ଚିନି ନିର୍ମିତ) ଫେଣା ମିଶାଇ ଦେଲେ। ସତ୍ ଗୁରୁଜୀ କହିବାକୁ ଲାଗିଲେ, 'ଠିକ୍ ହେଲା, ଆଗ୍ରହ ସହିତ ସ୍ୱାଦିଷ୍ଟ ହୋଇଗଲା।'

ପୁଣି ମହାରାଜ ଜଣ ଜଣ ପାଞ୍ଚ ପ୍ରେମୀଙ୍କୁ ସ୍ୱୟଂ ଅମୃତ ଚଖାଇଲେ(ପାନ) ଓ ସେହି ମର୍ଯ୍ୟାଦାଯୁକ୍ତ ନିୟମ ସହିତ 'ସିଂହ' ଶବ୍ଦ ଯୋଡ଼ି ଭାଇ ଦୟା ସିଂହ, ଭାଇ ଧର୍ମ ସିଂହ, ଭାଇ ମୋହକମ୍ ସିଂହ, ଭାଇ ହିମତ୍ ସିଂହ ପୁରୀ (ଓଡ଼ିଶା) ନିବାସୀ ଅଟନ୍ତି ଓ ଭାଇ ସାହିବ୍ ସିଂହ ରଖିଲେ। ସ୍ୱୟଂ ସତ୍‌ଗୁରୁଜୀ ଗୋବିନ୍ଦ 'ରାୟ'ରୁ ଗୋବିନ୍ଦ ସିଂହ ହୋଇଗଲେ।

ସେହିଦିନ ଠାରୁ ମସଂଦ(ଯାହାକି ଯେଉଁମାନେ ଶିଖ ପରିବାରରୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଏକଦଶମାଂଶ ଗୁରୁଘର ସକାଶେ ସଂଗ୍ରହ କରୁଥିଲେ- ସେମାନଙ୍କୁ ମସଂଦ କୁହାଯାଉଥିଲା)ର ପଦ୍ଧତିକୁ ସମାପ୍ତ କରିଥିଲେ। ପାଞ୍ଚପ୍ରେମୀଙ୍କୁ ମୁଖ୍ୟ ଛାପ ଦେଇ ଶିଖ ଜାତିକୁ ଲୋକତନ୍ତ୍ରର ଧାରାରେ ଚଲାଇ ଦେଲେ ଓ ପୁଣି ଏହିପରି ଅମୃତ ପ୍ରଚାରର ପ୍ରବାହ ଚଳାଇଲେ। ତାହା ଏକ ମାସ ମଧ୍ୟରେ ୮୦ ହଜାର ଶିଖ ନିଜର ଶିର ଗୁରୁଙ୍କୁ ଅର୍ପଣ କରାଇ ଅମୃତ ପାନ(ଚାଖି) କରିଥିଲେ ଓ ପ୍ରସ୍ତୁତ ବର, ପ୍ରସ୍ତୁତ ସିଂହ ଭାବେ ମଣ୍ଡିଥିଲେ। ଏହିପରି ଭାବେ ଶ୍ରୀ ଦଶମ ପିତା ମହାରାଜ ଶିଖ ଜାତିର କାୟାକଳ୍ପ କରିଥିଲେ।

ଏହି ଜାତିର ଏକ ଗୋଟି ଇଷ୍ଟ ଅକାଳଙ୍କୁ ମାନିଗଲେ। ଶ୍ରୀ ଗୁରୁ ଗ୍ରନ୍ଥ ସାହିବ୍ ଦ୍ୱାରା କେବଳ ଏକ ଅକାଳଙ୍କ ପୂଜା ହୋଇଥାଏ। (ଅକାଳ- ଯାହାର କେବଳ କାଳ ହୁଏ ନାହିଁ, ପରମାତ୍ମା)। ଗୁରୁ ଗୋବିନ୍ଦ ସିଂହ ଜୀ ଜ୍ୟୋତି ଜୋତ୍ ସମୟରେ କହିଥିଲେ-

'ପୂଜା ଅକାଳ ଦୀ ପର୍ଚ୍ଚା ଶବ୍ଦ ଦା ତେ ଦୀଦାର ଖାଲସେ ଦା।'

ଅମୃତ ଯେ କୌଣସି ଜାତି, ଯେ କୌଣସି ଧର୍ମର ଲୋକ ପାନ କରି ସେ ସିଂହ ହୋଇ ସମାନତା ପାଇପାରିବ। ତାହାର ପଛ ଜାତି ସମାପ୍ତ ହୋଇ ନୂତନ ଜନ୍ମ ଧାରଣକୁ ବୁଝାଇଥାଏ। ଶିଖ ଧର୍ମର ବଡ଼ ଚିହ୍ନ(କେଶ ଓ ଦାଢ଼ି) ପ୍ରକୃତିର ତରଫରୁ ଜନ୍ମ ହୋଇଥିବା ନିଶ୍ଚୟ କରାଯାଇଛି। କାରଣ ଅନ୍ୟ ଧର୍ମ ଏହି ପ୍ରକୃତ ସତ୍ୟତାକୁ ଖଣ୍ଡ ବିଖଣ୍ଡିତ କରୁଥିଲେ। ଚାରି ଖରାପ ଗୁଣ(ଅବଗୁଣ)- କୁଣ୍ଡା, ତମାଖୁ, କେଶର ରକ୍ଷା ଓ ପର ସ୍ତ୍ରୀ ସଙ୍ଗରୁ ସିଂହଙ୍କୁ ବର୍ଜିତ କରାଯାଇଛି।

## (ଅମୃତ ଚାଖିବା ପରେ) ଅମୃତ ଧାରଣ ପରେ

ଅମୃତ ପାନ ପରେ ଏହା ହେଲା କି ନୂଆ ସ୍ରୋତ ବୋହି ଚାଲିଲା। ଅମୃତ ଚାଖି ଚାଖି ସବୁଲୋକ ସିଂହ ସାଜି ଗଲେ। ବହୁତ ଦଳିତ ଲୋକ, ଯାହାକୁ ଲୋକ

ଚିହ୍ନ ନ ଥିଲେ, ଛୁଉଁ ନ ଥିଲେ, କିଛି ନ ଥିଲା, ସେମାନେ ଅମୃତ ପାନ ପରେ ଘୋଡ଼ସବାର ହୋଇ ଦୂରକୁ ନିକଟକୁ ଅକାଳ ଅକାଳର ପ୍ରଚ଼ର କରିଚ଼ଲିଲେ। ହିନ୍ଦୁ ପାହାଡ଼ୀ ରାଜାମାନେ ସେହି ଅତ୍ୟାଚ଼ରୀ ଶାସକଙ୍କ ସମ୍ମୁଖୀନ ହୋଇ ଶକ୍ତିଶାଳୀ ତଥା ଖୁସି ହେବା ପରିବର୍ତ୍ତେ ଈର୍ଷା କରିବାକୁ ଲାଗିଲେ। ସିଂହଙ୍କ ସହିତ ଲଢ଼ାଇବା କିନ୍ତୁ ସିଂହ ଆଗରେ ଗୋଟିଏ ଜାଗାରେ ଦୁଇଟି କରି ଆସୁଥିଲେ। ଅଧିକା ସିଂହମାନେ କାହାରିକୁ ଡରୁ ନ ଥିଲେ। ଯଦି ୫ଜଣଙ୍କୁ ୧୦୦ଜଣ ଘେରି ଦେଉଥିଲେ ସିଂହମାନେ ଏମିତି ଭାବେ ବିଜୟ ପ୍ରାପ୍ତ କରୁଥିଲେ କି ଦଶ କୋଡ଼ିଏଙ୍କୁ ମାରି ଓ ସେମାନଙ୍କୁ ଡାକି ବୁଝାଉଥିଲେ କି ତୁମ୍ଭେମାନେ ମଧ୍ୟ ସିଂହ ସାଜିଯାଅ ଓ ମିଳିମିଶି ଅତ୍ୟାଚ଼ରୀମାନଙ୍କୁ ପରାଜୟ କରିବା, କିନ୍ତୁ ରାଜାମାନେ ମାନିଲେ ନାହିଁ।

## ପାହାଡ଼ୀ ରାଜାମାନଙ୍କ ସହିତ ଯୁଦ୍ଧ

ଭୀମ ଚନ୍ଦକୁ ସତ୍‌ଗୁରୁଜୀଙ୍କ ନୂତନ ପ୍ରଣାଳୀ ଠିକ୍ ଲାଗିଲା ନାହିଁ। ସେ ଅନ୍ୟ ରାଜାମାନଙ୍କୁ ଏକତ୍ରିତ କରାଇ କହିଲା କି ଗୁରୁ ଗୋବିନ୍ଦ ସିଂହ ଶକ୍ତ ସେନାବଳ ଏକାଠି କରୁଛି ଓ ସମୟ ଦେଖି ଆମର ରାଜ୍ୟ ଆମ୍ଭମାନଙ୍କ ଠାରୁ ଛଡ଼ାଇ ନେବ। ସେଥିଯୋଗୁଁ ଆମେ ସମସ୍ତେ ମିଳିମିଶି ଏହା ବିରୋଧରେ ବିଚ଼ର କରିବା ଉଚିତ।

ସମ୍ଵତ୍ ୧୭୫୭ରେ ସେହି ରାଜାମାନେ ମିଶି ବିଚ଼ର କରି ଆନନ୍ଦପୁର ସାହିବ୍ ଆକ୍ରମଣ କରିଲେ। କିନ୍ତୁ ଅଳ୍ପ ଦିନ ମଧ୍ୟରେ ସମସ୍ତ ବଳ ପ୍ରୟୋଗ କରି ବହୁ କ୍ଷତି ଜନବଳ, ଧନବଳ, ପଶୁବଳ କ୍ଷୟ ସହ୍ୟକରି ଫେରି ଚ଼ଲିଗଲେ, କିନ୍ତୁ କ୍ରୋଧ ଥମି ନ ଥିଲା।

ସମ୍ଵତ୍ ୧୭୫୭ ବେଳେ ରଙ୍ଗଡ଼େ ତଥା ଭାରି ଅନେକ ସେନା ଯୋଗାଡ଼ କରି ସେହି ପାହାଡ଼ୀ ରାଜାମାନେ ପୁଣି ଆନନ୍ଦପୁର ଅକ୍ରମଣ କରିଲେ। ବଡ଼ ସଂଘର୍ଷ କରିଲେ। ସିଂହମାନଙ୍କର ଆକ୍ରମଣ ସହ୍ୟ କରି ନ ପାରି ପ୍ରସ୍ଥାନ କରିଲେ। ଘେରାଉ କରି ରହିଲେ। ପୁଣି ଆନନ୍ଦଗଡ଼ର ଦୁର୍ଗ ଦ୍ଵାର ଭାଙ୍ଗିବା ପାଇଁ ମଦ୍ୟପାନ କରାଇ ପାଗଳ ହାତୀ ପଠାଇଲେ। କିନ୍ତୁ ଭାଇ ବିଚିତ୍ର ସିଂହକୁ ସଦ୍‌ଗୁରୁ ଦାୟିତ୍ଵ ଦେଇ ସଂଘର୍ଷ ସକାଶେ ପଠାଇଲେ। ସେ ହାତୀକୁ ମାରି ପଛକୁ ଫେରାଇଦେଲେ। ସେ ଓଲଟା ହୋଇ ପାହାଡ଼ୀ ରାଜାମାନଙ୍କର ସୈନ୍ୟମାନଙ୍କ ଆଡ଼କୁ ମାରିଗୋଡ଼ାଇଲା। ଯେତେବେଳେ ସେମାନଙ୍କୁ କିଛି ଉପାୟ ମିଳିଲା ନାହିଁ ଓ ସମସ୍ତ ବିଚ଼ର ଫସର

ଫାଟିଗଲା ତା'ପରେ ସେମାନେ ଅଟାର ଗାଈ ତିଆରି କରି ପଠାଇଲେ ଓ କହିଲେ ଆପଣ ଥରେ ଏହି ଦୁର୍ଗ ଛାଡ଼ି ଦିଅନ୍ତୁ, ଆମ୍ଭେମାନେ ଆପଣଙ୍କର କିଛି ହାନି କରିବୁ ନାହିଁ। ସେମିତି ହେଲେ ଆମର ଇଜ୍ଜତ ରହିଯିବ। ସତ୍‌ଗୁରୁ ସେମାନଙ୍କର ମନୋଭାବ ବୁଝିପାରି ଦୁର୍ଗ ଛାଡ଼ିଦେଲେ। କିନ୍ତୁ ସେମାନଙ୍କ ସର୍ତ୍ତ ଓ ଶପଥ ଯେମିତି ଥିଲା ସେମିତି ଭାବେ ସେମାନେ ପାଳନ କରିଲେ ନାହିଁ। ବିଶ୍ୱାସଘାତକମାନେ ସର୍ତ୍ତ ଭୁଲି ଯାଇ ସିଂହମାନଙ୍କୁ ଆକ୍ରମଣ କରିଲେ। କିନ୍ତୁ ସତ୍‌ଗୁରୁ ମହାରାଜ ପ୍ରଥମରୁ ପ୍ରସ୍ତୁତଥିଲେ। ସେଥିପାଇଁ ସତ୍‌ଗୁରୁଜୀଙ୍କୁ ତୀର ଓ ସିଂହମାନଙ୍କର ବନ୍ଧୁକ ସହ ସାମନା କରି ନ ପାରି ସେମାନେ ପରାଜୟ ପ୍ରାପ୍ତ କରି ପାହାଡ଼ୀମାନେ ମୁହଁ କଳା କରି ରଣଭୂମି ଛାଡ଼ି ଫେରିଗଲେ।

ସେତେବେଳେ ସତ୍‌ଗୁରୁ ମହାରାଜ ବାହାରେ ଖୋଲା ପଡ଼ିଆରେ ସଙ୍ଗତମାନଙ୍କୁ ଏକତ୍ରିତ କରାଇ ଦରବାର ଲଗାଇଦେଲେ(ସତ୍‌ସଙ୍ଗ ଦରବାର), (ନିମୋହଗଡ଼)। କିନ୍ତୁ ପାହାଡ଼ୀ ରାଜାମାନେ ଚତୁରତାର ଖେଳ ଖେଳିଲେ ଓ ଜଣେ ମୁସଲମାନ ବହୁତ ଦୂରରୁ ସତ୍‌ଗୁରୁଙ୍କର ସଙ୍ଗତକୁ ଲକ୍ଷ୍ୟ କରି ତୋପ ଛାଡ଼ିଲା ଓ ସତ୍‌ଗୁରୁଜୀ ରକ୍ଷା ପାଇଯାଇଥିଲେ ଯିଏ ସତ୍‌ଗୁରୁଜୀଙ୍କୁ ଚମର କରୁଥିଲା, ତାଙ୍କୁ ଆସି ତୋପ ଲାଗିଲା। ଏହା ଦେଖି ଗୁରୁ ଗୋବିନ୍ଦ ସିଂହଜୀ କମାଣ ଦାୟିତ୍ୱ ନେଲେ ଓ ଗୋଳାକୁ ଲକ୍ଷ୍ୟ କରି ତୀର ଚଳାଇଲେ। ଦ୍ୱିତୀୟ ଗୁଳି ଚଳାଇଥିବା ବ୍ୟକ୍ତିଙ୍କୁ ଗୁରୁଜୀଙ୍କ ତୀର ବାଜିବାରୁ ସେ ପ୍ରାଣ ହରାଇଲା। ଅନ୍ୟ ଜଣେ ତୋପ ଆଡ଼କୁ ଦୌଡ଼ିଗଲା ଓ ଗୁଳି ଚଳାଇଲା। କିନ୍ତୁ ସତ୍‌ଗୁରୁଜୀ ସେତେବେଳେ ହିଁ ଗୋଟିଏ ତୀର ଆହୁରି ଚଳାଇଲେ। ଯାହା ସେହି ଦ୍ୱିତୀୟ ଚଳାଇବା ବ୍ୟକ୍ତିଙ୍କୁ ଭେଦକରିଲା ଓ ପାହାଡ଼ୀ ରାଜାମାନଙ୍କର ବିଉର ଫସର ଫାଟିଗଲା।

## ଶାହୀ ସେନାମାନଙ୍କ ସହ ଯୁଦ୍ଧ

ଦୁଇ ତିନି ମାସ ବାହାରେ ରହି ସତ୍‌ଗୁରୁଜୀ ପୁଣି ଆନନ୍ଦପୁର ଫେରିଆସିଲେ। ପାହାଡ଼ୀ ରାଜାମାନେ ବର୍ତ୍ତମାନ ସୁବ୍ବା ସରହଁଦ ଦ୍ୱାରା ବାଦଶାହ ପାଖକୁ ଗୁରୁଜୀଙ୍କ ବିରୋଧରେ ସେନା ପଠାଇଲେ। ସେଥିରେ ବିବାଦ ବଢ଼ିଲା ଓ ପୁଣି ୧୭୫୯ ବେଳେ ବାଦଶାହ ସୈଦ ଖାଁକୁ ପଠାଇଲା। ସେହି ଜେନେରାଲ ସତ୍‌ଗୁରୁଜୀଙ୍କର ତେଜ ଓ ପ୍ରତାପରେ ଏମିତି ଭାବେ ପ୍ରଭାବିତ ହେଲା ଯେ ଶେଷରେ ସେ ବୈରାଗୀ

ହୋଇ ଗୁରୁଜୀଙ୍କ ଚେଲା ହୋଇଗଲା। ଏହିପରି ଭାବେ ଔରଙ୍ଗଜେବର ୪ଥର ସେନାବଳ ପରାସ୍ତ ହେଲେ ଓ କେତେ ପ୍ରସିଦ୍ଧ ଜେନେରାଲ ମୃତ୍ୟୁ ଲଭିଲେ। ଶେଷରେ ୧୭୬୧ ବେଳେ ଔରଙ୍ଗଜେବ ବହୁ ସୈନ୍ୟବଳ ସହ ଲାହୋରର ସୁବେଦାର, କାଶ୍ମୀରର ସୁବେଦାର, ସରହଁଦ ଓ ଦିଲ୍ଲୀର ସୁବେଦାରମାନଙ୍କ ନିଜର ସେନାବଳ ସହ ଆନନ୍ଦପୁର ସାହିବ୍ ଉପରେ ଚଢ଼ାଉ କରିବା ପାଇଁ ଆଦେଶ ଦେଲେ। ଦୁଇ ଚାରି ଦିନ ଯୁଦ୍ଧରେ ୧୦ଲକ୍ଷ ସୈନ୍ୟମାନଙ୍କର ବହୁତ କ୍ଷତି ହେଲା। ସେମାନେ ପଛକୁ ହଟିଯାଇ ବହୁତ ଦୂରରେ ତମ୍ବୁ ଟାଣି ରହିଲେ। ଖାଦ୍ୟସାମଗ୍ରୀ ବାହାର ଗ୍ରାମରୁ ଆସିବା ବନ୍ଦ ହୋଇଗଲା। ସିଂହମାନେ କ୍ଷୁଧାର୍ତ୍ତ ଅବସ୍ଥାରେ ମାସ ମାସ ଧରି ଯୁଦ୍ଧ କଲେ। ବୃକ୍ଷର ପତ୍ର ମଧ୍ୟ ଖାଇଲେ ଓ ତାହା ମଧ୍ୟ ଶେଷ ହୋଇଗଲା। ସିଂହମାନେ ଭିତରେ ଭିତରେ ରହି ବହୁତ ବ୍ୟସ୍ତ ଥିଲେ; କିଂତୁ ବାହାରେ ଶତ୍ରୁମାନେ ବସି ବସି ହଇରାଣ ହୋଇଗଲେ। ସେପଟୁ ଔରଙ୍ଗଜେବର ସନ୍ଦେଶ ଆସି ପହଞ୍ଚିଥିଲା କି କ'ଣ ହେଲା କାହିଁକି ଏତେ ବେଶି ସୈନ୍ୟ ରହି ସୁଦ୍ଧା ଛୋଟିଆ ଦୁର୍ଗ ବିଜୟ ହୋଇପାରୁନାହିଁ। ସେଥିଯୋଗୁଁ ବାହାରୁ ସେମାନେ ଗୁରୁଜୀଙ୍କ ନିକଟକୁ ଖବର ପଠାଇଲେ କି ଏହି ଦୁର୍ଗ ଛାଡ଼ି ଦେଇ ବାହାରକୁ ଚାଲିଯାଆନ୍ତୁ ଆମେ କିଛି କରିବୁ ନାହିଁ, ଶପଥ କରୁଛୁ। କ୍ଷୁଧାର୍ତ୍ତ ସିଂହମାନେ ବହୁତ ଖୁସି ହୋଇଗଲେ ଓ ଭାବିଲେ ସଂକଟ କଟିଗଲା; କିନ୍ତୁ ଅନ୍ତର୍ଯାମୀ ସଦ୍‌ଗୁରୁଜୀ କପଟୀମାନଙ୍କର କପଟ ଜାଣିଥିଲେ। ସେଥିଯୋଗୁଁ ସେ ଏହି ପ୍ରସ୍ତାବ ସହ ଏକମତ ହୋଇ ନ ଥିଲେ। କିନ୍ତୁ ମାତା ଗୁଜୁରୀ ବାରମ୍ବାର କହିବା ଯୋଗୁଁ ସତ୍‌ଗୁରୁଜୀ ୭ ପୌଷ ବେଳକୁ ଦୁର୍ଗ ଛାଡ଼ିଦେଲେ। ଶତ୍ରୁମାନେ ଶପଥ ଭୁଲିଯାଇ ବିଶ୍ୱାସଘାତକୀ ହୋଇଗଲେ ଓ ସତ୍‌ଗୁରୁଜୀଙ୍କୁ ବନ୍ଦୀ କରିବା ପାଇଁ ତାଙ୍କର ପିଛା କରିଲେ। ସରସା ନଦୀ କୂଳରେ ବହୁତ ବଡ଼ ଯୁଦ୍ଧ ହେଲା, ଯାହାଦ୍ୱାରା କନିଷ୍ଠ ପୁତ୍ର ସାହିବଯାଦା ଓ ମାତା ଗୁରୁଜୀ ଅଲଗା ହୋଇଗଲେ। ସେ ଗଙ୍ଗୁ ରାନ୍ଧୁଣିଆ ନାମକ ବିଶ୍ୱାସଘାତ କାରଣରୁ ସରହଁଦ ଯାଇ ଶହୀଦ ହୋଇଥିଲେ ଓ ଦୁଇଜଣ ମାତା ସୁନ୍ଦରୀ ଜୀ ଓ ସାହିବ୍ କୌରଜୀ ଭାଇ ମନୀ ସିଂହ ଜୀଙ୍କ ସହିତ ଦିଲ୍ଲୀଠାରେ ପହଞ୍ଚିଲେ। ସତ୍‌ଗୁରୁଜୀ କେବଳ ୪୦ଜଣ ଶିଖ ଓ ଦୁଇପୁତ୍ରଙ୍କ ସହିତ ରୋପଡ଼ ପହଞ୍ଚିଥିଲେ। ରୋପଡ଼ଠାରୁ ଚମକୌରରେ ପହଞ୍ଚିଲେ ଓ ମାଟି ଭାଟି ଠାରେ ବସି ଶତ୍ରୁମାନଙ୍କ ସହିତ ଭାରି ମାତ୍ରାରେ ଶତ୍ରୁଙ୍କୁ ଦମନ କରିଥିଲେ। ଶତ୍ରୁମାନଙ୍କର ସ୍ୱପ୍ନ ଥିଲା କି ଯଦି ଗୁରୁଜୀ ଆମକୁ ମିଳନ୍ତେ ତା'ହେଲେ ତାଙ୍କୁ

ଛାଡ଼ିବୁ ନାହିଁ। କିନ୍ତୁ ଯେତେବେଳେ ସତ୍‌ଗୁରୁଜୀଙ୍କ ତୀର ବର୍ଷା ହେବାକୁ ଲାଗିଲା ସେତେବେଳେ ପଠାଣ ଓ ଗାଜୀ ଜେନେରାଲ ଲୁଚି ଲୁଚି ପ୍ରାଣ ବଞ୍ଚାଇଲେ। ପୂରା ଦିନଟି ମଧ୍ୟରେ ଲକ୍ଷ ଲକ୍ଷ ଗଣିତ ହିସାବରେ ଶତ୍ରୁ ଭାଟି ପାଖକୁ ପହଞ୍ଚି ପାରି ନ ଥିଲେ। କେବଳ ତିରିଶି ଜଣ ସିଂହ ଓ ଦୁଇ ରାଜପୁତ୍ର (ଗୁରୁଜୀଙ୍କ ପୁତ୍ର) ଶହୀଦ ହୋଇଥିଲେ। ତାହା ମଧ୍ୟ ଭାଟିର ବାହାରକୁ ଆସି ଶତ୍ରୁଙ୍କୁ ଦମନ କରି। କିନ୍ତୁ ଶତ୍ରୁ ହଜାର ହଜାର ମରିଗଲେ ଓ ଭାଟିର ପାଖାପାଖିଠୁଁ ଦୂରଯାଏ ଶବ ଜମା ହୋଇସାରିଥିଲା। ସନ୍ଧ୍ୟାବେଳେ ସିଂହମାନଙ୍କର ବାରମ୍ବାର ଅବରୋଧ କରିବା ସତ୍ତ୍ୱେ ସତ୍‌ଗୁରୁଜୀ ଚମକୌରଠାରୁ ବାହାରି ମାଛିବାଡ଼େ ପହଞ୍ଚିଥିଲେ । କେବଳ ତିନିଜଣ ଶିଖ୍ ସାଙ୍ଗରେ ଥିଲେ ଓ ସେମାନେ ମଧ୍ୟ ସେଠି ମିଶିଥିଲେ। ସେଠାରେ 'ହାଲ ମୁରିଦାଁ କା କହନା' ଶବ୍ଦ ଉଚ୍ଚାରଣ କରିଥିଲେ।

ଚୂଡ଼ାମଣୀ ଧାରୀ ସତ୍‌ଗୁରୁ ମହାରାଜ ସେଠାରେ 'ଉଚ୍ଚକା ପୀର' ହୋଇ ହେରାଁ ପହଞ୍ଚିଥିଲେ। ସେଠାରେ ସେ ରାୟକଲେ ଠାରୁ ମାହୀ ହଲକାରା ପଠାଇ କନିଷ୍ଠପୁତ୍ରଙ୍କ ଶହୀଦ ହେବା ଖବର ମଗାଇଥିଲେ। ପୁଣି ଦିନେ ଠାରେ ପହଞ୍ଚିଲେ ଓ ସେଠାରେ ୬ମାସ ବିଶ୍ରମ କରିଥିଲେ। ଏଠାରେ ବହୁତ ଶିଖ, ସିଂହ ମହାରାଜଙ୍କ ସହିତ ମିଶିଥିଲେ। 'ଜଫରନାମା'(ବିଜୟ ପତ୍ର) ସହ ଭାଇ ଦୟା ସିଂହ ଜୀଙ୍କୁ ସମ୍ବତ ୧୭୬୨କୁ ଔରଙ୍ଗଜେବଙ୍କ ନିକଟକୁ ପଠାଇଥିଲେ। ସେହି 'ଜଫରନାମା'(ବିଜୟ ପତ୍ର) ପଢ଼ିସାରିବା ପରେ ଔରଙ୍ଗଜେବଙ୍କ ମୃତ୍ୟୁ ହୋଇଥିଲା। ଯାହା ଲେଖା ଯାଇଥିଲା କି ତୁମର ବିଜୟ ତୁମେ ନର୍କକୁ ନେଇଯିବ ଓ ପାପାଗ୍ନିରୁ ତୁମେ ବଞ୍ଚିପାରରବ ନାହିଁ। କିନ୍ତୁ ଏହା ପୂର୍ବରୁ ଯେତେବେଳେ ସତ୍‌ଗୁରୁଜୀ ଦିନେ ଠାରୁ ଚାଲିଯାଇଥିଲେ। ସେତେବେଳେ ସୁବେଦାର ସରହଂଦର ଫୌଜ ସହ ସତ୍‌ଗୁରୁଜୀଙ୍କ ପିଛା କରିଲା ଓ ଚେଷ୍ଟା କରିଥିଲା କି ସତ୍‌ଗୁରୁଜୀଙ୍କୁ ବନ୍ଦୀ କରିନେବ। କିନ୍ତୁ ସତ୍‌ଗୁରୁଜୀ କୋଟକପୁରେ ବାହାରି ଖିଦରାନର ଢାବ(ମୁରକ୍ତଶର) ନିକଟରେ ପହଞ୍ଚିସାରିଥିଲେ। ସେଠାରେ ସରହଂଦୀର ସେନାମାନଙ୍କ ସହିତ ବହୁତ ବଡ଼ ଯୁଦ୍ଧ ହୋଇଥିଲା ଓ ଶତ୍ରୁମାନେ ନିରସ୍ତ ହୋଇ ଫେରିଥିଲେ। ସେଠାରେ ପଞ୍ଜାବଠାରୁ ଗୁରୁଜୀଙ୍କ ଦର୍ଶନ ସକାଶେ ଯାଇଥିବା ଶିଖମାନଙ୍କ ତରଫରୁ ଲେଖା ଯାଇଥିବା ବେଦାବେକୁ ଭାଇ ମହାସିଂହ ଓ ତାହାର(ବେଦାବେ ଇସ୍ତଫାପତ୍ର) ୩୯ ସାଥିଙ୍କୁ ଶହୀଦ ପ୍ରାପ୍ତି ପରେ ପଢ଼ାଇଥିଲେ।

ସେହି ଯୁଦ୍ଧ ପରେ ଆଉ ଯୁଦ୍ଧ ହୋଇ ନ ଥିଲା। ଗୁରୁ ସାହିବ୍ ମୁକ୍ତଶରଠାରୁ ସାବୋର ତଲବଣ୍ଡୀ(ଦମଦମା ସାହିବ୍) ଭାଇ ଡଲ୍ଲେଙ୍କୁ ସତ୍‌ଗୁରୁଜୀଙ୍କୁ କହିଲେ କି ଆପଣ ମୋତେ ଆନନ୍ଦପୁର ଯୁଦ୍ଧ ବେଳେ କାହିଁକି ମନେ ପକାଇଲେ ନାହିଁ ? ଯଦି ମୁଁ ସେଠାରେ ରହିଥାନ୍ତି ତା'ହେଲେ ଏହି ଦୁର୍ଦ୍ଦଶା ଆସି ନ ଥାନ୍ତା। ସତ୍‌ଗୁରୁଜୀ ଗୋଟିଏ କୌତୁକ ରଚିଥିଲେ ଓ ବନ୍ଧୁକ ପରୀକ୍ଷା କରିବା ବାହାନାରେ ଡଲ୍ଲେଙ୍କୁ କହିଲେ- "ଡଲ୍ଲିୟା ଜଣେ ଲୋକ ମୋତେ ଦିଅ, ମୁଁ ବନ୍ଧୁକ ପରୀକ୍ଷା କରିବି।"

କିନ୍ତୁ ବର୍ତ୍ତମାନ ଡଲ୍ଲେର ମୁହଁରେ କୌଣସି ଉତ୍ତର ନ ଥିଲା ଓ ସେ ମନା କରିଦେଲା। ଗୁରୁ ସାହିବ୍ ସିଂହମାନଙ୍କ ତରଫରୁ ଇଶାରା କରିଲେ ଓ ସଙ୍ଗେ ସଙ୍ଗେ ଦୁଇଜଣ ସିଂହ ଆଗକୁ ଆସିଲେ ଓ ପରସ୍ପର ମଧ୍ୟରେ ଝଗଡ଼ା ହେଲା କି କିଏ ଆଗ ବନ୍ଧୁକ ମୁହଁ ଆଗରେ ଛିଡ଼ା ହେବ। ସତ୍‌ଗୁରୁଜୀ ଡଲ୍ଲେଙ୍କୁ କହିଥିଲେ- 'ଡଲ୍ଲିୟା' ଏହି ଦୁର୍ବଳିଆ ଓ ପତଳା ଶିଖମାନେ ଆନନ୍ଦପୁରଠାରେ ମୋ ସାଥିରେ ଥିଲେ, ସେଠାରେ ତୁମର ଏହି ଚଉଡ଼ା ଛାତିର ବ୍ୟକ୍ତିମାନଙ୍କର କିଛି କାମ ନ ଥିଲା।

ଚୂଡ଼ାମଣି ଧାରୀ ୧୦ମ ପାତଶାହ ଏକବର୍ଷ ତିନିମାସ ଡଲ୍ଲେ ପାଖରେ ରହିଲେ। ସେଠାରେ ମଧ୍ୟ ଭାଇ ମନୀ ସିଂହ ଜୀ ଦିଲ୍ଲୀଠାରୁ ଦୁଇ ମାତାଙ୍କ ସହ ସେଠାରେ ପହଞ୍ଚିଥିଲେ। ସେଠାରେ ସତ୍‌ଗୁରୁ ମହାରାଜ ଭାଇ ମନୀ ସିଂହଙ୍କ ଦ୍ୱାରା ଦୁଇ ବୀଡ଼ ଲେଖାଇଥିଲେ। (ବୀଡ଼-ଗ୍ରନ୍ଥ ସାହିବ୍) ସେଠାରେ ହିଁ ସତ୍‌ଗୁରୁ ମହାରାଜଙ୍କୁ ବାଦଶାହ ତରଫରୁ ଦକ୍ଷିଣକୁ ଆସିବା ପାଇଁ ସନ୍ଦେଶ ମିଳିଥିଲା। ସେଥିଯୋଗୁଁ ସତ୍‌ଗୁରୁଜୀ ସେଠାରୁ ସମ୍ବତ୍ ୧୭୬୩ର ଶେଷ ବେଳକୁ ଦକ୍ଷିଣ ଆଡ଼କୁ ଯାଇଥିଲେ, ରାସ୍ତାରେ ବାଦଶାହଙ୍କ ମୃତ୍ୟୁ ଖବର ମିଳିଥିଲା।

୧୭୬୩ ଶେଷ ବେଳକୁ ଔରଙ୍ଗଜେବ ନିଜର ନର୍କର ରାଜଶାସନ ଶେଷ କରି ଦୁନିଆରୁ ଯାଇଥିଲା। କାରଣ ସେ ସତ୍‌ଗୁରୁଜୀଙ୍କ ଜଫରନାମା(ବିଜୟପତ୍ର) ପଢ଼ିଥିଲା- ତୁ ବିଜୟପ୍ରାପ୍ତ କରିପାରିଲୁ ନାହିଁ, ତୁ ନିଆଁ ଖଣ୍ଡ ଭଳି ଜଳି ଜଳି ହାରିଗଲୁ ଓ ତୋର ସେନାମାନେ ପ୍ରତିଜ୍ଞା କରି ପ୍ରାଣସହ ମୋର ପିଛା କରିଲେ କିନ୍ତୁ ମୋର କିଛି କରିପାରିଲେ ନାହିଁ। କ'ଣ ହେଲା ମୋର ୪ଜଣ ସନ୍ତାନଙ୍କୁ ତୁ ମାରିଦେଲୁ। କିନ୍ତୁ ସେଥିରେ ତୁମେ କିଛି କରିପାରିଲ ନାହିଁ। କେବଳ ତୁ କଳଙ୍କିତ ହେଲୁ। ଯେତେବେଳ ଯାଏଁ ମୁଁ ଓ ମୋର ଖାଲସା ରହିଥିବେ, ତୁମେ ଏହା ଭାବିବ ନାହିଁ କି ଜଳୁଥିବା ନିଆଁକୁ ଲିଭାଇଦେଲି। ମନେରଖ କେବଳ ତୁ ସେଥିରେ ଗୁଡ଼େଇ

ହୋଇ ଜଳିଗଲ, ଯାହା ତୁ ନିଜେ ଓ ତୋର ବାଦଶାହୀକୁ ଅନ୍ତିମ କରିଦେବ। ଔରଙ୍ଗଜେବଙ୍କ ପରେ ସତ୍‌ଗୁରୁଜୀଙ୍କ ସାହାଯ୍ୟ ସହ ବାହାଦୁର ଶାହାଜାଫର ସିଂହାସନରେ ବସିଲା। ସତ୍‌ଗୁରୁଜୀ ତିନିମାସ ଆଗ୍ରାରେ ରହିଥିଲେ ଓ ପରେ ୧୭୬୪ ବେଳେ ନାନ୍ଦେଡ଼ରେ ପହଞ୍ଚିଥିଲେ। ସେଠାରେ ବନ୍ଦା ବାହାଦୁରକୁ ପଞ୍ଜାବ ପଠାଇସାରିବା ପରେ ଚୂଡ଼ାମଣି ଧାରୀ ୧୭୬୫ ମାଘ ଶୁକ୍ଳ ପଞ୍ଚମୀ ବେଳେ ଜ୍ୟୋତି ଜ୍ୟୋତ୍ ପ୍ରାପ୍ତ (ଇହଧାମ ତ୍ୟାଗ) କରିଥିଲେ।

## ବନ୍ଦା ବହାଦୁର ଆସିବା ପୂର୍ବରୁ

ସେହି ସମୟରେ ପଞ୍ଜାବଠାରେ ସେମିତି କିଛି ବିଶେଷତା ନ ଥିଲା। ସିଂହମାନଙ୍କୁ 'ମାରିଦିଅ'ର ନୀତି କିଛିଦିନ ଯାଏଁ ବନ୍ଦ ହୋଇଥିଲା। ଯେତେବେଳେ ସତ୍‌ଗୁରୁଜୀଙ୍କ ସହିତ ବହାଦୁର ଶାହାଜାଫର ତରଫରୁ ଭଲ ସଂପର୍କ ଓ ସଫାସୁତୁରା ସଦ୍‌ବ୍ୟବହାର ଯୋଗୁଁ ପରିବେଶର ନିର୍ମଳତା ଜାଗ୍ରତା ସକାଶେ ପ୍ରଯତ୍ନ କରାଯାଉଥିଲା ସେତେବେଳେ ପଞ୍ଜାବର ହାକିମମାନେ ବିଶେଷ ଭାବେ ସରହଦର ସୁବେଦାର ବଜୀଦ୍ ଖାଁ ବହୁତ ଭୟଭୀତ ହୋଇଯାଇଥିଲା। ସେ ଜାଣିପାରିଲା କି ସତ୍‌ଗୁରୁଜୀଙ୍କ ଅଲିଅଳ ବାଳୁତ ପୁତ୍ରମାନଙ୍କୁ ହତ୍ୟା କରିଥିବା ହତ୍ୟାକାରୀମାନଙ୍କୁ ଦଣ୍ଡ ଦେବା ପାଇଁ ଦାବି କରୁଛନ୍ତି ଓ କିଏ ଜାଣେ ଜାହାଙ୍ଗୀରର ଚନ୍ଦୁକୁ ସତ୍‌ଗୁରୁଙ୍କ ନିକଟରେ ହାଜର କରିବା ସମ୍ପର୍କ ମଧ୍ୟ ବାହାଦୁର ଶାହା ସତ୍‌ଗୁରୁଙ୍କ ନିକଟରେ ହାଜର କରିପାରେ।

ସେହି ସମୟରେ ପଞ୍ଜାବଠାରେ ପୂଜାପାଠ(ଜଥାବନ୍ଦା) କରିବା ହିସାବରେ କେଉଁଠି ମଧ୍ୟ ଶିଖ ନ ଥିଲେ। ତଥାପି ଶହଶହ, ଦୁଇଶହ, ଦୁଇଶହ ଭାବେ ଦଳଦଳ ହୋଇ ଅମୃତସର ପାଖାପାଖି ଦେଖାଯାଉଥିଲେ।

ଚୂଡ଼ାମଣୀ ଧାରୀ ଶ୍ରୀ ଗୁରୁ ଗୋବିନ୍ଦ ସିଂହ ମହାରାଜ ସମ୍ୱତ୍ ୧୭୬୫ର ଆରମ୍ଭ ସମୟରେ ବନ୍ଦା ବାହାଦୁରକୁ ଅମୃତ(ପାନ କରାଇ) ପଞ୍ଜାବକୁ ପଠାଇଥିଲେ। ସେପଟେ ସତ୍‌ଗୁରୁଜୀ ବନ୍ଦାକୁ ସିଂହ ସଜାଇ ପଞ୍ଜାବର ଦୁଷ୍ଟ ହାକିମମାନଙ୍କୁ ଦଣ୍ଡିତ କରିବା ପାଇଁ ପଠାଇଥିଲେ। ବାଦଶାହ ହେଳା କରି କଥା ଟାଳି ଦେଉଥିଲା। ସେପଟେ ବଜୀଦ୍ ଖାଁ ମଧ୍ୟ ଗୁପ୍ତଚରଙ୍କ ଦ୍ୱାରା ପ୍ରତ୍ୟେକ କ୍ଷଣର ଖବର ସଂଗ୍ରହ କରୁଥିଲା। ସତ୍‌ଗୁରୁଜୀ କେଉଁଠି ଅଛନ୍ତି, କ'ଣ କରୁଛନ୍ତି, ସବୁକିଛି ସଂଗ୍ରହ କରୁଥିଲା। 'ପାପୀକୁ

ମାରିବା ପାଇଁ ପାପ ମହାବଳୀ' ଅଟେ। ଏହି ମହାବାକ୍ୟ ଅନୁଯାୟୀ ନିର୍ବୋଧ ଓ ପ୍ରିୟ ସାହିବ୍‌ଜାଦା(ପୁତ୍ରମାନେ)ଙ୍କର ରକ୍ତ ତାହାର ଉତ୍ତାପିତ ହୋଇଥିଲା। ସେଥିଯୋଗୁଁ ତାକୁ ପଠାଇଥିବା ପଠାଣ ହତ୍ୟାକରୀ ନାନ୍ଦେଡ଼ ପହଞ୍ଚିଥିଲା। ଯିଏକି କେତେଦିନ ଠାରୁ ସୁଯୋଗ ଖୋଜୁଥିଲା। ସେ ସୁଯୋଗ ପାଇ ଶେଷରେ ଆକ୍ରମଣ କରିଲା ଓ ନିଜେ ଗୁରୁଜୀଙ୍କ ହାତରେ ମରିଲା। ସେହି ଆକ୍ରମଣରେ ସତ୍‌ଗୁରୁଜୀଙ୍କ କ'ଣ ଶତ୍ରୁତା ଥିଲା, ସେହି କାରଣରୁ ସମସ୍ତେ ଅଲଗା ଅଲଗା ବିଚାର ଦେଲେ; କିନ୍ତୁ ପ୍ରକୃତରେ କଥା ଥିଲା ମୁସଲମାନ ଐତିହାସିକମାନେ ବହୁତ ଲୁଚାଇବାକୁ ଚେଷ୍ଟା କରିଥିଲେ। ଖାଫି ଖାଁ ଓ ଅନ୍ୟମାନେ ବହୁତ ମନଗଢ଼ା କାହାଣୀ ଗଢ଼ି ଏହା ସହିତ ଯୋଡ଼ିଦେଲେ କି ଗୁରୁ ସାହିବ୍ ଏହା କହି ତାହାର ଉତ୍ସାହ ବଢ଼ାଇଲେ କି ମୁଁ ତୁମର ବାବା(ପିତା)ଙ୍କୁ ମାରିଥିଲି, ତୁମେ ତାହାର ପ୍ରତିଶୋଧ କାହିଁକି ନେଉ ନାହଁ। ତୁ କେବଳ ପୁରୁଷ ନୁହଁ, କିନ୍ତୁ ଏହିସବୁ କଥା ମିଛ ପ୍ରମାଣିତ ହୋଇଛି ଓ ପ୍ରକୃତ ଏହି କଥା ପ୍ରକଟ ହେଲା କି ସେହି ଆକ୍ରମଣ କରିବା ବ୍ୟକ୍ତି ପଠାଣର ପୈଁଦା ଖାଁର ପୁତ୍ର ଥିଲା ନା ତାହାର ବଂଶରେ ସେ ଜଡ଼ିତ ଥିଲା। ଯାହାର କିଏ ପୂର୍ବ ପୁରୁଷ ସତ୍‌ଗୁରୁଜୀଙ୍କ ହାତରେ ମରିଥିବେ, କେବଳ ଏହା ବଜୀଦ୍ ଖାଁ ସୁବେଦାର ସରହଁଦକୁ ପଠାଇଥିବା ବ୍ୟକ୍ତି ଥିଲା ଯିଏକି ତାହାର ପାପ ଦିନରାତି ତାକୁ ଭୟଭୀତ କରୁଥିଲା।

ସେହି ସମୟରେ ଅସଲମ୍ ଖାଁ ପଞ୍ଜାବର ସୁବେଦାର ଥିଲା। ସିଂହମାନଙ୍କର ଗ୍ରନ୍ଥି, ଜଥେଦାର(ଯେଉଁମାନେ ପାଠ, କୀର୍ତ୍ତନ କରୁଥିଲେ) ସେହି ସମୟରେ ଅମୃତସର ଓ ଲାହୋରରେ ବୁଲୁଥିଲେ ଓ ସେମାନଙ୍କର କେତେ ଜାଗା ପଠାଣମାନେ ଛଡ଼ାଇ ନେଉଥିଲେ କିନ୍ତୁ ତାହାର ବିଶେଷ ଖବର ମିଳୁ ନ ଥିଲା। କିନ୍ତୁ ଯେତେବେଳେ ସତ୍‌ଗୁରୁଜୀଙ୍କ ଉପରେ ଆକ୍ରମଣ ହେବା ଖବର ମିଳିଲା ସିଂହମାନଙ୍କର ନିରାଶତା ଓ କ୍ରୋଧ ମଧ୍ୟ ବଢ଼ିଗଲା। ଏହି ଖବର ମଧ୍ୟ ମିଳିଲା କି ଗୁରୁଜୀ ବନ୍ଦା ସିଂହ ବାହାଦୁରକୁ ୫ସିଂହ ଓ ପାଞ୍ଚ ତୀର ଦେଇ ପଞ୍ଜାବର ଦୁଷ୍ଟ ହାକିମମାନଙ୍କୁ ଦଣ୍ଡିତ କରିବା ପାଇଁ ପଠାଇଥିଲେ। ସେମାନେ ପଞ୍ଜାବରେ ପହଞ୍ଚିବା ଖବର ମଧ୍ୟ ମିଳିଲା ଓ ଏକତ୍ରିତ ହୋଇ ଯୋଜନା ଭୟରେ ପ୍ରସ୍ତୁତ କରୁଥିଲେ। ଅମୃତସର ଜିଲ୍ଲାଠାରେ ସିଂହ ଓ ମୁସଲମାନ ହାକିମମାନଙ୍କ ମଧ୍ୟରେ ଗୋଟିଏ ଯୁଦ୍ଧ ହୋଇଥିଲା। ତାହା ଲାହୋରର ସୁବେଦାର ଅସଲମ୍ ଖାଁକୁ ଭାରି କ୍ଷତିଗ୍ରସ୍ତ ସହ ପରାଜୟର ମୁହଁ ଦେଖିବାକୁ ମିଳିଥିଲା।

ଐତିହାସିକମାନେ କୁହନ୍ତି କି ଅମୃତସରର ଜଣେ ହିନ୍ଦୁ ଧନାଢ଼୍ୟ ଚୁହଡ଼ ମଲ୍ଲର ଠାରେ ଗୋଟିଏ ବହୁତ ବଡ଼ ବଗିଚା ଥିଲା। କୁହାଯାଇଛି କି ସିଂହମାନଙ୍କର ଦଳ(ଯଥା) ରାତ୍ରି ବିଶ୍ରାମ ସକାଶେ ବଗିଚାରେ ରହିଲେ, ତାହା ତୁତ୍ ଗଛର ବଗିଚାଥିଲା। କେତେକ ସିଂହ ତୁତ୍ ଗଛର ଫଳ ଖାଇଲେ, ସେଥିଯୋଗୁଁ ବଗିଚାର ମାଳୀ ସହିତ ଝଗଡ଼ା ହେଲା। ଦାମ୍ ନେଲା ପରେ ମଧ୍ୟ ମାଳୀ ସିଂହମାନଙ୍କ ସହିତ ଝଗଡ଼ା କରିଚାଲିଲା। ସିଂହମାନଙ୍କୁ ବଗିଚାରୁ ବାହାରିଯିବା ପାଇଁ ଧମକ ଦେଲା। ଚହଡ଼ ମଲ୍ଲ ସିଂହମାନଙ୍କର ଶତ୍ରୁ ଥିଲା କାରଣ ସେ ନିଜ ଭାଇର ସମସ୍ତ ସମ୍ପତ୍ତି ଅଧିକାର କରିରଖିଥିଲା। ସେ ସିଂହ ହୋଇସାରିଥିଲା। ସେଥିଯୋଗୁଁ ତାହାକୁ ଶିଖାଇଥିବା ମାଳୀ ଯେତେବେଳେ ସିଂହମାନଙ୍କ ସହ ଝଗଡ଼ା କରିଚାଲିଲା ସିଂହମାନେ ମଧ୍ୟ ବାହାଦୁର ହୋଇଗଲେ। ଚୁହଡ଼ ମଲ୍ଲ ଯେତେବେଳେ ନାକାମ୍ ହୋଇଗଲା ତା'ପରେ ସେ ନିଜର ପଟ୍ଟୀ ପଠାଣମାନଙ୍କୁ ସାହାଯ୍ୟ ସକାଶେ ବିନୀତ କରିଲା। ପଟ୍ଟୀ(ରାଜସ୍ଥାନର ଗୋଟିଏ ସହର)ର ହିନ୍ଦୁ ଦିବାନ ସନ୍ଧ୍ୟା ପୂର୍ବରୁ ସେଠାରେ ପହଞ୍ଚିଗଲା। ସିଂହମାନେ ମଧ୍ୟ ସଂଘର୍ଷ ସକାଶେ ପ୍ରସ୍ତୁତ ହୋଇଗଲେ। ନିକଟରେ ସିଂହମାନେ ମଧ୍ୟ ଖବର ପାଇ ସେଠାରେ ପହଞ୍ଚିଗଲେ।

ଲାହୋର ଖବର ପଠାଯାଇଥିଲା। ସେଥିଯୋଗୁଁ ତାହାର ପ୍ରତୀକ୍ଷା ହେଲା। ସିଂହମାନେ ଜୋରସୋର ସହ ପ୍ରସ୍ତୁତ ହୋଇଗଲେ। ଯୁଦ୍ଧ ଆରମ୍ଭ ହୋଇଗଲା। ସିଂହମାନେ ଦଳ ତିଆରି କରି ରଖିଥିଲେ ଓ ଆକ୍ରମଣ କରି ସେନାମାନଙ୍କୁ ଠିକ୍ ଜବାବ ଦେଲେ। ଜୋର ଜବରଦସ୍ତି ସହ ହଜାର ହଜାର ସଂଖ୍ୟାରେ ମୋଗଲ ମରିଲେ।

ଏହି ଯୁଦ୍ଧରେ ପଟ୍ଟୀର ହିନ୍ଦୁ ଦୀବାନ୍(ମନ୍ତ୍ରୀ) ମରିଗଲା ଓ ଅସଲମ୍ ଖାଁର ନିକଟତମ ଭାଇ ମଧ୍ୟ ମରିଗଲା। ତାହା ବୁଝାପଡ଼ିଲା କି ଗୁରୁ ଗୋବିନ୍ଦ ସିଂହ ଜୀଙ୍କ ସିଂହମାନଙ୍କର ଶୂରବୀରତା ଓ ବାହାଦୁରୀ ନିକଟରେ ସମସ୍ତଙ୍କୁ ମୁଣ୍ଡ ନୁଆଁଇବାକୁ ପଡ଼ିଥାଏ। ଏହା ବୁଝିପାରି ସେମାନେ ନିଜ ପ୍ରାଣ ବଞ୍ଚାଇ ଲାହୋର ଫେରିଗଲେ।

## ବନ୍ଦା ସିଂହ ବାହାଦୁର

କଲଗୀଧର ପାତଶାହ(ଚୂଡ଼ାମଣୀ ଧାରୀ) ୧୭୬୪ ଆଶ୍ୱିନ ବେଳେ ନାନ୍ଦେଡ଼ ଠାରେ ପହଞ୍ଚିଥିଲେ ଓ ଗୋଦାବରୀ ନଦୀ କୂଳରେ କୁଟୀର ତିଆରି କରି ରହିଲେ।



ବନ୍ଦା ସିଂହ ବାହାଦୁର

ସେହି ନଦୀ କୂଳରେ ଅଳ୍ପ ଦୂରରେ ମାଧୋ ଦାସ ବୈରାଗୀର କୁଟୀର ଥିଲା। ଆସିଲାବେଳେ ସତ୍‌ଗୁରୁଜୀଙ୍କୁ ଦାଦୂ ଡ଼େରାର ମହନ୍ତ କହିଥିଲେ କି ନାନ୍ଦେଡ଼ ଠାରେ ଜଣେ ବୈରାଗୀ ସାଧୁ ମାଧୋ ଦାସ ରହୁଛନ୍ତି। ସେ ନିଜର କରାମତି ଯୋଗୁଁ ଯିବାଆସିବା କରୁଥିବା ସାଧୁମାନଙ୍କୁ ବହୁତ ମଜା ଉଡ଼ାଇ ଅପମାନ କରୁଛି ଓ ଗୁରୁଜୀ କହିଲେ- 'ମହନ୍ତ ଜୀ' ଆପଣ ଚିନ୍ତା କାହିଁକି କରୁଛନ୍ତି। ରାସ୍ତା ଭୁଲି ଯାଇଥିବାକୁ ଯଦି ଗୁରୁ ନାନକଙ୍କ ରାସ୍ତାକୁ ଆଣିବା ନାହିଁ ତାହା ହେଲେ କାହାକୁ ଆଣିବା ? ଯଦି ବୈରାଗୀ ସାଧୁକୁ ରାସ୍ତାରେ ତାହାର ଅହଂକାର ଗର୍ବ ପାହାଡ଼ ହୋଇ ସିଧା ରାସ୍ତାକୁ ରୋକି ଦେଉଛି, ତାହାହେଲେ ତାହାର ଗର୍ବ ଓ ଅହଂକାରରୂପକ ପାହାଡ଼କୁ ଦୂର କରି ତାହାକୁ ସିଧା ରାସ୍ତାରେ ଆଣିବା ଓ ତାହାର କୁଟୀରକୁ ମୁଁ ଅବଶ୍ୟ ଯିବି। ମହନ୍ତ ବହୁତ ବୁଝାଇଲେ, କିନ୍ତୁ ସତ୍‌ଗୁରୁଜୀ ନିଜର ବିଶ୍ୱାସ ଓ ଦୃଢ଼ତା ସହ ସ୍ଥିର ରହିଲେ।

ସେଥି ଯୋଗୁଁ ସତ୍‌ଗୁରୁଜୀ ନାନ୍ଦେଡ଼ ପହଞ୍ଚି ୧୦-୧୫ ଦିନ ଯାଏଁ ତାହା ତରଫକୁ କିଛି ଧ୍ୟାନ ମଧ୍ୟ ଦେଲେ ନାହିଁ। ତଥାପି ଲୋକମାନଙ୍କ ତରଫରୁ ସେହି ବୈରାଗୀ ସାଧୁର କୁକର୍ମ ସତ୍‌ଗୁରୁଜୀଙ୍କ ନିକଟକୁ ଆସୁଥିଲା। ସତ୍‌ଗୁରୁଜୀ ଦିନେ ତାହାର କୁଟୀରଆଡ଼କୁ ଶିକାର କରିବା ସକାଶେ ଚାଲିଗଲେ। କଲଗୀଧର ସତ୍‌ଗୁରୁଜୀ ତାହାର କୁଟୀର ଭିତରକୁ ଚାଲିଗଲେ ଓ ସିଧା ତାଙ୍କ ପଲଙ୍କ ଉପରେ ବସିଗଲେ, ଯେଉଁଠି ବସି ସେ ଅନ୍ୟ ସାଧୁସନ୍ଥଙ୍କର ଅପମାନ କରୁଥିଲା। କେତେକ ସିଂହ ମଧ୍ୟ ସାଙ୍ଗରେ ଥିଲେ। ତାହାର ଛେଳି(ଖାସୀ)କୁ ମାରି ପ୍ରସାଦ ତିଆରି କରିବା ପାଇଁ ହୁକୁମ ଦେଲେ। ସେଥିଯୋଗୁଁ ସେହି କୁଟୀରରେ ଛେଳିକୁ ମାରି ଡେକ୍‌ଚି ଓ ଚୁଲୀରେ ରଖିଲେ। କୁଟୀର ମଧ୍ୟରେ ଥିବା ମାଧୋ ଦାସର ଲୋକମାନେ ନିକଟରେ ଥିଲେ, ମାଧୋ ଦାସଙ୍କୁ ଖବର ଦେଲେ। କହିଲେ ଆଜି ଆପଣଙ୍କ କୁଟୀରରେ ଜଣେ ତଲବାର ଧାରଣ କରିଥିବା ବ୍ୟକ୍ତି ଆସି ଅପବିତ୍ର କରିଦେଲା। ଖାସୀଗୁଡ଼ାଙ୍କୁ ମାରି ତରକାରି ପ୍ରସ୍ତୁତ କରୁଛି ଓ ଏହା ମଧ୍ୟ କହିଲେ କି ସେ (ସତ୍‌ଗୁରୁଜୀ) ଆପଣଙ୍କ ପଲଙ୍କରେ ଶୋଇ ଆରାମ କରୁଛି। ଆପଣଙ୍କୁ କୌଣସି ପ୍ରକାର ସମ୍ମାନ କି ଡର ମଧ୍ୟ ନାହିଁ।

ମାଧୋ ଦାସ ଏହା ଶୁଣି କ୍ରୋଧିତ ହୋଇଗଲା। ତାହାର ଅଧୀନରେ ୫ଜଣ ବୀର ଥିଲେ। ତୁରନ୍ତ ସେ ମନ୍ତ୍ର ପଢ଼ିଲା ଓ ଗୋଟିଏ ବୀର ତାହା ନିକଟରେ ହାତ ଯୋଡ଼ି ଛିଡ଼ା ହୋଇଗଲା। ମାଧୋ ଦାସ ତାହାକୁ କହିଲା ଶୀଘ୍ର ଯାଇ ମୋ ପଲଙ୍କ

ଉପରେ ଶୋଇଥିବା ଲୋକକୁ ଏମିତି ଓଲଟାଇ ଦେବୁ ସେ ଯେମିତି ସେ ବଞ୍ଚିପାରିବ ନାହିଁ। ଆଦେଶ ପାଇ ବୀର ତେଜ ଗତିରେ ଗଲା। ମାଧୋ ଦାସ ପଲଙ୍କରେ ଶୋଇଥିବା କଲଗୀଧର ୧୦ମ ପିତାଜୀଙ୍କ ଚେହେରାର ତେଜ ଦେଖି ବୁଝିପାରିଲା କି ଏହା ନିଶ୍ଚୟ ମହାନ୍ ଶକ୍ତି। କିନ୍ତୁ ମାଧୋ ଦାସର ହୁକୁମ ପାଳନ କରି ପଲଙ୍କକୁ ଓଲଟାଇବାକୁ ଲାଗିଲା। ସଙ୍ଗେ ସଙ୍ଗେ କଲଗୀଧର ୧୦ମ ପିତାଜୀ ଜାଗ୍ରତ ହୋଇଗଲେ ଓ ନିଜେ ନିଜେ ବହୁତ ଓଜନ ହୋଇଗଲେ। ପଲଙ୍କ ଉଠିବା ତ ଦୂରର କଥା, ହଲିବା ମଧ୍ୟ ଅସମ୍ଭବ ହେଲା। ପୂରା ବଳ ପ୍ରୟୋଗ କରି ନିରାଶରେ ମାଧୋ ଦାସ ପାଖରେ ପହଞ୍ଚିଲା। ଦ୍ୱିତୀୟ ବୀର ଆସିଲା, ପରନ୍ତୁ ସେ ମଧ୍ୟ ନିରାଶ ହୋଇଗଲା ଓ ଯାଇ ମାଧୋ ଦାସକୁ ସମସ୍ତ ଖବର ଦେଲା। ପୁଣି ସେ କ୍ରୋଧିତ ହୋଇ ୫ଜଣଙ୍କୁ ସତର୍କ କରି ପଠାଇଲା। ସେ ବହୁତ ଭୟାନକ ଚେହେରା ସହିତ ଆସି ପ୍ରଥମେ ବାହରେ ବସି ସିଂହମାନଙ୍କୁ ଡରାଇଲେ। କଲଗୀଧର ପାତଶାହ ୧୦ମ ଶ୍ରୀ ପିତା ସେମାନଙ୍କୁ ଜୟକାର ସହ ଗୁଳି ଓ ତୀର ଛାଡ଼ିବା ପାଇଁ ଆଦେଶ ଦେଲେ।

ସିଂହମାନେ ସେମିତି କରିଲେ, ବୀରମାନେ ପ୍ରାଣ ବିକଳରେ ଦୌଡ଼ି ମହାରାଜଙ୍କ ପାଖରେ ପହଞ୍ଚିଲେ। ୫ଜଣ ମିଶି ଜୋର ଲଗାଇବାକୁ ଚେଷ୍ଟା କରିଲେ। ଯେତେବେଳେ କିଛି ଉପାୟ ଦେଖାଗଲା ନାହିଁ ବୀରମାନେ ଆହୁରି ଚେଷ୍ଟା କରିଲେ। ସେମାନେ ଭାବିଲେ ଯଦି ଉଠାଇପାରିବା ନାହିଁ ତାହେଲେ ପଲଙ୍କ ଉପରେ ଭାର ଦେଇ ମାଟି ଭିତରେ ଦବାଇଦେବା। ଏହି ବିଚାର କରି ସେମାନେ ପଲଙ୍କକୁ ଚାପଦେଲେ ଓ ପଲଙ୍କର ଗୋଡ଼ ମାଟି ଭିତରକୁ ଦବିବାକୁ ଲାଗିଲା, କାରଣ ସତ୍‌ଗୁରୁ ମଧ୍ୟ ଭାର ଦେଇ ପଲଙ୍କ ଉପରେ ବସିଥିଲେ। ଏହା ଦେଖି କଲଗୀଧର ମହାରାଜ କହିଲେ- ପଲଙ୍କ ! ତୁ ଜାଣି ନାହୁଁ ତୋ ଉପରେ ମୁଁ ବସିଛି। ତୁ ମାଟି ଭିତରକୁ କାହିଁକି ଦବିଯାଉଛୁ ?

ଏହା କହୁ କହୁ ପଲଙ୍କ ମାଟି ଭିତରକୁ ଦବିବା ବନ୍ଦ ହୋଇଗଲା। ବୀରମାନେ ପୂରା ବଳ ପ୍ରୟୋଗ କରି ହତାଶ ହୋଇ ଫେରିଗଲେ ଓ ମାଧୋ ଦାସକୁ ସମସ୍ତ ବୃତ୍ତାନ୍ତ ଜଣାଇଲେ। ମାଧୋ ଦାସ ଭାବିଲା ନିଶ୍ଚୟ କିଏ ଜଣେ ମହାନ୍ ଶକ୍ତିର ମାଲିକ ମୋର କୁଟୀର ମଧ୍ୟକୁ ଆସିଛନ୍ତି। ପୂର୍ବର ସମସ୍ତ ଖବର ତା ଆଖି ଆଗରେ ନାଚି ଉଠିଲା କି କିପରି ସେ କୁଟୀରକୁ ଆସୁଥିବା ସାଧୁ ସନ୍ଥମାନଙ୍କର ଅଟ୍ଟହାସ୍ୟ

କରି ସେମାନଙ୍କୁ ଧକ୍କା ମାରି ବାହାରକୁ ବାହାର କରୁଥିଲା। ସେ ସେପରି କରିବା ଦ୍ୱାରା ନିଜର ଗୌରବତା ଓ କୁଟୀରର ମର୍ଯ୍ୟାଦା ବୋଲି ଭାବୁଥିଲା।

ବର୍ତ୍ତମାନ ମାଧୋ ଦାସ ସ୍ୱୟଂ ଡେରା ଆଡ଼କୁ ଚାଲିଲା ଓ ଭାବିଲା ଥରେ ମୁଁ ଦେଖିବି ପ୍ରକୃତରେ ମୋର ବୀରମାନଙ୍କୁ ପରାସ୍ତ କରିବା ବ୍ୟକ୍ତି ଜଣକ କିଏ? ଦୂରରୁ ସେ ସିଂହମାନଙ୍କର ଜୟ ଜୟକାର ଶୁଣିଲା। ବାହାରେ ଛିଡ଼ା ହୋଇଥିବା ସିଂହମାନଙ୍କୁ ଦେଖି ବୁଝିପାରିଲା କି ସେ ପଞ୍ଜାବୀ ଅଟେ ଓ ପଞ୍ଜାବରୁ ଆସିଥିବା ଶିଖମାନଙ୍କର ଗୁରୁ ହୋଇଥିବେ। ପୂର୍ବରୁ ମଧ୍ୟ ସେ କେଉଁଠାରୁ କଲଗୀଧର ପାତଶାହଙ୍କ ଯୁଦ୍ଧ ବିଷୟରେ ସମାଚାର ଶୁଣିଥିଲା। କିନ୍ତୁ ତାଙ୍କର ପ୍ରତ୍ୟକ୍ଷ ଶକ୍ତି ଦେଖି ତାହା ମନରେ ଶ୍ରଦ୍ଧା ଆସିଲା, ପୁଣି ବିଚାର କରିଲା କି ଯଦି ମୋତେ ଭଗବାନ୍ ରାମଙ୍କ ରୂପରେ ଦର୍ଶନ ଦିଅନ୍ତେ ପହଞ୍ଚିବା ସଙ୍ଗେ ସଙ୍ଗେ ଚରଣ ତଳେ ଶରଣାଗତ ହୋଇଯିବି। ଏହା ଭାବି କୁଟୀରରେ ପହଞ୍ଚିଲା ଓ ଯେତେବେଳେ କଲଗୀଧର ପାତଶାହଙ୍କ ନିକଟରେ ପହଞ୍ଚିଲା ପ୍ରତ୍ୟକ୍ଷରେ ଦେଖିଲା କି ସ୍ୱୟଂ ଭଗବାନ ରାମଜୀ ବିରାଜମାନ, ଏହା ତାଙ୍କ ନଜରକୁ ଆସିଲା। ଆଉ କି କଥା ଥିଲା। ଚରଣରେ ଶରଣାଗତ ହୋଇ କହିଲା- 'କ୍ଷମା କରିଦିଅ', ମୋର ଭୁଲ୍‌କୁ କ୍ଷମା କରିଦିଅ।

କଲଗୀଧର ବଡ଼ ଆଦରରେ ଉଠାଇ ପଚାରିଲେ- 'ତୁମେ କିଏ?' ଜୀ, ମୁଁ ଆପଣଙ୍କର ବନ୍ଦା ଚାକର। ଶ୍ରୀ ଦଶମ ପିତା କହିଲେ- ତୁମେ କେଉଁ ବନ୍ଧନରେ ବସିଛ ମାଧୋ ଦାସ! ତୁମେ ଜାଣ ନାହିଁ, ତୁମର ଜାତି ଓ ଅଞ୍ଚଳ ପ୍ରତି କେତେ ବିପଦ ଅଛି? ଦେଶର ଅତ୍ୟାଚାରୀମାନଙ୍କର ଅତ୍ୟାଚାର ଚାଲୁ ରହିଛି, ଗରିବ ଓ ମଜଦୁରମାନେ ହାହାକାର କରୁଛନ୍ତି। ତୁ ମଉଜ ମଜଲିସ୍‌ରେ ରହୁଛୁ।

କଲଗୀଧରଙ୍କ ବାକ୍ୟ ବାଣ ମାଧୋ ଦାସଙ୍କ ହୃଦୟରେ ଭେଦ କଲା। ଗୁରୁଜୀ ପୁଣି କହିଲେ ତୁମର ଏତେ ଶକ୍ତି ଏହାକୁ ଦୁଷ୍ଟ ଅତ୍ୟାଚାରୀମାନଙ୍କ ସହ ଯୁଦ୍ଧ ସକାଶେ ପ୍ରୟୋଗ କରିବା ଉଚିତ। ଅତ୍ୟାଚାରୀମାନଙ୍କୁ ଦଣ୍ଡଦେବା ଉଚିତ। ଅତ୍ୟାଚରୀମାନଙ୍କୁ ଦଣ୍ଡ ଦେଲେ ହିଁ ତୁମର ମଙ୍ଗଳ ହେବ।

ମାଧୋ ଦାସ ହାତଯୋଡ଼ି ଛିଡ଼ା ହୋଇଗଲା ଓ କହିଲା- ଯେମିତି ଆପଣ ଆଦେଶ ଦେବେ ମୁଁ ପ୍ରସ୍ତୁତ ଅଛି।

ସେହି ସମୟରେ ଅମୃତ ତିଆରି କରାଗଲା। ମାଧୋ ଦାସକୁ ଅମୃତ ପାନ କରାଇ ଗୁରବଖ୍‌ସ ନାମ ରଖାଗଲା। ପରନ୍ତୁ ଇତିହାସରେ ତା'ର ନାମ ବନ୍ଦା ସିଂହ

ବାହାଦୁର ନାମରେ ପ୍ରସିଦ୍ଧ ହେଲା । ୫ଜଣ ସିଂହ ୫ଟି ତୀର ବନ୍ଦା ସିଂହର ସହାୟତା ନିମିତ୍ତ ଦେଇ ଦଶମ ପିତା ମହାରାଜ ତାକୁ ଆଦେଶ ଦେଲେ । ସିଂହମାନଙ୍କୁ ଆଦର କରିବୁ କିନ୍ତୁ କେବେ ଗୁରୁ ହେବୁ ନାହିଁ ଓ ବିବାହ କରିବୁ ନାହିଁ । ଅସମୟରେ ମୋର ଏହି ତୀର ବ୍ୟବହାର କରିବୁ ଓ ଶହୀଦ ସେନା ସେତେବେଳେ ତୋତେ ସାହାଯ୍ୟ କରିବାକୁ ଆସିଯିବେ ।

ବନ୍ଦା ସିଂହ ମୁଣ୍ଡ ନୁଆଁଇ ପଞ୍ଜାବ ଚାଲିଗଲା । ସମ୍ୱତ ୧୭୬୪ ବେଳେ ଯମୁନା ନଦୀ ପାର ହୋଇ ତରାବଡ଼ୀଠାରେ ପହଞ୍ଚି ସିଂହମାନଙ୍କୁ ସନ୍ଦେଶ ପଠାଇ କହିଲା ଆସ ମିଶି ସମସ୍ତେ ଅତ୍ୟାଚାରୀମାନଙ୍କୁ ବିନାଶ କରିବା । ସନ୍ଦେଶ ପାଇବା ସଙ୍ଗେ ସଙ୍ଗେ ମରଜୀବଡ଼େର ସିଂହମାନେ ବନ୍ଦା ସିଂହ ସହିତ ମିଶିବା ପାଇଁ ଆସିଗଲେ । ଏହି ଖବର ସରହଁଦର ସୁବେଦାରମାନଙ୍କୁ ବଡ଼ ଚିନ୍ତାରେ ପକାଇଲା ଓ ସିଂହଙ୍କ ସାମୂହିକ ଭିଡ଼କୁ ଅଟକାଇବା ପାଇଁ । ସେମାନେ ନଦୀର ପୋଲ, ରାସ୍ତା, ବିଶେଷ ସ୍ଥାନମାନଙ୍କରେ ସେନା ହାଜର କରାଇ ବନ୍ଦ ରଖିଲେ ଓ ସିଂହମାନଙ୍କର ରାସ୍ତା ଘେରାଉ କଲେ । ପରନ୍ତୁ ମାଲବ ପ୍ରାନ୍ତର ସିଂହ ତଥା ସ୍ଥାନୀୟ ସିଂହମାନେ ଶୀଘ୍ର ଶୀଘ୍ର ବନ୍ଦା ସିଂହ ସହିତ ମିଶିଗଲେ । କିନ୍ତୁ ସତ୍‌ଜୁର ଅବରୋଧ ଦ୍ୱାରା ମଝେଲ୍ ସିଂହମାନଙ୍କୁ କେତେଦିନ ଯାଏଁ ଅବରୋଧ କରାଗଲା । ଅନ୍ୟପଟରେ ବନ୍ଦା ସିଂହ ଅଳ୍ପ ସାହାଯ୍ୟ ପାଇ ମୁସ୍ତଫାବାଦ, ସାଢ୍ୱୌରା, ଛତ ବନୁଡ଼ ଇତ୍ୟାଦି ଜାଗାରେ ମୁସଲମାନ ହାକିମମାନଙ୍କୁ ପରାସ୍ତ କରି ସେମାନଙ୍କୁ କଠିନ ଦଣ୍ଡ ବିଧାନ କଲେ । ଦେଶରେ ହା ହା କାର ହେଲା । ଚୋର, ଡାକୁମାନଙ୍କର ପ୍ରକୋପ ବଢ଼ିଗଲା ଓ ସମସ୍ତେ ଆସି ବନ୍ଦା ସିଂହର ଦଳରେ ମିଶିଗଲେ । ସେମାନେ ମଧ୍ୟ ଆସି ବନ୍ଦା ସିଂହ ସହିତ ମିଶିଗଲେ ଓ ତୁର୍କୀ ହାକିମାନଙ୍କ ଅତ୍ୟାଚାରରେ ବହୁତ ଦୁଃଖୀଥିଲେ । ଅସହାୟ ହୋଇ ସେମାନଙ୍କ ଅତ୍ୟାଚାର ସହି ଚାଲିଥିଲେ । ସେମାନଙ୍କ ଅଭିଯୋଗ କରିବା ଦ୍ୱାରା ବନ୍ଦା ସିଂହ ଆକ୍ରମଣ କରୁଥିଲା । ସେଥିଯୋଗୁଁ ବର୍ତ୍ତମାନ ଅତ୍ୟାଚାରୀ ମୁସଲମାନ ହାକିମମାନଙ୍କୁ ବଡ଼ ଦଣ୍ଡ ମିଳିବାକୁ ଲାଗିଲା ।

ମଝୌଲ ସିଂହମାନଙ୍କ ଅବରୋଧ ଯୋଗୁଁ ଡେରି ହେଉଥିଲା, କିନ୍ତୁ ବନ୍ଦା ସିଂହର ବିଜୟ ଖବର ଶୁଣି ମଝୌଲ ସିଂହମାନେ ମଧ୍ୟ ଆଗକୁ ବଢ଼ିଚାଲିଲେ । ସତ୍‌ଲୁଜ ନଦୀ ପାର ହୋଇ କୀରତପୁର ଠାରେ ପହଞ୍ଚିଗଲେ । ମନ୍ତ୍ରୀ ବଜୀଦ୍ ଖାଁ ସୁବା ସରହଁଦର ଠିକଣା ଲଗାଇ ସେ ସିଂହମାନଙ୍କୁ ଅବରୋଧ ସକାଶେ ରୋପଡ଼ର

ପଠାଣମାନଙ୍କୁ ଲେଖି ପଠାଇଲା ଓ ତା ସହିତ ମଲରୀଏ ମରଦୁଦ୍‌ମାନଙ୍କୁ ସିଂହମାନଙ୍କୁ ଅବରୋଧ ସକାଶେ ରୋପଡ଼ ପଠାଇଲା। ସିଂହମାନଙ୍କର ସଂଖ୍ୟା ପ୍ରାୟ ୧୧୦୦ଥିଲା। କିନ୍ତୁ ରୋପଡ଼ ପହଞ୍ଚିସାରି ସିଂହମାନେ ଉତ୍ତ୍ୟକ୍ତ ହୋଇ ରହିଥିଲେ। ଅବରୋଧକାରୀମାନଙ୍କୁ ଭୟାନକ ଭାବେ ଆକ୍ରମଣ କରି ମାରି କାଟି ଶତ୍ରୁମାନଙ୍କୁ ଚିରି ଆଗକୁ ବଢ଼ିଚାଲିଲେ। ଶତ୍ରୁ ଦଳ ପଛରେ ଲାଗିରହିଲେ ଓ ଲୁଧିୟାନା ପାଖାପାଖି ସିଂହମାନଙ୍କୁ ପୁଣି ଅଟକାଇବା ପାଇଁ ଚେଷ୍ଟା କରିଲେ। ପରନ୍ତୁ ସିଂହମାନେ କଲଗୀଧର ୧୦ମ ପିତାଜୀଙ୍କ ଆଶ୍ରା ନେଇ ଏମିତି ଭାବେ ତଲବାର ଚଳାଇଲେ ବି ମଲେରିୟା ମରଦୁଦ୍ ମରିଗଲା ଓ ରଣଭୂମି ଛାଡିଯାଉଥିବା ସେନାଙ୍କୁ ମଧ୍ୟ ସିଂହମାନେ ଖୁବ୍ ମଜା ଚଖାଇଲେ। ଏହିପରି ମଝୌଲ ସିଂହ, ରାସ୍ତାର କଣ୍ଟା ସଫା କରି ବନ୍ଦା ସିଂହ ସହିତ ଭେଟ କରିଲା। ସେତେବେଳେ ସିଂହମାନଙ୍କୁ ଯେତେ ଖୁସି ମିଳିଲା ତାହା ଅବର୍ଣ୍ଣନୀୟ। ରକ୍ତର ଭାଇ ସହିତ ମିଶିଲେ ମଧ୍ୟ ଏତେ ଖୁସି ମିଳିବ ନାହିଁ। କୁହାଯାଇଛି କି ଗୋଟିଏ ପହର ଯାଏଁ ବନ୍ଦା ସିଂହ ସହିତ ଆଲିଙ୍ଗନ କରିଚାଲିଲେ ଓ ତା'ପରେ ଅତ୍ୟାଚାରୀ ଓ ପାପୀମାନଙ୍କ ଦଣ୍ଡ ବିଧାନର ବିଚାର ହୋଇଥିଲା।

ସେତେବେଳେ ବହୁତ ବଡ଼ ବିଷୟ ସିଂହମାନଙ୍କ ନିକଟରେ ଥିଲା। ସରହିଁଦର ବିଜୟ ପ୍ରାପ୍ତ ଓ ଗୁରୁ ମହାରାଜଙ୍କ ୪ପୁତ୍ର(ସାହେବଜାଦେ) ହତ୍ୟାକାରୀମାନଙ୍କୁ ଦଣ୍ଡ ଦେବା। ସେଥିଯୋଗୁଁ ସରହନ୍ଦ ଉପରେ ଆକ୍ରମଣର ଷଡ଼ଯନ୍ତ୍ର ପ୍ରସ୍ତୁତ ହୋଇଗଲା ଓ ନିଷ୍ପତ୍ତି ନିଆଗଲା। ବଜୀଦ୍ ଖାଁକୁ ଖବର ମିଳିଲା ସେ ବହୁତ ସୈନ୍ୟବଳ ସହ ତୋପଖାନା ଦେଇ ସରହିଁଦଠାରୁ ୧୦-୧୨ ମାଇଲ୍ ଦୂରରେ ସିଂହମାନଙ୍କ ରାସ୍ତାରେ ଆସି ବସିଲା। ସିଂହମାନଙ୍କ ଗଣତି ସେତେବେଳେ ପ୍ରାୟ ୧୦ହଜାରଥିଲା। କିନ୍ତୁ ଡାକୁ, ବଦମାସଙ୍କ ଗଣତି ତାହାଠାରୁ ଅଧିକ ଥିଲା। ଯେତେବେଳେ ସିଂହମାନଙ୍କ ସେନାବାହିନୀ ସହିତ ସାମନା ହେଲା, ବହୁତ ବଡ଼ ଯୁଦ୍ଧ ଆରମ୍ଭ ହେଲା। ସରହିଁଦ ସେନାମାନେ ହଜାର ହଜାର ଗୁଳି ଓ ତୋପ ବହୁମାତ୍ରାରେ ସିଂହମାନଙ୍କ ଆଡ଼କୁ ବର୍ଷା କରିଚାଲିଲେ। ପ୍ରଥମ ଆକ୍ରମଣରେ ଶତ୍ରୁମାନଙ୍କ ହାତ ଖାଲି ହୋଇଗଲା ଓ ସେମାନେ ରଣଭୂମି ଛାଡ଼ି ଲୁଚିବା ଆରମ୍ଭ କରିଦେଲେ। ବନ୍ଦା ସିଂହ ବହାଦୁର ସେତେବେଳେ ପଛରେ ଧ୍ୟାନସ୍ଥ (ସମାଧିସ୍ଥ) ହୋଇ ବସିଥିଲେ। ମୁଖ୍ୟ ସିଂହ ହଠାତ୍ ତା'ପାଖରେ ପହଞ୍ଚି କହିଲେ- "ବାବାଜୀ ଏତେବେଳେ ବସିବା ଠିକ୍ ନୁହେଁ, ଦୁଷ୍ଟମାନେ ଲୁଚି ଲୁଚି ଚାଲିଯାଉଛନ୍ତି ଓ

ଶତ୍ରୁମାନଙ୍କ ବଳ ବଢ଼ିଚାଲିଛି। ସେଥିଯୋଗୁଁ ଉଠ, ଡେରି କର ନାହିଁ ଓ ଆଗକୁ ଯାଇ ସିଂହମାନଙ୍କର ଦାୟିତ୍ୱ ଗ୍ରହଣ କର"।

ସିଂହମାନଙ୍କର କଥା ଶୁଣିବା ସଙ୍ଗେ ସଙ୍ଗେ ବନ୍ଦା ସିଂହ ଉଠି ଛିଡ଼ା ହେଲେ ଓ ଘୋଡ଼ାରେ ବସି ସିଂହମାନଙ୍କ ସହିତ ଗଲେ। ଯାଇ ଦେଖିଲା ବେଳକୁ ସିଂହମାନଙ୍କ ଶକ୍ତି ଦୁର୍ବଳ ହୋଇପଡ଼ିଛି। ବନ୍ଦା ସିଂହ ଗୁରୁ ମହାରାଜ ୧୦ମ ପିତାଜୀଙ୍କ ବଚନ ସ୍ମରଣ କରି ୱାହେଗୁରୁ କହି ୫ମ ତୀର ମଧ୍ୟରୁ ଗୋଟିଏ ତୀର ଚଳାଇଲେ। ବାସ୍ ! ଆଉ କ'ଣ କଥା ଥିଲା। ପୂରାପୂରି ଅନ୍ଧକାର ହୋଇଗଲା ଓ ଶତ୍ରୁମାନଙ୍କୁ ପ୍ରୟୋଗ କରିଥିବା ଗୁଳି ଯାଇ ଶତ୍ରୁମାନଙ୍କ ଉପରେ ପଡ଼ିଲା। ଏହା ଦେଖି ବନ୍ଦା ସିଂହ ବିଳମ୍ବ ନ କରି ସିଂହମାନଙ୍କୁ ଆଗକୁ ବଢ଼ିବା ପାଇଁ ଉତ୍ସାହିତ କଲେ ଓ ସ୍ୱୟଂ ଘୋଡ଼ାରୁ ଓହ୍ଲାଇ ତୀର ଚଳାଇ ଶତ୍ରୁମାନଙ୍କ ମଧ୍ୟରେ ପଶିଗଲେ। ସିଂହମାନେ ମଧ୍ୟ ପଛରେ ନ ରହି ସମସ୍ତେ ଦୌଡ଼ି ଦୌଡ଼ି ଶତ୍ରୁମାନଙ୍କ ମଧ୍ୟରେ ପଶି ତଲବାର ଦ୍ୱାରା ହତ୍ୟା କରିବା ଆରମ୍ଭ କରିଦେଲେ। ପରିସ୍ଥିତି ଏମିତି ହେଲାକି ଶତ୍ରୁମାନେ ପ୍ରାଣ ବଞ୍ଚାଇବା କଷ୍ଟକର ହେଲା। ରକ୍ତମାଂସରେ ସାଗର ପ୍ରାୟ ଢେଉଖେଳିଲା ଓ ମୃତ ଶରୀର ଅଗଣିତ ଭାବେ ଧରାଶୟୀ ହେଲେ।

ଶତ୍ରୁମାନଙ୍କ ପାଦତଳୁ ମାଟି ଖସିଗଲା। ଲକ୍ଷ ଲକ୍ଷ ହିସାବରେ ତୋପ ଓ ବାଣ ଭୟରେ ଭୟଭୀତ ହୋଇ ଶତ୍ରୁ ସେନାମାନେ ପଛଘୁଞ୍ଚା ଦେଇ ପ୍ରାଣ ବଞ୍ଚାଇବା ପାଇଁ ଲାଗିଲେ। ଆଗକୁ ବଢ଼ିବା ଓ ବଢ଼ାଇବା ଜେନେରାଲମାନେ ଶିଖମାନଙ୍କର ତଲବାରରେ ଶିକାର ହୋଇଗଲେ ଓ ବଜୀଦ୍ ଖାଁ ମଧ୍ୟ ବଞ୍ଚିପାରିବ ନାହିଁ, ଏହା ଦେଖି ହାତୀକୁ ପଛକୁ ବୁଲାଇଲା। ବର୍ତ୍ତମାନ ଦୁର୍ଗ ମଧ୍ୟକୁ ଯାଇ ଲଢ଼ିବା ଉଚିତ କିନ୍ତୁ ଭବିଷ୍ୟତ ପାଇଁ ଆହୁରି କିଛି ବିଚାର ଥିଲା।

ବଜୀଦ୍ ଖାଁ ହାତୀକୁ ପଛକୁ କରି ଦୌଡ଼ିବାକୁ ଲାଗିଲା। ଦୁର୍ଭାଗ୍ୟବଶତଃ ହାତୀର ଗୋଡ଼ ଗୋଟିଏ ଗାତ ମଧ୍ୟରେ ପଶିଯିବାରୁ ହାତୀ ବ୍ୟସ୍ତ ହୋଇଗଲା। ବଜୀଦ୍ ଖାଁ ହାତୀ ଉପରୁ ତଳକୁ ଜୋରରେ ପଡ଼ିଗଲା। କେତେ ଜଣ ସିଂହ ବିଶେଷକରି ତାର ପିଛା କରୁଥିଲେ, ସେଥିଯୋଗୁଁ ସେମାନେ ତୁରନ୍ତ ତାକୁ ପଡ଼ିଥିବା ଅବସ୍ଥାରେ ଧରିନେଲେ। ଯେତେବେଳେ ବଜୀଦ୍ ଖାଁକୁ ଧରିନେଲେ ସେତେବେଳେ ଅନ୍ୟ ମୁସଲମାନମାନେ ଦେଖି ଧୈର୍ଯ୍ୟହରା ହୋଇ ନିରାଶରେ ସରହନ୍ଦ୍ ଯିବା ବଦଳରେ ଯିଏ ଯୁଆଡ଼େ ରାସ୍ତା ପାଇଲେ ଦୌଡ଼ିବାକୁ ଲାଗିଲେ। ସିଂହମାନେ

ଶୀଘ୍ର ଶୀଘ୍ର ସହର ଆଡ଼କୁ ପଶିଲେ। ସେଠାରେ ସିଂହମାନେ ପହଞ୍ଚି ସେହି ଦୁଷ୍ଟ ସୁଚ୍ଚା ନନ୍ଦକୁ ଧରିଲେ। କଲଗୀଧର ଦଶମ ପିତା ଶ୍ରୀ ଗୁରୁ ଗୋବିନ୍ଦ ସିଂହ ଜୀଙ୍କର ପୁତ୍ର(ସାହିବଜାଦା)ଙ୍କୁ ଏହା କହି ମୃତ୍ୟୁଦଣ୍ଡ ଦେବା ବିଚାର ଦେଇଥିଲା। ସାପର ପୁତ୍ର ସାପ ହୁଅନ୍ତି। ଏମାନଙ୍କୁ ଛାଡ଼ିବା ଉଚିତ ନୁହେଁ। ସେଥିଯୋଗୁଁ ସେହି ସମୟରେ ଦୋଷୀମାନଙ୍କୁ କଠିନ ଦଣ୍ଡ ସହିତ ସମାପ୍ତ କରାଗଲା। ତିନିଦିନ ଯୋଦ୍ଧାମାନେ ମନଭରି ଲୁଟିନେଲେ ଓ ସହରର ଦୃଶ୍ୟକୁ ନର୍କଭାବେ ପରିବର୍ତ୍ତନ କରିଦେଲେ। ସିଂହମାନଙ୍କର ଦୁର୍ଗକୁ ଭାଙ୍ଗି ଶେଷ କରିଦେବା ପାଇଁ ବିଚାର କଲେ। କିନ୍ତୁ ବନ୍ଦା ସିଂହ ତାହାକୁ ସିଂହମାନଙ୍କର ବ୍ୟବହାର ସକାଶେ ସ୍ଥାନ ଆବଶ୍ୟକ, ଏହା କହି ଭଙ୍ଗାରୁଜାକୁ ବନ୍ଦ କରାଇଲେ। ୫୨ ବର୍ଷ ଯାଏଁ ତାହାର ଆୟୁଷ ବଢ଼ାଇଦେଲେ। ତାହାକୁ ବନ୍ଦା ସିଂହ ୧୭୬୫ ସମୟରେ ବିଜୟ ପ୍ରାପ୍ତ କରିଲେ। କିନ୍ତୁ ୧୮୨୦ ସମୟରେ ସିଂହମାନେ ସରହଁଦକୁ ବିଜୟ ପ୍ରାପ୍ତ କରି ଦୁର୍ଗ ଭାଙ୍ଗିଥିଲେ।

ସରହଁଦ ବିଜୟ ପଶ୍ଚାତ୍ ତୁର୍କୀମାନଙ୍କ ମନରେ ବନ୍ଦା ସିଂହ ପ୍ରତି ଏମିତି ଭାବେ ଭୟ ରହିଲା କି ତାଙ୍କ ନାମ ଶୁଣି କମ୍ପି ଉଠିଲେ ଓ ଯେଉଁଠି ହାର ନାମ ଆସୁଥିଲା ସେମାନେ ପୁରସ୍କାର ସହ ମିଶିବାକୁ ଲାଗିଲେ। ବର୍ତ୍ତମାନ ବନ୍ଦା ସିଂହ ସତଲୁଜ ନଦୀ ପାର ହୋଇ ସେଠାରେ ହାକିମମାନଙ୍କୁ ଦଣ୍ଡିତ କରିବାକୁ ଲାଗିଲେ। ପୁଣି ଆନନ୍ଦପୁରଠାରେ ପହଞ୍ଚି ସେଠାରେ କେତେଦିନ ଯାଏଁ ବିଜୟ ଖୁସି ମହୋତ୍ସବ ବିବାହ ଖୁସି ଭଳି ଲାଗିରହିଲା। ତାହା ସହିତ ପାହାଡ଼ୀ ରାଜାମାନଙ୍କୁ ଦଣ୍ଡିତ କରିବା ସକାଶେ ଯୋଜନା ହେଲା। ପାହାଡ଼ୀ ରାଜାମାନଙ୍କୁ ସନ୍ଦେଶ ପଠାଗଲା। ଶରଣାଗତ ହୋଇଯାଅ ନଚେତ୍ ଯୁଦ୍ଧ ସକାଶେ ପ୍ରସ୍ତୁତ ହୁଅ। କିନ୍ତୁ ପାହାଡ଼ୀମାନେ ଓଲଟା ବୁଦ୍ଧି ପ୍ରୟୋଗ କରିଲେ। ଗୁରୁ ଆମର କିଛି କରିପାରିଲା ନାହିଁ, ଏ କ'ଣ କରିପାରିବ। ଠିକ୍ ସେହିଦିନରେ ସତ୍‌ଗୁରୁଜୀଙ୍କ ଉପରେ ଆକ୍ରମଣ ହେବା ଖବର ପଞ୍ଜାବରେ ମିଳିଲା ଓ ଜ୍ୟୋତି ଜ୍ୟୋତ୍ ପ୍ରାପ୍ତ ହେବା ଖବର ମିଳିଲା। ସିଂହମାନଙ୍କର ଉତ୍ସାହ ଜଳି ଭସ୍ମ ହୋଇଗଲା। ସିଂହମାନେ ଅଳ୍ପ ଦିନ ମଧ୍ଯ ବିଶ୍ରାମ କରିପାରିଲେ ନାହିଁ। ଦିନ-ରାତି ଶତ୍ରୁମାନଙ୍କୁ ଦଣ୍ଡିତ କରିଚାଲିଲେ। ସତ୍‌ଲୁଜ୍ ଓ ବ୍ୟାସନଦୀ ମଧ୍ୟବର୍ତ୍ତୀ ଅଞ୍ଚଳକୁ ଦଣ୍ଡିତ କରିସାରିବା ପରେ ବିଳାସପୁରକୁ ଆକ୍ରମଣ କରିଲେ। ସତ୍‌ଗୁରୁଜୀଙ୍କୁ ଆକ୍ରମଣ କରିଥିବା ଭୀମ ଚନ୍ଦର ପୁତ୍ର ଅଜମେର ଚନ୍ଦ ଓ ତାହାର ନିର୍ଦ୍ଦେଶରେ ଆସିଥିବା କେତେଜଣ ରାଜାମାନେ ମଧ୍ଯ ସିଂହମାନଙ୍କ ହାତରେ ମୃତ୍ୟୁ ବରଣ

କରିଥିଲେ । ବିଳାସପୁରର ଏହି ଅବସ୍ଥା ପାହାଡ଼ୀ ରାଜାମାନଙ୍କୁ ପୁଣି ଥରାଇଦେଲା । ମୁସଲମାନମାନଙ୍କୁ ନିଜର କନ୍ୟାଦାନ କରି ସ୍ୱୟଂ ଉଦ୍ଧାର ପାଇବା ଏହି ରାଜାମାନେ ବନ୍ଦା ସିଂହକୁ ଆୟତ୍ତ କରିଦେଲେ ଓ ମଣ୍ଡୀର ରାଜା ଡୋଲା ଦେଇ ବନ୍ଦା ସିଂହ ଗୁରୁ ଆଦେଶକୁ ଅମାନ୍ୟ କରିଲା ।

୧୭୬୬ ବେଳେ ବନ୍ଦା ସିଂହ ଚମ୍ବା ଚାଲିଗଲେ ଓ ସେଠାରେ ରାଜାମାନଙ୍କୁ ପିଞ୍ଜରାରେ ବନ୍ଦୀ କରି ମୁସଲମାନ ହାକିମମାନଙ୍କୁ ଖବର ପଠାଇଲେ । ତୁରନ୍ତ ଦିଲ୍ଲୀ ଓ ଲାହୋରଠାରୁ ତୁର୍କୀମାନେ ବନ୍ଦା ସିଂହକୁ ଧରିବା ପାଇଁ ବହୁ ସଂଖ୍ୟାରେ ପହଞ୍ଚିଗଲେ । ଏହା ଦେଖି ସିଂହମାନେ ମଧ ବିଜୟ ପ୍ରାପ୍ତ କରିଥିବା ଅଞ୍ଚଳ ଛାଡ଼ି ପାହାଡ଼ ଆଡ଼କୁ ଗମନ କଲେ । କିନ୍ତୁ ବନ୍ଦା ସିଂହ ପିଞ୍ଜରା ସହିତ ଚମ୍ବାଠାରୁ ଉଡ଼ି ମଣ୍ଡୀ ଠାରେ ପହଞ୍ଚିଲେ ଓ ମଣ୍ଡୀର ରାଜା ତାଙ୍କୁ ବାହାର କରିଲା । ସେଠାରେ ବନ୍ଦା ସିଂହ ସିଂହମାନଙ୍କ ସହିତ ହୋସିୟାରପୁରଠାରେ ପହଞ୍ଚି ତୁର୍କୀମାନଙ୍କ ସହିତ ଘୋର ଯୁଦ୍ଧରେ ଅବତୀର୍ଣ୍ଣ ହେଲେ । ଦ୍ୱିପ୍ରହରର ଏହି ଭୟାନକ ଯୁଦ୍ଧର କିଛି ପରିବର୍ତ୍ତନ ହୋଇ ନ ଥିଲା ଓ ତୁର୍କୀ ସେନା ବହୁ ସଂଖ୍ୟାରେ ଥିଲେ । ସେହି ତୁଳନାରେ ସିଂହମାନଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । ଏହା ଦେଖି ବନ୍ଦା ସିଂହ ସତ୍‌ଗୁରୁଜୀ ଦେଇଥିବା ବକ୍‌ସିସ୍ ମଧରୁ ଗୋଟିଏ ତୀର ଛାଡ଼ିଲେ । ତାହା ଶତ୍ରୁମାନଙ୍କ ସକାଶେ ଘୋର ଅନ୍ଧକାର ଓ ତୋଫାନ ସୃଷ୍ଟି କରିଲା । ଏହି ସୁଯୋଗରେ ସିଂହମାନେ ଖଣ୍ଡା(ତଲବାର)ରେ ଶତ୍ରୁମାନଙ୍କ ମୁଣ୍ଡ କାଟି ଚାଲିଲେ । କ୍ଷଣକ ମଧରେ ପାହାଡ଼ ପରି ଶବ ଗଦା ହୋଇଗଲା । ରକ୍ତର ନଦୀ ବୋହିଲା । ଏହା ଦେଖି ତୁର୍କୀ ସିପାହୀମାନେ କାନ ମୁଣ୍ଡ ଆଉଁଶି ଦୌଡ଼ିବାକୁ ଆରମ୍ଭ କରିଦେଲେ ଓ ବନ୍ଦା ସିଂହଙ୍କର ବିଜୟ ହୋଇଥିଲା ।

ଖାଫି ଖାଁ ଲେଖିଥିଲା– ବନ୍ଦା ସିଂହ ୧୭୬୭ ମସିହାରେ ବହୁତ ବିଜୟଲାଭ କରିଥିଲା । ସେ ସହରାନପୁର, ଜଲାଲାବାଦ ଓ ୟୁ.ପି.ର ଅଗଣିତ ହାକିମମାନଙ୍କୁ ନିପାତ କରିଥିଲା । ଏହି ଖବର ବାହାଦୁର ଶାହାକୁ ମିଳିଲା ଓ ସେ ଏହା ଶୁଣି ବଡ଼ ଚିନ୍ତାମଗ୍ନ ହେଲା । ପ୍ରତ୍ୟେକ ମୁଖିଆ ଓ ସେନାପତିମାନେ ବନ୍ଦା ସିଂହର ଯୁଦ୍ଧ ବିଷୟରେ ଶୁଣି ଥରୁଥିଲେ । ରାଜଦରବାରରେ ଆଲୋଚନା ମଧ ହେଉ ନ ଥିଲା ।

ବାହାଦୁର ଶାହାକୁ ଭଲ ଭାବେ ଜଣାଥିଲା କି ଯେତେବେଳେ ଏଠାରେ ମୁସଲମାନମାନେ ପଞ୍ଜାବର କ୍ଷୟକ୍ଷତି ବିଷୟରେ ଜାଣିପାରିଲା, ତା'ପରେ ବାହାଦୁର

ଶାହା ବହୁ ସଂଖ୍ୟାରେ ସେନା ବଢ଼ାଇଦେଲା। ତା'ମଧ୍ୟରୁ କେତେ ଭାଗ ବାହାରି ସିଂହମାନଙ୍କୁ ଆକ୍ରମଣ କରିଦେଲେ। ବନ୍ଦା ସିଂହ ମଧ୍ୟ ତା'ର ଚକ୍ରବ୍ୟୂହ ମଧ୍ୟରେ ଫସିଗଲା, କିନ୍ତୁ ସତ୍‌ଗୁରୁ ତାଙ୍କୁ ରକ୍ଷା କରିଥିଲେ। ସେ ଶତ୍ରୁମାନଙ୍କ କବଳରୁ ରକ୍ଷା ପାଇବା ସଫଳ ହୋଇଗଲା ଓ ଲୌହଗଡ଼ ସିଂହମାନଙ୍କୁ ପ୍ରାପ୍ତ ହେଲା। ସେଠାରେ ସେ ଅଦ୍ଭୁତ ଭାବେ ଆକ୍ରମଣ କରିଲା। ଯାହାଦ୍ୱାରା ମୋଗଲ ବାଦଶାହାର ସୈନ୍ୟମାନଙ୍କ ମଧ୍ୟରେ ହାହାକାର ଖେଳିଗଲା। ଏହି ବିଜୟ ପରେ ବନ୍ଦା ସିଂହ ପାହାଡ଼ରେ ବହୁତ ଦିନ ରହିଲେ। ଜପ, ତପ ଓ ଗୁରୁ ଶିକ୍ଷାକୁ ଭୁଲି ଲାଳସାଯୁକ୍ତ ହୋଇଗଲା। ଏହି ଖବର ମୁସଲମାନମାନଙ୍କୁ ଜଣା ପଡ଼ିଲା ଓ ତାହାର ସୁଯୋଗ ନେଇ ସିଂହମାନଙ୍କୁ କଷ୍ଟ ଦେଉଥିଲେ। ବନ୍ଦା ସିଂହ ଚମ୍ବାଠାରେ ଆଉ ଏକ ବିବାହ କରିଲା ଏବଂ ଖବର ପାଇଲା କି ମୁସଲମାନମାନେ ଏହାଠାରେ ମଧ୍ୟ ପହଞ୍ଚି ପାରନ୍ତି। ସେ କ୍ରୋଧିତ ହୋଇ ତଳକୁ(ସମତଳ) ଓହ୍ଲାଇ ଆସି ମୁସଲମାନମାନଙ୍କୁ ଆକ୍ରମଣ କରି ଅସ୍ତବ୍ୟସ୍ତ କରିଦେଲା। ବାହାଦୁର ଶାହା ପ୍ରାୟ ଦୁଇବର୍ଷ ଚେଷ୍ଟା କରିଲା; କିନ୍ତୁ ଶେଷରେ ଏହି ଦୁଃଖରେ ପାଗଳ ହୋଇ ଲାହୋରଠାରେ ୧୭୭୦ ମସିହାରେ ମରିଗଲା। ତା'ପରେ ପଞ୍ଜାବରେ ଏକପ୍ରକାର ସିଂହମାନଙ୍କର ରାଜତ୍ୱ ଆରମ୍ଭ ହୋଇଗଲା। କିନ୍ତୁ ଦୁଃଖର ବିଷୟ କି ବନ୍ଦା ସିଂହ ଗୁରୁଙ୍କ ବଚନର ପାଳନ ନ କରି ଏହି ପରିବେଶ ଏପରି ଅତିଶୀଘ୍ର ସମାପ୍ତ ହୋଇଗଲା।

ପରିସ୍ଥିତି ବହୁତ ଖରାପ ହେଲା ଯେତେବେଳେ ବନ୍ଦା ସିଂହ ତୃତୀୟ ବିବାହ କରି ନିଜ ସନ୍ତାନସନ୍ତତିର ସଂଖ୍ୟା ବଢ଼ାଇ ଚାଲିଲା। ଏହି ସମାଚାର ମାତା ସୁନ୍ଦରୀଙ୍କୁ ଜଣା ପଡ଼ିଲା- ବନ୍ଦା ସିଂହକୁ ଏହି ବିଷୟରେ ପ୍ରତିବନ୍ଧ ଲଗାଇଲେ ଓ ଲେଖି ପଠାଇଲେ। ସେ ମାତା ସୁନ୍ଦରୀଙ୍କ ବିରୋଧରେ ବହୁତ ଅପଶବ୍ଦ ବ୍ୟବହାର କରିଲା। ତର୍କ ୨/୩ ବର୍ଷ ଲାଗିରହିଲା। ଶେଷରେ ମାତାଜୀଙ୍କ ଆଦେଶ ଅନୁଯାୟୀ ସିଦ୍‌କୀ ସିଂହ ଅଲଗା ହୋଇଗଲେ। ସେମାନେ ତତ୍ ଖାଲସା ନାମରେ ପ୍ରସିଦ୍ଧ ହୋଇଗଲେ ଓ ବନ୍ଦା ସିଂହର ପକ୍ଷମାନଙ୍କୁ ବନ୍ଦଇ କୁହାଗଲା। ପଥ ମଧ୍ୟ ଅଶାନ୍ତ ହୋଇଗଲା। ବନ୍ଦା ସିଂହ ପୂରାପୂରି ଓଲଟା ହୋଇଗଲା। ଏହା ଦେଖି ମାତାଜୀ ତା ପାଖକୁ ଲେଖିଲେ- ବନ୍ଦା ସିଂହ ତୁ ବର୍ତ୍ତମାନ ଗୁରୁଙ୍କ ବଚନ ବିରୋଧରେ ରହି ସମ୍ପୂର୍ଣ୍ଣ ଭାବେ ନାସ୍ତିକ ହୋଇଗଲୁ; ସେଥିପାଇଁ ମନେରଖ, ଗୁରୁଜୀଙ୍କ ବରଦାନ ମଧ୍ୟ ତୋ ପାଖରେ ରହିବ ନାହିଁ।

ଠିକ୍ ସେହି ଦିନମାନଙ୍କରେ ବାହାଦୁର ଶାହାର ପୁତ୍ରକୁ ମାରି ତା'ର ପୁତୁରା ଫରୁଖସୀୟର ଦିଲ୍ଲୀର ସିଂହାସନ ଗ୍ରହଣ କରିଲା। ତାହା ନିକଟରେ ପଞ୍ଜାବ ମଧ୍ୟ ବହୁତ ବଡ଼ ସମସ୍ୟା ଥିଲା। ସେ ଖାଲସାମାନଙ୍କ ମତଭେଦର ଲାଭ ଉଠାଇଲା ଓ ମାତା ସୁନ୍ଦରୀଙ୍କୁ ମଝିରେ ରଖି ତତ୍ ଖଲସା ବନ୍ଦଇ ଖାଲସାଙ୍କୁ ପୂରାପୂରି ଅଲଗା କରିଦେଲା। ୧୭୭୨ ମସିହା ଶେଷରେ ବନ୍ଦା ସିଂହ ମଧ୍ୟ ତତ୍ ଖାଲସାର ବିରୋଧୀ ହୋଇଗଲା ଓ ନିଜ ବିଜୟର ଅହଂକାର ଦେଖାଇଲା। ବିରୋଧତା ଏପରି ଭାବେ ବଢ଼ିଗଲା କି ବନ୍ଦା ସିଂହ ପୂରାପୂରି ଗୁରୁ ହେବା ପାଇଁ ଶ୍ରୀ ହରିମନ୍ଦିର ସାହିବ୍(ସ୍ୱର୍ଣ୍ଣମନ୍ଦିର) ଠାରେ ଆସନ ଉପରେ ତକିଆ ଲଗାଇ ବସିବା ଓ ମସ୍ତକ ଉପରେ ଝମର ଚଳାଇବା ପ୍ରବନ୍ଧ କରିଦେଲା। ତତ୍ ଖାଲସାମାନେ ଜାଣି ପାରିଲେ ଓ ସେମାନେ ଶତ୍ରୁକୁ ଫାଇଦା ହୋଇପାରେ। ତତ୍ ଖାଲସାକୁ ଖବର ଦେଲା ଓ ସେମାନେ ନିଷ୍ପତ୍ତି କରିଲେ କି କୌଣସି ଭାବେ ଏହାକୁ ସଫଳ ହେବା ଅନୁଚିତ ଯାହା କିଛି ହୋଇଯାଉ, ଦରକାର ହେଲେ ପ୍ରାଣ ଦେବୁ। ଶତ୍ରୁକୁ ଏହା ଦ୍ୱାରା ଲାଭ ହେଉ କିନ୍ତୁ ଏହି ବିପଦର ସମ୍ମୁଖୀନରୁ ଉଦ୍ଧାର ପାଇବାକୁ ହେଲେ ମସ୍ତକ ଦାନ କରୁଥିବା ଶିଖମାନଙ୍କ ଦ୍ୱାରା ହିଁ କେମିତି ଭୁଲ୍ ହୋଇଯିବ ? ଏମିତି ହେବାକୁ ଦେବୁ ନାହିଁ। ବନ୍ଦା ସିଂହ ଯେତେବେଳେ ଏହି ନିୟମ ଭଙ୍ଗ କରି ଶ୍ରୀ ହରିମନ୍ଦିର ସାହିବ୍(ସ୍ୱର୍ଣ୍ଣମନ୍ଦିର) ସାହିବ୍ ଠାରେ ଆସି ବସିଲା, ତତ୍ ଖାଲସାର ମୁଖ୍ୟ ସିଂହମାନେ ପ୍ରତିରୋଧ କରିଲେ ଓ ସ୍ୱର୍ଣ୍ଣ ମନ୍ଦିରରୁ ବାହାର କରିଦେଲେ।

ବନ୍ଦା ସିଂହ ବାହାରକୁ ଆସି ତତ୍ ଖାଲସାଙ୍କ ବିରୋଧରେ ବହୁତ ଅପଶବ୍ଦ ପ୍ରୟୋଗ କରିଲା ଓ କହିଲା- "ଆପଣମାନେ ମୋ ବ୍ୟତୀତ କି ଛାର ? ମୁଁ ଦକ୍ଷିଣ ଦିଗରୁ ଆସି ଆପଣମାନଙ୍କୁ ସହାୟତା କରି ଉଦ୍ଧାର କରିଲି। ମୋର କର୍ତ୍ତୃତ୍ୱ ଭୁଲିଗଲ। ସେଥିଯୋଗୁଁ ମନେ ରଖ ! ବର୍ତ୍ତମାନ ମୁଁ ଲାହୋରଠାରୁ ଦିଲ୍ଲୀ ଯାଏଁ ବିଜୟ ପ୍ରାପ୍ତ କରି ତୁମ୍ଭମାନଙ୍କୁ ଚାକର କରି ରଖିବି। ସେଥିଯୋଗୁଁ ବନ୍ଦା ସିଂହ ସେତେବେଳେ ବହୁତ ଅପଶବ୍ଦ ଓ ନିରାଦର ଶବ୍ଦ ପ୍ରୟୋଗ କରିଥିଲା। ସିଂହମାନେ କହିଲେ- 'ତୁ ଗୁରୁଜୀଙ୍କ ବରଦାନ ଶକ୍ତି ଦ୍ୱାରା ସବୁ କିଛି କରିଛୁ', ସେଥିଯୋଗୁଁ ଯଦି ତୁମେ ଶକ୍ତି ଓ ବରଦାନ କରିବ, ଗୁରୁଜୀଙ୍କ ଶିକ୍ଷା ମାନିବ ନାହିଁ ତା'ହେଲେ ସେହି ଶକ୍ତି ଗୁରୁଜୀଙ୍କ ବରଦାନ ତୋ ପାଖରେ ରହିବ ନାହିଁ। ସବୁ କିଛି ଆମ ପାଖକୁ ଆସିଯିବ"।

ସେହି କାରଣ ଯୋଗୁଁ ତତ୍ ଖାଲସା ଓ ବନ୍ଦା ସିଂହ ମଧ୍ୟରେ ବୈରତା ଆସିଗଲା । କେତେକ ସ୍ଥାନରେ ପରସ୍ପର ମଧ୍ୟରେ ମାର- କାଟ ହୋଇଥିଲା । କାରଣ ବନ୍ଦଇ ବନ୍ଦା ସିଂହ ମନରେ ଏକାଦଶ ଗୁରୁ ଭାବେ ପ୍ରକଟ ହୋଇଯିବା ସକାଶେ ପ୍ରବଳ ଇଚ୍ଛାଥିଲା ଓ ସେ ସିଂହମାନଙ୍କ ବିରୋଧରେ କହୁଥିଲା । ପନ୍ଥ ପ୍ରକାଶ ମଧ୍ୟରେ ଜ୍ଞାନୀ ଜ୍ଞାନ ସିଂହଜୀ ଲେଖିଛନ୍ତି- ଦ୍ୱୟା ଛନ୍ଦ ।

"ଜା ଦିନ ତେ ମାତା କା ଲିଖିଆ, ମାନ ପନ୍ଥ ନେ ଲୀଓ ।
ବାତ୍ ବାତ୍ ମୈ ବନ୍ଦଇୟନ ସୋ ଲଡ଼ନ ସିଂହ ଥପ ଲୀଓ ।
ତବ ଲୌ ମେଲେ ବୈଶାଖୀ ପର, ଅମୃତସର ସବ ଆଏ ।
ଗୁରୁ କେ ମନ୍ଦର ଅନ୍ଦର ବନ୍ଦା, ବୈଠା ଗଦ୍ଦୀ ଲାୟେ ।
ଅପନା ଶିର ପର ଚବର କରାବେ, ଅପନେ ଚରଣେ ପୂଜୈ ହେଁ ।
ଠୌର ଠୌର ଉସ୍ ଦେ ଶିଖ ଉସ୍‌କୋ ଗୁରୁ ଗ୍ୟାରବାଁ କହେ ହେଁ ।
ରୀତି ଅନୀତି ଏହୁ ପିଖ ତିସକୀ ରିସୟୋ ପଥ ସମଦାୟୀ ।
ମନ୍ଦର ତେ ଅନ୍ଦର ହୈ ବନ୍ଦା, ଦିନୋ ଯାଏ ଉଡ଼ାଇ । ।"

ଏହିପରି ଭାବେ ପ୍ରାଚୀନ ପନ୍ଥ ପ୍ରକାଶର କର୍ତ୍ତା ଭାଇ ରତନ ସିଂହଜୀ ଭଙ୍ଗୁ ଲେଖିଥିଲେ କି ବନ୍ଦା ସିଂହ ବାହାଦୁର ଯେମିତି ଗୁରୁମତିର ବିପରୀତ କଥା କରିଲା ଓ ମାତା ସୁନ୍ଦରୀଜୀ ତତ୍ ଖାଲସାଙ୍କୁ ତାହାର ସାଥି ଛାଡ଼ିବା ପାଇଁ କହିଲେ ତତ୍ ପଶ୍ଚାତ୍ ତତ୍ ଖାଲସାମାନେ ଓ ବନ୍ଦା ସିଂହର ସେବକ ଓ ସିଂହ ପରସ୍ପର ମଧ୍ୟରେ ଅଶାନ୍ତି ହୋଇଗଲା । ଶେଷରେ ତୁର୍କୀମାନେ ଏହାର ଫାଇଦା ଉଠାଇଲେ ଓ ତତ୍ ଖାଲସାମାନଙ୍କୁ ହାତ କରିନେଲେ । ଫାରୁଖ୍‌ସିୟରର ସେନା ବନ୍ଦା ସିଂହକୁ ଗୁରୁଦାସ ନଙ୍ଗଲର ଦୁର୍ଗଠାରେ ବନ୍ଦୀ କରିଲେ ଓ ଦିଲ୍ଲୀ ଠାରେ ଶହୀଦ କରାଇଲେ ।

ଏହିପରି କବି ଚୂଡ଼ାମଣି ଭାଇ ସନ୍ତୋଖ ସିଂହଜୀ ଲେଖିଥିଲେ- ଏମିତି କି କଥା ଥିଲା କି ବନ୍ଦା ସିଂହର ମନରେ ଜିଦ୍ଦି ଆସିଲା ଓ ତତ୍ ଖାଲସାଙ୍କ ମନରେ ମଧ୍ୟ, ଏହିପରି ପରସ୍ପରଙ୍କ ମନରେ ଅଶାନ୍ତିର ଢେଉ ଖେଳିଲା ଓ ଶତ୍ରୁଙ୍କୁ ଶିଖମାନଙ୍କ ଶକ୍ତି ସମାପ୍ତ କରିବା ପାଇଁ ବନ୍ଦା ସିଂହକୁ ଶହୀଦ କରିବା ପାଇଁ ଜୁଆ ଖେଳିଦେଲେ । ଏହା ସଂପୃକ୍ତରେ ଐତିହାସିକମାନେ ଶୋକ ପ୍ରକଟ କରିଛନ୍ତି, କିନ୍ତୁ ଭାଗ୍ୟକୁ କିଏ ଲିଭାଇ ପାରିବ ? ଶେଷରେ ବନ୍ଦା ସିଂହ ଅମୃତସରଠାରୁ ଗୁରୁଦାସପୁର ଚାଲିଯାଇଥିଲେ ।

ଏହା ଦେଖି ୧୭୭୩ ମସିହାରେ ଫାରୁଖସିୟର ତତ୍ ଖାଲସାଙ୍କୁ ଜମିଦାର ସ୍ୱରୂପରେ ଜାଗିର ଦେଇ ସମ୍ପୂର୍ଣ୍ଣ ଭାବେ ବଶୀଭୂତ କରିଦେଲା ଓ ବନ୍ଦା ସିଂହ ବିରୋଧରେ ସେନା ବଢ଼ାଇଲା। ବହୁତ ଦିନ ଧରି ଯୁଦ୍ଧ ଲାଗିରହିଲା ଓ ବନ୍ଦା ସିଂହର କିଛି କ୍ଷତି ହୋଇ ପାରିଲା ନାହିଁ। ସେ ପ୍ରଥମେ ବନ୍ଦା ସିଂହର ଲାହୋର ଅଧିକାର କରିବା ଯୋଜନା ପ୍ରସ୍ତୁତ କରି ଦଶହଜାର ସେନା ସହିତ ଲାହୋରରେ ପହଞ୍ଚିଲା। ସୁବେଦାର ଲାହୋରର ସାହାଯ୍ୟ ସକାଶେ ବାବା ମୀର୍ ସିଂହ ତିନି ହଜାର ସିଂହ ସହିତ ଅମୃତସରଠାରେ ପହଞ୍ଚିଲା। ସିଂହମାନଙ୍କୁ ବିଶେଷ ଧନ ଦେଇ ଡକାଇଲା। ସେଥି ଯୋଗୁଁ ଲାହୋର ବାହାରେ ଗୋଟିଏ ଯୁଦ୍ଧ ଆରମ୍ଭ ହେଲା। ଦ୍ୱିପ୍ରହରର ଯୁଦ୍ଧ ଦ୍ୱାରା ରକ୍ତପାତ ହେଲା। ବନ୍ଦା ସିଂହକୁ କୌଣସି ଶୁଭ ଲକ୍ଷଣ ଜଣାଗଲା ନାହିଁ। ସେ କଲଗୀଧର (ଦଶମପିତା ଶ୍ରୀ ଗୁରୁ ଗୋବିନ୍ଦ ସିହ)ଙ୍କ ବକଶିଶ ତୀର ପ୍ରୟୋଗ କରି ବିଜୟ ପ୍ରାପ୍ତର ଚେଷ୍ଟା କରିଲା ଓ ବୀରମାନଙ୍କୁ ମଧ୍ୟ ଆଗରେ ଅଟକାଇ ରଖିଲା। କିନ୍ତୁ ବାବା ମୀର୍ ସିଂହଙ୍କ ଆକ୍ରମଣ ତା'ର ସମସ୍ତ ଚେଷ୍ଟା ବିଫଳ କରିଦେଲା। ସେହି ବନ୍ଦା ସିଂହ ଯାହାର ଭୟରେ ଶତ୍ରୁମାନେ ପ୍ରାଣ ବଞ୍ଚାଇ ଦୌଡୁଥିଲେ ସେ ଆଜି ଲାହୋର ଠାରୁ ଦୌଡ଼ି ଦୌଡ଼ି ବଟଲାଠାରେ ଶ୍ୱାସ ବଦଳାଇଲା ଓ ବୁଝିପାରିଲା କି ଗୁରୁ ମୋର ଶକ୍ତି ଫେରାଇ ନେଲେ। ବନ୍ଦା ସିଂହ ବର୍ତ୍ତମାନ ତତ୍ ଖାଲସା ସହ ହାତ ମିଳାଇବାକୁ ଚାହିଁଲା, କିନ୍ତୁ ଜବାବ ମିଳିଲା ତୁମେ ଧନ ଲାଳସା ଓ ଲାଞ୍ଚଖୋର ଅଟ। ପ୍ରଥମେ ଭୁଲ୍ ମାନିନିଅ ଓ ଅମୃତ(ଛକ) ଚାଖିନିଅ। ପୁଣି ତୋ ସହିତ ମିଶିବା ପ୍ରଯତ୍ନ କରାଯିବ।

ବନ୍ଦା ସିଂହ ନିକଟରେ ପୋଥି ଓ ଗୁଟକା(ଗୁରୁବାଣୀର ଛୋଟ ଛୋଟ ଭାଗରେ ବିଭକ୍ତ ବହି) ଥିଲା। ସେଥିରେ ସେ ଯନ୍ତ୍ର ମନ୍ତ୍ର ଲେଖିଥିଲା। ତାହା ମଣ୍ଡିର ରାଜା ପାଖରେ ଥିଲା। ସେ ରାଜାକୁ ମାଗିଲା, ରାଜା ଦେଇ ନ ଥିଲା। ବନ୍ଦା ସିଂହ ନିଜର ଯନ୍ତ୍ର ମନ୍ତ୍ର ସାହାଯ୍ୟରେ ବଞ୍ଚିବାକୁ ଚାହୁଁଥିଲା। କିନ୍ତୁ ସେହି ପ୍ରଯତ୍ନ ମଧ୍ୟ ବିଫଳ ହେଲା। ସେ ବହୁତ ନିରାଶ ହୋଇଗଲା ଓ ଗୁରୁଦାସ ନଙ୍ଗଲର ଦୁର୍ଗକୁ ଚାଲିଗଲା।

ଏମିତି ପରିସ୍ଥିତିର ସମସ୍ତ ଖବର ଫାରୁଖସିୟରକୁ ପ୍ରତି କ୍ଷଣରେ ଖବର ମିଳୁଥିଲା। ବର୍ତ୍ତମାନ ସେ ସୈନ୍ୟମାନଙ୍କୁ ଆଦେଶ ଦେଲା କି ବନ୍ଦା ସିଂହକୁ ଅଚାନକ ଘେରାଉ କରି ବନ୍ଦୀ କର। ଗୁରୁଦାସ ନଙ୍ଗଲରେ ବସିଥିବା ବନ୍ଦା ସିଂହକୁ ମଧ୍ୟ ଏହାର ଖବର ମିଳିଲା ଓ ସେ ନିଜେ ମଧ୍ୟ ପ୍ରସ୍ତୁତ ହୋଇଗଲା। କିନ୍ତୁ ମନ ଉଦାସ

ଥିଲା । କାରଣ ପାହାଡ଼ ଯିବା ପାଇଁ ମନ ନ ଥିଲା । ତାହାର ଦୁଇପୁତ୍ର ଓ ଦୁଇ ପତ୍ନୀ ମଧ୍ୟ ତା ପାଖରେ ନ ଥିଲେ । ପ୍ରଥମେ ଅଳ୍ପ ସଂଖ୍ୟାରେ ସେନା ବାହାରେ ଥିଲେ । ଯାହାକୁ ମାରି ପିଟି ସେମାନେ ଶିଖ୍‌ମାନଙ୍କ ଠାରୁ ବାହାରକୁ ଯାଇ କିଛି ସାମାନ ଆଣି ପାରୁଥିଲେ । କିନ୍ତୁ ଏହା ପରେ ଶାହୀ ସେନାବାହିନୀ ବଡ଼ ଦ୍ରୁତ ଭାବେ ଘେରି ନେଲେ ଯାହା ଦ୍ୱାରା ବାହାରକୁ ବାହାରିବା ମାନେ ବଞ୍ଚି ଫେରିବା ମଧ୍ୟ ଅସମ୍ଭବଥିଲା । ଆଗାମୀ ଦିନ ବନ୍ଦା ସିଂହ ସକାଶେ ବଡ଼ ସଙ୍କଟଦିନ ଆସିଗଲା । ଦଶମପିତା କଲଗୀଧର ଶ୍ରୀ ଗୁରୁଗୋବିନ୍ଦ ସିଂହ ଜୀ ମହାରାଜଙ୍କର ବରଦାନ ଶକ୍ତି ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲା । କିନ୍ତୁ ବର୍ତ୍ତମାନ ମଧ୍ୟ ଭୂତ, ପ୍ରେତ ତାହାର ସଙ୍ଗ ଛାଡ଼ିଦେଲେ । ସେଥିଯୋଗୁଁ ବନ୍ଦା ସିଂହ ଓ ତାହାର ସାଥି ବନ୍ଦଇ ସିଂହମାନେ ଉତ୍ତେଜିତ ହୋଇ ଲଢ଼ିଲେ । ଯାହା ଦ୍ୱାରା ହଜାର ହଜାର ଶତ୍ରୁଙ୍କୁ ଧରାଶାୟୀ କରିଦେଲେ । ସେମାନେ ପୁଣି ସେନାପତିଙ୍କ ଆଦେଶ ଅନୁଯାୟୀ ଦୁର୍ଗକୁ ଘେରି ରହିଲେ । ତାହା ଏମିତି ଭାବେ କେତେ ମାସ ରହିଲା । ପ୍ରାୟ ଛ'ମାସ ଘେରାଉ ହୋଇ କେତେକ ସିଂହ କ୍ଷୁଧାର୍ତ୍ତରେ ମରିଗଲେ ଓ ଅନ୍ୟମାନେ ଖାଦ୍ୟାଭାବରେ କଙ୍କାଳସାର ହୋଇଗଲେ । ବୃକ୍ଷର ଡାଳପତ୍ର ଓ ମାଟି ଖାଇ ଖାଇ ମଧ୍ୟ ସିଂହମାନେ ନିଜର ପ୍ରାଣ ବଞ୍ଚାଇ ରଖିବାକୁ ଚେଷ୍ଟା କରିଲେ । ଏହା ଦେଖି ବନ୍ଦା ସିଂହ କହିଲା- ମୁଖ୍ୟଦ୍ୱାର ଖୋଲିଦିଅ ଓ ବନ୍ଦୀ ହୋଇଯାଅ । ଦ୍ୱାର ଖୋଲିବା ହିଁ ଡେରିଥିଲା । ଶତ୍ରୁମାନେ ଅତିଶୀଘ୍ର ସିଂହମାନଙ୍କୁ ଜୀବିତ ଅବସ୍ଥାରେ ବନ୍ଦୀ କରିଲେ ଓ ବନ୍ଦା ସିଂହ ମଧ୍ୟ ବନ୍ଦୀ ହୋଇଗଲା । ବନ୍ଦା ସିଂହର ବନ୍ଦୀ ହେବା ଖୁସିରେ ବହୁତ ବଡ଼ ମହୋତ୍ସବ ହୋଇଥିଲା । ଶତ୍ରୁମାନଙ୍କ ତରଫରୁ ଜରଦା, ପଲଉ, ମିଠା ବଣ୍ଟା ଯାଇଥିଲା । କେତେକ ସ୍ଥାନରେ ଦୀପମାଳ ସଜା ଯାଇଥିଲା ।

ବର୍ତ୍ତମାନ ସୁଦ୍ଧା ମୁସଲମାନମାନେ ବନ୍ଦା ସିଂହକୁ ଡରୁଥିଲେ । ସେଥିଯୋଗୁଁ ତାହାକୁ ଲୁହା ପିଞ୍ଜରା ମଧ୍ୟରେ ବନ୍ଦୀ କରି ରଖିଥିଲେ ଓ ଅନ୍ୟମାନଙ୍କୁ ଶିକୁଳିରେ ବାନ୍ଧି ଦିଲ୍ଲୀ ନେଇଥିଲେ । ରାସ୍ତାରେ ବହୁତ ସିଂହମାନଙ୍କୁ ବନ୍ଦୀ କରାଗଲା । ରାସ୍ତାରେ ସିଂହମାନେ "ସାଧୋ ଇହ ତନ ମିଥିଆ ଜାନୋ" ଇତ୍ୟାଦି ବୈରାଗ୍ୟମୟ ଶବ୍ଦ ଉଚ୍ଚାରଣ ଓ ଜୟକାର ଦେଇ ବନ୍ଦା ସିଂହର ସାଥିମାନେ ସିରଡ଼ି ସଂହ ଦିଲ୍ଲୀଠାରେ ପହଞ୍ଚିଲେ ଓ ସେଠାରେ ବଜାର ବଜାର ବୁଲାଇ ପୁଣି ବନ୍ଦୀଗୃହରେ ରଖିଲେ । କେତେ ଦିନ ପରେ ୪୦/୫୦ ଜଣ ସିଂହଙ୍କୁ ପ୍ରତିଦିନ ଋନ୍ଦିନୀଚୌକଠାରେ ପହଞ୍ଚାଇ

ହତ୍ୟା କରିବାକୁ ଲାଗିଲେ। ସିଂହମାନେ ଶବ୍ଦ ପଢ଼ି(ଉଚ୍ଚାରଣ) ଓ ଜୟକାର ସହ ଯାଉଥିଲେ ଓ ବଡ଼ ନିର୍ଭୀକତା ଭାବେ ପ୍ରାଣଦଣ୍ଡ ପାଉଥିଲେ।

(ଏହି ବୈରାଗୀ ସାଧୁ କିଏ ? ସେ ୩୯ ବର୍ଷରେ ସାଧୁ ବ୍ରହ୍ମଚର୍ଯ୍ୟରେ ଅଭୁତ ଥିଲା। ହୃଷ୍ଟପୁଷ୍ଟ ଶରୀର, ସୁନ୍ଦର ଓ ପ୍ରଭାବଶାଳୀଥିଲା। ସେ ପୂର୍ବରୁ ରାଜୌରୀ(ଜମ୍ମୁ) ନିବାସୀ ଥିଲା ଓ ତାହାର ନାମ ଲକ୍ଷ୍ମଣ ଦାସଥିଲା। ପ୍ରଥମ ଯୌବନାବସ୍ଥାରେ ଭଲ ଶିକାର ଓ ତୀର ଚାଳନାରେ ଆଗ୍ରହୀ ଥିଲା। କିନ୍ତୁ ଦିନେ ହରିଣର ଶିକାର ପରେ ଯେତେବେଳେ ତାହାର ଗର୍ଭରୁ ଶାବକ ହରିଣ ବାହାରି ଆସିଲା ଓ ସେ ଛଟପଟ ହୋଇ ତାହା ସମ୍ମୁଖରେ ପ୍ରାଣ ହାରିଦେଲା। ସେହି ମର୍ମନ୍ତୁଦ ଦୃଶ୍ୟ ଦେଖି ତାହାର ମନରେ ବୈରାଗ୍ୟ ଜାତ ହେଲା। ସେହିଦିନ ଅସ୍ତ୍ରଶସ୍ତ୍ର ଫୋପାଡ଼ି ବୈରାଗୀ ହୋଇଗଲା। ଅହିଂସା ଧାରଣ କରି ଶାନ୍ତିପ୍ରିୟ ସକାଶେ ଗୃହତ୍ୟାଗ କରି ବ୍ରହ୍ମଚର୍ଯ୍ୟ ପଛରେ ପଡ଼ିଲା। ଶେଷରେ ବୁଲିବୁଲି ନାସିକ୍‌ର ପଂଚବଟୀରେ ପହଞ୍ଚିଲା। ସେଠାରେ ଜଣେ ମହନ୍ତ ଅମର ଦାସଙ୍କ ସହିତ ଆଶ୍ରମରେ ରହିଲା। ସେ ତାହାର ସେବାରେ ପ୍ରସନ୍ନ ହୋଇ ନିଜ ପରେ ତାକୁ ଆଶ୍ରମର ମହନ୍ତ ଦାୟିତ୍ୱ ଦେଇଥିଲେ। ସେ ଯାଦୁ, ମନ୍ତ୍ର ମଧ ଶିଖିଲା। ଶେଷରେ ନାସିକ୍‌ରୁ ଯାଇ ନାନ୍ଦେଡଠାରେ ପହଞ୍ଚିଗଲା। ସେଠାରେ ସେ ନିଜ କାମରେ ମସ୍ତ ଥିଲା।)

## ମା'ଙ୍କ ଠାରୁ ପୁତ୍ରକୁ ଛଡ଼ାଇବା ପ୍ରଯତ୍ନ

ଯେତେବେଳେ ସିଂହମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯାଉଥିଲା ଠିକ୍ ସେତେବେଳେ ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା। ଜଣେ ନବବିବାହିତ ୧୯/୨୦ ବୟସର ଯୁବକ ଶବାରିରେ ଆସୁଥିବାବେଳେ ରାସ୍ତାରେ ମୁସଲମାନ ସେନାମାନେ ତାକୁ ଧରିନେଲେ। ସେ ବନ୍ଦା ସିଂହ ସହିତ ଦିଲ୍ଲୀ ଆସିଥିଲା। ସେ ତା' ମା'ର ଏକମାତ୍ର ପୁତ୍ର ଥିଲା। ମା' ଦିଲ୍ଲୀରେ ପହଞ୍ଚିଲା ଓ ତା ପୁଅକୁ ଫେରାଇବା ପାଇଁ ବହୁତ ଚେଷ୍ଟା କରିଲା। ସବୁ ଚେଷ୍ଟା ତା'ର ବିଫଳ ହୋଇଥିଲା। ଶେଷରେ ଜଣେ ମୁସଲମାନ ସମର୍ଥକ ତାହାର ମା'କୁ କହିଲା ଆଜି ତୋ ପୁତ୍ରର ମୃତ୍ୟୁଦଣ୍ଡର ପାଳି ପଡ଼ିଛି। ଯଦି ତୁମେ ତାକୁ ବଞ୍ଚାଇବାକୁ ଇଚ୍ଛା କରୁଛ ତା'ହେଲେ ତୁମେ ଆଜି ଯାଇ ଫାରୁଖସିୟର ବାଦଶାହର ହାତୀପାଦ ତଳେ ଶରଣ ପଶି ତାକୁ ଅନୁରୋଧ କର, ବୋଧହୁଏ ସେ ଦୟା କରିପାରେ। ଯେଉଁପଟୁ ବାଦଶାହ ଆସେ ତା'ର ଖବର ସଂଗ୍ରହ କରିଲା ଓ

ସେହିପଟକୁ ଚାଲିଲା । ଯେତେବେଳେ ବାଦଶାହର ପାଲିଙ୍କି ଆସିଲା ସେ ହାତୀ ଆଗରେ ଶୋଇପଡ଼ି ଅନୁରୋଧ କରିଲା ଓ ଜୋର୍‌ରେ କାନ୍ଦିଉଠିଲା । ଫାରୁଖସିୟର ହାତୀରୁ ଓହ୍ଲାଇ ମା'କୁ ପଚାରିଲା- 'ତୁମେ କାନ୍ଦୁଛ କାହିଁକି ?'

'ଜହାଁପନା', ଆଜି ମୋର ନିର୍ଦ୍ଦୋଷ ପୁତ୍ରର ହତ୍ୟା ହୋଇଯିବ । ମା' କହିଲା- ସେ ଶିଖ ନୁହେଁ ହିନ୍ଦୁ ଅଟେ । ତାହାକୁ ରାସ୍ତାରୁ ସେନାମାନେ ଭୁଲ୍‌ବଶତଃ ଧରିନେଲେ ।

"ଆମେ ଶିଖମାନଙ୍କୁ ହତ୍ୟା କରୁଛୁ, ହିନ୍ଦୁମାନଙ୍କୁ ନୁହେଁ । ଯଦି ତୁମର ପୁତ୍ର ହିନ୍ଦୁ ଅଟେ, ତାହାହେଲେ ତୁମ୍ଭ ପୁତ୍ରକୁ ହତ୍ୟା କରିବୁ ନାହିଁ" । ବାଦଶାହ ନିକଟରେ ଛିଡ଼ା ହୋଇଥିବା ସେବକକୁ ଆଦେଶ ଦେଲା କି ଶୀଘ୍ର ଯାଇ ହତ୍ୟାକାରୀକୁ କହିବୁ ତାହାର ହତ୍ୟା କରିବ ନାହିଁ । ଯେତେବେଳେ ବାଦଶାହଙ୍କ ପ୍ରେରିତ ଦୂତ ପହଞ୍ଚି ଦେଖିଲା ସେହି ଯୁବକଜଣକ ଫାଶି ପାଇଁ ପ୍ରସ୍ତୁତ ହୋଇ ହତ୍ୟା ସ୍ଥାନରେ ପହଞ୍ଚିସାରିଛି । ସେହି ବ୍ୟକ୍ତିଜଣକ ବାଦଶାହଙ୍କ ଆଦେଶ ପାଇ ତାକୁ ଉଦ୍ଧାର କରିଲା ଓ ତାକୁ ବାଦଶାହଙ୍କ ନିକଟରେ ପହଞ୍ଚାଇଲା । ଯୁବକ ଜଣକ ବହୁତ ଅନୁରୋଧ କରି କହିଲା- ମୋତେ କୁଆଡ଼େ ନେଇ ଯାଉଛ ଓ କାହିଁକି ମୋର ସାଥିମାନଙ୍କଠାରୁ ଅଲଗା କରୁଛ ? "କିନ୍ତୁ କେହି ତାର କଥା ଶୁଣିଲେ ନାହିଁ । ଯୁବକ ଜଣକ ସେଠାରେ ପହଞ୍ଚି ପଚାରିଲା- କାରଣ କ'ଣ ବାଦଶାହ ! ମୋତେ ମୋର ଭାଇମାନଙ୍କଠାରୁ କାହିଁକି ଅଲଗା କରୁଛ" ?

"ତୋର ମା' କହିଲେ କି ତୁ ଶିଖ ନୁହଁ, ସେଥିଯୋଗୁଁ ତୁମକୁ ଦୟାକରି ମୁକ୍ତ କରାଯାଉଛି । ଆଚ୍ଛା ! କିଏ କହିଲା ମୁଁ ଶିଖ ନୁହଁ ? ମୋର ମାଆ ମିଛ କହୁଛି । ମୁଁ କଲଗୀଧର ୧୦ମ ପିତା ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀଙ୍କ ଶିଷ୍ୟ ଓ ଶିଖ, ମରିବା ପାଇଁ ପ୍ରସ୍ତୁତ । ସେଥିଯୋଗୁଁ ବିଳମ୍ବ ନ କରି ମୋତେ ସେହିଠାରେ ପହଞ୍ଚାଇ ଦିଅ, ନଚେତ୍ (ସଚଖଣ୍ଡ) ସ୍ୱର୍ଗରେ ପହଞ୍ଚିବା ବୀରମାନଙ୍କଠାରୁ ମୁଁ ପଛରେ ପଡ଼ିଯିବି" ।

'ତୋର ମାଆ ମିଛ କହୁନି', ତା ସହିତ ତୁ ଶିଖମାନଙ୍କ ସକାଶେ ବଳିଦାନ କରି କାହିଁକି ପ୍ରାଣତ୍ୟାଗ କରିବୁ ? ତୁ ଚାଲିଯାଆ, ତୋର ବୟସ ଖେଳିବା, କୁଦିବା ବୟସ । ମା'କୁ ସୁଖ ଦେଇ ସେବା କରିବୁ"- ବାଦଶାହ କହିଲା ।

ନୁହଁ ! ମହାରାଜ ପରମାତ୍ମା ତୁମର ମଙ୍ଗଳ କରନ୍ତୁ । ଆପଣ ମୋତେ ଫାଶି ସ୍ଥାନରେ ପହଞ୍ଚାଇ ଦିଅନ୍ତୁ । ୪ଦିନର ଜୀବନ ସକାଶେ ମୋର ଶତ୍ରୁ ମାଆ, ମୋତେ ମୋର ସତ୍‌ଗୁରୁଙ୍କ ନିକଟରୁ ଦୂରେଇ ଦେଉଛି । ତୁରନ୍ତ ମୋର ଭାଇମାନଙ୍କ ନିକଟରେ

ପହଞ୍ଚାଇ ଦିଅ। ମୁଁ ଏହି ସୁଯୋଗ ହରାଇବା ପାଇଁ ଇଚ୍ଛା କରୁନି। ବିଳମ୍ବ ନ କରି ମୋର ରାସ୍ତା ଅବରୋଧ କର ନାହିଁ। ଦେଖ ମୋର ପ୍ରାଣ ଦଣ୍ଡ ପାଇବା ସାଥିମାନଙ୍କ ସକାଶେ ଆକାଶମାର୍ଗରେ ରଥ ଅପେକ୍ଷା କରିଛି। ସେମାନେ ସେଥିରେ ଚଢ଼ି ଗୁରୁପୁର (ପରମାତ୍ମା)ଙ୍କ ଠାରେ ପହଞ୍ଚି ଯାଉଛନ୍ତି। ହାଏ! ସେମାନଙ୍କ ସହିତ ଯିବା ପାଇଁ ମୋର ରାସ୍ତା ଅବରୋଧ କରନ୍ତୁ ନାହିଁ।

ଶୁଦ୍ଧ ଶିଖର କଥାରେ ପଥର ହୃଦୟ ମଧ୍ୟ ମହମ ହୋଇଗଲା। ବାଦଶାହ ମନରେ ମଧ୍ୟ ପ୍ରଭାବ ପଡ଼ିଲା ଓ ସେ କହିଲା- 'ଆଚ୍ଛା! ଯାଅ, ମୁଁ ତୋର ଶିଖ ହେବା କଥା ଜାଣି ମଧ୍ୟ ମୁକ୍ତି ଦେଉଛି।'

ବାଦଶାହ ତାକୁ ମୁକ୍ତ କରିବା ପାଇଁ ଆଦେଶ ଦେଲେ। ଯୁବକଜଣକ ସେଠାରୁ ହଲିଲା ନାହିଁ। ତା ଆଖିରୁ ଅଶ୍ରୁ ବୋହି ଚାଲିଛି। କହିଲା- ଜହାଁପନା! ମୁଁ ଏକା ଏକା ବଞ୍ଚିବାକୁ ଇଚ୍ଛା କରୁ ନାହିଁ। ଯଦି ମୋତେ ମୁକ୍ତି ଦେବାକୁ ଚାହୁଁଛନ୍ତି ତାହାହେଲେ ମୋର ଅନ୍ୟ ସାଥି ସିଂହମାନଙ୍କୁ ମଧ୍ୟ ମୁକ୍ତ କରନ୍ତୁ; ତାହାହେଲେ ମୁଁ ଯିବି।

ଫରୁଖସିୟରଙ୍କୁ ଶିଖ ଯୁବକର ଯୁକ୍ତି ଯୋଗୁଁ ତା'ର ହୃଦୟ ନରମ ହୋଇଗଲା। ସେ ଖୁସୀ ହୋଇ ଆଦେଶ ଦେଲେ ଏହାକୁ ମୁକ୍ତିଦିଅ ଓ ଏହାର ଅନ୍ୟସାଥି ଶିଖ ସିଂହମାନଙ୍କୁ ମୁକ୍ତ କରିଦିଅ। ସେଥିଯୋଗୁଁ ଏହି ଦୃଢ଼ ଶୁଦ୍ଧ ଶିଖ ଜଣକ ପ୍ରାୟ ୬୦ଜଣ ଶିଖ ସିଂହମାନଙ୍କୁ ପ୍ରାଣଦଣ୍ଡରୁ ବଞ୍ଚାଇଲା।

## ବନ୍ଦା ସିଂହ ବାହାଦୁର ଶହୀଦ

ବର୍ତ୍ତମାନ ବନ୍ଦା ସିଂହ ବାହାଦୁରର ଶହୀଦ ଖବର ପଢ଼ନ୍ତୁ। ଯେଉଁଦିନଠାରୁ ସେ ବନ୍ଦୀ ହୋଇଥିଲା। ସେ ଗୁରୁଙ୍କ ବଚନଠାରୁ ବିମୁଖ ହୋଇ ନିଜ କର୍ମର ଅନୁତାପ କରୁଥିଲା। ସବୁବେଳେ ଆସନ(ପଦ୍ମ)ରେ ଗ୍ରହଣ କରି ଗୁରୁ ଧ୍ୟାନରେ ମଗ୍ନ ଥିଲା। ଅନ୍ୟ ଅବଶିଷ୍ଟ ସିଂହ ଯେତେବେଳେ ଶହୀଦ ହୋଇଗଲେ ବନ୍ଦା ସିଂହ ବିଷୟରେ ବିଚାର ବିମର୍ଶ ହେବାକୁ ଲାଗିଲା କିପରି ତାହାର ମୃତ୍ୟୁଦଣ୍ଡ ହେବ? ସର୍ବ ପ୍ରଥମ ତାହାର ପୁତ୍ରକୁ ତାହାର ସମ୍ମୁଖରେ ହତ୍ୟା କରାଗଲା ଓ ତାହାର ମାଂସ ତା ମୁହଁରେ ଭର୍ତ୍ତି କରାଗଲା, ତଥାପି ସେ କିଛି ପରିବର୍ତ୍ତନ ହେଲା ନାହିଁ। କିନ୍ତୁ ତାହାର ଦୁଇ ପତ୍ନୀଙ୍କ କାନ୍ଦୁରେ ମୁଣ୍ଡ ପିଟିପିଟି ଜଣେ ପ୍ରାଣ ତ୍ୟାଗ କରିଲା ଓ ଅନ୍ୟ ଜଣେ ଧର୍ମ ତ୍ୟାଗ କରି ବନ୍ଦୀ ଗୃହରୁ ମୁକ୍ତ ହେଲା।

ବନ୍ଦା ସିଂହ ଧର୍ମ ତ୍ୟାଗ କରିଲା ନାହିଁ। ଅଟଳ ରହି ଶହୀଦ ପ୍ରାପ୍ତ ହେବା ନିମିତ୍ତ ନିଷ୍ପତ୍ତି ନେଲା। ସେଥିଯୋଗୁଁ କାଜିମାନେ ସ୍ଥିର କରିଲେ କି ଏ ବହୁତ ଦୁଷ୍ଟ ଓ ଜିଦ୍‌ଖୋର ଲୋକ। ଯାକୁ ଏମିତି ଦଣ୍ଡ ଦିଆଯାଉ, ଯାହାକି ସେ ଛଟପଟ ହୋଇ ମରିବ। ଏହିପରି ଭାବେ ମୋଗଲ ପଠାଣମାନଙ୍କୁ ମାରିବାର ପ୍ରତିଶୋଧ ନିଆଯାଉ। ଏହି ନିଷ୍ପତ୍ତି ପରେ ବନ୍ଦା ସିଂହ ବାହାଦୁରକୁ ଘନ୍ଦିନୀ ଚୌକଠାରେ ଉପସ୍ଥିତ କରାଗଲା। ବନ୍ଦା ସିଂହର ଶହୀଦକୁ ପୂରା ଦୁନିଆର ଜନତା ଦେଖିବା ପାଇଁ ପହଞ୍ଚିଲେ।

କାଜିମାନଙ୍କ ଆଦେଶ ଅନୁଯାୟୀ କୋଇଲା ଚୁଲ୍ଲା ଜଳାଇ ସେଥିରେ ଲୁହା ଶାବଳକୁ ଗରମ କରି ଲାଲ କରାଗଲା। ହତ୍ୟାକାରୀମାନେ ଗରମ ଶାବଳକୁ ବନ୍ଦା ସିଂହର ଜଙ୍ଘରେ ପୂରାଇ ଖଣ୍ଡ ଖଣ୍ଡ ମାଂସ ଟାଣି ବାହାର କଲେ। ଜଙ୍ଘରୁ ଧାର ଧାର ରକ୍ତ ବୋହିଚାଲିଲା ଓ ବନ୍ଦା ସିଂହ ସେହିପରି ସ୍ଥିର ରହିଲା। ଯେମିତିକି ତା'ର କିଛି ବ୍ୟାଘାତ ହୋଇ ନାହିଁ। ଦେଖିବା ଲୋକମାନେ ହାହାକାର ହୋଇ ରହି କହିଲେ କି- କେମିତି ମାଟିରେ ସେ ତିଆରି ହୋଇଛି ? ସମସ୍ତେ ଶୁଣିଥିଲେ କି ବନ୍ଦା ସିଂହ ସଙ୍କଟରେ ଅଛି, କିନ୍ତୁ ବର୍ତ୍ତମାନ ମରିବାରେ ମଧ୍ୟ ଘଞ୍ଚଲ୍ୟକର ଚମତ୍କାର କରିଦେଲା। କିଏ ଜଣେ ଦୌଡ଼ିଯାଇ ବାଦଶାହକୁ ତାହାର ଦରବାରରେ ସବୁକଥା ଶୁଣାଇଲା କି, ବନ୍ଦା ସିଂହ ଆଶ୍ଚର୍ଯ୍ୟ କରାଇଦେଲା, ଯେମିତି ଶୁଣିଥିଲୁ ସେମିତି ଦେଖିଲୁ। ବାଦଶାହର ମନକୁ ଶାନ୍ତ କରାଇବା ସକାଶେ ମନ୍ତ୍ରୀକୁ ପଠାଇଲା ଓ ମନ୍ତ୍ରୀ ସେହି ଦୃଶ୍ୟ ଦେଖି ବନ୍ଦା ସିଂହକୁ ପଚାରିଲା- 'ବନ୍ଦା ସିଂହ' କଥା କ'ଣ ? ତୁମକୁ କଷ୍ଟ ହେଉ ନାହିଁ। ତୁମ ଶରୀରରୁ ଖଣ୍ଡ ଖଣ୍ଡ ମାଂସ ବାହାରି ଚାଲିଛି।

ବନ୍ଦା ସିଂହ କହିଲା- ସେଥିଯୋଗୁଁ ଆପଣମାନଙ୍କୁ ଶିଖମାନଙ୍କର ସହନଶୀଳତା ବିଷୟରେ ବୁଝାପଡୁ ନାହିଁ, ଗୁରୁ ସେମାନଙ୍କୁ କେତେ ଦୃଢ଼ ଓ ଶୁଦ୍ଧ ହୃଦୟ ବରଦାନ ଦେଇଛନ୍ତି। ସେଥିଯୋଗୁଁ ଶିଖମାନେ ନିଜର ମନକୁ ଅନ୍ୟ ପଟରୁ ଛିଣ୍ଡାଇ ଭାଙ୍ଗି ଗୁରୁ ଚରଣରେ ଯୋଡ଼ି ଦିଅନ୍ତି। ଗୁରୁ ଚରଣରେ ଯୋଡ଼ି ହୋଇ ରହିବାର ଚିହ୍ନ ହେଉଛି କି ମିଥ୍ୟା ଶରୀରକୁ ଶିଖ କେବଳ ଗୋଟିଏ ବିଳାସମୟ ଘର ଭାବନ୍ତି ଓ ଅନ୍ୟ କୌଣସି ଅଟ୍ଟାଳିକା ତଥା ବିଳାସମୟ ଗୃହର କାନ୍ଥର ଦୁଇ ଚାରିଟା ଇଟା ବାହାରି ଆସେ। ତାହା ମଧ୍ୟରେ ରହିଥିବା ବ୍ୟକ୍ତିକୁ କ'ଣ ଦୁଃଖ ହୋଇପାରେ ! ସେହିପରି ଭାବେ ମୋର ଆତ୍ମା ଶରୀର ମଧ୍ୟରେ ରହି ଶରୀରର ଦୁଃଖ-ସୁଖ ମଧ୍ୟରୁ

ନିର୍ଲିପ୍ତ ହୋଇସାରିଛି । ପୁଣି ସେହି ନିର୍ଲିପ୍ତ ହୋଇଥିବା ଆତ୍ମାର କ୍ଷତବିକ୍ଷତ ହେବା ଦ୍ୱାରା ଦୁଃଖ କେମିତି ହେବ ?

ତମେତ ବହୁ ବିଖ୍ୟାତ ଥିଲ, ପୁଣି ବଡ଼ ଚମତ୍କାରୀ । ଧରାପଡ଼ିଗଲ କେମିତି ଓ ମୁସଲମାନମାନଙ୍କୁ ଅତ୍ୟାଚାର କାହିଁକି କରୁଥିଲ ?

ବନ୍ଦା ସିଂହ କହିଲା- ତୁମମାନଙ୍କୁ ମୋର ଅତ୍ୟାଚାର ବିଷୟରେ ମନେ ପଡ଼ିଗଲା, କିନ୍ତୁ ନିଜର ଅତ୍ୟାଚାର କଥା ମନେ ପଡୁ ନାହିଁ । ତମମାନଙ୍କ ଅତ୍ୟାଚାରର ଫଳ ମିଳିବା ଉଚିତ ନ ଥିଲା କି ? ସେହି ପରମାତ୍ମା ଅନନ୍ତ ଅଟନ୍ତି, ସେ ସମସ୍ତ ଅତ୍ୟାଚାରୀମାନଙ୍କୁ ଦଣ୍ଡଦେବା ପାଇଁ ତା ବିରୋଧରେ ଅନ୍ଧକାର ବାଦଲକୁ ଘୋଡ଼େଇ ଦିଅନ୍ତି ଓ ଏମିତି ହିଁ ହୋଇ ଆସୁଛି । ସେଥିଯୋଗୁଁ ମୁଁ ଅତ୍ୟାଚାର କରି ନାହିଁ, ତାହା ତୁମ ପାପକର୍ମର ଦଣ୍ଡ ଥିଲା । କିନ୍ତୁ ମୁଁ ଦଣ୍ଡଦାତା ଭୁଲିଗଲି ଓ ସତ୍‌ଗୁରୁଙ୍କ ପ୍ରେମମୟ ବରଦାନ ଯୁକ୍ତ ଶକ୍ତିର ପ୍ରତାପ ଭୁଲି ନିଜକୁ ନିଜେ ସର୍ବଶକ୍ତିମାନ୍ ଭାବିନେଲି, ତାହା ମୋର ଭୁଲ୍ ଥିଲା । ତାହା ଆଜି ତୁମମାନଙ୍କ ବନ୍ଦୀଗୃହରେ ଭୋଗିବାକୁ ପଡ଼ିଲା । ଯଦି ମୁଁ ସେହି ଭୁଲ୍ କରି ନ ଥାନ୍ତି, ତୁମେ କ'ଣ ପୃଥିବୀର କୌଣସି ଶକ୍ତି ମୋତେ କାରାଗାରରେ ରଖିବାର ଶକ୍ତି ନ ଥିଲା ।

ମନ୍ତ୍ରୀ ଏହି କଥା ଶୁଣି ବାଦଶାହଙ୍କ ପାଖକୁ ଚାଲିଗଲା ଓ ସମସ୍ତ ସମାଚାର ଶୁଣାଇଲା । ବର୍ତ୍ତମାନ ବାଦଶାହ ସନ୍ଦେଶ ପଠାଇଲା । ବନ୍ଦା ସିଂହ ! ତୁମେ ଯେମିତି କୁହ ସେମିତି ମରିବ । ବନ୍ଦା ସିଂହ ନିର୍ଭୀକତା ସହ ଉତ୍ତର ଦେଲା- "ମୁଁ କହୁ ନାହିଁ, ଯେମିତିକି ବାଦଶାହ ନିଜର ମୃତ୍ୟୁ ଚାହାନ୍ତି, ସେମିତି ମୋତେ ମୃତ୍ୟୁ ଦିଅ ।" ଏହା ଶୁଣି ଫାରୁଖସିୟର କ୍ରୋଧିତ ହୋଇଗଲା ଓ ବନ୍ଦା ସିଂହକୁ ହାତୀର ଗୋଡ଼ରେ ବାନ୍ଧି ଘୋଷାରି ଘୋଷାରି ମାରିବା ପାଇଁ ଆଦେଶ ଦେଲା । ଫରୁଖସୀୟରଙ୍କ ଆଦେଶ ଅନୁଯାୟୀ ସେମିତି ହିଁ କରାଗଲା । ବନ୍ଦା ସିଂହ ପୁରୁଣା ସାଧୁ ଥିଲା । ଜପ, ତପରେ ପାରଙ୍ଗମ ଥିଲା, ସେଥିପାଇଁ ସେ ସେହି ସମୟରେ ଏକାଗ୍ର ଚିତ୍ତରେ ଶ୍ୱାସ ଛାଡ଼ିଦେଲା । ହାତୀ ଘୋଷାରି ଘୋଷାରି ବନ୍ଦା ସିଂହର ଶରୀର ରୂପୀ ଡେରାକୁ ଖଣ୍ଡ ବିଖଣ୍ଡିତ କରିଦେଲା । ଏହିପରି ଭାବେ ବନ୍ଦା ସିଂହ ବାହାଦୁରର ୧୭୭୩ ମସିହାରେ ଶିଖ ପନ୍ଥ ପାଳନ ସହ ଶହୀଦ ହୋଇଥିଲେ ।

## ବନ୍ଦା ସିଂହଙ୍କ ଶହୀଦ ପରେ

ବାବା ବନ୍ଦା ସିଂହ ବହାଦୁରଙ୍କୁ ୧୭୭୩ ମସିହାରେ ଶହୀଦ କରାଯାଇଥିବା ସମୟରେ ବନ୍ଦଇ ସିଂହମାନଙ୍କର ୪ଟି ଦଳ ପଞ୍ଜାବରେ ବୁଲୁଥିଲେ ଓ ଡାକି ଡାକି ତୁର୍କୀ ହାକିମମାନଙ୍କର ସାମ୍ନା କରୁଥିଲେ। ସେମାନଙ୍କ ମଧ୍ୟରେ ବହୁତ ସିଂହ ଥିଲେ, ଯେଉଁମାନେ ବନ୍ଦା ସିଂହଙ୍କ ସମୟରେ ନବାବମାନଙ୍କ ଆଦେଶ ମାନି ଚଳୁଥିଲେ। ସେମାନଙ୍କ ପଛରେ ପଡ଼ି ତତ୍ ଖାଲସାଙ୍କ ଶତ୍ରୁଙ୍କୁ ଖୋଜୁଥିଲେ। କିନ୍ତୁ ବନ୍ଦା ସିଂହଙ୍କ ଶହୀଦ ହେବା ପରେ ସେମାନଙ୍କ ବୁଦ୍ଧି ଖୋଲିଯାଇଥିଲା। ଶାହୀ ସେନାମାନେ ଦିନରାତି ଏମାନଙ୍କ ପିଛା କରିବୁଲିଲେ। ସେହି ଦିନମାନଙ୍କରେ ତତ୍ ଖାଲସା ଅମୃତସରଠାରେ ଥିଲେ ଓ ଜମିଦାରୀର କର ଦ୍ୱାରା ସେମାନଙ୍କ ଭରଣ ପୋଷଣ ହେଉଥିଲା।

୧୭୭୫ ମସିହାରେ ଫାରୁଖସିୟର ମନ୍ତ୍ରୀମାନଙ୍କ ଉପରେ ବିରକ୍ତ ହୋଇଥିଲା ଓ ସେମାନଙ୍କ ସହିତ ବହୁତ ଘଟଣା ଘଟିଗଲା। ସେ ନିଜର କକା ବାହାଦୁର ଶାହର ପୁତ୍ର ସହ ଶତ୍ରୁତା କରିଲା ଓ ତାକୁ ଅନ୍ଧ କରାଇ ବନ୍ଦୀ ଗୃହରେ ରଖି ନିଜେ ସିଂହାସନରେ ମହମ୍ମଦ ଶାହ ରଙ୍ଗିଲା ବସିଲା। ସେ ସିଂହାସନ ଗ୍ରହଣ କରିବା ପରେ ତତ୍ ଖାଲସାମାନଙ୍କର ଜମିଦାରୀ ବନ୍ଦ କରିବା ପାଇଁ ଚାହିଁଲା। କିନ୍ତୁ ବନ୍ଦଇମାନଙ୍କ ଶକ୍ତି ଦେଖି ଚୁପ୍‌ଚାପ୍ ରହିଲା। ଯଦି ଏହି ଦୁଇଦଳ ଏକାଠି ହୋଇଯିବେ ତାହେଲେ ଆମ ପାଇଁ ସଙ୍କଟର ସମୟ ଆସିଯିବ। କିନ୍ତୁ ୱାହେଗୁରୁଙ୍କୁ ଏହି ଦୁଇ ଦଳର ମିଳନର ଆଜ୍ଞା ନ ଥିଲା। ଏହି ଦଳର ମେଳ ପସନ୍ଦ ଥିଲା। କାରଣ ବନ୍ଦଇ ସିଂହମାନେ ସେତେବେଳେ ମଧ୍ୟ ବନ୍ଦା ସିଂହଙ୍କ ନିୟମ ମାନି ଚଳୁଥିଲେ।

## ତତ୍ ଖାଲସା ଓ ବନ୍ଦଇମାନଙ୍କ ଝଗଡ଼ା ଓ ଯୁଦ୍ଧ

୧୭୭୬ ମସିହାରେ ବନ୍ଦଇ ଓ ତତ୍ ଖାଲସାମାନଙ୍କ ମଧ୍ୟରେ ଝଗଡ଼ା ବଢ଼ିଚାଲିଲା। ସେହି ବର୍ଷ ଦୀପାବଳୀ ସମୟରେ ଶ୍ରୀ ଅମୃତସରଠାରେ ସିଂହମାନଙ୍କ ବହୁ ସଂଖ୍ୟାରେ ଏକତ୍ରିତ ହୋଇଥିଲେ ଓ ବନ୍ଦଇମାନେ ମଧ୍ୟ ବହୁ ସଂଖ୍ୟାରେ ପହଞ୍ଚିଥିଲେ। ହରି ମନ୍ଦିର(ସ୍ୱର୍ଣ୍ଣ ମନ୍ଦିର) ଠାରେ ଅଗଣିତ ଧନ ଭେଟି ମିଳିଲା। ବନ୍ଦଇମାନେ ଦାବି କରିଲେ ଏହି ଧନ ମଧ୍ୟରୁ ଅଧା(ଏକଭାଗ) ତାଙ୍କୁ ଦେବା ପାଇଁ। ତତ୍ ଖାଲସାମାନେ କହିଲେ ତୁମେମାନେ ଗୁରୁଘର ଠାରୁ (ବେମୁଖ) ଅଲଗା

ଓ ଏକମତ ନୁହଁ ପୁଣି ଏହି ଧନରେ ତୁମମାନଙ୍କର କ'ଣ ଅଧିକାର ? ଏହି ବିଷୟକୁ ନେଇ ଝଗଡ଼ା ବଢ଼ିଗଲା ଓ ବନ୍ଦଇମାନେ ଲଢ଼େଇ କରିବା ପାଇଁ ପ୍ରସ୍ତୁତ ହୋଇଗଲେ । ଏହା ଦେଖି ଭାଇ ମନୀ ସିଂହ ଓ ପୁରୁଣା ସିଂହମାନେ ଚେଷ୍ଟା କରିଲେ କି ଯୁଦ୍ଧ ନ ହେଉ । ଶେଷରେ ଭାଇ ମନୀ ସିଂହ ଜୀ ହରିକି ପୌଡ଼ିଠାରେ କାଗଜ ଚିଠା କରି ଫିଙ୍ଗିବା ଓ ଯାହା ନାମରେ କାଗଜ ଚିଠି ମିଳିବ ତାହାର ନାମରେ ଶ୍ରୀ ହରିମନ୍ଦିର ସାହିବ୍ ଦାୟିତ୍ୱ ଦିଆଯିବ । ୪ଗୋଟି ଚିଠା ତତ୍ ଖାଲସାଙ୍କ ଓ ବନ୍ଦଇମାନଙ୍କର ଦୁଇ ଦଳର ମଧ୍ୟସ୍ଥତା ଗୁରୁ ଅଙ୍ଗର, ବନ୍ଦଇମାନେ ଏହି ବିଚାର ସହ ଏକମତ ହୋଇଗଲେ ଓ ଚିଠା ରଖାଗଲା । ତତ୍ ଖାଲସାଙ୍କ ଚିଠା ଭାସିଗଲା ଓ ଅନ୍ୟସବୁ ବୁଡିଗଲା । ଏହା ଦେଖି ତତ୍ ଖାଲସାଙ୍କ ଖୁସୀ ବଢ଼ିଗଲା ଓ ବନ୍ଦଇମାନେ କ୍ରୋଧିତ ହୋଇଗଲେ । ବନ୍ଦଇମାନଙ୍କର ମୁଖିଆ ସେତେବେଳେ ଅମର ସିଂହ ଜିଦ୍ଦିଆ ଥିଲା । ସେଥିଯୋଗୁଁ ବନ୍ଦା ସିଂହ ସ୍ଥାନରେ ନିଜେ ଗୁରୁ ହୋଇଥିଲା ଓ ଚମର ସେବା ନେଉଥିଲା । ସେ ବହୁତ କ୍ରୋଧିତ ହେଲା । ସେ ତତ୍ ଖାଲସାଙ୍କ ବିଜୟ ଯୋଗୁଁ କ୍ରୋଧିତ ଥିଲା । ତତ୍ ଖାଲସା ତାଙ୍କୁ ବୁଝାଇଲେ କି ସତ୍‌ଗୁରୁଜୀଙ୍କ ବିଚାର ଏହିପରି ଥିଲା ଓ ହୋଇଗଲା । ସେଥିଯୋଗୁଁ ବେକାର ଜିଦ୍ ନ କରି ତତ୍ ଖାଲସାମାନଙ୍କ ସହ ମିଳିମିଶି ଏକାଠି ରୁହ । କିନ୍ତୁ ଅମର ସିଂହ ମାନିଲା ନାହିଁ । ଦୁଇ ପକ୍ଷରେ ଯୁଦ୍ଧ ହେଲା । ଝଣ୍ଡେ ବୁଙ୍ଗେ ପାଖରେ(ସ୍ୱର୍ଣ୍ଣମନ୍ଦିର ଅବସ୍ଥିତ) ଅକାଳ ତଖତ୍ ସମ୍ମୁଖଠାରେ ଯୁଦ୍ଧ ଆରମ୍ଭ ହୋଇଗଲା । ଅମର ସିଂହ ମଧ୍ୟ ବହୁତ ଭଲ ବୀର ଥିଲା । ସେଥିଯୋଗୁଁ ସେ ବହୁତ ସିଂହମାନଙ୍କୁ ମାରିଦେଲା କିନ୍ତୁ ଶେଷରେ ଯେତେବେଳେ ସେ ମରିଗଲା ବନ୍ଦଇମାନେ ପ୍ରାଣ ବଞ୍ଚାଇବାକୁ ଲୁଚି ଛପି ଦୌଡ଼ିବାକୁ ଲାଗିଲେ । ଶହ ଶହ ସିଂହ ଦୁଇ ପକ୍ଷରୁ ମରିଗଲେ । ଏହାର ସୁଯୋଗ ନେଇ ମୁସଲମାନ ହାକିମମାନେ ଦୁଇ ପକ୍ଷ ବିବାଦରେ ଘିଅ ଢାଳିଲେ । ନାରଦ ମୁନି ଭଳି ଖେଳ ଖେଳିଲେ । ଦୁଇ ଦଳର ସିଂହମାନେ ଜଣେ ଜଣର ରକ୍ତର ତୃଷାର୍ତ୍ତୀ ହୋଇଗଲେ । କୁହାଯାଇଛି କି ବହୁ ସଂଖ୍ୟାରେ ବନ୍ଦଇ ସିଂହମାନେ ଏହି ମତାନ୍ତର ପରେ ତତ୍ ଖାଲସାଙ୍କ ସହିତ ହାତ ମିଳାଇଲେ ଓ ଠିକ୍ ରାସ୍ତାରେ ଆସିଯାଇଥିଲେ । କିନ୍ତୁ ଅବଶିଷ୍ଟ ବନ୍ଦଇମାନେ ଝଗଡ଼ାରେ ମଜ୍ଜି ରହିଲେ । ବହୁତ ସ୍ଥାନରେ ଯୁଦ୍ଧ ହେବା ଫଳରେ ବନ୍ଦଇମାନଙ୍କ ଦଳ ଭାଙ୍ଗିଗଲା । କେତେକ ମରିଗଲେ ଓ କେତେକ ତତ୍ ଖାଲସାଙ୍କ ସହିତ ମିଶିଗଲେ । ଏହିପରି ଭାବେ ଖାଲସାମାନଙ୍କ ରାସ୍ତାରେ କଣ୍ଟା ବୁଣି ରଖିଦେଲେ ।

## ହାକିମମାନଙ୍କର ତତ୍ ଖାଲସାମାନଙ୍କ ଉପରେ ଆକ୍ରମଣ

ବନ୍ଦା ସିଂହ ଶହୀଦ ହେବା ୫-୬ବର୍ଷ ବିତିଯିବା ପରେ ବନ୍ଦଇମାନଙ୍କର ଶକ୍ତି ପୂରା ଲୋପ ପାଇଗଲା। ତା'ପରେ ତୁର୍କୀର ହାକିମମାନେ ତତ୍ ଖାଲସାମାନଙ୍କର ଜମିଦାରୀ ବନ୍ଦ କରିଦେଲେ ଶତ୍ରୁତା ବଦଳରେ ଓ ସେମାନଙ୍କ ଠାରୁ କର ଆଦାୟ କରିବା ପାଇଁ ବିଚାର ଆରମ୍ଭ କରିଲେ। ଲାହୋରର ସୁବେଦାର ଅବଦୁଲ୍ ସମନ୍ଦ ଖାଁକୁ ବଦଳାଇ ସାହିବ୍ ମୁଲତାନ ପଠାଇ ଦିଆଗଲା ଓ ଲାହୋରର ସୁବା ତା'ର ପୁତ୍ର ଖାଁ ବାହାଦୁର(ଜକରିୟା ଖାଁ) ଦାୟିତ୍ୱରେ ଦିଆଗଲା। ସେ ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ସିଂହମାନଙ୍କର ଜମିଦାରୀ ବନ୍ଦ କରିଦେଲା ଓ ଜମିଦାରୀ ଜବତ କରିଦେଲା। ସିଂହମାନେ ଶାନ୍ତି ଚାହୁଁଥିଲେ ଓ କୌଣସି କାମରେ ପ୍ରଥମେ ଗଡ଼ବଡ଼ କରୁ ନ ଥିଲେ। ଯାହା କହୁଥିଲେ ତାହା କରି ଦେଖାଉଥିଲେ। ସିଂହମାନେ ହାକିମମାନଙ୍କର ଏହି ଅତ୍ୟାଚାର ସହ୍ୟ କରି ନିଜ ନିଜ ଅଞ୍ଚଳକୁ ଚାଲିଗଲେ ଓ କାମଧନ୍ଦାରେ ଲାଗିଲେ। ଦଳକୁ ବନ୍ଦୀ ଭାବେ ଯେବେ ଯାଏଁ ତତ୍ ଖାଲସାଙ୍କ ଦଳଯେବେ ଛିନ୍ନଛତ୍ର ହୋଇଗଲା ସେତେବେଳେ ମୁସଲମାନ ହାକିମମାନେ ଏହାକୁ ପୂରା ନଷ୍ଟ କରିବା ପାଇଁ ଯୋଜନା ପ୍ରସ୍ତୁତ କରିଲେ।

ସେମାନେ ତତ୍ ଖାଲସାମାନଙ୍କ ମଧୁର ବ୍ୟବହାର ସହ ସେମାନଙ୍କୁ ଭ୍ରମିତ କରି ତୁର୍କୀ ହାକିମ ଓ ସେମାନଙ୍କ ମଧରେ ଶତ୍ରୁତା ରଖିଥିଲେ। ସେଥିଯୋଗୁଁ କିଛି ଦିନ ପରେ ହଠାତ୍ ସୁବେଦାର ଖାନ୍ ବାହାଦୁର ସହର ଓ ଗ୍ରାମମାନଙ୍କରେ ଡେଙ୍ଗୁରା ପିଟି ଜଣାଇ ଦେଲା କି ବନ୍ଦା ସିଂହ ସମୟରେ କୌଣସି ସିଂହ ଦୁଃଖ ଦେଇଥିବ ତାହାହେଲେ ରିପୋର୍ଟ ଲେଖାଇପାର ଓ ତାହା ବିରୋଧରେ କାର୍ଯ୍ୟାନୁଷ୍ଠାନ କରାଯିବ। ଏହା ଶୁଣି ହଜାର ହଜାର ବିରୁଦ୍ଧ ପତ୍ର ସହ ହାକିମମାନଙ୍କୁ ଭେଟିବାକୁ ଲାଗିଲେ। ସେହି ଅଭିଯୋଗ ପତ୍ର ମାଧ୍ୟମରେ ହାକିମମାନେ ସିଂହମାନଙ୍କ ଘରେ ଆକ୍ରମଣ କଲେ ଓ ଅତ୍ୟାଚାରର ସୀମା ଟପିଗଲା। ସିଂହମାନଙ୍କ ଦଳ ଭାଙ୍ଗଯାଇଥିବାରୁ ସେମାନେ ଏହି ଅତ୍ୟାଚାରର ପ୍ରତିବାଦ କରିପାରିଲେ ନାହିଁ। ବନ୍ଦୀ ହୋଇ କାରାଗାରରେ ଭର୍ତ୍ତି ହେବାକୁ ଲାଗିଲେ। ଘର, ସମ୍ପତ୍ତି ସବୁ ଜବତ ହେଲା। ହଠାତ୍ ସିଂହମାନଙ୍କ ଉପରେ ସଙ୍କଟ ମାଡ଼ିଆସିଲା। କିନ୍ତୁ ୱାହିଗୁରୁ(ପରମାତ୍ମା)ଙ୍କ ବିଚାର ଲୀଳା ଅନ୍ୟ କିଛି ଥିଲା। ଯାହାକୁ ସେ ଉଦ୍ଧାର କରନ୍ତି ତାହାକୁ କିଏ ମାରିପାରିବ ?

ବନ୍ଦା ସିଂହ ସମୟରେ କେତେ ସିଂହମାନେ ପଞ୍ଜାବ ବାହାରେ ରାଜପୁତନା ଠାରେ ଚାକିରି କରୁଥିଲେ। ଯେବେ ସେମାନଙ୍କୁ ପଞ୍ଜାବର ଖବର ମିଳିଲା ସେମାନେ ଚାକିରି ଛାଡ଼ି ନିଜର ଭାଇମାନଙ୍କୁ ସାହାଯ୍ୟ ସକାଶେ ପଞ୍ଜାବଠାରେ ପହଞ୍ଚିଗଲେ। ସେମାନେ ପ୍ରାୟ ୫୦୦୦ ଥିଲେ ବୋଲି ଇତିହାସରେ ଉଲ୍ଲେଖିତ। ସେହି ସିଂହମାନେ ପଞ୍ଜାବଠାରେ ପହଞ୍ଚିବା ସଙ୍ଗେ ସଙ୍ଗେ ତୁର୍କୀମାନଙ୍କର ଅଫିସ୍ ଓ ଥାନାଗୁଡ଼ିକୁ ଆକ୍ରମଣ କରିଦେଲେ । ସମସ୍ତ ବନ୍ଦୀ ସିଂହମାନଙ୍କୁ ମୁକ୍ତି କରାଇ ନିଜ ସହିତ ଯୋଡ଼ିଦେଲେ ଓ ଆହୁରି କେତେଜଣ ଆସି ମିଶିଲେ। ସମସ୍ତେ ମିଶି ପ୍ରାୟ ତିରିଶି ହଜାର ହୋଇଗଲେ। ସୁବେ ଖାଁ ବାହାଦୁର ମଧ୍ୟ ସୈନ୍ୟ ସଂଖ୍ୟା ବଢ଼ାଇଲା। କେତେମାସ ଯାଏଁ ଯୁଦ୍ଧ ଚାଲିଲା। ଦେଶ ଶୂନ୍ୟ ହୋଇଗଲା। ଶେଷରେ ନିରାଶ ହୋଇ ସୁବେକୁ ପଛକୁ ହଟିବାକୁ ପଡ଼ିଲା ଓ ବହୁତ ମଧୁର କଥା କହିବାକୁ ଲାଗିଲା। କିନ୍ତୁ ତା'ର ମନରେ ପାପ ଭରି ରହିଥିଲା। ଛନ୍ଦ କପଟ ସହ ବଚନ ଦେଲା ଓ ସିଂହମାନେ ପୁଣି ଥରେ ଅମୃତସରଠାରେ ଏକତ୍ରିତ ହୋଇଥିଲେ।

କେତେ ମାସ କଟିଗଲା। ସମାଧାନ ହୋଇପାରିଲା ନାହିଁ, ଯୁଦ୍ଧ ନାହିଁ। ଏମିତି ନିୟମ ଲାଗି ରହିଲା। ପାଖାପାଖି ମୁସଲମାନ ସୈନ୍ୟମାନେ ଗୋଟିଏ ଦୁଇଟି ସିଂହମାନଙ୍କୁ ଧରିବା ଲାଗି ରହିଥିଲେ। ବର୍ଷଟିଏ ବିତିଗଲା। ସୁବେକୁ କଥାବାର୍ତ୍ତା ହେବା ପାଇଁ ସିଂହମାନେ କହିଲେ। ତା'ପରେ ସେ ଲେଖି ପଠାଇଲା, ଯଦି ଜମିଦାରୀ ନେବା ଇଚ୍ଛା କରୁଛ ତାହାହେଲେ ମୁସଲମାନ ହୋଇଯାଅ ନଚେତ୍ ଯୁଦ୍ଧ ସକାଶେ ସେନା ପ୍ରସ୍ତୁତ କର। ରୋଟି ସେତେବେଳେ ଖାଇବ ଯଦି ତମକୁ ସମାପ୍ତ କରିଦେବୁ। ଏହା ଶୁଣି ସିଂହମାନେ ଡରିଲେ ନାହିଁ, ଦୃଢ଼ତାର ସହ ଜବାବ ଦେଲେ। "ଯିଏ ଆମକୁ ନ ମାରି ରୁଟି ଖାଇବ, ସିଏ ଘୁଷୁରି ଖାଉ।" ଶୀଘ୍ର କର, ଡେରି କର ନାହିଁ। କ'ଣ ହେଲା, ଯଦି ଆଜି ଆମ୍ଭେମାନେ ଅଞ୍ଚଳହୀନ, ଗରିବ ଅବସ୍ଥା କିନ୍ତୁ ମନେରଖ ଆମେ ସେହି ଅକାଳ ପୁରୁଷ(ପରମାତ୍ମା)ଙ୍କ ସାହାରା ସହ ଦିନ କାଟୁଛୁ; ଯିଏକି ସମସ୍ତଙ୍କ ମାଲିକ ଅଟନ୍ତି। ଅତ୍ୟାଚାରୀମାନଙ୍କୁ ମାରନ୍ତି ଓ ଗରିବମାନଙ୍କୁ ରକ୍ଷା କରନ୍ତି।"

ସେନା ଘେରିଗଲେ। ସିଂହମାନେ ନିଘଞ୍ଚଜଙ୍ଗଲରେ ଯାଇ ରହୁଥିଲେ ଓ ରାତିରେ ଛପିଛପି ମୁସଲମାନ ସେନାଙ୍କୁ ଆରାମ କରିବାକୁ ଦେଉ ନ ଥିଲେ। ଦିନରାତି ଏହିଭଳି ଚାଲୁରହିଲା। ସିଂହମାନଙ୍କର କେବଳ ଜଙ୍ଗଲରେ ଆଶ୍ରୟ ଥିଲା।

ସିଂହମାନଙ୍କ ଘୋଡ଼ା, ହରିଣମାନଙ୍କ ଭଳି ଡେଇଁ ଡେଇଁ ଜଙ୍ଗଲରେ ଲୁଚି ଯାଉଥିଲେ। କିନ୍ତୁ ଭୋଗୀ ବିଳାସୀ ମୁସଲମାନମାନଙ୍କୁ କଣ୍ଟା ଜଙ୍ଗଲ ମଧ୍ୟରେ ଗୋଟିଏ ପାଦ ମଧ୍ୟ ଚାଲିବା କଠିନ ଥିଲା।

## ଭାଇ ତାରା ସିଂହଙ୍କ ଡଲବାଁଙ୍କ ଶହୀଦ ହେବା

ଠିକ୍ ସେହି ସମୟରେ ଭାଇ ତାରା ସିଂହଜୀ ଡଲବାଁ ବଡ଼ ବାହାଦୁରି ସହ ଶହୀଦ ହୋଇଥିଲେ। ନୂଆ ସହରର ଚୌଧୁରୀ ସାହିବ୍ ରାୟ ମନ ଭରି ଶତ୍ରୁର ପ୍ରତିଶୋଧ ନେଲା। ତାଙ୍କ ଘୋଡ଼ାମାନେ ସିଂହମାନଙ୍କର ଫସଲ ଚରି ନଷ୍ଟ କରୁଥିଲେ ଓ ସିଂହମାନେ ଯେତେବେଳେ ପ୍ରତିରୋଧ କରୁଥିଲେ ସେତେବେଳେ ସେମାନଙ୍କୁ ବାନ୍ଧି ରଖ, ସେହି ସରକାରୀ ଚେଲା ମୁହଁ ଫେରାଇ କହିଲା- "ମୋର ଘୋଡ଼ାମାନେ ଖୋଲାଖୋଲି ଚରିବେ ଓ ଯଦି ବାନ୍ଧିବା ଦରକାର ହେବ ତାହେଲେ ତୁମ ମୁଣ୍ଡବାଳ କାଟି ଦଉଡ଼ି ତିଆରି କରି ଘୋଡ଼ାମାନଙ୍କୁ ବାନ୍ଧିବି।" ସିଂହମାନଙ୍କୁ ଏହା ଅସହ୍ୟ ହୋଇଥିଲା। ଦ୍ୱିତୀୟ ଦିନ ଚରିବା ପାଇଁ ଆସିଥିବା ଘୋଡ଼ାମାନଙ୍କୁ ସିଂହଭାଇ ଭାଇ ତାରା ସିଂହଜୀଙ୍କ ପାଖରେ ପହଞ୍ଚିଗଲେ। ସାହିବ୍ ରାୟଙ୍କୁ ଖବର ମିଳିଲା, ସେ ଭାଇ ତାରା ସିଂହଜୀଙ୍କୁ ଧମକ ଦେଲା। 'ତୁ ମୋର ଘୋରକୁ ଖବର ଦେଇ ଧରାଇ ଦେ ନଚେତ୍ ସେନା ଆସିବେ ବୁଝିନେ।'

'ସିଂହମାନଙ୍କୁ ଘୋର କହୁଛ, ତୁ ଘୋରଠାରୁ କମ୍ ନୁହଁ। ଯିଏକି ଅନ୍ୟର ଫସଲଭରା ଜମିକୁ ନଷ୍ଟ କରୁଛି ?'

"ତାରା ସିଂହ ଚିନ୍ତା କର ନାହିଁ। ତୋର ବାଳ ମୁଁ ଯୋତା ମାରିମାରି ଓପାଡ଼ି ଦେବି, ସେନା ପହଞ୍ଚୁଛନ୍ତି ଦେଖିନେ। ଶତ୍ରୁଙ୍କ ଗୁପ୍ତଚର କାମ କରିବା ସାହିବ୍ ରାଏ ବଡ଼ ଅହଂକାର ଭାବେ କହିଲା।

ସିଂହମାନଙ୍କର ବାଳର ଅପମାନ ବଡ଼ ଅସହ୍ୟ ଥିଲା। ଭାଇ ତାରା ସିଂହଜୀ ତୁରନ୍ତ ସାହିବ୍ ରାୟକୁ ଧରିନେଲେ ଓ ଯୋତା ବାହାର କରି ଖୁବ୍ ତା ଉପରେ ବର୍ଷା କରାଇଲେ ଓ କହିଲେ ତୁ ଯେତେବେଳେ ଯାହା କରିବୁ କର। ପ୍ରଥମେ ମୋ ଠାରୁ ନିଜ ଉଚିତ ମୂଲ୍ୟର ପୁରସ୍କାର ନେଇଯାଅ।

ସାହିବ୍ ରାୟ କାନ୍ଦି କାନ୍ଦି ସେତେବେଳେ ପଟ୍ଟୀର ହାକିମ ଜାଫର ବେଗ୍ ପାଖରେ ପହଞ୍ଚିଲା। ଭାଇ ତାରା ସିଂହଜୀଙ୍କ ପାଖରେ ଅଧିକରୁ ଅଧିକ ୭୦/୮୦

ଜଣ ସିଂହ ଥିଲେ। ସେଥିଯୋଗୁଁ ଜାଫର୍ ବେଗ୍ ୧୦୦ ଅଶ୍ୱବାହିନୀ, ୨୦୦ ପଦାତିକ ସେନା ସହିତ ରାତାରାତି ବାହାରି ପଡ଼ିଲା ଓ ସକାଳ ହେବା ପୂର୍ବରୁ ରାତି ୨ଟା-ନଅଟା ସମୟରେ ଡଲବାଁ ଠାରେ ଆସି ପହଞ୍ଚିଲେ।

ପ୍ରଥମେ ଭାଇ ତାରା ସିଂହଜୀଙ୍କୁ ଜଣେ ସାଥି ବଘେଲ ସିଂହ ପ୍ରାତଃକାଳରେ ଉଠି ଶୌଚ-ସ୍ନାନ ସକାଶେ ବାହାରକୁ ଯିବାବେଳେ ଅନ୍ଧାରରେ ଶତ୍ରୁମାନେ ଆସୁଥିବାର ଦେଖିନେଲେ। ସିଂହମାନେ ଭାବିଲେ କି ଡେରେ ଭାଇ ତାରା ସିଂହଜୀଙ୍କୁ ଖବର ଦେବା ସକାଶେ ମୁଁ ଯିବା ଦରକାର ହେବ ନାହିଁ। ମୁଁ ଏକା ଏମାନଙ୍କ ସହ ସାମନା କରିବା ଉଚିତ ହେବ। ବନ୍ଧୁକର ଶବ୍ଦ ଶୁଣି ଡେରାରେ ଥିବା ସିଂହମାନଙ୍କୁ ନିଜେ ନିଜେ ଜାଣିପାରିବେ। ଏହା ଭାବି ଭାଇ ବଘେଲ ସିଂହଜୀ ସେମାନଙ୍କୁ ଚିଡ଼ାଇ କହିଲେ- ହେ ଚୋରମାନେ , ଅନ୍ଧାର ରାତିରେ କୁଆଡ଼େ ଯାଉଛ ? ଚୁପ୍‌ଚାପ୍ ଛିଡ଼ାହୁଅ ! ସିଂହମାନେ ତୁମ୍ଭମାନଙ୍କୁ ଛାଡ଼ିବେ ନାହିଁ। ଏହା କହି ସିଂହ ଦୌଡ଼ି ବହୁତ ଶୀଘ୍ର ଶତ୍ରୁମାନଙ୍କ ମଧ୍ୟରେ ପଶି ଗୁଳି ଚଳାଇବା ଆରମ୍ଭ କରିଦେଲେ। ସିଂହମାନେ ଦୁଇ ଚାରି ଅଶ୍ୱସେନାଙ୍କୁ ତଳେ ପୋପାଡ଼ି ଦେଲେ। ଅନ୍ୟ ପଟୁ ଡେରାର ସିଂହମାନେ ଶବ୍ଦ ଶୁଣି ବାହାରକୁ ବାହାରି ଆସିଲେ। ଜାଫର୍ ବେଗ୍ ଏହି ଯୁଦ୍ଧରେ ସିଂହମାନଙ୍କ ଠାରୁ ଉଦ୍ଧାର ପାଇଗଲା। କିନ୍ତୁ ତା'ର ଦୁଇଟି ପୁତୁରା ଓ ୨୫ରୁ ୩୦ ସିପାହୀମାନେ ମରିଗଲେ। ଅନ୍ୟମାନେ ପ୍ରାଣ ବଞ୍ଚାଇ ଦୌଡ଼ିବାକୁ ଲାଗିଲେ। ସିଂହମାନଙ୍କ ତରଫରୁ କେବଳ ବଘେଲ ସିଂହଜୀ ଶହୀଦ ହୋଇଥିଲେ। ଜାଫର୍ ବେଗ୍ ପୁତୁରାମାନଙ୍କର ଶବ ଉଠାଇ ପଛକୁ ଚାଲିଗଲା ଓ ସକାଳ ହେବା ପୂର୍ବରୁ ରଣଭୂମି ତ୍ୟାଗ କରି ଲାହୋର ଚାଲିଗଲା। ଲାହୋରରେ ପହଞ୍ଚି ଖୁବ୍ କନ୍ଦାକନ୍ଦି କରିଲା। ତା'ପରେ ଲାହୋରର ପ୍ରସିଦ୍ଧ ଜେନେରାଲ ମୋମନ ଖାଁର ୪୦୦୦ସେନା ସହିତ ଭାଇ ତାରା ସିଂହଜୀଙ୍କୁ ଆକ୍ରମଣ କରିଥିଲା।

ବହୁ ସଂଖ୍ୟାର ସେନା ଆକ୍ରମଣର ଖବର ଭାଇ ତାରା ସିଂହଜୀଙ୍କୁ ମିଳିଲା। ଭାଇ ତାରା ସିଂହଜୀ ସମସ୍ତ ସିଂହମାନଙ୍କୁ ଏକତ୍ରିତ କରି କହିଲେ- 'ଭାଇମାନେ ଯାହାର ପ୍ରାଣ ବଞ୍ଚାଇବା ଇଚ୍ଛା, ବର୍ତ୍ତମାନ ଚାଲିଯାଅ ଓ ଯାହାର ଶହୀଦ ହେବା ପାଇଁ ଇଚ୍ଛା ସେମାନେ ମୋ ସାଙ୍ଗରେ ରୁହ।' କେହି ଗଲେ ନାହିଁ। ଯେଉଁମାନେ ଥିଲେ ସମସ୍ତଙ୍କୁ ଶହୀଦ ପ୍ରାପ୍ତ ହେବା ଲାଳସା ବଳିଗଲା। ଇତିହାସରେ ସେହି ସିଂହମାନଙ୍କ ସଂଖ୍ୟା କେବଳ ୫୨ ଲେଖାଯାଇଛି। ସେମାନେ ଦଳ ତିଆରି କରିଲେ ଓ ଯୁଦ୍ଧର

ମୁହାଁମୁହିଁ ହେବା ପାଇଁ ପ୍ରସ୍ତୁତ ହୋଇଗଲେ । ଅନ୍ୟପଟରେ ମୋମନ ଖାଁ ନିକଟରେ ପହଞ୍ଚି ବାଧା ଦେଲା ଓ ରାତିରେ କେତେକ ବିଶ୍ରାମ କରି ସକାଳେ ଆକ୍ରମଣ କରି ସିଂହମାନଙ୍କୁ ଧରି ମାରିବା କାର୍ଯ୍ୟକ୍ରମ ପ୍ରସ୍ତୁତ କରିଲା । ସେମାନେ ଯେତେବେଳେ ଆଗକୁ ବଢ଼ିଲେ ସେନା ସିଂହମାନେ ସେମାନଙ୍କୁ ଉଚିତ୍ ମୁକାବିଲା କଲେ । ସକାଳ ହେବା ବେଳକୁ ଶହ ଶହ ଶତ୍ରୁ ମୃତ୍ୟୁ ବରଣ କରିସାରିଥିଲେ । ଯେତେବେଳଯାଏଁ ଦୃଢ଼ ନିଷ୍ପତ୍ତି ରହିଥିଲା, ସେତେବେଳ ।ଯାଏଁ ସିଂହମାନଙ୍କର ଦଳ ଏକତ୍ରିତ ରହିଲେ । ଯେତେବେଳେ ଦୃଢ଼ତା କମ୍ ହୋଇଗଲା ତଲବାର ରଗଡ଼ାଇ ଶତ୍ରୁମାନଙ୍କୁ ମାରିଚାଲିଲେ । ଏହି ପରିସ୍ଥିତି ଦେଖି ଜଣେ ଜରନଲ ତକୀ ବେଗ୍ ଆଗକୁ ବଢ଼ିଲା ଓ ଭାଇ ତାରା ସିଂହକୁ ଧିକ୍କାରିଲା । ତାରା ସିଂହଜୀ ତୁରନ୍ତ ସିଂହ ଦଳରୁ ବାହାରି ତକୀ ବେଗ୍ ସହ ମୁହାଁମୁହିଁ ହୋଇଗଲା । ତକୀ ବେଗ୍ ରକ୍ତରେ ସ୍ନାନ କରିସାରିଥିଲା । ସେ ତୀର ଚଳାଇଲା, ଯାହା ଭାଇ ତାରା ସିଂହର କିଛି କ୍ଷତି ହୋଇ ନ ଥିଲା ଓ ତକୀ ବେଗ୍ ଆହୁରି ତୀର ଚଳାଇବାକୁ ଲାଗିଲା । ଭାଇ ତାରା ସିଂହଜୀ ଆଖିପଲକରେ ଆଖିକୁ ଲକ୍ଷ୍ୟ କରି ଆଗକୁ ବଢ଼ି ତଲବାରର ମୁହଁକୁ ତକୀ ବେଗ୍‌ର ମୁହଁରେ ପୂରାଇ ଦେଲେ । ତକୀ ବେଗ୍ କ୍ଷତବିକ୍ଷତ ହୋଇ ପଳାୟନ କରିଲା ।

ସିଂହ ପୁଣି ଯେଉଁଠି ବେଶି ବେଶି ଶତ୍ରୁ ରହୁଥିଲେ ସେହିଠାରେ ଭାରି ଯୁଦ୍ଧ କରିଚାଲିଲେ । ଏହିପରି ଜଣେ ଜଣେ ସିଂହ ୧୦-୧୧ ଓ ୧୫-୨୦ଙ୍କୁ ମାରି ଶହୀଦ ହୋଇଚାଲିଲେ । ଏହିପରି ୧୧-୧୨ ଶହ ଶତ୍ରୁଙ୍କୁ ବିନାଶ କରି ସିଂହ ଶହୀଦ ହୋଇଗଲେ । ସିଂହମାନଙ୍କର ଶହୀଦ ହେବା ପରେ ମୋମନ ଖାଁ ସିଂହମାନଙ୍କ ମସ୍ତକକୁ କାଟି ଲାହୋର ନେଇଗଲା । ସେତେବେଳର ସମୟ ବିକ୍ରମୀ ସମ୍ବତ ୧୭୮୨ ଥିଲା ।

## ସିଂହମାନଙ୍କ କ୍ରୋଧ

ଯେତେବେଳେ ସିଂହମାନଙ୍କୁ ଏହି ଖବର ମିଳିଲା ଭାଇ ତାରା ସିଂହ ଡଲବାଁଙ୍କ ସାହସ ଯୋଗୁଁ ସେମାନେ ଖୁସୀ ହୋଇଗଲେ ଓ ସେମାନଙ୍କ ମଧ୍ୟରେ ବୀରତ୍ୱ ଜାଗ୍ରତ ହୋଇ ଉଠିଲା । ନିଷ୍ପତ୍ତି ନିଆଗଲା କି ଶତ୍ରୁମାନଙ୍କୁ ପୁଣି ଦଣ୍ଡ ଦିଆଯିବା ଉଚିତ ହେବ । ସେଥିଯୋଗୁଁ ସିଂହମାନେ ପୁଣି ସାନମାନଙ୍କ ଆକ୍ରମଣ କରିଲେ । ସିଂହମାନଙ୍କର ଆକସ୍ମିକ ଯୁଦ୍ଧ ଯୋଗୁଁ ତୁର୍କି ସେନାମାନେ ଅଣନିଃଶ୍ୱାସୀ ହୋଇଗଲେ । ତୁର୍କିମାନଙ୍କୁ ଯୁଦ୍ଧର ଉତ୍ତର ଦେବା ଲାଗି ସିଂହମାନେ ଜଙ୍ଗଲ ଭିତରେ

ଲୁଚିଯାଉଥିଲେ। ଦିନ-ରାତି ଆକସ୍ମିକ ଭାବେ ତୋଫାନ ଢଙ୍ଗରେ ହତିଆର ଜିନିଷପତ୍ର ଲୁଟିନେଇ ପୁଣି ଜଙ୍ଗଲ ମଧ୍ୟରେ ଛୁପି ଯାଉଥିଲେ। ବହୁତ ଥର ଆକ୍ରମଣ ଦ୍ୱାରା ବ୍ୟସ୍ତ ହୋଇପଡ଼ିଲେ ଓ ସୁବେକୁ ଯାଇ କହିଲେ- ସବୁ ସିଂହ ସମାପ୍ତ ହୋଇଗଲେ ଆଉ କେହି ନାହାନ୍ତି। ପୁଣି ସିଂହମାନେ କଶୁରଠାରୁ ଆସୁଥିବା ଶାହୀ ଖଜଣା ଲୁଟିନେଲେ। ପ୍ରସିଦ୍ଧ ସୌଦାଗର ମୁର୍ତଜା ଖାଁ କାବୁଲ୍ ଠାରୁ ଘୋଡ଼ାରେ ଦିଲ୍ଲୀ ଯାଉଥିଲା। ସିଂହମାନେ ତା'ର ଘୋଡ଼ା ଛଡ଼ାଇ ରଖିଲେ।

ମହମ୍ମଦ ଶାହା ରଙ୍ଗିଲାର ଶଳା ନବାବ ଜଫର୍ ଖାଁ ଦିଲ୍ଲୀ ଯାଉଥିଲା। ତାକୁ ଗୋଇଁନ୍ଦବାଲର ପୋଲ ଉପରେ ସିଂହମାନେ ଘେରାଉ କରି ତାକୁ କାଙ୍ଗାଳ କରି ଦିଲ୍ଲୀ ପଠାଇଦେଲେ। ତା'ର ଚିତ୍କାର ଯୋଗୁଁ ବାଦଶାହ ବହୁତ ସେନା ପଠାଇ ସିଂହମାନଙ୍କ ପିଛା କରିଲା। କିନ୍ତୁ ଦିନରାତି ଅନେକ ଆକ୍ରମଣ ଦ୍ୱାରା ସେ ମଧ୍ୟ ହଇରାଣ ହୋଇଗଲା। ଦେଶକୁ କେତେ ସେନା ଖାଇଗଲେ ଓ କେତେ ସିଂହ ଲୁଟିନେଲେ। ଏହିପରି ଦେଶକୁ ନଷ୍ଟବିନଷ୍ଟ କରି ଶାହୀ ସେନା ଫେରିଗଲେ। ପୀଡ଼ିତ ଜନତା ସିଂହମାନଙ୍କ ସହିତ ମିଶିଗଲେ। ମୁସଲମାନମାନଙ୍କ ଦ୍ୱାରା ଅତ୍ୟାଚରୀତ ସମାଜର ପୀଡ଼ିତ ଜନତା ଦୁଃଖରେ ଭାଙ୍ଗି ପଡ଼ିଥିଲେ ଓ ଶୀଘ୍ର ଶୀଘ୍ର ଅମୃତ ଧାରଣ କରି ସିଂହ ସାଜିଯାଉଥିଲେ। ଯେତେ ସିଂହ ଶହୀଦ୍ ହେଉଥିଲେ ତାହାଠାରୁ ଅଧିକ ନୂଆ ମିଶୁଥିଲେ।

ସେହି ସମୟରେ ଘରିଯାଲ ଗ୍ରାମରେ ଏକ ବିବାହ କାର୍ଯ୍ୟ ହେଉଥିଲା। ସେହି ଶୁଭ ଅବସରରେ କେତେ ଜଣ ସିଂହ ଏକତ୍ରିତ ହେବା ଖବର ମୁସଲମାନଙ୍କୁ ମିଳିଲା। ସେମାନେ ସେହି ଗ୍ରାମକୁ ଘେରିଦେଲେ। ସିଂହମାନେ ତଲବାରରେ ମୁସଲମାନ ସେନାମାନଙ୍କୁ ଉଚିତ୍ ମୁକାବିଲା କଲେ। ଶତ୍ରୁମାନଙ୍କ ଘେରାଉ ଭାଙ୍ଗି ସେଠାରୁ ବାହାରିଗଲେ। ପରେ ସିଂହାନୀମାନେ ମାର କାଟକରି ସେଠାରୁ ବାହାରି ଗଲେ। ସେହି ଘଟଣା ପରେ ଗଣିତରେ ସିଂହମାନଙ୍କ ଅପେକ୍ଷା ସିଂହାନୀମାନେ ସିଂହମାନଙ୍କ ଭଳି ସିଂହମାନଙ୍କୁ ସାହାଯ୍ୟ କରିଥିଲେ।

## ମୋଗଲ ରାଜକୀୟ ଖଜଣା ଲୁଟିବା

ସେହି ସମୟରେ ପରିସ୍ଥିତି ଏମିତି ଥିଲା କି ମୁସଲମାନ ହାକିମମାନେ ଶିଖମାନଙ୍କୁ ଜଣ ଜଣ କରି ହତ୍ୟାକରି ଶିଖ ଧର୍ମ ସମାପ୍ତ କରିବାକୁ ଚାହୁଁଥିଲେ ।

ସେଠାରେ ଶିଖମାନଙ୍କର ଆକସ୍ମିକ ଯୁଦ୍ଧ ଦ୍ୱାରା ସେମାନଙ୍କୁ ଅଣନିଃଶ୍ୱାସୀ କରିଦେଲେ। ସମଗ୍ର ଦେଶରେ ସେତେବେଳେ ଅସ୍ଥିରତା ଓ ଅଶାନ୍ତି ଲାଗି ରହିଥିଲା। ବିଶେଷ ଭାବେ ଚୋର, ଡାକୁମାନଙ୍କ ପାଇଁ ସୁବର୍ଣ୍ଣମୟ ଯୁଗ ଥିଲା।

ବନ୍ଦା ସିଂହଙ୍କ ଶହୀଦର ୧୫ବର୍ଷ ପରେ ଅର୍ଥାତ୍ ୧୭୮୭-୮୮ ଯାଏଁ ଶିଖମାନେ ସହରରେ ଦେଖା ଯାଉ ନ ଥିଲେ। କିନ୍ତୁ ଯେତେବେଳେ ଚାହୁଁଥିଲେ ଜଙ୍ଗଲରୁ ବାହାରି ଭଲଭାବେ ଲୁଟ୍‌ତରାଜ କରି ଖାଦ୍ୟସାମଗ୍ରୀ ନେଇଯାଉଥିଲେ। ହତିଆର, ଘୋଡ଼ା ସଂଗ୍ରହ ଖୁବ୍ ଭଲ ଭାବରେ କରୁଥିଲେ। ଖାଇବା ପାଇଁ କିଛି ମିଳୁ କିମ୍ବା ନ ମିଳୁ ସେମାନେ ଘାସପତ୍ର ଖାଇ ରହୁଥିଲେ। କିନ୍ତୁ ଘୋଡ଼ା, ଅସ୍ତ୍ରଶସ୍ତ୍ର ପ୍ରାପ୍ତି ସକାଶେ ସବୁବେଳେ ବିଶେଷ ଧ୍ୟାନ ଦେଉଥିଲେ। ଯେତେବେଳେ ମୋଗଲମାନଙ୍କର ଅସ୍ତ୍ରଶସ୍ତ୍ର ନେବା ଆଣିବା ଓ  ଛୋଟମୋଟ ଝଗଡ଼ା ହେଉଥିଲା। ସେମାନେ ପ୍ରଥମେ ଜିନିଷପତ୍ରକୁ ଜାଗ୍ରତରେ ରଖୁଥିଲେ।

ଗୋଟିଏ ଗୋଟିଏ ଶହୀଦ ପରେ ସିଂହମାନେ କ୍ରୋଧିତ ହୋଇ ଶିଖ ଯୋଦ୍ଧାମାନେ କେତେକ ସ୍ଥାନରେ ଆକ୍ରମଣ କରି ମୁସଲମାନମାନଙ୍କୁ ଅସ୍ତବ୍ୟସ୍ତ କରିଦେଇଥିଲେ। ଏମିତି ପରିସ୍ଥିତି ହୋଇଯାଇଥିଲା କି କେତେକ ସିଂହ ଲୁଟି ଚାଲିଥିଲେ, କେତେଜଣ ମୁସଲମାନ ସେନାଙ୍କୁ ଲୁଟୁଥିଲେ, ଜବରଦସ୍ତ ଛଡ଼ାଇ ରଖୁଥିଲେ ଓ ସେତେବେଳେ ଫସଲ ପ୍ରତି କାହାର ଧ୍ୟାନ ନ ଥିଲା କ'ଣ ବୁଣାଯିବ ଓ ବୁଣାଯାଇଥିଲା। ସବୁବେଳେ ଯୁଦ୍ଧ ଭୟ ମୁଣ୍ଡ ଉପରେ ରହୁଥିଲା। ଯଦି କିଏ ଜମିରେ ବୁଣାବୁଣି କରୁଥିଲା ତାହା ସେମିତି ନଷ୍ଟ ହେଉଥିଲା।

ପରିସ୍ଥିତି ଏମିତି ହୋଇଥିଲା କି କେତେ ବର୍ଷ ଯାଏଁ ପଞ୍ଜାବର କର ଦିଲ୍ଲୀ ଠାରେ ପହଞ୍ଚି ନ ଥିଲା। ବାଦଶାହ ବହୁତଥର କର ଆଦାୟ ସକାଶେ ଲୋକ ପଠାଇଥିଲେ। କିନ୍ତୁ କିଏ ଦେବ, ସେଠାରେ ସୈନ୍ୟଙ୍କ ଖର୍ଚ୍ଚ ପୂରା ହୋଇ ପାରୁନଥିଲା। ସେ ଦିଲ୍ଲୀ ଠାରୁ ମୁହମ୍ମଦ ଶାହା ରଙ୍ଗୀଲା କର ଟଙ୍କା ଆଦାୟ ସକାଶେ ସୈନ୍ୟମାନଙ୍କୁ ପଠାଇଲା। ସେମାନେ ଲାହୋରରେ ପହଞ୍ଚିଗଲେ। ସୁବେଦାରର ଖର୍ଚ୍ଚ ଆହୁରି ବଢ଼ିଗଲା। କର ତାହା ପାଖରେ ହଜାର ହଜାର ଟଙ୍କା ଥିଲା କିନ୍ତୁ ହିସାବ ଅନୁଯାୟୀ କୋଟି କୋଟି ଟଙ୍କାର ହୋଇ ଯାଇଥିଲା।

ସେହି ସୁବା ଖାଁ ବାହାଦୁର ବହୁତ ଚାଲାକ ଥିଲା। ସେ ଶିଖମାନଙ୍କୁ ବହୁତ ଭରସା ଦେଇଥିଲା ଓ କେତେ ମିଥ୍ୟା ଭରସା ରହିଗଲା ଓ ପୁଣି ଯୁଦ୍ଧ ହେଲା। ସେ

ବହୁତଥର ଶୁଭାକାଂକ୍ଷୀ ହୋଇ ମଧୁର ଶତ୍ରୁ ଗଳାରେ ଧରିଥିଲା । ମାରିଲେ ସିଂହମାନେ ମରୁ ନାହାନ୍ତି । ହାରିଗଲେ ମାରି ମାରି କିନ୍ତୁ ପଛକୁ ହଟୁ ନାହାନ୍ତି ।

ସେଥିଯୋଗୁଁ ସେ ପଶ୍ଚାତ୍ତାପ କରିଲା ଓ କେତେ ଭଦ୍ର ମୁସଲମାନମାନେ ଶିଖମାନଙ୍କ ସହିତ ସମାଧାନ କରିବା ପାଇଁ ପ୍ରସ୍ତାବ ଦେଉଥିଲେ କିନ୍ତୁ ଏହା ମଧ୍ୟରେ କିଛି ଅଭଦ୍ର ଓ ଦୁଷ୍ଟ କ୍ରୂର ସ୍ୱଭାବର ମୁସଲମାନ ଥିଲେ । ସେମାନେ ମତିଭ୍ରମ କରାଉଥିଲେ । ସେଥିଯୋଗୁଁ ମୌଲବୀମାନେ ଚୁଗୁଲି କରି ସେହି ଅଞ୍ଚଳର ଅବସ୍ଥା ଖରାପ କରିଦେଲେ । ସେତେବେଳେ ବାଦଶାହଙ୍କୁ କର ଦେବା ପାଇଁ ଟଙ୍କା ପଇସା ନ ଥିଲା ଓ ନ ଦେବା ଅନୁଚିତ ଥିଲା ଓ ସାହସ ନ ଥିଲା କାରଣ ବାଦଶାହ ସୈନିକମାନଙ୍କୁ ପଠାଇଥିଲା । ମୁଖ୍ୟ ଦ୍ୱାର ସୈନ୍ୟଙ୍କ ଶିବିର ହୋଇଯାଇଥିଲା । ଅଧିକରୁ ଅଧିକ ଶୁଭାକାଂକ୍ଷୀ ସ୍ୱାର୍ଥୀ. ତୋଷାମଦକାରୀ ତାହା ସହିତ ରହିଥିଲେ ।

## ଭାଇ ସୁବେଗ ସିଂହଜୀଙ୍କ ସୁବେଦାରକୁ ଦେବା ପ୍ରସ୍ତାବ

ଭାଇ ସୁବେଗ ସିଂହ ସୁବେ ଖାଁ ବାହାଦୁର ପାଖରେ ଚାକର ଥିଲା; କିନ୍ତୁ ସେହି ସମୟରେ ସରକାର ଚାକର ହୋଇ ବହୁତ ତୋଷାମଦ ନ ଥିଲା । ପ୍ରତ୍ୟେକ ମୁହୂର୍ତ୍ତରେ ଶିଖମାନଙ୍କ ବିରୋଧରେ କହିବା ନଚେତ୍ ସୁବେକୁ କାନ ଫୁଙ୍କା କରି କ୍ରୋଧିତ କରାଇବା କିନ୍ତୁ ସେ ସମ୍ପୂର୍ଣ୍ଣ ଭାବେ ଗୁରୁ ଶିଖ ଥିଲା, ଶେଷରେ ଯେତେବେଳେ ତାହା ଉପରେ ମଧ୍ୟ ସୁବେ ବିରକ୍ତ ହେଲା, ତାହାପରେ ସେ ଧର୍ମ ତ୍ୟାଗ କରି ନ ଥିଲା । ଆହୁରି ପୁରୁଷତ୍ୱ ସହ ପ୍ରକୃତ ସିଂହ ଭାବେ ଶହୀଦ ହୋଇଥିଲେ ।

ଭାଇ ସୁବେଗ ସିଂହ ଭଲ ବିଚାରବାନ୍ ବ୍ୟକ୍ତି ଥିଲା । ସେ ସୁବେକୁ ଚିନ୍ତାରେ ମଗ୍ନ ଥିବା ଦେଖି କହିଲା, କଣ କଥା ଖାଁ ସାହେବ ଏତେ ଉଦାସ କାହିଁକି ?

ସୁବେଗ ସିଂହ ଉଦାସର କାରଣ ତୁମକୁ ଜଣା ନାହିଁ ! ମୁଖ୍ୟଦ୍ୱାରରେ ସୈନିକମାନେ ବସି ରହିଛନ୍ତି, କିନ୍ତୁ ଖଜଣା ଖାଲି ଅଛି, କେଉଁଠୁ ଆଣିଦେବି, କେମିତି କରିବି ସେହି ଚିନ୍ତାରେ ମୁଁ ବ୍ୟସ୍ତ ହୋଇପଡ଼ିଛି ।

'ଏହାର ନିଦାନ ତ ଅଛି, ଯଦି ଆଦେଶ କରନ୍ତି,

'ଯଦି ଥରେ ସିଂହମାନଙ୍କ ସହ ମିଶିବା ଆଜ୍ଞା ଦିଅନ୍ତି ।' ଏହା କେମିତିକା ଉପାୟ ହେଲା ? ତାହେଲେ କଣ ? ଶୀଘ୍ର କହ ।'

'ଚିକିତ୍ସା ଏମିତି ହେବ ? ଯଦି ଆପଣ ଇଚ୍ଛା କରନ୍ତି ।'

'ମୁଁ ଚାହୁଁଛି, କିନ୍ତୁ କିଛି ଗୋଟିଏ ଉପାୟ କହ।'

ଏହାର ଚିକିତ୍ସା ହେଲା କି କିଛି ପରିମାଣ ସହ ଲକ୍ଷ ଦେଢ଼ ଲକ୍ଷ ଟଙ୍କା ସେହି ସୈନ୍ୟମାନଙ୍କ ଘୋଡ଼ା (ଖଚର) ଉପରେ ଲଦି ସେମାନଙ୍କ ଦାୟିତ୍ୱ କରିଦିଅନ୍ତି ଓ ଦିଲ୍ଲୀ ପଠାଇଦିଅନ୍ତି। ନା ଗଣତି କରିବେ ନା କାହା ଦ୍ୱାରା କରାଇବେ; କିନ୍ତୁ ଲିଖିତ ଆକାରରେ ରଖିନିଅନ୍ତୁ କି ଖଜଣା ଏମାନଙ୍କ ଦାୟିତ୍ୱ ଦିଆଗଲା, ଅନ୍ୟ ବାକି ଆପଣଙ୍କ କାମ ସିଂହମାନେ ସମ୍ଭାଳିବେ।

କେମିତି ?

ସିଂହମାନେ ରାସ୍ତାରେ ଖଜଣା ଲୁଟି ନେବେ ଓ ଗଣତି କରିବା କଣ ହିସାବ ହେବ, ଆପଣ କରିଦିଅନ୍ତୁ ମୁଁ ସବୁ ଦେଇସାରିଛି।

ବର୍ତ୍ତମାନ ଖାଁ ବାହାଦୁରର ମୁଣ୍ଡରେ ବୁଦ୍ଧି ପଶିଲା। ସେ କହିଲେ, ସୁବେଗ ସିଂହ ତୁ ବହୁତ ଭଲ କଥା କହିଛୁ। ଶୀଘ୍ର କର, ସିଂହ ଯାଇ ସମସ୍ତ ଖବର ପହଞ୍ଚାଇ ଦେ। ଯାହା ପ୍ରତିଦିନ ୫ ହଜାର ଟଙ୍କା ଶାହୀ ସୈନ୍ୟଙ୍କ ପିଛା ଖର୍ଚ୍ଚ କରାଯାଉଛି ସେଥିରେ ଉଦ୍ଧାର ହେବ ଓ ଖଚର ଉପରେ ଲଦି ମୁଁ କାଲି ଏମାନଙ୍କୁ ଏଠାରୁ ପଠାଇଦେବି। ତୁ ଯାଇ ସିଂହମାନଙ୍କୁ ପ୍ରସ୍ତୁତ କରାଇ ରଖ।

ଭାଇ ସୁବେଗ ସିଂହଜୀ ତାହାର ପରଦିନ ହିଁ କାହାନୁବାନ ଠାରେ ସେମାନଙ୍କ ପାଖରେ ପହଞ୍ଚିଗଲେ। ସିଂହମାନଙ୍କୁ ଖବର ପଠାଇଲେ କି ମୁଁ ଆପଣମାନଙ୍କ ସହ ମିଶିବାକୁ ଚାହୁଁଛି। ଛଂଭ ବାହାର ଗୁପ୍ତଚର ସିଂହମାନେ ଯାଇ ଭିତରେ ଲୁଚିରହିଥିବା ଦଳକୁ ପୂରା ଖବର ଦେଲେ। ଆଜ୍ଞା ପାଇବା ପରେ ଗୁପ୍ତଚର ଭାଇ ସୁବେଗ ସିଂହଜୀ ଜଙ୍ଗଲର ଦଳ ମୁଖିଆଙ୍କ ପାଖରେ ପହଞ୍ଚିଲେ।

ସୁବେଗ ସିଂହଜୀଙ୍କ ବିଷୟରେ ସିଂହମାନଙ୍କ ବିଚାର କେମିତି ଦେଖ। ତୁର୍କୀମାନଙ୍କ ପାଖରେ ଚାକର ହେବା ଯୋଗୁଁ, ଆପଣଙ୍କୁ ବେତନଭୋଗୀ କୁହାଯାଇଛି। ଯେତେବେଳେ ମଧ୍ୟ ତୁମେ ସିଂହମାନଙ୍କୁ ବେତନ ଲଗାଉଛ, ତୁମେ ଧନ୍ୟ ଅଟ ଭାଇ ସୁବେଗ ସିଂହ। ଯେତେବେଳେ ଯେଉଁ ସିଂହ ଦରମା ପାଆନ୍ତି, ପ୍ରଥମେ ପୁରି ତିଆରି କରନ୍ତି, ପୁଣି କଡ଼ା ପ୍ରସାଦ (ଅଟା)ର ହାଲୁଆ ଦେଗ୍ ପ୍ରସ୍ତୁତ କରି, ପ୍ରାର୍ଥନା (ଅରଦାସ) କରନ୍ତି। ତା'ପରେ ସିଂହମାନେ ଯାଇ ଗୋଟିଏ ଜାଗାରେ ବସନ୍ତି। ଛାଡ ! ଯେଉଁ ଦରମା ପାଇଲେ ତାହା ଭାଇ ସୁବେଗ ସିଂହ ପୂରା କରିଲେ ଓ ପୁଣି ସିଂହମାନଙ୍କୁ ପୂରା ପ୍ରସ୍ତାବ ଶୁଣାଇଲେ, ବାଦଶାହଙ୍କର ଖଜଣା ଯିବ, ତାହା ଏଠାରୁ

ପାର ହେବା ଅନୁଚିତ। ଯେମିତି ହେଉ, ବ୍ୟାସ ନଦୀ ପାର ହେବାକୁ ଦେବ ନାହିଁ। ସୁବେ ଖାଁ ମଧ୍ୟ ସେମାନଙ୍କ ସହିତ ସୁରକ୍ଷା ସକାଶେ ସେନା ପଠାଇବ, କିନ୍ତୁ ସେମାନେ ଅଳ୍ପ ବହୁତ ଝଗଡ଼ା ଯୁଦ୍ଧ କରି ପଛକୁ ହଟିଯିବେ ଓ ଆପଣମାନେ ନିଜର କାମ କରି ନେବେ।

ଅନ୍ଧ କଣ ଖୋଜେ? ଦୁଇଟି ଆଖି। ସିଂହମାନଙ୍କୁ ଆଉ କଣ ଦରକାର ଥିଲା, ସେତେବେଳେ ସେମାନେ ଜୟ ଜୟକାର ଛାଡ଼ିଲେ (ବୋଲେ ସୋନିହାଲ ସତ ଶ୍ରୀ ଅକାଳ ପରମାତ୍ମାଙ୍କୁ ହାର୍ଦ୍ଦିକ ପ୍ରଣାମ) ଓ ସିଂହଙ୍କୁ ବିଦାୟ କରିଲେ।

ବାଦଶାହୀ ସୈନ୍ୟମାନେ ଖଜଣା ସହ ଶ୍ରୀ ଗୋଇନ୍ଦ ବାଲଠାରୁ ବ୍ୟାସ ନଦୀ ପାର କରିବା କଥା ଥିଲା, କାରଣ ସେତେବେଳେ ଦିଲ୍ଲୀ ଯିବା ପାଇଁ ତାହା ରାଜମାର୍ଗ ଥିଲା। ସିଂହ ଜଙ୍ଗଲ ଜଙ୍ଗଲ ହୋଇ ତୃତୀୟ ଦିନ ବ୍ୟାସର ଘନ ଜଙ୍ଗଲ ଠାରେ ଆସି ପହଞ୍ଚିଲେ। ସେଠାରୁ ବାଦଶାହର ସୈନ୍ୟମାନେ ବାହାରିଯାଇଥିଲେ। ୫, ୭ ହଜାର ଭିଡ଼ ଥିଲା। ତା ସହିତ କେତେ ତୋପ ବାରୁଦ ଅସ୍ତ୍ର ଶସ୍ତ୍ର ମଧ୍ୟ ଥିଲା। ପ୍ରଥମେ ସୁବେ ଖାଁର ସୈନ୍ୟମାନେ ଓ ପଛରେ ବାଦଶାହୀ ଫୌଜ ଓ ମଝିରେ ଖଜଣା ଯାଉଥିଲା।

ଯେତେବେଳେ ଏହି ଦଳ ପୋଲ ପାଖରେ ପହଞ୍ଚିଲେ ଓ କେତେ ବାଦଶାହୀ ସେନା ପାର ହୋଇଗଲେ ଓ ଖଜଣା ପାର କରିବାକୁ ଯାଉଥିଲେ ତୁରନ୍ତ ଜଙ୍ଗଲ ମଧ୍ୟରୁ ସିଂହମାନେ ତଲବାର ବାହାର କରି ଆକ୍ରମଣ କରିଦେଲେ। ସିଂହମାନେ ପ୍ରାୟ ୨୫୦୦-୩୦୦୦ ଥିଲେ। ପ୍ରକୃତ ହିସାବରେ ସିଂହମାନଙ୍କ ଦାୟିତ୍ୱ ଖଜଣାର ଦାୟିତ୍ୱ ନେବା ଥିଲା ଓ ଅନ୍ୟମାନେ ସେନାମାନଙ୍କୁ ଆକ୍ରମଣ କରିଦେଲେ। ସୁବେ ଖାଁର ସେନାମାନେ ଯୋଜନା ଅନୁଯାୟୀ ଶୀଘ୍ର ଶୀଘ୍ର ପଛକୁ ହଟିଗଲେ। ବାଦଶାହ ସେନାଙ୍କ ସୈନ୍ୟମାନେ ମାଡ଼ ସମ୍ଭାଳି ପାରିଲେ ନାହିଁ। ସେମାନେ ଦୌଡ଼ାଦୌଡ଼ି କରି ପ୍ରାଣ ବଞ୍ଚାଇଲେ। ଯେଉଁମାନେ ଦୃଢ଼ତା ଦେଖାଇଲେ ସେମାନେ ପ୍ରାଣ ତ୍ୟାଗ କରିଲେ।

ବାଦଶାହୀ ସେନାମାନଙ୍କ ମଧ୍ୟରୁ ଯେଉଁମାନେ ବଞ୍ଚିଲେ ସେମାନେ ଦିଲ୍ଲୀ ଠାରେ ପହଞ୍ଚିଲେ ଓ ସୁବେ ଖାଁର ସେନାମାନେ ପହଞ୍ଚି ସମସ୍ତ ବୃତ୍ତାନ୍ତ ଦେଲେ ଓ ସିଂହଙ୍କୁ ସବୁ ଦୋଷ ଦେଲେ। ବାଦଶାହ ବହୁତ ପୂର୍ବରୁ ସିଂହଙ୍କୁ ମାରିବାପାଇଁ ବହୁତ ଥର ସେନା ପଠାଇଥିଲା, କିନ୍ତୁ କଣ କରନ୍ତା। ବାଧ୍ୟତାପୂର୍ବକ ସିଂହମାନଙ୍କୁ

ଦଣ୍ଡିତ କରିବା ଯୋଜନା ପ୍ରସ୍ତୁତ କରାଇ ଶକ୍ତି ପୂର୍ବକ କର ଆଦାୟ ସକାଶେ ସୁବେ ଖାଁ ପାଖକୁ ପଠାଇଥିଲା ।

## ହୈଦରୀ ଝଣ୍ଡା

ଯେତେବେଳେ ଦିଲ୍ଲୀ ଠାରୁ ସୁବେର ସମସ୍ୟା ଦୂର ହୋଇଗଲା ତାହାପରେ ସେ ସଙ୍କଟରୁ ଉଦ୍ଧାର କରିଥିବା ସିଂହମାନଙ୍କ ପଛରେ ପଡ଼ିଲା । ସିଂହମାନଙ୍କୁ ଖବର ପଠାଇଲା କି ଲୁଟି ଯାଇଥିବା ଅଧା ଖଜଣା ମୋର ଭାଗ ମତେ ଦିଅ; କିନ୍ତୁ ମସ୍ତକ ବଦଳରେ ଶରୀରର ମାଂସ କିଏ ବାହାର କରିବ ?

ସିଂହମାନେ ଉତ୍ତର ଦେଲେ- ତାହା ଖାଇ ପିଇ ଶେଷ ହୋଇଗଲା, ବର୍ତ୍ତମାନ ଆମ୍ଭମାନଙ୍କ ପାଖରେ କଣ ଅଛି ଯାହା ତୁମକୁ ଦେବୁ ?

ପରନ୍ତୁ ସୁବେଦାର ଜିଦ୍ଦିରେ ଅଟଳ ରହିଲା । ଦେବାକୁ ହିଁ ହେବ, ନଚେତ୍ ତୁମ୍ଭମାନଙ୍କୁ ମାରି ପ୍ରାପ୍ତ କରିବି ।

ସିଂହମାନେ କହିଲେ ଶୀଘ୍ର କର ଓ ଏଠାକୁ ଆସି ଯାଅ । ଲାହୋର ଠାରେ ହଇଦରୀ ଝଣ୍ଡା ଛିଡା କରାଗଲା ।

ଜାତି ଧର୍ମ ନାମରେ ସାଧାରଣ ମୁସଲମାନମାନଙ୍କୁ ସିଂହମାନଙ୍କ ବିରୋଧରେ ପ୍ରଚାର କରାଗଲା । ଇତିହାସରେ ବର୍ଣ୍ଣିତ ଅଛି । ସିଂହମାନଙ୍କ ବିରୋଧରେ ହୈଦରୀ ଝଣ୍ଡାର ତଳେ ତିନି ଲକ୍ଷ ମୁସଲମାନମାନଙ୍କୁ ଛିଡ଼ା କରାଗଲା । ସିଂହମାନେ ସେତେବେଳେ କାହନୁବାନର ଛମ୍ବକୁ ଘେରାଉ କରିଥିଲେ । ସେଥିଯୋଗୁଁ ମୁସଲମାନମାନଙ୍କର ଏହି ସୈନ୍ୟବାହିନୀର ବନ୍ୟା ଛଂଭକୁ ଘେରାଉ କରିଥିଲେ । ସିଂହମାନଙ୍କର ସେତେବେଳେ ଜଙ୍ଗଲ ହିଁ ଦୁର୍ଗ ଥିଲା । ପ୍ରଥମଦିନରେ ମୁସଲମାନମାନଙ୍କ ବିଶ୍ରାମ ସରି ନ ଥିଲା । ଆକସ୍ମିକ ଭାବେ ସିଂହମାନେ ସିଂହ ଭଳି ସେମାନଙ୍କ ଉପରେ ଚଢ଼ାଉ କରିଥିଲେ । ଘଣ୍ଟା ଦୁଇ ଘଣ୍ଟା ଏମିତି ଭାବେ ତଲବାର ଚଳାଇଲେ । ଆଖି ମଳିବାକୁ ମଧ୍ୟ ସମୟ ଦେଲେ ନାହିଁ । ସକାଳ ହେବା ପୂର୍ବରୁ ସିଂହମାନେ ପୁଣି ଜଙ୍ଗଲ ମଧ୍ୟରେ ଲୁଚି ଗଲେ । ଶବର ପାହାଡ଼ ଦେଖି ଶତ୍ରୁମାନେ ହାଏ ହାଏ କରି ଲାଗିଲେ । ଦୁର୍ବଳ ହୃଦୟ ବ୍ୟକ୍ତି ଏହାର ଦୃଶ୍ୟରେ ଘରକୁ ଫେରିଗଲେ । ପରନ୍ତୁ ଅନ୍ୟମାନେ ରାତି ଯାଏଁ ଶକ୍ତିଶାଳୀ ରହିବାପାଇଁ ଚେଷ୍ଟା କରିଲେ । ସିଂହମାନଙ୍କ ଗୁପ୍ତଚର ଯେଉଁପଟର ଦୁର୍ବଳତା ଦେଖୁଥିଲେ, ଖାଲସାମାନେ

ସେମାନଙ୍କୁ ଅସ୍ତବ୍ୟସ୍ତ କରି ଛାଡୁଥିଲେ। ଘୋଡ଼ା, ଅସ୍ତ୍ରଶସ୍ତ୍ର ଓ ଖାଦ୍ୟ ସାମଗ୍ରୀ ଯାହା ଯେଉଁଠାରୁ ମିଳୁଥିଲା ସିଂହମାନେ ସଂଗ୍ରହ କରି ନେଉଥିଲେ। ଶତ୍ରୁମାନେ ଦେଖିଲେ କି ଏହିପରି ଭାବେ ମୁକାବିଲା ହୋଇପାରୁ ନାହିଁ, ସେଥିଯୋଗୁଁ ଜଙ୍ଗଲରେ ନିଆଁ ଲଗାଇ ଚାରିପଟୁ ଘେରି ରହିବ। ଚାରିପଟୁ ନିଆଁ ଲଗାଇଦେଲେ। ବର୍ତ୍ତମାନ ସିଂହମାନେ ନିଆଁ ଘେରରେ ରହି ବହୁତ କଷ୍ଟ ପାଇଲେ। ଜଙ୍ଗଲ ଧୂଆଁରେ ଘେରିଗଲା। ବଡ଼କଷ୍ଟରେ ସିଂହ ଅନ୍ୟ ଜଙ୍ଗଲରେ ପହଞ୍ଚିବାରେ ସଫଳ ହୋଇଗଲେ କିନ୍ତୁ ବହୁତ ସିଂହ ପ୍ରାଣ ତ୍ୟାଗ କରିଲେ, ଶୋଇପାରି ନ ଥିଲେ, ଘୋଡ଼ା ପିଠିରେ ବସି ବସି କେତେ ମାସ କଟାଇଦେଲେ। ପଶୁ, ପକ୍ଷୀ ଓ ଜଙ୍ଗଲର ଶାଗ ଇତ୍ୟାଦି ଖାଇ ରହିଲେ। କେଉଁ ଗଛକୁ ଆଉଜି ପଡି ଦୁଇ ଚାରି ଘଣ୍ଟା ଆଖି ଲାଗୁଥିଲା, କାରଣ ସିଂହମାନେ ଯେଉଁ ଜଙ୍ଗଲକୁ ଯାଉଥିଲେ, ଶତ୍ରୁମାନେ ପଛରେ ପଛରେ ପହଞ୍ଚନିଆଁ ଲଗାଇ ଦେଉଥିଲେ। ସିଂହମାନେ ରାବୀ ନଦୀର ଘନ ଜଙ୍ଗଲରେ ପହଞ୍ଚିବା ପାଇଁ ଚେଷ୍ଟା କରୁଥିଲେ ସେତେବେଳେ ଭଗତୁ ଗ୍ରାମର ଗୋଟିଏ ବହୁତ ବଡ଼ ମହଲରେ କେତେଜଣ ସିଂହ ସେଠାରେ ବସିଗଲେ। ସେମାନେ ପହଞ୍ଚିବା ତୁରନ୍ତ ଶତ୍ରୁମାନେ ଯୁଦ୍ଧ ଆରମ୍ଭ କରିଦେଲେ ଓ ଖୁବ୍ ଯୁଦ୍ଧ ହେଲା। ଏହିପରିଭାବେ ଅବଶିଷ୍ଟାଂଶ ସିଂହମାନେ ସଫଳତା ପାଇଲେ ଓ ରାବୀ ଜଙ୍ଗଲରେ ଲୁଚି ଗଲେ। ଅନ୍ୟପଟରେ ଯେତେବେଳ ଯାଏଁ ମହଲର ମୁଖ୍ୟଦ୍ୱାର ଭାଙ୍ଗିନଥିଲା ସିଂହମାନେ ଖୁବ୍ ଭଲ ଭାବେ ଶତ୍ରୁମାନଙ୍କୁ ମାରି ଚାଲିଲେ କିନ୍ତୁ ଯେତେବେଳେ ଦ୍ୱାର ଭାଙ୍ଗିଗଲା ବରାବର ଯୁଦ୍ଧ କରି ଶହୀଦ ପ୍ରାପ୍ତ କରିଲେ। ହୈଦରୀ ଝଣ୍ଡା ପୋତିବା ଚାରି ମାସ ହୋଇଗଲା ଓ ତାହା ମଧ୍ୟ ଯୁଦ୍ଧ ଓ ଲଢ଼ାଇ ଝଗଡ଼ା ଦ୍ୱାରା ସମସ୍ତେ ବିରକ୍ତ ହୋଇଯାଇଥିଲେ। ସେଥିଯୋଗୁଁ ୫/୭ ଶହ ସିଂହମାନଙ୍କର ମସ୍ତକ କାଟି କିନ୍ତୁ ନିଜର ହଜାର ହଜାର ସାଥିମାନଙ୍କୁ ମାରି, ଘୋଷଣା କରିଲେ କି ସିଂହ ଆଉ ନାହାନ୍ତି। ଏହିପରି ଭାବେ ବିଜୟ ଘୋଷଣାର ବାଜା ବଜାଇ ଲାହୋର ଠାରେ ପ୍ରବେଶ ହେବାକୁ ଚାହୁଁଥିଲେ। ତାହା ୧୭୯୦ ସମ୍ୱତର ଘଟଣା ଥିଲା।

ଏହିପରି ଭାବେ ଲାହୋର ୮ ମାଇଲ ଦୂରରେ ଭିଲେବାଲ ଗ୍ରାମ ନିକଟରେ ସେହି ହଇଦରୀ ଝଣ୍ଡାମାନେ ଆଶ୍ରୟ ନେଇଥିଲେ। ତାହା ସେମାନଙ୍କ ଶେଷ ବିଶ୍ରାମ ଥିଲା। ଶୀଘ୍ର ଓ ପ୍ରଥମ ଖବର ପହଞ୍ଚାଇବା ମାନେ କେତେଜଣ ପ୍ରଥମେ ଲାହୌରରେ ପହଞ୍ଚିସାରିଥିଲେ। ତଥାପି ଭିଲେବାଲ ଗ୍ରାମ ନିକଟରେ ପ୍ରାୟ ୪୦ ହଜାରର ଏକତ୍ରିତ

ହେବ, ଯେଉଁମାନେ ରାତ୍ରି ବିଶ୍ରାମ ସକାଶେ ଅଟକି ରହିଥିଲେ। ରାବୀ ଜଙ୍ଗଲ ପ୍ରାୟ ଦୁଇ ମାଇଲ ହେବ। ସଂଯୋଗବଶତଃ ଜଣେ ସିଂହ ମୁଖିଆ ସେଠାରେ ବୁଲୁଥିଲେ ଓ ତାଙ୍କର କେତେଜଣ ସାଥି ସେଠାରେ ପହଞ୍ଚିଗଲେ ଓ ଅନ୍ୟ ପଟରୁ ବାହାର ଜଙ୍ଗଲରୁ ଆସିଥିଲେ ସେମାନଙ୍କୁ ଜଣେ ଗୁପ୍ତଚର ଖବର ଦେଲା କି ହାଇଦରୀ ଝଣ୍ଡା ମାନେ ଭିଲେବାଲ ଗ୍ରାମରେ ରହିଛନ୍ତି ଓ ସେଠାରେ ବିଜୟର ମହୋତ୍ସବ କରୁଛନ୍ତି କି ଆମ୍ଭେ ସିଂହମାନଙ୍କୁ ସମାପ୍ତ କରିଦେଲୁ। ମାଂସ, ମଦ ଓ ଜରଦା ପଳାଉର କାର୍ଯ୍ୟକ୍ରମରେ ବ୍ୟସ୍ତ ଥିଲେ। ଏହା ଶୁଣି ସିଂହମାନେ କ୍ରୋଧାଗ୍ନିରେ ଲାଲ ହୋଇଗଲେ ଓ କାର୍ଯ୍ୟକ୍ରମ ପ୍ରସ୍ତୁତ କଲା।

ଗ୍ରୀଷ୍ମଋତୁର ସମୟ ଥିଲା, ପ୍ରାତଃ ୪ଟା ବେଳେ ଆରାମରେ ଶୋଇଥିବା ଶତ୍ରୁମାନଙ୍କୁ ସିଂହମାନେ ଆକ୍ରମଣ କରିଲେ। ସେମାନଙ୍କୁ ଖବର ନ ଥିଲା ଓ ସେମାନେ ଭାବିଥିଲେ ସିଂହ କେହି ବଞ୍ଚି ନାହାନ୍ତି ଓ ଯଦି କିଏ ଥିବ, ସେ ବଡ଼ ମୁସ୍କିଲ୍‌ରେ ଯଦି ବଞ୍ଚିଥାଏ ତା' ହେଲେ ଆମ୍ଭମାନଙ୍କ ଉପରେ ଆକ୍ରମଣ କିଏ କରିବ ? ପରନ୍ତୁ ଆକସ୍ମିକ ଆକ୍ରମଣ ସଙ୍କଟରେ ପଡ଼ିଲେ। କିଏ ଶୋଇଥିଲା କିଏ ଆଖି ଖୋଲୁଥିବାବେଳେ ମରିଗଲେ। ଅସ୍ତ୍ରଶସ୍ତ୍ର ଉଠାଇବା ପାଇଁ ସିଂହମାନେ ସୁଯୋଗ ଦେଉ ନ ଥିଲେ ବଡ ଫୁର୍ତ୍ତି ସହ କାମ କରୁଥିଲେ। ୧୦୦୦ ସିଂହ ଖେଳେଇ ହୋଇଗଲେ ଓ ଚାରିପଟେ ରହିଥିବା ଗୋଳା ବାରୁଦ ସହ ଆକ୍ରମଣ କରିଦେଲେ ପୁଣି ବିଜୟ ହୋଇଗଲେ। ମିନିଟ୍ ମଧ୍ୟରେ ଶବର ପାହାଡ଼ ହୋଇଗଲା। ସିଂହମାନେ ହୈଦରୀ ଝଣ୍ଡାର ସମସ୍ତ ଦୁଃଖର ପ୍ରତିଶୋଧ ନେଲେ। ସିଂହମାନଙ୍କ ମସ୍ତକ ନେଇ ବଡ଼ାଇ ନେଉଥିବା ମାନେ ଲୁଚି ପ୍ରାଣ ବଞ୍ଚାଇବା ବ୍ୟବସ୍ଥା କରୁଥିଲେ। ସିଂହମାନଙ୍କର ମସ୍ତକ, ଅସ୍ତ୍ରଶସ୍ତ୍ର, ଘୋଡ଼ା ଓ ହୈଦରୀ ଝଣ୍ଡା ମଧ ଛାଡ଼ିଦେଲେ, ଯେଉଁଠି ଏକତ୍ରିତ ହୋଇ ସିଂହମାନଙ୍କୁ ସମାପ୍ତ କରିବା ଶପଥ ନେଇଥିଲେ। ୮-୧୦ ହଜାର ଶତ୍ରୁମାନଙ୍କୁ ସେଠାରେ ସିଂହମାନେ ରଖିଲେ ଓ ଅନ୍ୟମାନେ ଦୌଡ଼ି ଚାଲିଲେ। ପଛକୁ ଘୂରି ଦେଖୁଥାନ୍ତି କି କୌଣସି ସିଂହ ସେମାନଙ୍କ ପଛରେ ପିଛା କରୁଛନ୍ତି କି ନାହିଁ।

## ସୁବା ଖାଁ ବାହାଦୁର ଚିନ୍ତାରେ ବୁଡିଗଲା

ହଇଦରୀ ଝଣ୍ଡାର ଭିଲେବାଲ ଠାରେ ହୋଇଥିବା ଦୁର୍ଦ୍ଦଶା ମୁସଲମାନ ହାକିମମାନଙ୍କୁ ଅନୁତପ୍ତ କରାଇଲା। ବର୍ତ୍ତମାନ ସେନାମାନେ ଫେଣ ଭଳି ଯେଉଁଠି

ସେଇଠି ବସିଗଲେ। ସିଂହମାନେ ପୁଣି ଖୋଲାଖୋଲି ଭାବରେ ଅକାଳ କାଳ କରି ଘୂରି ବୁଲିଲେ। ଅମୃତସରରେ ଜୟ ଜୟକାର ଓ ଗୁରୁବାଣୀର ଧ୍ୱନି ଗୁଞ୍ଜନ ହୋଇଚାଲିଲା।

ପ୍ରଥମେ ମଧ୍ୟ ଭାବୁଥିଲା, ପରନ୍ତୁ ଏହିଥର ସୁବା ଖାଁ ବାହାଦୂର ଚିନ୍ତାରେ ଡୁବିଗଲା। ବହୁତ ଦିନ ଯାଏଁ ସଭାରେ ମଧ୍ୟ ପହଞ୍ଚିଲା ନାହିଁ। ଶେଷରେ ପରାମର୍ଶଦାତା ମାନେ ବିଚାର ବିମର୍ଷ କରି ନେଲେ କି ବାଦଶାହଙ୍କୁ ଲେଖି ପଠାଇବା କି ଯଦି ଏହି ସମୟରେ ସିଂହମାନଙ୍କୁ କୌଣସି ଭାବେ ଅକ୍ତିଆର ନକରିଲେ, ପରେ ମୁସଲମାନଙ୍କ ଶାସନ ଉପରେ ବିପଦର ଆଶଙ୍କାର ବାଦଲ ଘେରି ରହିଛି। ତାହା ପଢି ତାହାର ଜବାବ ବାଦଶାହ ନିଜ ତରଫରୁ ପରାମର୍ଶ ଲେଖି ପଠାଇଲା କି ସିଂହମାନଙ୍କୁ ଏହି ସମୟରେ ଜମିଦାରୀ ଦେଇ ହାତରେ ରଖିବା ସବୁଠାରୁ ଉତ୍ତମ କାର୍ଯ୍ୟ ହେବ। ଏହା ପଢି ସୁବା ଖାଁ ମଧ୍ୟ ଲେଖିଲା କି ଏହି କାର୍ଯ୍ୟ ଆପଣ କରିପାରିବେ କାରଣ ମୁଁ ବହୁତ ଥର ପ୍ରସ୍ତାବ ଯୋଜନାର ବଚନ ଦେଇଛି ଓ ଭାଙ୍ଗିଛି ମୋ ଉପରେ କେହି ବିଶ୍ୱାସ କରିବେ ନାହିଁ। ଏହିପରି ବହୁତ କିଛି ଲେଖି ସୁବା ଖାଁ ବାହାଦୂର ପୁଣି ଗୋଟିଏ ପତ୍ର ସହ ଜଣେ ବିଶିଷ୍ଟ ବ୍ୟକ୍ତି ସହ ଦିଲ୍ଲୀ ବାଦଶାହ ପାଖକୁ ପଠାଇଲା।

## ବାଦଶାହ ସିଂହମାନଙ୍କ ନକଲ କରି ଦେଖାଇବା

ସୁବେ ଖାଁ ବାହାଦୁର ପାଖକୁ ପଠାଇଥିବା ଲୋକ ଦିଲ୍ଲୀଠାରେ ପହଞ୍ଚିଗଲା। ବାଦଶାହ ସେହି ଚିଠି ପଢ଼ିଲା ଓ ମୌଖିକ ଭାବେ ମଧ୍ୟ ସେ ହଇଦରୀ ଝଣ୍ଡାର ଦୁର୍ଦ୍ଦଶା ବୁଝିପାରିଲା ଓ ସ୍ତବ୍ଧ ରହିଗଲା। ମୁହମ୍ମଦ ଶାହ ରଙ୍ଗିଲା ବହୁତ ସୌଖୀନ ଓ ମଜାମଜଲିସ ବାଦଶାହ ଥିଲା। ସେ କେବେ କୌଣସି ସମସ୍ୟାର ପ୍ରତିନିଧିତ୍ୱ କରିନଥିଲା। କିନ୍ତୁ ସିଂହମାନଙ୍କ କାର୍ଯ୍ୟକଳାପ ଓ ଉତ୍ତପ୍ତମୟ କରାମତିର ଖବର ପ୍ରତିଦିନ ଶୁଣୁଥିଲା। ତାହାର ଶଳା ଜାଫର ବେଗ ମଧ୍ୟ ସିଂହମାନଙ୍କ ବୀରତ୍ୱ ଚତୁରତା ଓ ନିର୍ଭୀକତାର ଖବର ଶୁଣିଥିଲା। ସେଥିଯୋଗୁଁ ତାହାର ସିଂହମାନଙ୍କୁ ସ୍ୱଚକ୍ଷୁରେ ଦେଖିବା ଅଭିଳାଷା ଜାଗ୍ରତ ହେଲା। ସେ ବ୍ୟସ୍ତତା ଓ ଆବେଗତା ହୋଇ କହିଲା – "ମୋତେ ଦେଖାଇଦିଅ ତ ସିଂହମାନେ କେମିତି କା ?"

ନିକଟସ୍ଥ ପରାମର୍ଶଦାତାମାନେ କହିଲେ, "ବାଦଶାହ ସଲାମତ, ରଣକ୍ଷେତ୍ର ପହଞ୍ଚି ଦେଖ ତାହେଲେ ଜାଣିପାରିବେ କି ସିଂହମାନେ କେମିତି ହୁଅନ୍ତି ?" ଏଠାରେ ଆପଣମାନଙ୍କୁ କିଏ କହିପାରିବ ?

ବାଦଶାହ ଭାବିବାକୁ ଲାଗିଲା ଓ କହିଲା, ଦେଖତ ସେହି ଠକ (ଭଣ୍ଡ)ମାନଙ୍କୁ ପଚାର, ସେମାନେ ବୋଧହୁଏ ନକଲ କରି କହିପାରନ୍ତି।

ଭଣ୍ଡମାନଙ୍କୁ ଡକରା ଗଲା। ଭଣ୍ଡ ମାନେ ନ କହିଲେ, ଆମ୍ଭେମାନେ ସିଂହମାନଙ୍କ ନକଲ କରି ଦେଖାଇପାରିବୁ, ଯଦି ଆମ କଥା ମାନିବା'। 'କ'ଣ ବାଦଶାହ ପଚାରିଲା।'

'ଏହା ଆମର ଯେଉଁ ବ୍ୟକ୍ତିମାନେ ମରିବେ, ସେମାନଙ୍କୁ ପୁରସ୍କାର ମିଳୁ ଓ ଯାହା ହାତରେ ମରିବେ, ସେମାନଙ୍କୁ କିଛି ଦଣ୍ଡ ନ ମିଳୁ।

ଠିକ୍ ଅଛି  ବାଦଶାହ କହିଲା। ଦିଲ୍ଲୀର ଦୁର୍ଗ ଠାରେ ଭଣ୍ଡମାନେ ସିଂହମାନଙ୍କର ନକଲ କରିବା ଆରମ୍ଭ କରିଦେଲେ। ବଡ଼ ବଡ଼ ହିତାକାଂକ୍ଷୀ ବାଦଶାହମାନଙ୍କ ସହିତ ସୁପ୍ରସିଦ୍ଧ ବ୍ୟକ୍ତିମାନେ ନକଲ ଦେଖିବାପାଇଁ ସେଠାରେ ଏକତ୍ରିତ ହୋଇଗଲେ। ଗୋଟିଏ ନକଲି ଜଙ୍ଗଲ ତିଆରି କରାଗଲା ଯେଉଁଠିକି ଦୁର୍ବଳିଆ ଓ ପ୍ରାଣ ନ ଥିଲା ଭଳି ସିଂହ ଆସି ପଶିଗଲା। ତାହା ପାଖରେ ଭଙ୍ଗାଭଙ୍ଗି ଅସ୍ତ୍ରଶସ୍ତ୍ର କିନ୍ତୁ ବଚନ ଓ ଜୟ ଜୟକାର ଅତି ଉନ୍ନତ ଧରଣର ଭୟ ଓ ଚିନ୍ତାର ନାମ ନ ଥିଲା। ଅନ୍ୟପଟରୁ ଜଙ୍ଗଲରୁ ବାହାର ପଟରୁ ମୋଟା ଓ ହୃଷ୍ଟପୁଷ୍ଟ ଶରୀରର ଜଣେ ମୁସଲମାନ ସିପାହୀ, ଦୃଢ଼ ଓ ମଜଭୁତ ଅସ୍ତ୍ରଶସ୍ତ୍ର ସହ କିନ୍ତୁ ତାହାର ଚେହେରାର ରଙ୍ଗ ଫିକା ପଡ଼ିଥିଲା ଓ ସେହି ମୁସଲମାନ ଜଣକ ଜଙ୍ଗଲ ଆଡ଼କୁ ଗଲା। ପ୍ରାଣ ବଞ୍ଚାଇ ଲଢ଼ାଇ କରିବା ଇଚ୍ଛା ଥିଲା, କିନ୍ତୁ ଅନ୍ୟମାନଙ୍କ ଜୀବନ ମୃତ୍ୟୁକୁ ମଜା ଉଡ଼ାଇବା ମାନେ ସିଂହମାନଙ୍କୁ ନକଲ କରିବାରେ ବ୍ୟସ୍ତ ହୋଇ ରହିଲେ ଓ ଶୀଘ୍ର ଶୀଘ୍ର ସିଂହମାନେ ଦେଖୁ ଦେଖୁ ଆକ୍ରମଣ କରିଚାଲିଲେ, ଜୟ ଜୟକାର ଛାଡ଼ନ୍ତି କି ଏହି ସିଧା ସାଦା ଭଣ୍ଡ ନକଲ ମୁସଲମାନ ନକଲ ଦେଖାଇ ମରିଯାଉଥିଲେ। କେତେଜଣ କ୍ଷତ ବିକ୍ଷତ ହୋଇଗଲେ। ଏହି କାମ କରୁଥିବା ସେହି ନକଲୀମାନେ ସିଂହ ସର୍ଦ୍ଦାର ଶୀଘ୍ର ଶୀଘ୍ର ହରଣ ହୋଇ ପୁଣି ଜଙ୍ଗଲ ମଧ୍ୟରେ ଲୁଚିଗଲେ ଓ ଦେଖିବାମାନେ ଆଶ୍ଚର୍ଯ୍ୟ ହୋଇଗଲେ।

ବାଦଶାହ କହିବାକୁ ଲାଗିଲା – ଏମିତିକା ସିଂହମାନଙ୍କ ସହିତ ଆମ୍ଭେମାନେ ଶତ୍ରୁତା କରିଆସୁଛୁ, ଯେଉଁମାନେ କି ମରିବାପାଇଁ ଡରନ୍ତି ନାହିଁ, ପୁଣି ଜଙ୍ଗଲରେ ରହି ମଧ୍ୟ ଏତେ ସାହସୀ ଓ ସେମାନେ ନିଜର ଆଦର୍ଶ ଭୁଲି ନାହାନ୍ତି।

ଦିଲ୍ଲୀର ବାଦଶାହ ସୁବେଖାଁ ବାହାଦୁର ସିଂହମାନଙ୍କ ସହ ସମାଧାନ କରିବାପାଇଁ ଲେଖି ପଠାଇଲା ଓ ତାହା ସହିତ ଏକ ଲକ୍ଷର ଜମିଦାରୀ ଓ ନବାବ ପଦର ଉପାଧି ଉପହାର ସିଂହମାନଙ୍କୁ ଦେବାପାଇଁ ଆଦେଶ ଦେଲା।

## ଭାଇ କପୁର ସିଂହଜୀଙ୍କୁ ନବାବ ଉପାଧି ମିଳିବା

ଯେତେବେଳେ ଲାହୋର ଠାରେ ବାଦଶାହ ତରଫରୁ ଏହି ଆଦେଶ ପହଞ୍ଚିଲା, ସୁବେ ଖାଁ ବାହାଦୁର ନବାବୀ ଉପାଧି ଓ ଜମିଦାରୀର ପଟ୍ଟା ଲେଖି ଭାଇ ସୁବେଗ ସିଂହଜୀଙ୍କ ସହିତ ସିଂହମାନଙ୍କ ପାଖରେ ଅମୃତସର ପଠାଇଲା ଓ କହିଲା କି ଯେମିତି ମଧ୍ୟ ଥରଟିଏ ସିଂହମାନଙ୍କୁ ବିଶ୍ୱାସ ଦେଇ ଆସ।

ଯେତେବେଳେ ଭାଇ ସୁବେଗ ସିଂହଜୀ ଅମୃତସର ପହଞ୍ଚିଲେ, ଶ୍ରୀ ଅକାଳ ତଖତ୍ ସାହିବର ସ୍ୱର୍ଣ୍ଣମନ୍ଦିର ପରିସର ମଧ୍ୟରେ ଦରବାର ସଜା ଯାଇଥିଲା। ଭାଇ ସୁବେଗ ସିଂହଜୀ ଦରବାର ମଧ୍ୟରେ ପହଞ୍ଚି ସିଂହମାନଙ୍କ ନିକଟରେ ବାଦଶାହ ତରଫରୁ ପଠାଇଥିବା ଜମିଦାର ପଟ୍ଟା ଓ ନବାବୀ ଉପାଧି ଖାଲସା ନିକଟରେ ରଖିଦେଲେ ଓ ୧୦୧ ଟଙ୍କାର କଡ଼ା ପ୍ରସାଦ (ଅଟା ହାଲୁଅ ଯାହା ଗୁରୁଦ୍ୱାରରେ ଭୋଗ ଲଗାଯାଏ) ମହାରାଜା ପରମାତ୍ମାଙ୍କ ଦରବାରଠାରେ ରଖିଲେ। ପ୍ରତିନିଧିମାନେ କହିଲେ, ଖାଲସା ଜୀ ବାଦଶାହ ପଠାଇଥିବା ନବାବୀ ଉପାଧି ଆମ୍ଭେ ଗ୍ରହଣ କରିବୁ ନାହିଁ, ଆମ୍ଭେ ସତ୍‌ଗୁରୁଙ୍କ ବରଦାନ ତେଗ (ଖଣ୍ଡା) ଦ୍ୱାରା ସ୍ୱୟଂ ଆଣିବୁ, ତୁର୍କୀମାନଙ୍କ ଦାନ କାହିଁକି ଗ୍ରହଣ କରିବୁ ? ଆମ୍ଭେ କଣ ଭିକାରି, ଯାହା ଯିଏ ଦେବ ଆମ୍ଭେ ଗ୍ରହଣ କରିବୁ, ଆମ୍ଭେ ଏହି ନବାବୀ ଉପାଧି ନେବୁ ନାହିଁ।

ଯେତେବେଳେ ବଡ଼ ପ୍ରତିନିଧି ନବାବୀ ପଦବୀ ଫେରେଇ ଦେଲେ ତା'ପରେ ବର୍ତ୍ତମାନ ଅନ୍ୟସବୁ ପ୍ରତିନିଧି ସଭ୍ୟମାନଙ୍କୁ ଏହା ନେବା ପାଇଁ କୁହାଗଲା, ସେହି ଜବାବ ଦେଲେ। ବର୍ତ୍ତମାନ ନବାବୀ ଉପାଧି ମିଳୁଛି, କିନ୍ତୁ କେହି ରାଜି ହେଉ ନାହାନ୍ତି। ଏହା ଦେଖି ଭାଇ ସୁବେଗ ସିଂହଜୀ କହିଲେ- ଖାଲସା ଜୀ, ମୋର ବିଚାର ହେଉଛି ନିକଟକୁ ଆସିଥିବା ଜିନିଷ ଫେରାଅ ନାହିଁ। ଯଦି ସଭ୍ୟ ମହୋଦୟ ଏହାକୁ ଦେବାପାଇଁ ଚାହୁଁନାହାନ୍ତି, ତାହେଲେ ଖାଲସା ପନ୍ଥ ନିଜର କେଉଁ ସେବକକୁ ଏହି ବରଦାନ ପୁରସ୍କାରସ୍ୱରୂପ ଦେଇ ଦିଅ।

କୁହାଯାଉଛି କି ସେତେବେଳେ ସର୍ଦ୍ଦାର କପୁର ସିଂହଜୀ ପଂଖା ସେବା କରୁଥିଲେ ଓ ବହୁତ ବଡ଼ ସେବକ ଥିଲେ ଯିଏକି ସବୁ ସମୟରେ କିଛି ନା କିଛି ସେବାରେ ଲାଗି ରହୁଥିଲେ। ଘୋଡ଼ା ସେବା, ଦାନା ପାଣି ଦେବା ଇତ୍ୟାଦି ସେବା କପୁର ସିଂହଜୀ କରୁଥିଲେ। ସେ ଜଣେ ବିଚକ୍ଷଣ ଚିକିତ୍ସକ ଥିଲେ। ମଲମ ପଟୀ କ୍ଷତ ଚିକିତ୍ସା ଦ୍ୱାରା ଅତି ଶୀଘ୍ର ଉପଶମ ଦେଉଥିଲେ। ସେଥିଯୋଗୁଁ ଶିଖ ପନ୍ଥରେ ସେ ସମ୍ମାନଯୋଗ୍ୟ ଥିଲେ। ଯେତେବେଳେ ଭାଇ ସୁବେଗ ସିଂହଜୀ ନବାବୀ ଉପାଧି କାହାକୁ ଦେବାପାଇଁ କହିଲେ ପ୍ରତିନିଧିମାନେ ସର୍ଦ୍ଦାର କପୁର ସିଂହଜୀଙ୍କୁ ଆଙ୍ଗୁଠି ଦେଖାଇଲେ। ଭାଇ ସୁବେଗ ସିଂହଜୀ ନବାବୀ ଉପାଧି ସର୍ଦ୍ଦାର କପୁର ସିଂହଜୀଙ୍କ ଆଗରେ ରଖିଦେଲେ।

ନବାବ କପୁର ସିଂହଜୀ ଶିଖ ପନ୍ଥରେ ବହୁତ ଜ୍ଞାନୀ, ବିଚାରବନ୍ତ ଓ ଯୋଗ୍ୟ ପ୍ରତିନିଧି ଥିଲେ ଓ ଦୁଇ ପକ୍ଷର ସଭ୍ୟ ଓ ପ୍ରତିନିଧିମାନଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା। ଶିଖ ପନ୍ଥମାନେ ଲଢ଼ି ଥିଲେ। ସର୍ଦ୍ଦାର କପୁର ସିଂହଜୀ କହିବାକୁ ଲାଗିଲେ, ପ୍ରତିନିଧିମାନଙ୍କର ହକ ମୋର କିଛି ନାହିଁ ଓ ମୁସଲମାନମାନଙ୍କର ଦିଆହୋଇଥିବା ନବାବୀ ପଦ ମୁଁ କେବେ ଗ୍ରହଣ କରିବି ନାହିଁ, ପରନ୍ତୁ ତାହା ବର୍ତ୍ତମାନ ଆପଣ (ସିଂହ) ମତେ ସେବକ ଭାବି କ୍ଷମା କରୁଛ ଓ ଗୁରୁ ପନ୍ଥର କ୍ଷମା ବିଚାର କରି ଗ୍ରହଣ କରୁଛି। ପରନ୍ତୁ ଗୋଟିଏ ପ୍ରାର୍ଥନା ମୁଁ କରୁଛି ଗୁରୁ ପନ୍ଥର ପ୍ରାଧାନ୍ୟତାକୁ, ମୁଁ ଯେଉଁ ସେବାଯୋଗ୍ୟ ତାହା ମୋ ପାଖରେ ରଖିବାକୁ ଦିଆଯାଉ, ମତେ ଏହିପରି ଭାବେ ସେବକ ଓ ଚାକର ଭାବେ ସମ୍ମାନ ମିଳୁ, ଯେମିତି ବର୍ତ୍ତମାନ ସତ୍କାର ହେଉଛି, ତାହାହେଲେ ମୁଁ ଗୁରୁ ପନ୍ଥର ବହୁତ ଧନ୍ୟବାଦ ରହିବି। ପୁଣି ସତ ଶ୍ରୀ ଅକାଳଙ୍କୁ ଜୟକାର ଦ୍ୱାରା (ଯୋ ବୋଲେ ସୋନିହାଲ, ସତ ଶ୍ରୀ ଅକାଳ ଅର୍ଥ-ଅକାଳ ପୁରୁଷ ପରମାତ୍ମାଙ୍କୁ ହାର୍ଦ୍ଦିକ, ଜୟ ଜୟକାର ତଥା ଚରଣ ସ୍ପର୍ଶ) ସର୍ଦ୍ଦାର କପୁର ସିଂହଜୀ ନବାବ ପଦ ଗ୍ରହଣ କରିଲେ ଓ ଭାଇ ସୁବେଗ ସିଂହଜୀ ଲାହୋର ଫେରିଯାଇଥିଲେ।

## ସିଂହମାନଙ୍କ ସହ ପୁଣି ବିଶ୍ୱାସଘାତ

ଏକ ଲକ୍ଷର ଜମିଦାରୀ ଦ୍ୱାରା ସିଂହମାନଙ୍କ ସମୟ ବହୁତ ଭଲ କଟି ଚାଲିଲା। ଏହିପରି କେତେ ବର୍ଷ ସିଂହମାନଙ୍କ ସକାଶେ ସୁଖସମୃଦ୍ଧି ସହ କଟି ଚାଲିଲା। କିନ୍ତୁ ଇତିହାସରେ ବର୍ଣ୍ଣିତ କି ସୁବେ ଖାଁର ମନରେ ଦ୍ୱେଷ ଭରି ରହିଥିଲା। ଯେତେବେଳେ

ସିଂହମାନେ ଖୁବ୍ ଆରାମ ସହ ରହିଲେ। ଦେଶରେ ବହୁତ ସୁଖଶାନ୍ତିର ଲହର ଚାଲିଥିଲା। ଧୀରେ ଧୀରେ ସିଂହମାନେ କାମଧନ୍ଦାର ବାହାନାରେ ଦୂର ଦୂରକୁ ଚାଲିଗଲେ। ସେତେବେଳେ ସୁବେ ଖାଁ ସିଂହମାନଙ୍କ ସହ ବହୁତ ବିଶ୍ୱାସଘାତ କରିଲା। ସିଂହମାନେ ନିଃବୈର ଥିଲେ ଓ ସେହି ଅଞ୍ଚଳରେ ଶାନ୍ତି ଚାହୁଁଥିଲେ, କିନ୍ତୁ ବେଇମାନ ହାକିମ ଯେତେବେଳେ ପ୍ରାଣପଣେ ଶତ୍ରୁତା ସହ ପଛରେ ଲାଗି ରହିଲା ସିଂହମାନେ ମଧ କମ୍ ନ ଥିଲେ ଓ ସେହିଭାବେ ସେହି ଅଞ୍ଚଳରେ ଅଶାନ୍ତି ବଢି ଯାଉଥିଲା। ନିଜର ଦୁଃଖ ସୁଖରେ ସେମାନେ ସମୟ କାଟୁଥିଲେ କିନ୍ତୁ ଶତ୍ରୁକୁ ବିଜୟ ହେବାପାଇଁ ସୁଯୋଗ ଦେଉ ନ ଥିଲେ।

କିନ୍ତୁ ଏହିଥର ଅଚାନକ ଆକ୍ରମଣ ସିଂହମାନଙ୍କୁ ସିଧା ଧରି ହତ୍ୟା କରିବାପାଇଁ ସେମାନଙ୍କୁ ପରାମର୍ଶଦାତା ହୁକୁମ ଦେଲା। ଯାହାକୁ ଯେଉଁଠି ଦେଖିଲେ ଶତ୍ରୁ ସିଂହମାନଙ୍କୁ ହତ୍ୟା କରି ଚାଲିଲେ। ସିଂହମାନେ ସେହି ସମୟରେ ୫ଟି ପ୍ରତିନିଧି ଦଳ ଭାବେ ଭାଗ ବାଣ୍ଟି ହୋଇଯାଇଥିଲେ। ତରନା ଦଳ ଓ ବୁଢ଼ା ଦଳ। ଆଶ୍ୱିନ ମାସର ସମୟ ଥିଲା। ସେଥିଯୋଗୁଁ ବୁଢ଼ା ଦଳ ସେହି ସମୟରେ ଦୀପମାଳାର ମେଳା ଶ୍ରୀ ହରିମନ୍ଦିର ସାହିବ (ସ୍ୱର୍ଣ୍ଣମନ୍ଦିର)ର ସାମ୍ନା ଆଡ଼କୁ ଆସୁଥିଲେ। ସେତେବେଳେ ବାବା ବୁଢାଜୀଙ୍କର (ଗ୍ରନ୍ଥ ସାହିବର ପୁସ୍ତକ) ବୀଡ଼ ପାଖରେ ମରାମରି କରି ଶତ୍ରୁମାନଙ୍କର ସେନା ସହିତ ସମ୍ମୁଖୀନ ହୋଇଗଲେ। ଶତ୍ରୁମାନଙ୍କର ସଂଖ୍ୟା ବେଶି ଥିବା ଯୋଗୁଁ ସିଂହମାନଙ୍କୁ ପଛକୁ ଫେରିବାକୁ ପଡ଼ିଥିଲା। ଶତ୍ରୁମାନଙ୍କ ଶକ୍ତି ଓ ସାହସ ବଢ଼ିଗଲା ଓ ସିଂହମାନେ ଲଢ଼ାଇ କରି କରି ରାବୀ ଜଙ୍ଗଲରେ ପଶିଗଲେ। ତରାନା ଦଳ ସେତେବେଳେ ସାନ୍ଦଲ ବାରର ଜଙ୍ଗଲରେ ବୁଲୁଥିଲେ। ଯେତେବେଳେ ସେମାନେ ଏହି ଖବର ପାଇଲେ ସେମାନେ ତୁରନ୍ତ ବୁଢ଼ା ଦଳର ସାହାଯ୍ୟ ସକାଶେ ସେଠାରେ ପହଞ୍ଚିଗଲେ। ଦୁଇ ଦଳ ମିଶି ପୁଣି ଶତ୍ରୁମାନଙ୍କୁ ମଜା ଚଖାଇଲେ ଓ ପୁଣି ସିଂହମାନେ ବିଜୟ ପ୍ରାପ୍ତ କରିଲେ। କିନ୍ତୁ ଗ୍ରାମବାସୀମାନେ ବହୁତ ସିଂହ ମୃତ୍ୟୁ ପ୍ରାପ୍ତ କରିଲେ ଓ ଅବଶିଷ୍ଟାଂଶ ସେହି ଦଳରେ ସିଂହମାନଙ୍କ ସହିତ ମିଶିଗଲେ। ସିଂହମାନେ ବିଜୟ ପ୍ରାପ୍ତ କରିଲେ ଓ ଅମୃତସରଠାରେ ପହଞ୍ଚିଗଲେ କିନ୍ତୁ ଶତ୍ରୁମାନେ ପୂରା ଶକ୍ତି ସହ ସିଂହମାନଙ୍କୁ ସମାପ୍ତ କରିବାପାଇଁ ଇଚ୍ଛା କରୁଥିଲେ। ଯେତେବେଳେ ସିଂହମାନେ ଦୂରକୁ ଚାଲିଗଲେ। ସୁବା ଖାଁ ସିଂହମାନଙ୍କୁ ଧରିବା ପାଇଁ ପୁରସ୍କାର ଘୋଷଣା କରିଦେଲା। ୨୫, ୫୦ ଓ ୮୦

ଟଙ୍କା ଶିଖମାନଙ୍କ ମସ୍ତକ ପହଞ୍ଚାଇଲେ ପୁରସ୍କାର ମିଳିବାକୁ ଲାଗିଲା । ଅମୃତସରକୁ ନଜରବନ୍ଦୀ କରାଗଲା ଓ ଅତ୍ୟାଚାରର ସୀମା ପାର ହୋଇଗଲା । ଲୋଭୀ, କୃପଣମାନେ ୍ସ୍କାର ଆଶାରେ ସିଂହମାନଙ୍କୁ ଧରିବା ଓ ମାରିବା ପଛରେ ଲାଗି ରହିଲେ । ସେହି ସମୟରେ ସିଂହମାନଙ୍କ ସକାଶେ ଆକସ୍ମିକ ବଜ୍ରପାତର ସମୟ ହୋଇଗଲା । ଜଙ୍ଗଲରୁ ବାହାରକୁ ଆସିବା ଅସମ୍ଭବ ହୋଇଗଲା । ଜଙ୍ଗଲ ବାହାରେ ଶତ୍ରୁ ଦଳ ହୋଇ ପହରା ଦେଉଥିଲେ । ସିଂହମାନେ ନିଜକୁ ନିଜେ ପ୍ରାଣ ବଞ୍ଚାଇ ବହୁତ ଦୂର ମରୁଭୂମି ଅଞ୍ଚଳ ବିକାନୀର ଆଡ଼କୁ ଚାଲିଯାଇଥିଲେ ।

### ଭାଇ ମନୀ ସିଂହଜୀ

ଭାଇ ମନୀ ସିଂହଜୀ ଗୁରୁ ପନ୍ଥର ମହାନ୍ ବିଦ୍ୱାନ୍‌ମାନଙ୍କ ମଧ୍ୟରୁ ଜଣେ ଥିଲେ । ସେ ସ୍ୱୟଂ ବାଲ ଅବସ୍ଥା ଠାରୁ ଶ୍ରୀ ଆନନ୍ଦପୁର ସାହିବ ଓ ପୁଣି ଦୁର୍ଗ ଛାଡ଼ିବାଯାଏଁ ସେଠାରେ ଥିଲେ । ଯେତେବେଳେ ୧୦ମ ପିତା ମହାରାଜ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ ଦୁର୍ଗ ଛାଡ଼ିଥିଲେ ସେତେବେଳେ ସେ ସ୍ୱୟଂ ଗୁରୁ ମହାରାଜଙ୍କ ସହିତ ଥିଲେ ଓ ସରସା ନଦୀ ପାର କରି ଶ୍ରୀ ୧୦ମ ପିତା ମହାରାଜଙ୍କ ଆଦେଶ ଯୋଗୁଁ ଦୁଇ ମାତାଜୀ (ମାତା ସୁନ୍ଦରଜୀ ଓ ସାହିବ ଦେବାଁ)ଙ୍କୁ ନେଇ ଦିଲ୍ଲୀଠାରେ ଯାଇ ରହିଥିଲେ । ଗୁରୁ ମହାରାଜଜୀ ଚମକୌର, ମାଛିବାଡେ, ଦିନେ ଇତ୍ୟାଦି ଦେଇ, ମୁକ୍ତେଶ୍ୱରର ଯୁଦ୍ଧ ପରେ ଯେତେବେଳେ ସାବୋ ଓ ତଲବଣ୍ଡୀ ଭାଇ ଡଲ୍ଲୁ ପାଖରେ ପହଞ୍ଚିଲେ । ଦଶ ମାସ ପରେ ମନୀ ସିଂହଜୀ ସେଠାରୁ ମାତାମାନଙ୍କ ସହ ସତ୍‌ଗୁରୁଜୀଙ୍କ ପାଖରେ ପହଞ୍ଚିଲେ । ସେଠାରେ ସତ୍‌ଗୁରୁ ମହାରାଜ ଦକ୍ଷିଣ ଦିଗକୁ ଚାଲିଗଲେ ଓ ଭାଇ ମନୀ ସିଂହଜୀଙ୍କୁ ପୁଣି ଦିଲ୍ଲୀଠାରେ ମାତା ସୁନ୍ଦରୀଜୀଙ୍କ ପାଖରେ ରହିବାପାଇଁ ଆଦେଶ ମିଳିଲା । ଭାଇ ମନୀ ସିଂହଜୀ ଦିଲ୍ଲୀଠାରେ ମାତା ସୁନ୍ଦରୀଜୀଙ୍କ ପାଖରେ ବହୁତ ଦିନ ରହିଲେ । କିନ୍ତୁ ପଞ୍ଜାବର ବନ୍ଦଇମାନେ ଓ ତତ ଖାଲସାଙ୍କ ସହିତ ଝଗଡ଼ା ଆରମ୍ଭ ହୋଇଗଲା, ମାତାଜୀ ସ୍ୱୟଂ ଶିଖ ଧର୍ମର ପ୍ରଚାର ଓ ଶ୍ରୀ ହରିମନ୍ଦିର (ସ୍ୱର୍ଣ୍ଣମନ୍ଦିର) ସାହିବର ପ୍ରବନ୍ଧର ଦାୟିତ୍ୱ ନେବା ସକାଶେ ଶ୍ରୀ ଅମୃତସର ପଠାଇଦେଲେ । ସେଠାରେ ପହଞ୍ଚି ଭାଇ ମନୀ ସିଂହଜୀ ବହୁତ ପ୍ରଚାର କରିଲେ ଓ ସତ୍‌ସଙ୍ଗ ପ୍ରବାହ ଚଳାଇଦେଲେ । ତାହା ପରେ ବହୁତ କିଛି ବଦଳିଗଲା, କିନ୍ତୁ ସେ ହରିମନ୍ଦିରର ସେବା ଓ ହରି ଯଶକୁ ଅନ୍ତିମ ସମୟ ଯାଏଁ ରଖିଥିଲେ ।

ଏହି ସମୟ ଆସିଲା, ଯେତେବେଳେ ସିଂହମାନଙ୍କୁ ଧରିବା ଓ ଧରାଇବା ଆରମ୍ଭ ହେଲା ଓ ଭାଇ ମନୀ ସିଂହ ବିଚିତ୍ର ନୀତି ଧାରଣ କରିଥିଲେ। ଏମିତି ପରିବେଶ କରାଇଲେ କି ହିନ୍ଦୁ, ଶିଖ ଓ ମୁସଲମାନମାନଙ୍କର ସାଧୁ ସନ୍ଥମାନଙ୍କର ସ୍ଥଳ ଅମୃତସର ଠାରେ କରାଇଲେ, କାରଣ ଭାଇ ମନୀ ସିଂହଜୀ ପ୍ରତ୍ୟେକ ହିନ୍ଦୁ-ମୁସଲମାନମାନଙ୍କୁ ବିନା ଭେଦଭାବ ଓ ପ୍ରେମ ସହ ଲଙ୍ଗର ଖୁଆଉଥିଲେ। ସେ ହରି ପ୍ରଶଂସା ଏମିତି ଜାଦୁ ଢଙ୍ଗରେ ବର୍ଣ୍ଣନା କରୁଥିଲେ କି ଶୁଣିବା ମାତ୍ରକେ ପ୍ରଭାବିତ ହୋଇଯାଉଥିଲେ। ପୁଣି ଲଙ୍ଗରର ସେବା ଗୁରୁବାଣୀ ପଢ଼ି ପଢ଼ି (ଉଚ୍ଚାରଣ) (କରି) କରୁଥିଲେ ଓ ସବୁକିଛି ଲଙ୍ଗର ଇତ୍ୟାଦି ସିଂହମାନଙ୍କର ଘରମାନଙ୍କର ଭେଟି ଦ୍ୱାରା ଚାଲୁଥିଲା, କିନ୍ତୁ ଭାଇ ମନୀ ସିଂହଜୀଙ୍କ ବଚନ ବ୍ୟବହାରରେ ପ୍ରଭାବିତ ହୋଇ ବହୁତ ହିନ୍ଦୁ ଓ ମୁସଲମାନ ମଧ୍ୟ ସେମାନଙ୍କ ଦାନ ଭେଟି ଦେବାକୁ ଲାଗିଲେ। ସେହି ସମୟରେ ଯେଉଁ ମୁସଲମାନ ଉଚ୍ଚ ପଦବୀର ସେନା ସିଂହମାନଙ୍କର ତଦନ୍ତ କରି ସେଠାରେ ପହଞ୍ଚୁଥିଲା ସେତେବେଳେ ଫକୀରମାନଙ୍କ ସମ୍ମୁଖରେ ବସି ଓ ପବିତ୍ର ବାଣୀ (ଭଗବାନ୍)ଙ୍କ ପ୍ରଭାବିତ ବାଣୀ ସହ ଯୋଡ଼ି ହୋଇ ଭାଇ ମନୀ ସିଂହଜୀଙ୍କୁ ମଧୁର ରସ ଓ ପ୍ରେମଯୁକ୍ତ ବ୍ୟବହାର ମୁଗ୍ଧ ହୋଇ ସକାରାତ୍ମକ ପ୍ରଭାବ ପଡୁଥିଲା ରାହି-ଖୁଦା (ଆଧ୍ୟାତ୍ମିକ) ପ୍ରଭାବିତ ଫକିର ସନ୍ଥମାନଙ୍କୁ ଠିକ୍ କରିବାକୁ ପଡ଼ିବ। ଏହି ବିଚାର ଦୁଷ୍ଟମାନଙ୍କ ମନରେ ଜାଗ୍ରତ ହେଲା। କିଛି ନକାରାତ୍ମକ ବିଚାର ଯୋଜନା କରିଲେ। ବହୁତ ମହାନ୍ କାଜିମାନେ ମୌଲବୀମାନଙ୍କ ବିଚାର ଅନୁଯାୟୀ ବୟସ୍କ ମୁସଲମାନମାନେ ମଧ୍ୟ ଏହାର ରହସ୍ୟ ସଂଗ୍ରହ ସକାଶେ ଅମୃତସରଠାରେ ପହଞ୍ଚି ଭାଇ ମନୀ ସିଂହଙ୍କୁ ସେଠାରେ ସିଂହମାନେ ସାହାଯ୍ୟ କରୁଛନ୍ତି କି ନାହିଁ କି ସେ ସ୍ୱୟଂ ଏମିତି କିଛି କାମ କରୁଛନ୍ତି, ଯାହା ଆମର ଧର୍ମ ଓ ଜାତି ବିରୁଦ୍ଧ ହୋଇପାରିବ, କିନ୍ତୁ ସେଠାରେ ପହଞ୍ଚିଭାଇ ମନୀ ସିଂହଜୀଙ୍କ ନୀତିଯୁକ୍ତ ଓ ଉଚ୍ଚ ଦାର୍ଶନିକ ପୂର୍ଣ୍ଣ ବଚନ ଶୁଣି ଭାଇ ସାହିବଙ୍କୁ କିଛି ନ କହି ଫେରି ଚାଲିଗଲେ। ଏହିପରି କଠିନ ସମୟରେ ଭାଇ ସାହିବ ମନୀ ସିଂହଜୀ ବଡ଼ ପ୍ରେମ-ପୂର୍ବକ ଶ୍ରୀ ହରି ମନ୍ଦିର ସାହିବର ସେବା ସକାଶେ ଚାଲିଗଲେ।

ଭାଇ ମନୀ ସିଂହଜୀ ବିଦ୍ୱାନ୍ ଓ ଶ୍ରଦ୍ଧାବାନ୍ ସନ୍ଥ ଥିଲେ। କିନ୍ତୁ ସେ ସମୟରେ ଭାଇ ସାହିବଙ୍କ ଦ୍ୱାରା ଗୋଟିଏ ମଡ଼ ଭୁଲ ହୋଇଗଲା। ସେହି ସମୟରେ

ମଙ୍ଗଳାଚରଣର ତଳ ଉପର ବିଷୟରେ ଝଗଡ଼ା ଚାଲିଥିଲା କିନ୍ତୁ ଭାଇ ସାହିବଙ୍କ ମନରେ କିଛି ଅନ୍ୟପଟ ବିଚାର ଆସିଗଲା।

କିନ୍ତୁ ମୋ ପ୍ରତି କୃପା କରନ୍ତୁ କାରଣ ସମର୍ଥ ଗୁରୁ ସ୍ୱୟଂ ବିରାଜମାନ ଅଟନ୍ତି ଓ ଯାହା ସ୍ୱୟଂଙ୍କ ଆଦେଶ ତାହା ଅଟଳ ଅଟେ। ଗୁରୁ ପନ୍ଥର ଦଣ୍ଡନୀୟ ଅପରାଧ ସହିତ ମୋ ପ୍ରତି ଦୟା କରନ୍ତୁ। ଗୁରୁ ପନ୍ଥ ଅରଦାଶ (ପ୍ରାର୍ଥନା) କରନ୍ତୁ କି ଏହି ଦଣ୍ଡ ମୋତେ ମିଳୁ, ପରନ୍ତୁ ଏହାର ପରିଣାମର ରୂପ ଶହୀଦ ଭାବେ ପରିବର୍ତ୍ତନ ହୋଇଯାଉ ଓ ଅନ୍ତିମ ପରିସ୍ଥିତିରେ ଶୁଦ୍ଧତା ଓ ଭରସାଯୁକ୍ତ ଶହୀଦ ପ୍ରାପ୍ତ ହେଉ।

ଭାଇ ସାହିବଙ୍କ ଏହି ନମ୍ରତାଯୁକ୍ତ ଶବ୍ଦ ଓ ପ୍ରାର୍ଥନା ବାତାବରଣକୁ ପରିବର୍ତ୍ତନ କରିଦେଲା। କ୍ରୋଧର ରୂପ ପ୍ରେମରେ ବଦଳିଗଲା। ବୈରାଗ୍ୟ ଭାବ ଯୋଗୁଁ ସମସ୍ତଙ୍କ ନେତ୍ରକୁ ସଜଳ କରିଦେଲା। କେତେ ପ୍ରେମ ରସ ପୂର୍ଣ୍ଣ ହୋଇଥିବା ଭାଇ ସାହିବଙ୍କ ନମ୍ରତା ଓ ପ୍ରେମଯୁକ୍ତ ଶବ୍ଦ ଯାହାକି ସମସ୍ତ ସିଂହମାନଙ୍କୁ ମୋହିତ କରିଦେଲା।

ଭାଇ ମନୀ ସିଂହଜୀଙ୍କ ବାକ୍ୟ ଅନୁଯାୟୀ ସିଂହମାନେ ଅରଦାଶ କରିଲେ କି - ପରମ ପିତା ଏହି ଅତ୍ୟାଚାର ଶାସନ ସମୟରେ ଶିଖମାନଙ୍କ ରକ୍ଷକ ଆପଣ ଅଟନ୍ତି। ସତ୍‌ଗୁରୁଜୀ ଭାଇ ମନୀ ସିଂହଜୀଙ୍କୁ ସହାୟତା କରନ୍ତୁ। ଶହୀଦ ସମୟରେ ପ୍ରତ୍ୟେକ ଅଙ୍ଗର ସହାୟ ହୋଇ ଶିଖମାନଙ୍କୁ ଶୁଦ୍ଧତା ଓ ଭରପୂର ବଳ ବରଦାନ କରନ୍ତୁ।

ଭାଇ ସାହିବ ଶହୀଦ ହେବାପୂର୍ବରୁ ସିଂହମାନଙ୍କ ଦ୍ୱାରା ଶହୀଦର ଅରଦାଶ (ପ୍ରାର୍ଥନା) କରାଇଦେଲେ।

## ଅମୃତସରର ଘେରାଉ

ସିଂହମାନେ ଏହି ଘଟଣା ପଶ୍ଚାତ୍ ଚାଲିଗଲେ, ଭାଇ ସାହିବ ସେବାରେ ଧ୍ୟାନ ସହ ମଗ୍ନ ହୋଇଗଲେ। କପୂର ସାହିବର ନବାବ ପଦ ଗ୍ରହଣ କରିବା ପରେ ସୁବା ପୁଣି ସିଂହମାନଙ୍କ ପ୍ରତି ଶତ୍ରୁତା କରିଲା। ସିଂହମାନଙ୍କ ସକାଶେ ବର୍ତ୍ତମାନ ବହୁତ ବଡ଼ ସଙ୍କଟ ସମୟ ଆସିଗଲା। ୧୭୯୨ ସମ୍ବତ ସମୟରେ ଏମିତି ଅବ୍ୟବସ୍ଥା ଆରମ୍ଭ ହୋଇଥିଲା। ତାହା କେତେ ବର୍ଷ ଯାଏଁ ଲାଗିରହିଥିଲା। ସିଂହମାନେ ଲୁଚି ଛପି ଆକସ୍ମିକ ଯୁଦ୍ଧରେ ପାରଙ୍ଗମ ହୋଇସାରିଥିଲେ। ସେଥିଯୋଗୁଁ ମାସ ମାସ ଯାଏଁ ସେ ସିଂହମାନଙ୍କର କୌଣସି ହାନି କରିପାରୁ ନ ଥିଲା। ଯଦି ଗୋଟିଏ

ସିଂହକୁ ସେମାନେ ମାରୁଥିଲେ ତାହା ବଦଳରେ ସିଂହମାନେ ୪ଜଣଙ୍କୁ ମାରି ଦେଉଥିଲେ। ସମ୍ବତ ୧୭୯୨ ବେଳେ ସୁବା ଜକରୀୟା ଖାଁ ଓଲଟି କରି ଅସ୍ତ୍ରଶସ୍ତ୍ର ସହ ଆସିଗଲା। ସେ ପୀରମୁଲ୍ଲେ ଶାହର କହିବା ଅନୁଯାୟୀ ଅମୃତ ସରୋବରର ପୂରା ଭର୍ତ୍ତି କରି ବନ୍ଦ କରିବାପାଇଁ ପ୍ରସ୍ତାବ ଯୋଗାଡ଼ କରିଲା। ପୀର କହିଲା କି ଏହି ସରୋବର ଶିଖମାନଙ୍କ ଜୀବନର ସ୍ରୋତ ଅଟେ। ଯେତେଦିନ ଯାଏଁ ଏହି ସରୋବର ରହିବ, ଶିଖମାନେ ମରିବେ ନାହିଁ। ଅମୃତସର ସରୋବରକୁ ପୋତି ଦେବାପାଇଁ ସେତେବେଳର ଅସଲି ଶତ୍ରୁ କାଜୀ ଅବଦୁଲ ରେହମାନକୁ ସେନା ବଳ ସହ ଅମୃତସର ପଠାଇଲା। ସେ ପହଞ୍ଚି ଅମୃତ ସରୋବରର ଚାରିପଟେ ପହରା ଲଗାଇଦେଲା, ଯାହାକି କୌଣସି ସିଂହ ସେଥିରେ ସ୍ନାନ କରିପାରିବେ ନାହିଁ।

ଭାଇ ମନୀ ସିଂହଜୀ ସେତେବେଳେ ସେବକ ଥିଲେ, ଶ୍ରୀ ହରିମନ୍ଦିର ସାହିବ (ସ୍ୱର୍ଣ୍ଣମନ୍ଦିର)ର ମର୍ଯ୍ୟାଦା ପୂରା କରି ଚାଲିଛନ୍ତି। ୮/୧୦ ମାସ ବିତିଗଲା। ଜଣେ, ଦୁଇ ଜଣ ଆସୁଥିବା ସିଂହମାନେ ମରିଯାଉଥିଲେ। ପରନ୍ତୁ ବଡ଼ ଦଳ ସିଂହମାନଙ୍କ ଅମୃତସରଠାରେ କେହି ପହଞ୍ଚିପାରୁ ନ ଥିଲେ। ଏହା ଦେଖି ଅହଙ୍କାରୀ କାଜୀମାନେ ସିଂହମାନଙ୍କର କଣ ଶକ୍ତି ଯିଏ ମୋର ସେମାନେ ଆସିପାରନ୍ତି। ସୁବାକୁ ଖବର ପଠାଇଲା, ପରନ୍ତୁ ତା'ସହିତ ସିଂହମାନଙ୍କ ଜଙ୍ଗଲକୁ ଖବର ପଠାଇଲା- "ମୁଁ ଶୁଣିଥିଲି କି ସିଂହମାନେ ବହୁତ ଶକ୍ତିଶାଳୀ ଓ ନିର୍ଭୀକ କିନ୍ତୁ ଆପଣମାନେ ଗଧ ଅଟନ୍ତି। ପ୍ରଥମେ ପହଞ୍ଚିଯାଉଥିଲେ, କିନ୍ତୁ ବର୍ତ୍ତମାନ ଆସିଯାଅ ତାହାହେଲେ ମୁଁ ବାହାଦୁର ଭାବିବି"।

ଏହି ସନ୍ଦେଶର ଉତ୍ତରରେ ସିଂହମାନେ ପଠାଇଲେ - 'କାଜୀ ସାହିବ ବଳଶାଳୀ ହୋଇ ରୁହ ଆମେ ଆସୁଅଛୁ।' କାଜୀ ଆହୁରି ସେନା ଆଣିଲା। ଦୁଇଜଣ ସିଂହଭାଇ ମହତାବ ସିଂହ ଯିଏକି ମସ୍ସେ ରଂଘଡର ମସ୍ତକ ଅଲଗା କରିଥିଲେ ଓ ଭାଇ ମନୀ ସିଂହଜୀଙ୍କ ପୁତୁରା ଭାଇ ଅଘଡ ସିଂହ ବେଶ ବଦଳାଇ ଆଗକୁ ବଢ଼ିଲେ ଓ ପଚାଶ ଜଣ ସିଂହଙ୍କୁ ମାଇଲ ଦେଢ଼ ମାଇଲ ପଛରେ ଗଛ ବୁଦାରେ ଲୁଚାଇ ରଖିଲେ। ସେ ଆସି ମୁସଲମାନ ସେନାମାନଙ୍କ ସହିତ କଥାବାର୍ତ୍ତା କରିବାକୁ ଲାଗିଲେ ଓ କଥାବାର୍ତ୍ତା କରୁ କରୁ ଅମୃତ ସରୋବର ଜଳ ଢୋକ ଦି ଢୋକ ଅମୃତ ସେମାନେ ପିଇଦେଲେ। ପୁଣି କଥାବାର୍ତ୍ତା କରି କରି ବସ୍ତ୍ର ଓହ୍ଲାଇ ସ୍ନାନ ମଧ୍ୟ କରିଦେଲେ। ସ୍ନାନ କରି ଘୋଡ଼ାରେ ଚଢ଼ି ସତ୍ ଶ୍ରୀ ଅକାଳଙ୍କ ଜୟଜୟକାର ଯେତେବେଳେ

ସେମାନେ ଗୁଞ୍ଜନ କରିଲେ ମୁସଲମାନ ସେନାମାନେ ଭାବିଲେ କି ସିଂହମାନେ ଆସିଗଲେ। ୪ ଜଣ ମୁସଲମାନ ଦୌଡ଼ି ଆସି ସେମାନଙ୍କୁ ଧରନେଲେ, ତା'ପରେ ସିଂହମାନେ ମଧ୍ୟ ବିଳମ୍ବ କରିଲେ ନାହିଁ। ତୁରନ୍ତ ଆଖି ପିଛୁଳାକେ ତଲୱାର ଦ୍ୱାର ଆକ୍ରମଣ କରିଦେଲେ ଓ ଦୁଇ ଚାରିଙ୍କୁ ଧରାଶାୟୀ କରିଦେଲେ। ସେହି ଦୁଇ ସିଂହ ଯେଉଁଠି ୫୦ ସିଂହ ଲୁଚି ଛପି ରହିଥିଲେ, ସେମାନେ ମଧ୍ୟ ସେଠାରେ ଶୀଘ୍ର ପହଞ୍ଚିଗଲେ। ପଛରେ ବହୁତ ମୁସଲମାନ ସେନା ସେମାନଙ୍କ ପଛରେ ଆସି ପହଞ୍ଚିଗଲେ କିନ୍ତୁ ସେଠାରେ ୫୦ ଜଣ ସିଂହ ସେମାନଙ୍କୁ ଯମପୁରରେ ପହଞ୍ଚାଇ ଦେଲେ। ସିଂହ ଓ ଅନ୍ୟ ସିଂହଦଳ ଏହାର ସୁଯୋଗର ଅପେକ୍ଷାରେ ରହିଥଲେ। ସେମାନେ ଅମୃତ ସରୋବର କୂଳରେ ବୁଲୁଥିବା କାଜୀ ଅବଦୁଲ ରହମାନ ଉପରେ ଅଚାନକ ଆକ୍ରମଣ କରିଥିଲେ, କ୍ଷଣକ ମଧ୍ୟରେ ଦୁଇ ତିନି ଶହ ସରୋବର ପାଖାପାଖି ପହରା ଦେଉଥିବା ମୋଗଲ ସିପାହୀମାନଙ୍କୁ ତଲୱାରର ଧାରରେ ଧରାଶାୟୀ କରିଦେଲେ। ମଝିରେ ଯେତେବେଳେ କାଜୀ ମଧ୍ୟ ମରିଗଲା, ଦୂରରେ ରହିଥିବା ସିପାହୀ ଏହା ଦେଖି ପ୍ରାଣ ବଞ୍ଚାଇ ଦୌଡ଼ିଗଲେ। ସେଥିଯୋଗୁଁ ଏମିତି ୮-୧୦ ମାସର ଅମୃତ ସରୋବର ଘେରାଉ ଭଙ୍ଗ ହୋଇଗଲା ଓ ପୁଣି ସରୋବରର ପାଖାପାଖି ଦୂର ଦୂର ଯାଏଁ ସିଂହମାନଙ୍କର ଡେରା ଲାଗିଗଲା।

ସୁବା କାଜୀ ରହମାନକୁ ସରୋବରକୁ ପୋତି ଦେବା ପାଇଁ ପଠାଇଥିଲା। କିନ୍ତୁ ସେ ସିଂହମାନଙ୍କ ଦ୍ୱାରା ପ୍ରାଣ ଦଣ୍ଡ ପାଇଲା। ବର୍ତ୍ତମାନ ସୁବାକୁ ପୁଣି ସେହି ମନ୍ତବ୍ୟ ମିଳିଲା କି ସରୋବର ପୋତି ଦିଆଯାଉ, ତା'ହେଲେ ସିଂହମାନଙ୍କୁ ବଶୀଭୂତ କରିହେବ। ଏହି ଆଦେଶକୁ କାର୍ଯ୍ୟକାରୀ କରିବା ପାଇଁ ସମ୍ବତ ୧୭୯୪ ଚୈତ୍ର ମାସ ଲାହୋର ଠାରୁ ସେନାବାହିନୀକୁ ଅମୃତସର ପଠାଗଲା। ହଜାର ହଜାର ସୈନିକ ତଥା ମୁସଲମାନମାନେ ଏକତ୍ରିତ ହୋଇ ଅମୃତ ସରୋବର ମଧ୍ୟରେ ମାଟି ପୋତିବା ଆରମ୍ଭ କରିଦେଲେ। ବର୍ତ୍ତମାନ ଭାଇ ମନୀ ସିଂହଜୀ ହୃଦୟରେ ପଥର ରଖି ଦେବାକୁ ଲାଗିଲେ ଏକା କ'ଣ କରି ପାରିବେ। ଭାଇ ମନୀ ସିଂହଜୀ ବର୍ତ୍ତମାନଯାଏଁ ସବୁ କିଛି ସହି ଚାଲିଲେ ଓ ଏହି ପରିସ୍ଥିତି ମଧ୍ୟରେ ପ୍ରଭୁଙ୍କୁ ଧନ୍ୟବାଦ ଦେଇ ଚାଲିଲେ। କିନ୍ତୁ ପରିସ୍ଥିତି ତାଙ୍କୁ ଗଭୀର ଚିନ୍ତାରେ ବୁଡ଼ାଇଦେଲା। ସେ ଉଦାସୀନ ଭାବରେ ଗମ୍ଭୀର ହୋଇ ରହିଲେ। ପଶ୍ଚାତାପ ଖୁବ୍ ହେଉଥିଲା କି ଏହି ଅବ୍ୟବସ୍ଥାକୁ ଅଟକାଇ ପାରୁ ନ ଥିଲେ। କିନ୍ତୁ ଭିତରେ କୌଣସି ବିଘ୍ନ ହେବାକୁ ଦେଇ ନ ଥିଲେ।

ଶତ୍ରୁମାନଙ୍କର କାର୍ଯ୍ୟକ୍ରମ ଅତି ତୀବ୍ରତା ସହ କାର୍ଯ୍ୟକ୍ରମ ଚାଲିଥିଲା ଓ ସିଂହମାନଙ୍କୁ ଜଙ୍ଗଲ ମଧ୍ୟରୁ ବାହାରକୁ ବାହାରିବା କଷ୍ଟକର ଥିଲା । ତୋଷାମଦିଆ ଓ ଲାଞ୍ଚଖୋରମାନେ ସିଂହମାନଙ୍କ ବିରୋଧରେ ଷଡ଼ଯନ୍ତ୍ର ରଚାଇଥିଲେ, କିନ୍ତୁ ବର୍ତ୍ତମାନ ସରୋବରର ମାଟି କେମିତି ବାହାର କରାଯିବ, ଭାଇ ସାହିବଙ୍କୁ ଏହି ଚିନ୍ତା ଘାରି ଚାଲିଲା ।

## ଭାଇ ମନୀ ସିଂହଜୀଙ୍କ ଶହୀଦ

ଶେଷରେ ଭାଇ ମନୀ ସିଂହଜୀଙ୍କ ମନରେ ଆସିଲା କି ଯେତେବେଳ ଯାଏଁ ପୂରା ପନ୍ଥ ଅମୃତସର ଠାରେ ପହଞ୍ଚିବେ ନାହିଁ, କିଛି କରିହେବ ନାହିଁ । ସେଥିପାଇଁ ଭାଇ ସାହିବ ଭାବିଲେ ନିକଟରେ ଥିବା ହାକିମ ସହିତ ବିଚାର କରିଲେ କି ଲାହୋରର ସୁବା ଖାଁ ବାହାଦୁର ଠାରୁ ଏହାର ଅନୁମତି ନିଆଯାଉ । ସୁବା ୫ ହଜାର ଟଙ୍କା ନେବା ପାଇଁ ପ୍ରସ୍ତାବ ରଖିଲା । ଭାଇ ସାହିବ ଏହି ପ୍ରସ୍ତାବ ମାନିଗଲେ । ତାଙ୍କୁ ଜଣା ଥିଲା ବହୁତ ଭେଟି ଆସିଯିବ । ସେଥିରୁ ୫ ହଜାର ଟଙ୍କା ଦେବି ଓ ଅବଶିଷ୍ଟାଂଶ ଲଙ୍ଗର ଇତ୍ୟାଦିରେ ଖର୍ଚ୍ଚ କରିବି ।

ଏହି ନିଷ୍ପତ୍ତି କରି ଭାଇ ସାହିବ ସିଂହମାନଙ୍କୁ ଦିପାବଳୀ ସମୟରେ ସମସ୍ତେ ଏକତ୍ରିତ ହେବା ପାଇଁ ଖବର ପଠାଇଦେଲେ । ଖାଁ ବାହାଦୁରର ମନରେ ଶତ୍ରୁତାର ଜ୍ୱାଳା ଜଳି ଉଠିଛି ଓ ସିଂହମାନଙ୍କୁ ଉଚିତ୍ ଶିକ୍ଷା ଦେବା ପାଇଁ ଠିକ୍ ସମୟ ଭାବିଲା । ସେ ବହୁତ ସୈନ୍ୟମାନଙ୍କୁ ଚାରିଆଡ଼େ ବିଛାଇ ରଖିଲା, ଦୀପାବଳୀ ସମୟ ଥିଲା । ସମସ୍ତ ରାସ୍ତା ନାକାବନ୍ଦୀ କରି ରଖିଲା । ମୁସଲମାନ ସେନାମାନଙ୍କର ଏହି କାର୍ଯ୍ୟକଳାପ ଦ୍ୱାରା ଭାଇ ସାହିବଙ୍କ ମନ ଶୀଘ୍ର ଜାଗ୍ରତ ହୋଇଗଲା କି ଗୁରୁପନ୍ଥ ସହିତ ଧୋକା ହେଉଛି । କ'ଣ ଏହି ଧୋକା ସହ୍ୟ କରି ମୁଁ ଚୁପ୍ ରହିବି ? ନା ଏମିତି କରିପାରିବି ନାହିଁ । ସେ ମୁସଲମାନ ହାକିମମାନଙ୍କୁ ବହୁତ ଅନୁରୋଧ କରିଲେ କି ପ୍ରତିଶ୍ରୁତି ଅନୁଯାୟୀ ନ କରି ବିରୋଧରେ କରିଚାଲିଛ, କିନ୍ତୁ ତାହାର ଉତ୍ତର ମିଳିଲା କି ଆମେ ନବାବ ସାହାବଙ୍କର ଆଦେଶ ଅନୁଯାୟୀ ମେଳାର ପ୍ରବନ୍ଧ କରୁଛୁ ଓ ଆମର ଅନ୍ୟ କିଛି ଅଭିଳାଷ ନାହିଁ ।

ବର୍ତ୍ତମାନ ଭାଇ ସାହିବ ଚୁପ୍ ରହିପାରିଲେ ନାହିଁ । ସେ ପୁଣି ଅନୁତାପ କରିବା ପୂର୍ବରୁ ଚୁପ୍‌ଚାପ୍ ରହିବା ଉଚିତ ମନେ କରିଲେ । ସେ ତୁର୍କୀ ହାକିମମାନଙ୍କର ମନ୍ଦ ବୁଦ୍ଧି ଚିହ୍ନି ପାରି ସିଂହମାନଙ୍କୁ ପତ୍ର ସନ୍ଦେଶ ଦ୍ୱାରା କେହି ଆସିବା ମନା



ଭାଇ ମନି ସିଂହ ଜୀ ବାଣୀ ଉଚ୍ଚାରଣ ସହିତ
ଧର୍ମ ରକ୍ଷା ପାଇଁ ନିଜ ଅଙ୍ଗକୁ କାଟିବା ପାଇଁ ପ୍ରସ୍ତୁତ ଏବଂ ନରହନ୍ତାମାନେ ଅଙ୍ଗ କାଟୁଛନ୍ତି



ଭାଇ ମନି ସିଂହ ଜୀ ବାଣୀ ଉଚ୍ଚାରଣ ସହିତ
ଧର୍ମ ରକ୍ଷା ପାଇଁ ନିଜ ଅଙ୍ଗକୁ କାଟିବା ପାଇଁ ପ୍ରସ୍ତୁତ ଏବଂ ନରହନ୍ତାମାନେ ଅଙ୍ଗ କାଟୁଛନ୍ତି

ଅବଗତ କରାଇ ଦେଲେ। ଏହି ସନ୍ଦେଶ ପାଇ ସବୁ ସିଂହମାନେ ଏକତ୍ରିତ ହୋଇ ନ ଥିଲେ ଓ ତୁର୍କୀମାନଙ୍କର ମେଳା ଯୋଜନା ନିଷ୍ଫଳ ହୋଇଗଲା। ବର୍ତ୍ତମାନ ସୁବା ଖାଁକୁ ଭାଇ ସାହିବ ପ୍ରତି କ୍ରୋଧ ଆସିଲା ଓ ଟଙ୍କା ଦାବି କରିଲା, କିନ୍ତୁ ଭାଇ ସାହେବ ଟଙ୍କା କାହିଁକି ଦିଅନ୍ତେ, ଯାହାକି ମେଳା ଲାଗିଲା ନାହିଁ।

ଯେବେ ଭାଇ ସାହିବ ଟଙ୍କା ଦେବା ସକାଶେ ମନା କରିଦେଲେ, ତାଙ୍କୁ ବନ୍ଦୀ କରିନେଲେ ଓ ଲାହୋରରେ ପହଞ୍ଚାଇ ଦେଲେ। ଟଙ୍କା କାହିଁକି ଦେଲେ ନାହିଁ ସୁବା ପଚାରିଲା। ଭାଇ ସାହେବ କହିଲେ, "ଆପଣଙ୍କ ବିଚାର ଟଙ୍କା ନେବା କାରଣ ନ ଥିଲା, ଆପଣମାନେ ସିଂହମାନଙ୍କୁ ଧରିବା ପାଇଁ ଯୋଜନା କରିଥିଲେ। ସେଥିଯୋଗୁଁ ମେଳା ଲାଗିଲା ନାହିଁ। ଟଙ୍କା ଆପଣମାନଙ୍କୁ କିଏ ଦେବ ? ଏହି ମନ୍ଦ ବୁଦ୍ଧି ଯୋଗୁଁ ଆପଣମାନଙ୍କ ସମସ୍ତ ଯୋଜନା ଖରାପ ହୋଇଗଲା।" ସୁବା ନିକଟରେ ବସିଥିବା କାଜୀକୁ କହିଲା - 'ଏ ଶପଥର ବିରୋଧ କରୁଛି, କୁହ ଏହାକୁ କିପରି ଦଣ୍ଡ ଦେବା ଉଚିତ ହେବ ?

କାଜି ବହି ଓଲଟପାଲଟ କରି କହିଲା, ଏହି ମନୀ ସିଂହ ଶିଖମାନଙ୍କର କାଜି ଅଟେ। ସେ ସିଂହମାନଙ୍କୁ ଶିକ୍ଷା ଦେଲା କି, ସେଥିଯୋଗୁଁ ଏ ମୁସଲମାନମାନଙ୍କର ବହୁତ ବଡ଼ ଶତ୍ରୁ ହୋଇଗଲା। ସେଥିଯୋଗୁଁ ଏ ମୁସଲମାନମାନଙ୍କର ବହୁତ ବଡ଼ ହତ୍ୟାକାରୀ ଅଟେ।

ଆମ ଆଇନ ଏହି ଦୋଷୀକୁ କଡ଼ା ଦଣ୍ଡର ଆଦେଶ ଦେଉଛି। ଏହି ଦେଶ ଓ ଧର୍ମ ବିରୋଧୀକୁ ଯିଏକି ଆମ ସହିତ ଧୋକା କରୁଛି ତାହାକୁ ରୋମ ରୋମ କରି କାଟି ଦିଆଯାଉ।'

ଯେମିତି ଭାଇ ମନୀ ସିଂହଜୀ କାଜି ଠାରୁ ଆଦେଶ ଶୁଣିଲେ, ତାଙ୍କର ଶରୀର ଓ ମନ ଖୁସି ହୋଇଗଲା। ମୁଣ୍ଡ ନୁଆଁଇ ସତ୍ ଗୁରୁଜୀଙ୍କୁ ଅଶେଷ ଧନ୍ୟବାଦ ଦେଲେ ଓ ସିଂହମାନଙ୍କର ବଚନ ସଫଳ ହୋଇଗଲା। କାଜୀମାନେ ଏହି ଦଣ୍ଡ ଶୁଣାଇ ମୋର ଦୋଳାୟ ମନକୁ ଠିକ୍ କରିଦେଲେ। ଏହି ବିଚାର କରି ଭାଇ ସାହିବ ନିଜକୁ କାଜୀ ପଟକୁ କରି କହିଲେ, କାଜୀ ସାହେବ! ମୁଁ ମୋର ଧର୍ମ ସକାଶେ ତୁମ ନିଷ୍ପତ୍ତିକୁ ସାଦରେ ସ୍ୱୀକାର କରୁଛି। ମୁଁ ମୋର ଧର୍ମ ସକାଶେ ବଳିଦାନ ପାଇଁ ପ୍ରସ୍ତୁତ ଅଛି। ସେଥିଯୋଗୁଁ ମୋର ରୋମ ରୋମ କଟାଇବା ପ୍ରସ୍ତାବକୁ ମୁଁ ସ୍ୱୀକାର କରୁଛି।

ନିଜ ଉପରେ ଆସିଥିବା ମୃତ୍ୟୁଦଣ୍ଡକୁ ହାର୍ଦ୍ଦିକ ସ୍ୱୀକାର ଓ ପରମାତ୍ମାଙ୍କୁ ପ୍ରାର୍ଥନା ଭାଇ ସାହିବଙ୍କ ପ୍ରତି କାଜୀ ଓ ଖାଁ ବାହାଦୁର କ୍ରୋଧାଗ୍ନିରେ ଭାଜି ହୋଇଗଲେ। ତୁରନ୍ତ ହତ୍ୟାକାରୀକୁ ଆଦେଶ ଦେଲେ 'ଏହାକୁ ଅତି ଶୀଘ୍ର ବର୍ତ୍ତମାନ ଦୁର୍ଗର ବାହାର ନେଇ, ଏହାକୁ ନିଖାସ ଛକ ଠାରେ (ବର୍ତ୍ତମାନ ଏହି ସ୍ଥାନ ଲାଲ କୁଏଁ ନାମରେ ପ୍ରସିଦ୍ଧ) ବସାଇ ସମସ୍ତଙ୍କ ସାମନାରେ ରୋମ ରୋମ ଉତାରି କାଟି କାଟି ଏହାକୁ ମୃତ୍ୟୁଦଣ୍ଡ ଦେଇଦିଅ।'

ଆଦେଶ ପାଇବା ସଙ୍ଗେ ସଙ୍ଗେ ନରହନ୍ତାମାନେ ଭାଇ ସାହିବଙ୍କୁ ଧରି ଦୁର୍ଗ ମଧ୍ୟରୁ ବାହାରକୁ ନେଲେ। କୁହାଯାଇଛି କି ସେତେବେଳେ ସେ ଉଲ୍ଲସିତ ଚେହେରା ଜ୍ୟୋତି ଚମକି ଉଠୁଥିଲା ଓ ନିଜେ ଭୁଲିଗଲେ କି ସେ ଅଙ୍ଗ ଅଙ୍ଗ କଟାଇ ମୃତ୍ୟୁକୁ ଆହ୍ୱାନ କରିବାପାଇଁ ହତ୍ୟାକାରୀମାନଙ୍କ ସହିତ ଯାଉଛନ୍ତି। ବହୁତ ଖୁସି ଓ ଭାରୀ ପ୍ରସନ୍ନତା ସହ ସତ୍‌ଗୁରୁଜୀଙ୍କ ବାଣୀ ଉଚ୍ଚାରଣ ସହ ହତ୍ୟାକାରୀ ମାନଙ୍କ ସହ ଯାଉଥିଲେ।

ଭାଇ ସାହିବଙ୍କ ବନ୍ଦୀ ଖବର ଲାହୋରବାସୀଙ୍କୁ ପ୍ରଥମରୁ ଜଣାଥିଲା; କିନ୍ତୁ ହତ୍ୟା ହେବା ଖବର ବର୍ତ୍ତମାନ ବିଜୁଳି ଭଳି ଖେଳିଗଲା। ହିନ୍ଦୁ ମୁସଲମାନ ହଜାର ହଜାର ସଂଖ୍ୟାରେ ଲୋକ ଦୌଡ଼ି ଦୌଡ଼ି ଭାଇ ସାହିବଙ୍କ ଦର୍ଶନ ପାଇଁ ପହଞ୍ଚିଗଲେ।

ଯେତେବେଳେ ଭାଇ ସାହିବଙ୍କୁ ହତ୍ୟା ସକାଶେ ହତ୍ୟାକାରୀମାନେ ବସାଇଦେଲେ ଓ ଭିଡ଼ ଦେଖି ମନେ ହେଲା ଓ ଶୀଘ୍ର ଶୀଘ୍ର ହାତ ଗୋଡ଼ ଇତ୍ୟାଦି କାଟି ଏହାକୁ ମାରିଦେଲେ କାମ ସରିବ, ଏହା ରୁଚି ଦେଖି ଭାଇ ସାହେବ କହିଲେ-

'ଦେଖ ଭାଇ ! ଆପଣଙ୍କୁ ମୋର ପ୍ରାର୍ଥନା ଓ ମୋର ମାଲିକଙ୍କ ଆଦେଶ ମଧ୍ୟ ପୂରା ହେଉ। ଆପଣଙ୍କୁ କୁହାଯାଇଛି କି ମୋର ଅଙ୍ଗ ଅଙ୍ଗ କାଟି ମୋତେ ମାର। ଆଙ୍ଗୁଠିରେ ତିନି ଯୋଡ଼ ସେଥିଯୋଗୁଁ ଏହାକୁ ତିନି ଭାଗ କରି ତିନି ଥର କାଟ ଓ ଏହିପରି ଭାବେ ଅନ୍ୟ ଅଙ୍ଗକୁ କାଟିଦିଅ।'

ହତ୍ୟାକାରୀମାନେ ଆଶ୍ଚର୍ଯ୍ୟ ହୋଇଗଲେ ପ୍ରଥମଥର ପାଇଁ ଏମିତି ଲୋକଙ୍କୁ ହତ୍ୟା କରୁଛନ୍ତି। ବର୍ତ୍ତମାନ ଭାଇସାହେବ ମନୀ ସିଂହଜୀ ଜପୁଜୀ ସାହେବର ପାଠ ଆରମ୍ଭ କରିଦେଲେ ଓ ଡାହାଣ ହାତ ହତ୍ୟାକାରୀ ସାମ୍ନାରେ ରଖିଦେଲେ। ହତ୍ୟାକାରୀ ଭାଇ ସାହେବଙ୍କ ଶରୀରକୁ ଏମିତି ଭାବେ କାଟିବା ଆରମ୍ଭ କରିଲା, ଯେମିତିକି ଆଖୁରୁ ଚୋପା ଛଡ଼ାଇ କଟାଯାଏ। କିନ୍ତୁ ଭାଇ ସାହେବ ଏମିତି ପାଠରେ ମଗ୍ନ ଥିଲେ କି ଯେମିତି କିଛି ଜଣାପଡୁ ନ ଥିଲା। ଡାହାଣ ହାତ ବଢ଼ାଇଦେଲେ ଦେଖିବା

ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ ଆଖିରୁ ଅନବରତ ଅଶ୍ରୁ ଝରି ପଡୁଥାଏ। ସଜଳ ନେତ୍ରରେ ଥିଲେ କିଏ ଉଚ୍ଚ ସ୍ୱରରେ ରୋଦନ କରିଲେ ଓ କହିଲେ କି ଶିଖମାନେ ତ ଅତି ବଳିଆର ସେମାନଙ୍କୁ ବଳି ଚଢ଼ାଗଲା ଓ ଅବତାରମାନଙ୍କୁ ମଧ ଛାଡ଼ିଲେ ନାହିଁ। ଶେଷରେ ପ୍ରତ୍ୟେକ ଅଙ୍ଗ କାଟିସାରିବା ପରେ ଶେଷରେ ହତ୍ୟାକାରୀମାନେ ମସ୍ତକ କାଟିଦେଲେ। କଟା ହୋଇଥିବା ମସ୍ତକ ଜପୁଜୀ ସାହିବ ସମାପ୍ତ କରିଲେ ଓ ଫତେହ (ବିଜୟ)ର ଗୁଞ୍ଜନ ସହ ଗୁରୁପୁରକୁ ପ୍ରସ୍ଥାନ କରିଲେ।

## ସିଂହମାନଙ୍କ ରୋଷର ଲହର

ଭାଇ ମନୀ ସିଂହଜୀଙ୍କ ଏହି ମହାନ୍ ବଳିଦାନର ଖବର ସିଂହମାନଙ୍କୁ ଜଙ୍ଗଲରେ ପହଞ୍ଚିଗଲା। ଅତ୍ୟାଚାରୀ ହାକିମମାନଙ୍କ ଏହି ରକ୍ତାକ୍ତ କାଣ୍ଡ ଯୋଗୁଁ ସିଂହମାନଙ୍କ ମନରେ ରୋଷ ଜାଗ୍ରତ ହୋଇଗଲା ଓ ତାହାର ପ୍ରତିଶୋଧ ସକାଶେ ଯୋଜନା ବିଚାର କରିଲେ। ବୁଲାଚଲା କରି ଦୁଇହଜାର ସିଂହ ଦଳ ରାବୀ ନଦୀ କୂଳରେ ଘଞ୍ଚ ଜଙ୍ଗଲର ପାଖାପାଖି ଲାହୋର ଆଡ଼କୁ ଯିବା ଆରମ୍ଭ କରିଦେଲେ। ଦିନ ବୁଡ଼ିବା ପୂର୍ବରୁ ଏହି ଦଳ ଲାହୋର ନିକଟରେ ପହଞ୍ଚିଗଲେ ଓ ଗୁପ୍ତଚର ଯେଉଁମାନେ ଲାହୋରରେ ପହଞ୍ଚିଗଲେ, ସହରଠାରେ ବୁଲାବୁଲି କରି ସମସ୍ତ ସୂଚନା ସଂଗ୍ରହ କରିଲେ। ଯେଉଁ କାଜୀମାନେ ହତ୍ୟାର ପ୍ରସ୍ତାବ ଦେଇଥିଲେ ଓ ଶାହୀ (ରାଜକୀୟ କାଜିର ଘର ଓ ସାଧାରଣ କାଜୀମାନଙ୍କର ଘର, ଯେଉଁମାନେ ହତ୍ୟା ପ୍ରସ୍ତାବ ଦ୍ୱାରା ସିଂହମାନଙ୍କୁ ଶହୀଦ କରାଇଥିଲେ।)

ସେଥିଯୋଗୁଁ ଏହି ସମୟରେ ସମସ୍ତ ଖବର ସଂଗ୍ରହ କରି ସୂର୍ଯ୍ୟ ଅସ୍ତ ହୋଇ ଅନ୍ଧାର ହୋଇଗଲା। କ୍ରୋଧାଗ୍ନିରେ ପ୍ରଜ୍ୱଳିତ ସିଂହମାନେ ତୁରନ୍ତ ଲାହୋର ବଜାର ଠାରେ ପଶି ଖଣ୍ଡାଧାରରେ ପ୍ରତିଶୋଧ ନେଇ ଚାଲିଲେ। ଦଳର କେତେ ସିଂହ ଶାହୀ କାଜୀର ଘରେ ପଶି କ୍ଷଣକ ମଧରେ ଘରର ସମସ୍ତ ସଦସ୍ୟଙ୍କ ଶରୀର ଓ ଦେହ ଅଲଗା କରିଦେଲେ। ସିଂହମାନଙ୍କର ତାଣ୍ଡବ ଯୋଗୁଁ ଲାହୋର କ୍ଷଣକ ମଧରେ ହାହାକାର ହୋଇଗଲା। କାଜୀମାନେ ରାସ୍ତା ରାସ୍ତାରେ ରକ୍ତାକ୍ତ ହୋଇଗଲେ। ଦୁର୍ଗକୁ ଖବର ପଠାଗଲା କି ସିଂହମାନେ ଲାହୋରର କିଛି ଛାଡ଼ି ନାହାନ୍ତି। ଯଦି ତୁରନ୍ତ ସେନା ନ ପହଞ୍ଚନ୍ତି ତାହେଲେ ସର୍ବନାଶ। ସେତେବେଳେ ଆଲୁଅର ବ୍ୟବସ୍ଥା କରି ସେନାମାନଙ୍କୁ ଶୀଘ୍ର ପହଞ୍ଚିବା ପାଇଁ ହୁକୁମ ଦିଆଗଲା।

ସିଂହମାନେ ରାଜ୍ୟ ଅଧିକାର ଉଦ୍ଦେଶ୍ୟରେ ଆସି ନ ଥିଲେ ସେମାନେ ସୈନ୍ୟ ଆସିବା ପୂର୍ବରୁ ସବୁ କାମ ଶେଷ କରି ଓ ଏକ ଦୁଇ ଘଣ୍ଟା ମଧ୍ୟରେ ଯେଉଁ ମାର୍ଗରେ ଆସିଥିଲେ ସେହି ରାସ୍ତାରେ ଫେରିଯାଇ ଜଙ୍ଗଲ ମଧ୍ୟରେ ଲୁଚିଗଲେ ।

## ଶ୍ରୀ ଦରବାର ସାହିବର ଘୋର ଅନ୍ୟାୟ ଓ ଅବ୍ୟବସ୍ଥା

ଯେମିତିକି କାମ, କ୍ରୋଧ ଓ ଅହଙ୍କାର ମନୁଷ୍ୟର ବିଚାର ଓ ବୁଦ୍ଧଠାରୁ ଦୂରେଇ ଈଶ୍ୱରଙ୍କଠାରୁ ଦୂର କରିଦିଏ, ସେହିପରି ପକ୍ଷପାତ ଓ ଅନ୍ୟାୟର ସ୍ରୋତ ମଧ୍ୟ ମନୁଷ୍ୟକୁ ସତ୍ୟ ଓ ଧର୍ମ ମଧ୍ୟ ଉଠାଇ କୋଷ କୋଷ ଦୂରରେ ନେଇ ଫୋପାଡ଼ି ଦିଏ । ସେହି ଅବସ୍ଥା ସେତେବେଳେ ମୁସଲମାନ ହାକିମମାନଙ୍କ ମଧ୍ୟରେ ଗ୍ରାସ କରି ରଖିଥିଲା । ସରୋବରର ଅପମାନ ଓ ଅବ୍ୟବସ୍ଥା, ଭାଇ ମନୀ ସିଂହଜୀଙ୍କ ଶହୀଦ କରିବା ଓ ତାହାର ପଛରେ ସିଂହମାନଙ୍କୁ କ୍ରୋଧାଗ୍ନି ସହ ଯେଉଁଠି ଦେଖିଲେ ସେଠି ହତ୍ୟା କରିବ । ଏହିସବୁ କାରଣ ଯୋଗୁଁ ଶତ୍ରୁ ହୋଇଗଲେ । ଗାଁ ଗାଁ ମଧ୍ୟରେ ସାଧାରଣ ସହର, ଗଳି ମଧ୍ୟରେ ଧେଣ୍ଡୁରା ଦିଆଗଲା କି ସିଂହମାନଙ୍କ ଠିକଣା ଦେବା ଲୋକଙ୍କୁ ୨୫, ଜୀବିତ ଧରିବାକୁ ୫୦ ଓ ହତ୍ୟା କରି ଶିଖମାନଙ୍କ ମସ୍ତକ ଆଣିବା ବ୍ୟକ୍ତିଙ୍କୁ ୮୦ ଟଙ୍କା ପୁରସ୍କାର ମିଳିବ । ସେହି ଲୋଭ ଯୋଗୁଁ ପୂରା ଦୁନିଆଁ ସିଂହମାନଙ୍କ ପଛରେ ଲାଗିରହିଲେ । ପ୍ରତିଦିନ ଲାହୋର ଠାରେ ସିଂହମାନଙ୍କ ମସ୍ତକ ଭର୍ତ୍ତି ହେବାକୁ ଲାଗିଲା । ଏକା ଯେଉଁ ଶିଖ ଦେଖାଯାଉଥିଲା ତୁରନ୍ତ ଧରି ମାରି ଦିଆଯାଉଥିଲା । ବର୍ତ୍ତମାନ ଜଙ୍ଗଲ ମଧ୍ୟରୁ ବାହାରିବା ଭାରି କଷ୍ଟକର ହୋଇଉଠିଲା । କୋଣେ କୋଣେ ଲାଞ୍ଚୁଆ କାନଫୋଡା ମାନଙ୍କର ନଜର ରହୁଥିଲା । ଏହି ସଙ୍କଟ ସମୟରେ ସିଂହମାନେ ବିଶେଷକରି ପଞ୍ଜାବ ଠାରୁ ଦୂର ମରୁଭୂମି ଅଞ୍ଚଳ (ନୂଆ ନାମ ଗଙ୍ଗାନଗର ସହର ରାଜସ୍ଥାନ ଆଡ଼କୁ ଚାଲିଗଲେ) ।

ଠିକ୍ ସେହି ସମୟରେ ଲାହୋରର ସୁବା ଜକରୀୟାଁ ଖାଁ ଅମୃତସର ଅଞ୍ଚଳର ପୋଲିସ ଥାନା, ଜଣ୍ଡିୟାଲେ ମହାନ ନୀଚ ମସ୍‌ସା ରଂଘଡ ନାମକ ଦୁଷ୍ଟକୁ ନିଯୁକ୍ତି କରିଦେଲା । ସେ ବଡ଼ ଅହଂକାରୀ ଓ ହଠଧର୍ମୀ ବ୍ୟକ୍ତି ଥିଲା । ଆଦେଶର ନିଶାରେ ଅନ୍ଧ ସେହି ପାପୀ ଶ୍ରୀ ହରିମନ୍ଦିର ସାହିବ (ସ୍ୱର୍ଣ୍ଣମନ୍ଦିର)ର ଘୋର ଅନ୍ୟାୟ କରିବା ବିଚାର କରିଲା । ସେ ଅମୃତସରର ଚାରିପଟେ ଦୂର ଦୂର ଯାଏଁ ସବୁ ରାସ୍ତାରେ ସେନା ରଖିଲା ଓ ସହରର ଚାରିପଟେ ବୃକ୍ଷ ଉପରେ ସିଂହମାନଙ୍କ ମସ୍ତକ ଝୁଲାଇ

ରଖିଲେ ତାହା ଦେଖିବା ମାତ୍ରେ ଲୋକମାନେ ଡରିଯିବେ। ପବିତ୍ର ଶ୍ରୀ ହରିମନ୍ଦିର ସାହିବର ମୁଖ୍ୟ ସ୍ଥାନ ଠାରେ ସେହି ପାପୀ ନିଜର ରଙ୍ଗମହଲ (ରଙ୍ଗମଞ୍ଚ)କରିଲା ଓ ଅନ୍ୟ ଗୁରୁଦ୍ୱାର ଠାରେ ଘୋଡ଼ାଶାଳ କରିଲା। ଶ୍ରୀ ହରିମନ୍ଦିର (ସ୍ୱର୍ଣମନ୍ଦିର) ଠାରେ ମଦ୍ୟ-ନୃତ୍ୟ ମୁଜରାର ରଙ୍ଗ ସ୍ଥାନ କରିଲା। ପାପୀ ମନ ଭରି ଅନ୍ୟାୟ କରି ଚାଲିଲା।

ଏହି ଘୋର ଅନ୍ୟାୟର ଖବର ଶୁଣି ପୂରା ଅଞ୍ଚଳ ହାହାକାର ହୋଇଗଲା। ଜ୍ଞାନୀ, ସନ୍ଥ ମହାତ୍ମାମାନେ ବହୁତ ଦୁଃଖୀ ହୋଇଗଲେ, କିନ୍ତୁ ଶତ୍ରୁମାନେ ବୁଝିନେଲେ କି ଶିଖମାନେ ସମାପ୍ତ ହୋଇଗଲେ, କିନ୍ତୁ ଲୁଚିଛପି ଦିନ କଟାଇ ସିଂହଙ୍କୁ ଯେତେବେଳେ ଏହି ଖବର ମିଳିଲା, ସେମାନଙ୍କ ହୃଦୟ ଫାଟିଗଲା ଓ ଶରୀର ନିଆଁରେ ଜଳିଗଲା ଭଳି ଲାଗୁଥିଲା ଓ କ୍ରୋଧାନ୍ୱିତ ହୋଇ କେତେଜଣ ସିଂହ ସାମ୍ନାକୁ ଆସି ଶହୀଦ ହୋଇଗଲେ। ପରନ୍ତୁ କେତେଜଣ ସିଂହ ବିଚାର କରିଲେ ଏହି ଅନ୍ୟାୟକୁ ଦୂର କରିବା ଜଣେ ଦୁଇଜଣ ସିଂହଙ୍କ କାମ ନୁହଁ, ଏହି ଖାଲସୀ ଦଳର ପହଞ୍ଚିବା ଯୋଗୁଁ କାମ ହୋଇପାରିବ। ସେଥିଯୋଗୁଁ ଏହି ବିଚାର କରି ଜଣେ ସିଂହ ଖାଲସା ଦଳଙ୍କୁ ଖବର ଦେବାପାଇଁ ବିକାନେର ପଟକୁ ଗଲା। ବ୍ୟାସ ନଦୀ ସତଲୁଜ ପାର କରି ସେ ମାଳବଠାରେ ପହଞ୍ଚିଲା, କିନ୍ତୁ ସେ ଦେଖିଲା କି ସେଠାରେ ସିଂହମାନଙ୍କର ଛୋଟ ମୋଟ ଦଳ ମଧ ନ ଥିଲା। ସେଠାରୁ ସେ ଯାତ୍ରା କରି ଦଳରେ ପହଞ୍ଚିଲା। ସିଂହମାନଙ୍କ ପାଖରେ ପହଞ୍ଚି ଦୁଃଖ ଜଣାଇଲା ଓ କାନ୍ଦି କାନ୍ଦି ସିଂହମାନଙ୍କୁ ଶୁଣାଇଲା। ସିଂହମାନେ ଏହି ହୃଦୟ ବିଦାରକ ଖବର ଶୁଣି ଛଟପଟ ହୋଇଗଲେ। କେତେଜଣ କାନ୍ଦି ଲାଗିଲେ ଓ କେତେଜଣଙ୍କ ଚେହେରା କଳା ପଡ଼ିଗଲା ଓ ନେତ୍ର ଲାଲ ହୋଇଗଲା। ବହୁତ ବିଚାର ବିମର୍ଶ ପରେ ଦଳପତି ଉଠି କହିଲେ କି ଏହି ଅପମାନ ସହ୍ୟ ଯୋଗ୍ୟ ନୁହେଁ । ଆମର ଜୀବନର କଣ ଆବଶ୍ୟକ ଯଦି ଗୁରୁଧାମର ଅନ୍ୟାୟ ବିରୋଧ କରି ନ ପାରିବା।

## ମସ୍ସେ ପାପୀକୁ ଦଣ୍ଡ

ସବୁ ସିଂହମାନେ ଏକଜୁଟ ହୋଇ ବିଚାର କରିଲେ କି କେମିତି ଏହି ଦୁଷ୍ଟ ପାପୀକୁ ମାରି ଏହି ଅନ୍ୟାୟକୁ ଅଟକାଇ ପାରିବା।ଏହି ବିଚାର କରିବାବେଳେ ସର୍ଦ୍ଦାର ମହତାବ ସିଂହ ମୀରାଁ କୋଟ ନିବାସୀ କିଛି ଭାବି ଉଠି କହିଲେ- ଖାଁଲସା ଜୀ ଏହି ସଙ୍କଟ ସମୟରେ କଠିନ ପରିସ୍ଥିତି ହୋଇଛି। ଆମେ ସମସ୍ତେ ମିଶି

ଆକ୍ରମଣ କରିବା, କିଏ ଜାଣିଛି ବିଜୟ ହେବ କି ନାହିଁ। ଶତ୍ରୁମାନଙ୍କ ପାଖରେ ଅଗଣିତ ସେନା ଓ ଅସ୍ତ୍ରଶସ୍ତ୍ର ଅଛି, ସେଥିଯୋଗୁଁ ସତର୍କତା ଓ ବୁଦ୍ଧିମତ୍ତା ହୋଇ କାମ କରିବା ଉଚିତ ହେବ। ସ୍ୱୟଂ ବଞ୍ଚିବା ଓ ଶତ୍ରୁଙ୍କୁ ନାଶ କରିବା। ସେଥିପାଇଁ ଏହି ସେବାର ଆଜ୍ଞା ମୋତେ ଦିଆଯାଉ। ଗୁରୁ ମହାରାଜଙ୍କ କୃପାରୁ ଏହି କାର୍ଯ୍ୟ ମୁଁ ଏକା କରି ଆସିବି।

ଏହା ଶୁଣି ମାଡି କମ୍ବୋକି ବାସୀ ସ.ସୁଖା ସିଂହଜୀ ଉଠିଲେ ଓ ଦଳକୁ ଆହ୍ୱାନ କରି କହିଲେ ଏହି ସେବାରେ ଯୋଗ ଦେବା ଅଧିକାର ମୋତେ ଦିଆଯାଉ। ଦୁଇ ଜଣ ମିଶି ବିଚାର ବିମର୍ଷ କରିଯିବୁ ଓ ଗୁରୁ କୃପା ସହ ବିଜୟ ପାଇ ଫେରିବୁ। ସମସ୍ତେ ଏହି ବିଚାର ମାନିନେଲେ। ସମସ୍ତଙ୍କୁ ଏହି ଉଚିତ ବିଚାର ଓ ଚତୁରତା ସହ ଶୀଘ୍ର ହେବ, ଯୁଦ୍ଧ କରିବା ନୁହେଁ। ଏହି ପ୍ରସ୍ତାବକୁ ପୂର୍ଣ୍ଣ ରୂପେ ସ୍ୱୀକାର କରି ପ୍ରଥମେ (ଅରଦାଶ) ପ୍ରାର୍ଥନା ସକାଶେ ଦେଗ୍ (ଅଟା ହାଲୁଆ) ତିଆରି କରାଗଲା। ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କ ହଜୁରୀଠାରେ ଦରବାର ସଜାଇ ସମସ୍ତେ ବୈରାଗମୟ ଓ ବୀର ରସ ଭରି କୀର୍ତ୍ତନ ଶୁଣିଲେ। ସିଂହମାନଙ୍କ ଦୁଃଖିତ ହୃଦୟ ଗୁରୁବାଣୀର ରସରେ ରଙ୍ଗିନ ହୋଇଗଲେ। ପୁଣି ସତ୍‌ଗୁରୁଜୀଙ୍କ ଉପସ୍ଥିତିରେ ସମସ୍ତେ ଛିଡ଼ା ହୋଇଗଲେ ଓ ଦଳର ସମସ୍ତେ ପ୍ରାର୍ଥନା କରିଲେ-

"ସତ୍‌ଗୁରୁଜୀ, ପ୍ରଭୁଜୀ ଏହା କେମିତି ଖେଳ ରଚନା କରିଲ ! କି ପ୍ରକାର ରଚନା କରିଲ ! ହେ ସତଗୁରୁ, ଏହି ହରିମନ୍ଦିର ଠାରେ ଆପଣ ହରିକୀର୍ତ୍ତନ ସକାଶେ ତିଆରି କରିଥିଲ, କିନ୍ତୁ ଆଜି ସେଠାରେ କେମିତିକା କୁକର୍ମୀମାନେ ଅଧିକାର କରିଦେଲେ ଯଦି (ଶ୍ୱାସ ରୁଦ୍ଧ ହୋଇଗଲା, ଅଶ୍ରୁ ବୋହଗଲା........ ଦୁଷ୍ଟ ଦମନ ପିତା, ସିଂହସମ ବାହାଦୁର ସତ୍‌ଗୁରୁ!) ଏହି ରଚନା ସୃଷ୍ଟି କରିଛନ୍ତି, ତାହେଲେ, ଏହିଠାରେ ପୁଣି ନିଜର ଖାଲସାମାନଙ୍କୁ ଶକ୍ତି ଦିଅ, ତୁମର ନାମ ନେଉଥିବା ଶୂରବୀରମାନଙ୍କୁ ବଳଦାନ କର, ସେମାନେ ଏମିତିକା ଅତ୍ୟାଚାରୀ, ଅହଙ୍କାରୀମାନଙ୍କୁ ଓ ଚରିତ୍ରହୀନଙ୍କୁ କୃତ୍ୟକର୍ମର ଫଳ ଭୋଗିବାକୁ ଦିଅ। ସତ୍‌ଗୁରୁଜୀ କୃପା କର, ବର୍ତ୍ତମାନ ଏହି ଉପଦ୍ରବ ଅସହନୀୟ। ସତ୍‌ଗୁରୁଜୀ ଆମର ଦୁର୍ବଳତା ଓ ଭୁଲକୁ କ୍ଷମା କର ଓ ତୁମର ସେବକଙ୍କ ମଥାରେ ହାତ ଦିଅ। ଏହି ସେବକଙ୍କ ମସ୍ତକରେ ହାତ ରଖି ଏହି ମହାନ୍ କାର୍ଯ୍ୟକୁ ସଫଳତା ବରଦାନ କର.....।" ଜୟ ଜୟକାର ଗୁଞ୍ଜନ ହୋଇ ଉଠିଲା। ଚାରିପଟେ ବାଲି ଓ ଛୋଟ ପୋଖରୀ ନିକଟରେ ଗୋଟିଏ

ଛୋଟ ଜଙ୍ଗଲ ଥିଲା । ସେଠି ସିଂହମାନେ ବହୁତ ଦିନରୁ ରୌଦ୍ର ତାପ ଓ ତୃଷ୍ଣାରେ ଛଟପଟ ହୋଇ ପହଞ୍ଚୁଥିଲେ, ସେଠାରେ ସର୍ଦ୍ଦାର ମହାତାବ ସିଂହ ଓ ସୁଖ୍ଖା ସିଂହଜୀଙ୍କୁ ଜୟ ଜୟକାରର ଗୁଞ୍ଜନ ସହ ବିଦାୟ କରାଗଲା । ସେହି ସ୍ଥାନ ନିକଟରେ ଗଙ୍ଗାନଗର ଜିଲ୍ଲା ଅଟେ । ସେହି ସ୍ଥାନଠାରେ ପ୍ରତିବର୍ଷ ମେଳା ଲାଗେ ।

ଇତିହାସରେ ବର୍ଣ୍ଣିତ ଅଛି କି ବାଲି-ମରୁଭୂମି ପାର କରିବାଯାଏଁ ସ.ମହତାବ ସିଂହ ଓ ସୁଖ୍ଖା ସିଂହଜୀ ଦିନରେ ମଧ ଚାଲିଗଲେ କିନ୍ତୁ ଶତ୍ରୁ ଓ ଗୁପ୍ତଚରମାନଙ୍କ ସହ ସାମ୍ନା କରିବା ବିପଦ ଥିଲା । ଏହା ଭାବି ଦିନରେ ବିଶ୍ରାମ ଓ ରାତିରେ ଯାତ୍ରା କରିବା ବିଚାର କରିଲେ । ସେହିପରି ଧୀରେ ଧୀରେ ସେମାନେ ଶ୍ରୀ ତରନତାରନ ସାହିବ ଠାରେ ପହଞ୍ଚିଲେ । ସେଠାରେ ପହଞ୍ଚି ପ୍ରାତଃ କାଳ ସରୋବରରେ ସ୍ନାନ କରିଲେ ଓ ସତ୍‌ଗୁରୁଜୀଙ୍କ ଆଗରେ ପ୍ରାର୍ଥନା କରିଲେ, ହେ ସତ୍‌ଗୁରୁ ଆପଣ ସର୍ବ କଳା ସମର୍ଥ, ସମସ୍ତ ସଂସାରର ମାଲିକ, ସେଥିଯୋଗୁଁ ଏମିତି ସମୟ ନିଯୁକ୍ତି କର ଆମେ ସଫଳତା ସହ ଦୁଷ୍ଟଙ୍କୁ ମାରିପାରିବୁ ।

ଜ୍ୟେଷ୍ଠ ମାସ ଥିଲା । ସେହି ସମୟରେ କର ସଂଗ୍ରହ କରିବା ନିର୍ଦ୍ଧାରିତ ଅଞ୍ଚଳରୁ ହାକିମ ପାଖରେ ପହଞ୍ଚୁଥିଲେ । ମସ୍ସା ରଂଘଡ ଏହି ଅଞ୍ଚଳର ହାକିମ ଥିଲା । ପୂରା ରାଜ୍ୟର କର ତାହା ପାଖରେ ଏକତ୍ରିତ ହେଉଥିଲା । ସେଠାରୁ ସୁବ ଖାଁ ପାଖକୁ ଲାହୋର ଯାଉଥିଲା ।

ନିକଟରେ ଗୋଟିଏ ଜାଗା ଥିଲା । ଦୁଇ ଜଣ ବିଚାର କରି ସେହି ସ୍ଥାନରେ ବସିଲେ । ହାଣ୍ଡି ଭାଙ୍ଗି ଭାଙ୍ଗି ସେଥିରେ ଥଳିରେ ଭରିଲେ ଯେମିତି ଟଙ୍କା ସେହି ସମୟରେ ଭରି ରଖାଯାଉଥିଲା । ସେତିକିରେ ଭଲ ଦିନ କଟିଗଲା । ପ୍ରକୃତି ସେହି ଦିନ ସିଂହମାନଙ୍କୁ ଭଲ ସାହାଯ୍ୟ କରିଲା । ଅନ୍ଧାର ମାଡ଼ି ଆସିଲା ଓ ବହୁତ ଧୂଳି ମାଟି ଉଡ଼ି ସମସ୍ତଙ୍କ ଆଖିରେ ପଶିଗଲା । ସମସ୍ତେ ମୁହଁ ଘୋଡ଼ାଇ ରହିଲେ । ୧୭୯୭ ସମ୍ବତ ଦୁଇ ଭାଦ୍ରବର ସମୟ ଥିଲା ପ୍ରାୟ ୧୧ଟା ବେଳର ସମୟ ଥିଲା । ଯେତେ ଅନ୍ଧାର ହୋଇଗଲା; ବର୍ତ୍ତମାନ ସିଂହମାନେ ମୁହଁ ବାନ୍ଧି ଅମୃତସର ଚାଲିଗଲେ । ଅଳ୍ପ ସମୟ ମଧ୍ୟରେ ଗୋହଲବଡ଼ ଠାରେ ପହଞ୍ଚିଗଲେ । ସେତେବେଳେ ସେମାନେ ଥଳିଗୁଡିକୁ ଘୋଡ଼ାର ଦୁଇପଟେ ଝୁଲାଇ ଦେଇଥିଲେ ।

ଦୁଇ ପହରର ସମୟ ଥିଲା । ରୌଦ୍ରତାପର ପ୍ରଚଣ୍ଡତା ଓ ଅନ୍ଧାର ଯୋଗୁଁ ସାଧାରଣତଃ ଲୋକମାନଙ୍କୁ ଆଡ଼େଇ ନେଇଯାଏ । ସେନାର ପ୍ରହରୀମାନଙ୍କୁ ମଧ

ଏହାର ପ୍ରଭାବ ପଡ଼ିଲା । ସେଥିଯୋଗୁଁ ସେମାନେ ପହରା ଦେଉ ନ ଥିଲେ । କାରଣ ସେମାନେ ମୁହଁ ଘୋଡ଼ାଇ ଆଖି ବନ୍ଦ କରି ରହିଥିଲେ । ଏହି ଉପଯୁକ୍ତ ସମୟରେ ମହତାବ ସିଂହ ଓ ସର୍ଦ୍ଦାର ସୁଖ୍ଖା ସିଂହ ଅମୃତସରରେ ପହଞ୍ଚିଗଲେ । ଗୁରୁଙ୍କ ନଗର ନଜରେ ଆସିଲା ଓ ଦୁହେଁ ଦୂରରୁ ନମସ୍କାର କରି ଓ କୋଳି ଗଛ ପାଖରେ ଘୋଡ଼ାରୁ ଓହ୍ଲାଇ ପଡିଲେ ।

ବର୍ତ୍ତମାନ ଅନ୍ଧାର କଟି ନ ଥିଲା । ସେଥିଯୋଗୁଁ ସରୋବରର ଚାରିପଟେ ପହରା ଦେବା ସିପାହୀମାନେ ନିଜର ତମ୍ବୁ ଭିତରେ ବସିଥିଲେ ଓ କେତେଜଣ ଶୋଇଥିଲେ । ଦର୍ଶନୀ ଡ୍ୟୋଢ଼ି ପାଖରେ ଜଣେ ପ୍ରହରୀ ଛିଡ଼ା ହୋଇଥିଲା । ସିଂହମାନେ ଶୀଘ୍ର ଶୀଘ୍ର ତାକୁ ଦେଖି ଘୋଡ଼ାକୁ କୋଳି ଗଛରେ ବାନ୍ଧିଦେଲେ । ବହୁତ ଦିନରୁ ବିଚ୍ଛୁରିତ ଅମୃତକୁ ସିଂହମାନେ ମନ ଭରି ଅମୃତ ପାନ କରିଲେ ଓ ଘୋଡ଼ାମାନଙ୍କୁ ମଧ୍ୟ ପାନ କରାଇଲେ । ସେପଟୁ ଯାଇ ବଡ଼ ଫୂର୍ତ୍ତି ସହ ରହିଲେ । ଶ୍ରୀ ସାହିବ କୁର୍ତ୍ତୋ ତଳେ ଭଲ ଭାବେ ଲୁଚି ରହିଲେ । ବର୍ଚ୍ଛା ଘୋଡ଼ା ପାଖରେ ରଖିଦେଲେ ଓ ଥାଳି ଗୁଡ଼ିକୁ ଧରି ଦର୍ଶନୀ ଡ୍ୟୋଢ଼ି ପଟକୁ ଚାଲି ଆସିଲେ । ପହରାଦାର ହାତରେ ହିଁ ସଲାମ କରି ପଚାରିଲେ, "ଖାଁ ସାହିବ ଭିତରେ ଅଛନ୍ତି ? ତାଙ୍କୁ କର ଦେବାକୁ ଅଛି । ହାତରେ ଥଳି ଦେଖି ସେମାନଙ୍କୁ କାହିଁକି ଅବିଶ୍ୱାସ ହେବ ? ସେମାନେ ଇଙ୍ଗିତ କରି କହିଲେ ଭିତରକୁ ନେଇଯାଅ । ସିଂହମାନେ ଶୀଘ୍ର ଶୀଘ୍ର ପାଦ ପକାଇ ଦ୍ୱାର ନିକଟରେ ପହଞ୍ଚି ଭିତରେ ସାରଙ୍ଗୀର ଶବ୍ଦ ସହ ଘୁଙ୍ଗୁରର ଛନଛନ ଶବ୍ଦ ଶୁଣିଲେ । ସିଂହମାନଙ୍କର ଛାତି ଜଳିଗଲା । ପ୍ରଥମ ସୋପାନ ବିଷଯୁକ୍ତ ହୋଇଗଲା । ପୂର୍ବରୁ ବିଷମୟ ଥିଲେ, ଘୁଙ୍ଗୁର ଶବ୍ଦ ନିଆଁ ଓ ତେଲର ମିଶ୍ରଣ ହୋଇଗଲା । ହୃଦୟକୁ ବିଦାରିତ କରି ମୁଣ୍ଡକୁ ଚଢ଼ିଗଲା ।

ଭିତରକୁ ପଶି ଦେଖିଲେ କି ଅନ୍ୟ ତିନି କବାଟ ବନ୍ଦ ଅଛି ଓ ହରି କି ପଉଡ଼ି (ସୀଡି) କବାଟ (ତାହା ପଛ ପଟକୁ ଅଛି) ନିକଟରେ ମସ୍ସା ପଲଙ୍କ ଉପରେ ବସି ହୁକ୍କା ପିଉଛି । ସାମ୍ନାରେ ବେଶ୍ୟାମାନେ ହରିକୀର୍ତ୍ତନ ସ୍ଥାନରେ ଅଶ୍ଳୀଳ ଇଙ୍ଗିତ ସହ ତରାନା ରାଗ ସହ ଆଳାପ କରୁଛନ୍ତି । ଜଣେ ତବଲାବାଲା ଜଣେ ମସ୍ସାକୁ ପଙ୍ଖା କରିବା ବ୍ୟକ୍ତି ବେଶ୍ୟାମାନେ ତାହାର ସଖୀମାନେ ମଧ୍ୟ ମଦ୍ୟ ନିଶାରେ ମସ୍ତ ଥିଲେ । ଏହି ଘୋର ଅନ୍ୟାୟ ପ୍ରତ୍ୟକ୍ଷ ଦେଖି ସିଂହମାନଙ୍କର ଆଖି ରକ୍ତାକ୍ତ ହୋଇଗଲା । ପରନ୍ତୁ ଥଳି ସେମାନେ ଆଗରେ ରଖିଛନ୍ତି ।

ମସ୍ସା ତୁରନ୍ତ ମଦ୍ୟପାନ କରୁଥିଲା ଓ ସିଂହମାନଙ୍କୁ ଥଳି ସହିତ ଆସିବା ଦେଖିଲା। ଭିତରକୁ ପଶିବା ସଙ୍ଗେ ସଙ୍ଗେ ଇସାରା କରିଲା କି ଥଳି ନିକଟରେ ରଖ। ସିଂହମାନେ ଥଳି ଗୁଡ଼ିକୁ ନେଇ ମସ୍ସା ନିକଟରେ ରଖିଦେଲେ। ମଦ୍ୟ ନିଶାରେ ମାତାଲ ମସ୍ସା ଥଳି ତରଫକୁ ନଇଁବାବେଳେ ସିଂହମାନେ ତତ୍ପର ହୋଇଗଲେ ଯେମିତି ତାହାର ମୁଣ୍ଡ ଥଳି ତରଫକୁ ଝୁକିଲା ଓ ହାତ ହାଣ୍ଡିକୁ ଛୁଇଁଲା। ସ.ମହତାବ ସିଂହ ବୀର ବାହାଦୁର ଗୋଟିଏ ଥରରେ ତାହାର ମସ୍ତକ ଶରୀରରୁ ଅଲଗା କରିଦେଲେ ଓ ସର୍ଦ୍ଦାର ସୁଖ୍ଖା ସିଂହଜୀ ସାମ୍ନାରେ ବସିଥିବା ଦୁଇ ତିନିଜଣ ସାଥିଙ୍କୁ ଉଠିବାକୁ ଦେଲେ ନାହିଁ, ସେହି ଜାଗାରେ ଶେଷ କରିଦେଲେ। ପୁଣି ନୃତ୍ୟ ଦଳଙ୍କୁ କାନ୍ଦୁଣି ଦେଖି ସେମାନଙ୍କୁ ମାରିଲେ ନାହିଁ। ସେମାନଙ୍କ ଗହଣା ଓହ୍ଲାଇ ନେଲେ। ସିଂହ ତବଲା, ସାରଙ୍ଗୀ ଓ ଫଖା କରୁଥିବାମାନଙ୍କୁ ସମସ୍ତଙ୍କୁ ଏକାଠି କରି ମସ୍ସାର ମୁଣ୍ଡ ସହିତ ବାହାରକୁ ଆସିଲେ। ଯେତେବେଳେ ବାହାରର ପ୍ରହରୀମାନେ ପାଟତୁଣ୍ଡ କରିଲେ, ସେମାନେ ସେଠି ଧରାଶାୟୀ ହୋଇଗଲେ।

ବାହାରକୁ ବାହାରି ସିଂହମାନେ ଘୋଡ଼ା ପ୍ରସ୍ତୁତ କରିଲେ। ତଲବାରକୁ ଭଲ ଭାବେ ଧରି ଓ ପାପୀ ମସ୍ସାର ମସ୍ତକକୁ ବର୍ଚ୍ଛା (ଲମ୍ବା ବାଡିରେ ମୁନିଆ ଅସ୍ତ୍ର ଥାଏ)ରେ ମୁଣ୍ଡକୁ ଟାଙ୍ଗି ଯୋର ଯୋର ସହ ଜୟକାର ଦେଇ ସିଂହମାନେ ଘୋଡ଼ା ପବନରେ ଉଡ଼ାଇ ଦେଲେ।

ଏହି ସମୟରେ ସମସ୍ତେ ଜାଣି ପାରିଲେ କି ସିଂହମାନେ ମସ୍ସାକୁ ମାରିଦେଲେ, ଗରମ ଓ ଅନ୍ଧାରରେ ବସିଥିବା ମୁସଲମାନମାନେ ଦୌଡ଼ାଦୌଡ଼ି କରିଚାଲିଲେ। କିନ୍ତୁ ଏହି ସମୟରେ ସିଂହମାନେ ଘୋଡ଼ାକୁ ପବନରେ ମିଶାଇଦେଲେ। ବହୁତ ଜୋର ଲଗାଇ ସିଂହମାନଙ୍କୁ ଧରିବା ଯୋଜନା ହେଲା କିନ୍ତୁ ସିଂହମାନେ ଉଡ଼ି ଚାଲିଗଲେ। ସେମାନେ ବ୍ୟାସର ଘନ ଜଙ୍ଗଲ ମଧ୍ୟରେ ପଶି ନିଃଶ୍ୱାସ ନେଲେ। ମୁସଲମାନମାନେ ନିରାଶ ହୋଇ ଫେରି ଆସିଲେ।

ସିଂହମାନଙ୍କର ଫୂର୍ତ୍ତୀ ଓ ସାହସ ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଚକିତ କରାଇଦେଲା ଓ ବିଶେଷ ଭାବେ ସିଂହମାନଙ୍କର ସହ ଶତ୍ରୁତା ରଖିବାମାନଙ୍କ ମଧ୍ୟରେ କମ୍ପନ ହେଲା। କେତେଜଣ ମୁସଲମାନ ଯେଉଁମାନେ କି ମସ୍ସାକୁ ଅବରୋଧ କରିଥିଲେ କି ଏମିତି କୁକର୍ମ ସନ୍ଥ ମହାତ୍ମାଙ୍କ ସ୍ଥଳଠାରେ କରିବା ଅନୁଚିତ। ସେ ଅହଙ୍କାରୀ କାହାରି କଥା ଶୁଣି ନ ଥିଲା ଓ ହସି ହସି କହୁଥିଲା ସନ୍ଥ ମହାତ୍ମାଙ୍କ ସମୟ ଗଲା ବର୍ତ୍ତମାନ

ସେଠାରେ ମସ୍ସା ଖାଁ ରଂଘଡର ଅଧିକାର, ସେଠାରେ କିଏ ପଶିପାରିବ? ସବୁ ଶିଖଙ୍କୁ ଶେଷ କରାଗଲା ଓ ଯଦି ଗୋଟିଏ ଦୁଇଟି ରହିଛନ୍ତି ସେମାନଙ୍କୁ ମଧ ଛାଡ଼ିବି ନାହିଁ। ସେହି ମୁସଲମାନ କହିଲେ, ଦେଖ ଚାରି ମାସ ହୋଇ ନ ଥିଲା ହାକିମ ପଦ ପାଇବା ଶିଖମାନଙ୍କ ହାତରେ ମରିଲା। ଖୁଦା ଅହଙ୍କାରୀ ଓ ଅତ୍ୟାଚାରୀକୁ କେବେ ସାହାଯ୍ୟ କରନ୍ତି ନାହିଁ।

ଏହି ଖବର ଦ୍ୱାରା ପ୍ରକଟ ହୋଇଗଲା କି ଶିଖ ବର୍ତ୍ତମାନ ଯାଏଁ ସମାପ୍ତ ହୋଇ ନାହାନ୍ତି, ଅଛନ୍ତି ଓ ତା ସହିତ ଧାର୍ମିକ ବ୍ୟକ୍ତିମାନଙ୍କର ମନୋବଳ ବଢ଼ିଗଲା ଓ ଶତ୍ରୁମାନେ ଡରି ଡରି ପରସ୍ପର ମଧ୍ୟରେ କଥା ହେଲେ, ଏହି ଶିଖମାନେ କେମିତିକା, ଯେମିତିକା ପବନର ତୀବ୍ରତା ଦେଖୁ ଦେଖୁ କ୍ଷଣକ ମଧ୍ୟରେ ମସ୍ସାର ମସ୍ତକ ଅଲଗା କରି ନେଇଗଲେ।

## ମସ୍ସା ରଂଘଡର ମୃତ୍ୟୁ ଦ୍ୱାରା ହଲଚଲ

ମସ୍ସା ରଂଘଡର ମୃତ୍ୟୁ ସମସ୍ତଙ୍କୁ ବିଚଳିତ କରିଦେଲା। ମସ୍ସାର ବନ୍ଧୁବାନ୍ଧବ, ସଖା, ସମ୍ବନ୍ଧ ତାହାର ମୃତ୍ୟୁ ଯୋଗୁଁ ସୁବା ଖାଁ ପାଖକୁ ଲାହୋର ପହଞ୍ଚି ବିଳାପ କରିଲେ। ଖାଁ ବାହାଦୁର ସ୍ୱୟଂ ଅମୃତସରରେ ପହଞ୍ଚିଲା ଓ ମସ୍ତକ ବିନା ଶରୀର ଦେଖି ବଡ଼ ବିଚଳିତ ହୋଇଗଲା। ବେଶ୍ୟାମାନେ ବୟାନ ଦେଲେ। ଏହାର ତଦନ୍ତ ପରେ ସେ ହରିମନ୍ଦିର ସାହିବକୁ ବନ୍ଦ କରି ତାଲା ଲଗାଇଦେଲା ଓ ପ୍ରହରୀ ଜଗି ରହିଲା। ଫୌଜମାନଙ୍କ ସଂଖ୍ୟା ବଢ଼ାଗଲା ଓ ଗାଁ ମାନଙ୍କର କର ସଂଗ୍ରହକାରୀମାନଙ୍କୁ ଡକାଇ ହତ୍ୟାର ତଦନ୍ତ ସକାଶେ ନିର୍ଦ୍ଦେଶ ଦିଆଗଲା। ହତ୍ୟାକାରୀର ଠିକଣା ଦେବାକୁ ୧୦ ହଜାର ଟଙ୍କା ପୁରସ୍କାର ଦେବାପାଇଁ ଘୋଷଣା କରାଗଲା।

ଇତିହାସରେ ବର୍ଣ୍ଣିତ, ସୁବା ଖାଁ ବାହାଦୁର କେତେଦିନ ଯାଏଁ ଅମୃତସରଠାରେ ସେନାମାନଙ୍କୁ ନିର୍ଦ୍ଦେଶ ଦେଇ ଲାହୋର ଫେରିଗଲା। ଜଂଡିୟାଲର ଜଣେ ତୋଷାମଦିଆ ହାକିମ ପାଖରେ କାନ ଫୋଡ଼ି ଦେଲା କି ଏହି କାମ ମହତାବ ସିଂହ ମୀରାଁ କୋଟିୟେର ସେ ଏଠାରେ ଘୂରି ବୁଲୁଛି। ସେ ବହୁତ ଫୁର୍ତ୍ତି ଓ ନିର୍ଭୀକ ସିଂହ ଅଟେ। କାନରେ ପଡ଼ିବା ଡେରି ଥିଲା ସଙ୍ଗେ ସଙ୍ଗେ ଦୁଇଶହ ସିପାହୀ ମିଶି ମୀରାଁ କୋଟ କୁ ଆସି ଘେରାଉ କରିଲେ। ସେଠାରେ ମୁଖିଆ ନଥେ କୁ ପଚାରିଲେ, ସେ

କହିଲା ମହତାବ ସିଂହ କେତେଦିନ ହେଲା ଏଠାକୁ ଆସି ନାହିଁ। କେତେ ମାସ ହୋଇଗଲାଣି ତାକୁ କିଏ ଦେଖି ନାହିଁ।

ଚୌଧୁରୀର (ମୁଖିଆ) ଏହି କଥା ଶୁଣି ଉଚ୍ଚପଦାଧିକାରୀ ଫେରିବାବେଳେ ସେହି ଜଂଡିୟାଲର ଗୁପ୍ତଚର କହିଲା କି ଆପଣ ତାହାର ପୁତ୍ର ରାୟ ସିଂହକୁ ଧରି ନିଅ, ସେ ଏଠି ରହିଛି। ତା'ପରେ ଉଚ୍ଚପଦବୀ ବ୍ୟକ୍ତି ତାହାର ଚପରାସୀକୁ କହିଲା ସେହି ପୁଅକୁ ଧରିବା ପାଇଁ।

ଚୌଧୁରୀ ନଥା ସିଂହ ଘରକୁ ଚାଲିଗଲା, ତାହାର ପୁଅ ଦୁଇ ଜଣ ଥିଲେ ଜଣେ ପୁତୁରା ଓ ଜଣେ ଚାକର ଥିଲା। ଯେତେବେଳେ ଘରେ ପହଞ୍ଚିଲା ତାହାର ବିଚାର ଆସିଲା କି ଯିବା ସମୟରେ ମହତାବ ସିଂହ ପୁଅମାନଙ୍କ ହାତ ତାହା ହାତରେ ସମର୍ପି ଥିଲା ଓ କହିଥିଲା ମୁଖିଆ ସାହବ ଜୀ, ଏହି ପୁତ୍ର ବର୍ତ୍ତମାନଠାରୁ ଆପଣଙ୍କ ଦାୟିତ୍ୱରେ ରହିଲା। ଏହି କଥା ମନେ ପଡ଼ିବା ପରେ ଚୌଧୁରୀ ଚିନ୍ତାରେ ପଡ଼ିଗଲା। ଭାବିଲା, ଏହି ପୁଅର ହାତ ଯେଉଁ ପୁଅର ହାତ ତାହାର ପିତା ମତେ ଦାୟିତ୍ୱ ଦେଇଥିଲା ତାହା ଏହି ଅତ୍ୟାଚାରୀମାନଙ୍କ ହାତରେ ଦେବି ? ଏହା କ'ଣ ମନୁଷ୍ୟର ବିବେକ ? କ'ଣ ଏହା ପୁରୁଷତ୍ୱ ? ନା ଏମିତି ଠିକ୍ ନୁହେଁ। ପୁରୁଷର ବଚନ ପୂରା ହେବା ଉଚିତ, ଦିନେ ମରିବାକୁ ହିଁ ପଡ଼ିବ, ପୁଣି ମୃତ୍ୟୁକୁ ଡର କାହିଁକି ନିଜ ମସ୍ତକରେ ପାପର ଭାର କାହିଁକି ଉଠାଇବି ? ମୁଁ ଏହି ପୁତ୍ରର ହାତ ଏହି ଅତ୍ୟାଚାରୀମାନଙ୍କ ହାତରେ ଦେବି ନାହିଁ। ଏହି ସବୁ ବିଚାର କରି ସେ ନିଜର ପୁତ୍ର ଓ ପୁତୁରାକୁ ସାମନାରେ ରଖିଲା, ସେହି ଚପରାଶିକୁ ସବୁ କଥା କହିଲା।

ଯେବେ ଏହି ବିମର୍ଶ ହେଲା , ଚୌଧୁରୀ କହିଲା ଏଠାରୁ ଚାଲିଗଲେ ଠିକ୍ ହେବ। ଚପରାସୀ ଭାଇ ମହତାବ ସିଂହ ମୀରାଁ କୋଟର ପୁତ୍ର ରାୟ ସିଂହ ସହିତ ପୁତ୍ରମାନଙ୍କୁ ଓ ପୁତୁରା ଓ ଚାକର ସହିତ ଗ୍ରାମର ବାହାରକୁ ଚାଲିଗଲେ। ଦୁଃଖର ବିଷୟ ଘୋଡ଼ା ନେଇ ପାରିଲେ ନାହିଁ, ନଚେତ୍ ବହୁତ ଦୂର ଯାଇପାରିଥା'ନ୍ତେ। କିନ୍ତୁ ଚାଲି ଚାଲି ଯିବା ଯୋଗୁଁ ବେଶି ଦୂର ଯାଇ ପାରିଲେ ନାହିଁ ପଛରେ ସେନାମାନେ ଆସି ଘେରି ନେଲେ। ଚୌଧୁରୀର ମୁଣ୍ଡ ଉପରେ ଶତ୍ରୁମାନେ ଏହା ଦେଖି ପୁତ୍ରମାନଙ୍କୁ ଯୁଦ୍ଧ କରିବା ପାଇଁ ଆହ୍ୱାନ କରିଲା। ରାୟ ସିଂହକୁ ସେ ଗଛ ପଛରେ ଚୁପ୍‌ଚାପ୍ ବସି ରହିବାକୁ କହିଲା। ସେ ନିଜେ ତଲୱାର ସହ ଛିଡ଼ା ହୋଇ ଗଲା। ଏହି ପାଂଚଜଣ ଶତ୍ରୁ ସହିତ ଭଲ ଭାବେ ସାମନା କରିଥିଲେ; କିନ୍ତୁ ଯୁଦ୍ଧ କରି ଶହୀଦ .

ହୋଇଗଲେ, ୨୦-୨୫ ଜଣଙ୍କୁ ମାରିଦେଲେ। ରାୟ ସିଂହ ସେତେବେଳେ ୭ ବର୍ଷର ଥିଲା, ସେ ଗଛ ପଛପଟେ ବସି ସବୁ ଦେଖିଲା ଓ କିଛି ବ୍ୟସ୍ତ ହୋଇ ନ ଥିଲା, କିନ୍ତୁ ଯେତେବେଳେ ତାହାର ପ୍ରକୃତ ସହାୟକ ଚୌଧୁରୀ ନଥା ସିଂହ କଟ କଟ ହୋଇ ଟଳି ପଡ଼ିଲା ତାହା ଦେଖି ରାୟ ସିଂହ ବ୍ୟସ୍ତ ହୋଇଗଲା। ଚିତ୍କାର କରି ଗଛ ପଛରୁ ଉଠି ଦୌଡ଼ିଲା। ସେନାମାନେ ଦେଖିଲେ କି ମହତାବ ସିଂହର ପୁତ୍ର ଚାଲିଯାଉଛି, ସେମାନେ ଶୀଘ୍ର ଦୌଡ଼ି ଯାଇ ତାକୁ ଧରିଲେ ଓ ଅତ୍ୟାଚାରୀମାନେ ତାକୁ ଏମିତି ନିର୍ମମ ଭାବେ ମାରି ଚାଲିଲେ। କିନ୍ତୁ ପ୍ରଭୁଙ୍କ ଲୀଳା ଅଲୌକିକ ତାହା କିଏ ବୁଝିପାରିବ ?

'ପ୍ରଭ ଭାବୈ ବିନୁ ସାମ୍ ତେ ରାଖୈ।।'

ସେନା ତାହାକୁ ମୃତ ମନେ କରି ଛାଡ଼ି ଚାଲିଗଲେ। ତିନି-ଚାରି ଘଣ୍ଟା ସେ ସେମିତି କ୍ଷେତରେ ପଡ଼ି ରହିଲା। ଜଣା ନାହିଁ କେତେ ରକ୍ତ ବୋହିଗଲା। ସନ୍ଧ୍ୟା ସମୟରେ ସେହି ଗାଁର ଜଣେ ଶାଗ ବିକ୍ରି କରିବା ମାତା ସେହି ରାସ୍ତାରେ ଗଲା। ସେ ପ୍ରଥମେ ଦେଖିଲା କି ଗାଁର ଖଜଣା ଆଦାୟ କରିବା ବ୍ୟକ୍ତି ମୃତ ଶରୀର ପଡ଼ିଛି। ତାହା ଦେଖି ସେ ଡରିଗଲା। କିନ୍ତୁ ତାହା ସହିତ ତାହାର ପୁତ୍ର, ପୁତୁରା ଓ ଚାକରର ମଧ ଶବ ପଡ଼ିଛି ଓ ଅଳ୍ପ ଦୂରରେ ରାୟ ସିଂହ ବାଳକ ମଧ। ସେ ଭଲ ଭାବେ ଦେଖିଲା, ରାୟ ସିଂହ ଅଳ୍ପ ଅଳ୍ପ ନିଃଶ୍ୱାସ ନେଉଥିଲା। ତାହାର ମନରେ କିଛି ବିଚାର ଆସିଲା, ସେ ଶାଗ ସେଠାରେ ଫୋପାଡ଼ି ଦେଲା ଓ ଶାଗ ପାଛିଆରେ ରାୟ ସିଂହକୁ ଘୋଡ଼ାଇ ରଖିଦେଲା ଓ ତାହାର ଖୁଡ଼ୀ ପାଖକୁ ଗୁମଟାଲେ ଆଣିଲା ଓ ସବୁ କଥା ଶୁଣାଇଲା। ଖୁଡ଼ୀ ରାୟ ସିଂହକୁ ଯତ୍ନ କରିଲା ଓ ଔଷଧ ଖୁଆଇଲା। ସାହାସ ଓ ସତ୍‌ଗୁରୁଜୀଙ୍କ କୃପା ସହ ଗଭୀର କ୍ଷତ ସୁସ୍ଥ ହୋଇଗଲା।

ସୁସ୍ଥ ହେବା ପରେ ରାୟ ସିଂହ ସମସ୍ତ ଯୁଦ୍ଧରେ ଭାଗ ନେଲା। ସେହି ରାୟ ସିଂହଙ୍କ ସୁପୁତ୍ର ଭାଇ ରତନ ସିଂହ ଭଂଗୁ ଏହି ସମସ୍ତ ଘଟଣା 'ପନ୍ଥ ପ୍ରକାଶ' ମଧରେ ଲେଖି ବହୁତ ସେବା କରିଲେ ଓ ଏହି ସମସ୍ତ ଘଟିତ ଘଟଣାର ଖବର ଲେଖକଙ୍କୁ ଖବର କରାଇଲେ। ଯାହାକି ଇତିହାସ ଝଲସିତ କରାଇଲା।

## ଭାଇ ବୋତା ସିହଜୀଙ୍କ ଶହୀଦ

ମସ୍ସାର ମୃତ୍ୟୁ ଅତ୍ୟାଚାରୀମାନଙ୍କୁ ଭୟଭୀତ କରାଇଦେଲା। ତଥାପି ଗସ୍ତୀ ସେନା ଦିନକୁ ଦିନ ବଢ଼ି ଚାଲିଲେ ଓ ସିଂହମାନଙ୍କୁ ପଞ୍ଜାବ କୋଣେ କୋଣେ,

ଗ୍ରାମ ସହର ଖୋଜି ବୁଲିଲେ। ଏହି ନୀଚ ଚଣ୍ଡାଳମାନେ ଝିଅମାନଙ୍କ ମସ୍ତକ କାଟିନେଉଥିଲେ ଓ ବାଳ ଦେଖାଇ ଶିଖମାନଙ୍କର ମସ୍ତକ କହି ପୁରସ୍କାର ନେଉଥିଲେ। କୁହାଯାଇଛି କି, ଝିଅମାନଙ୍କର କାନ ନାକରେ ଗହଣା ପିନ୍ଧିବା ପରମ୍ପରା ଆରମ୍ଭ ହୋଇଗଲା। ସେହି ସମୟରେ ଭାଇ ବୋତା ସିଂହଜୀ ଜଙ୍ଗଲରେ ଥିଲେ ଓ ତାଙ୍କୁ କିଏ ଦେଖିଦେଲା ଓ କହିବାକୁ ଲାଗିଲା ଶିଖ ବର୍ତ୍ତମାନ ପଞ୍ଜାବରେ କିଏ ନାହିଁ, ଯଦି ରୁହନ୍ତି ତାହେଲେ ଏମିତି ଲୁଚି ଛପି ରହନ୍ତା ନାହିଁ। ଭାଇ ବୋତା ସିଂହଜୀଙ୍କ ମନକୁ ଦୁଃଖ ପହଞ୍ଚିଲା ଓ ସେ ହାତ ଉଠାଇବା ସକାଶେ ସଙ୍କଳ୍ପ କରିଲେ।

ସେ ନୂରଦୀ ର କିଛି ଦୂରଠାରେ ସଡ଼କ ଉପରେ ଡେରା ଲଗାଇଲେ। ଜଣେ ସିଂହ ତାଙ୍କ ସହିତ ଥିଲା। ସେପଟେ ଯିବାଆସିବା ଲୋକଙ୍କଠାରୁ ମାହସୁଲ ନେବା ଆରମ୍ଭ କରିଦେଲେ। ବଳଦ ଠାରୁ ଅଣାଟିଏ ଓ ଗଧ ଠାରୁ ଏକ ପଇସା ଆଦାୟ କରି ଚାଲିଲେ। ଯିଏ ଅଟକାଉଥିଲା ତାକୁ ଠିକ ଶାସ୍ତି ଦେଇ ପଠାଇଦେଉଥିଲେ। ସୁବାକୁ ଏହି ଖବର ମିଳିଲା। ସେ ଶହେ ଅଶ୍ୱାରୋହୀ ସହ ଜୀବିତ ଧରିବା ପାଇଁ ନିର୍ଦ୍ଦେଶ ଦେଲା। କୁହାଯାଇଛି କି, ସେହି ସମୟରେ ସେ ଜଣେ ୧୦୦ ଜଣଙ୍କ ଘେରାଉରେ ରହି ମଧ ତଲବାର ଚଳାଇ ୨୦-୨୫ ଜଣଙ୍କୁ ମାରିଥିଲେ ଓ ଶତ୍ରୁ ପଛକୁ ହଟିଗଲେ ଓ ଦୂରରୁ ବନ୍ଧୁକ ଚଳାଇ ବହୁତ କଷ୍ଟ ସହ ଶହୀଦ କରାଇଲେ। ଏହି ଘଟଣା ମଧ ମୁସଲମାନମାନଙ୍କୁ ଚକିତ କରାଇଦେଇଥିଲା।

## ଗୁରୁଦ୍ୱାର ଥମ୍ବ ସାହିବଠାରେ ଅନ୍ୟାୟ ଓ ଅବ୍ୟବସ୍ଥା

ସେହି ସମୟ ଥିଲା ଯେତେବେଳେ ସିଂହମାନେ ଜଙ୍ଗଲରେ ରହୁଥିଲେ। କେତେକ ଗ୍ରାମରେ ସିଂହମାନଙ୍କର ପରିବାର ରହୁଥିଲେ। ସର୍ବପ୍ରଥମ ଜଳନ୍ଧରର ସୁବା କୁତୁବ ଖାଁ ଏହି ଅତ୍ୟାଚାର କରିଲା କି ସିଂହ ସ୍ତ୍ରୀମାନଙ୍କୁ ଧରି ହତ୍ୟା କରିବା ଆରମ୍ଭ କରିଦେଲା। ତାହାର ନଜର କରତାରପୁର ଠାରେ ପଡ଼ିଲା। ସେଠାରେ ଗୁରୁଦ୍ୱାର ଥମ୍ବ ସାହିବ ଥିଲା ଓ ଧିରମଲୀ-ସୋଢ଼ୀମାନଙ୍କର ପରିବାର ବିଶେଷ ଭାବେ ରହୁଥିଲେ। ସୁବାର ସେନାମାନେ ଗମ୍ବୁଜ ଉପରେ ଚଢ଼ି ଗୁରୁଦ୍ୱାର ଭାଙ୍ଗି ଦେଲେ ଓ ଗାଈମାନଙ୍କୁ ହତ୍ୟା କରି ରାସ୍ତାରେ ରକ୍ତ ରଞ୍ଜିତ କରିଦେଲେ। ସେ ସ୍ତ୍ରୀମାନଙ୍କୁ ବାଧ୍ୟତାପୂର୍ବକ ଜେଲରେ ଭର୍ତ୍ତି କରିଲା ଓ ମୁସଲମାନ କରାଇଲା।

ସେତେବେଳେ ଧିରମଲ୍ଲର ବଂଶଧରର ବାବା ଭଗବାନ ସିଂହ ଜୀ ଲୁଚି ପାହାଡ଼କୁ ଚାଲିଗଲେ।

ସର୍ଦ୍ଦାର ବାଘ ସିଂହ ହଲବାଲିୟା ସିଂହମାନଙ୍କୁ ଛୋଟ ଦଳ ସହିତ ସେହି ପାହାଡ଼ିଆ ଅଞ୍ଚଳରେ ସମୟ କଟାଇଲେ। ବାବା ବଡ଼ଭାଗ ସିଂହଜୀ ଉପରେ ଚଢ଼ିଥିଲେ ସେତେବେଳେ ରାସ୍ତାରେ ସର୍ଦ୍ଦାର ବାଘ ସିଂହଜୀ ମିଶିଗଲେ। ସେ ପଞ୍ଜାବର ଭଲ ମନ୍ଦ ପଚାରିଲେ ବାବା ବଡ଼ ଭାଗ ସିଂହଜୀ ବହୁତ ଦୁଃଖରେ ହୃଦୟର ବେଦନାଯୁକ୍ତ ବ୍ୟଥା ଶୁଣାଇଲେ। ଗୁରୁଦ୍ୱାର ଥମ୍ମ ସାହିବ ସହିତ ଅନ୍ୟାୟ ଓ ଅପମାନର ଖବର ଶୁଣି ସର୍ଦ୍ଦାର ବାଘ ସିଂହଜୀଙ୍କ ଚକ୍ଷୁ ରକ୍ତାକ୍ତ ହୋଇଗଲା। କହିଲେ- ଏ ଆଉ ଗୋଟିଏ ମସ୍ସା, କେଉଁଠାରେ ଜନ୍ମ ହୋଇ ଆସିଗଲା, ଏହାକୁ ମଧ ଦଣ୍ଡ ଅବଶ୍ୟ ଦେବା ଉଚିତ।

ସର୍ଦ୍ଦାର ବାଘ ସିଂହଜୀ ପାହାଡ଼ ଚଢ଼ିବା ଛାଡ଼ି ବ୍ୟାସ ନଦୀ ଜଙ୍ଗଲକୁ ଆସିଗଲେ। ସେଠାରେ ରହି ସୁଯୋଗ ଆଶାରେ ରହିଲେ। କୁତୁବ ଖାଁ ସାଧାରଣତଃ ଶିକାର ସକାଶେ ଜଙ୍ଗଲକୁ ଆସୁଥିଲା। ସେଥିଯୋଗୁଁ ସେ ସେଠି ଅପେକ୍ଷା କରିଲେ ଅଳ୍ପଦିନ ପରେ ସିଂହମାନଙ୍କୁ ମିଳିଗଲା। ସିଂହମାନେ ତାକୁ ଧିକ୍କାର କରି ଆହ୍ୱାନ କରିଲେ, କିନ୍ତୁ ବାଘ ସିଂହ ତୁରନ୍ତ ହୁସିୟାର ହୋଇ କୁତୁବ ଖାଁକୁ ଘେରାଉ କରିଦେଲେ। ଥମ୍ମ ସାହବ୍‌ର ଅପମାନୀ ଓ ଅନ୍ୟାୟ ପାପୀ! ବର୍ତ୍ତମାନ ତୁ ବଞ୍ଚି କେମିତି ଯାଇପାରିବୁ। ଏହା କହି ବନ୍ଧୁକର ଘୋଡ଼ା ଟିପି ଦେଲେ। ଲକ୍ଷ୍ୟ ଠିକ ଥିଲା ଓ ସେ ଘୋଡ଼ା ଉପରୁ ଧଡ଼ାମ କରି ତଳେ ଗଡ଼ି ପଡ଼ିଲା।

ବର୍ତ୍ତମାନ ମସ୍ସା ଖାଁର ହତ୍ୟା ଚର୍ଚ୍ଚା ଶେଷ ହୋଇ ନ ଥିଲା କି ଜଲନ୍ଧରର ଶୁବାର ହତ୍ୟା ମୁଖ୍ୟଖବର ଦୁନିଆକୁ ହଲଚଲ କରିଦେଲା। ଲାହୋର ଠାରେ ଖବର ପହଞ୍ଚିଲା ସଙ୍ଗେ ସଙ୍ଗେ ସେନାମାନଙ୍କୁ ଆଦେଶ ହେଲା କି ତୁରନ୍ତ ସିଂହମାନଙ୍କୁ ଧରିନିଅ। ଆଦେଶର ପହଞ୍ଚିବା ବିଳମ୍ବ ଥିଲା। ତୁରନ୍ତ ଘୂର୍ଣ୍ଣିବାତ୍ୟା ଭଳି ଫୌଜମାନେ ଯାହାକୁ ଦେଖିଲେ ହତ୍ୟା କରିଚାଲିଲେ। ଯୁଆଡ଼େ ହାତ ବୁଲିଲା ତାହାକୁ ଧରିନେଲେ। ସେତେବେଳର ସମୟ ମଧ ବହୁ ସଙ୍କଟର ସମୟ ଥିଲା। ଗଛର ସମସ୍ତ ପତ୍ର ମଧ ସିଂହମାନଙ୍କର ଶତ୍ରୁ ହୋଇଗଲେ। ସିଂହମାନଙ୍କର ରକ୍ତର ତୃଷାର୍ତ୍ତ ହୋଇଗଲେ। କେତେକ ହିନ୍ଦୁମାନଙ୍କୁ ବଳାତ୍କାର ଭାବେ ମୁସଲମାନ କରାଇଲେ।

## ନାଦିର ଶାହର ଆକ୍ରମଣ

ମୁସଲମାନ ହାକିମମାନେ ନିର୍ଦ୍ଦୟୀ, ଅବିଶ୍ୱାସୀ ଓ ଅନ୍ୟାୟୀ ସେନାମାନଙ୍କ ଆତଙ୍କ ଯୋଗୁଁ ସମଗ୍ର ଦେଶ ହାହାକାର କରିଥିଲା ଓ ବିଶେଷ ଭାବେ ସିଂହମାନଙ୍କ ସକାଶେ ବଡ଼ ସଙ୍କଟର ସମୟ ଥିଲା । ଜଙ୍ଗଲ ବାହାରେ ଗୋଡ଼ ରଖିବା କଷ୍ଟକର ଥିଲା । ସେତେବେଳେ ସିଂହମାନେ ବହୁତ ଚେଷ୍ଟା କରିଲେ ମସ୍ସାର ହତ୍ୟା ହୋଇଗଲା କିନ୍ତୁ ଜଣ ଜଣଙ୍କୁ ଧରି ମାରିଦେବା ଯୋଗୁଁ ସିଂହମାନଙ୍କ ସଂଖ୍ୟା କମ୍ ହୋଇଗଲେ ଓ ଉପାୟବିହୀନ ହୋଇ ପଡ଼ିଲେ, ସେଥିଯୋଗୁଁ ସିଂହମାନେ ହାତ ଯୋଡ଼ି ଦୁଃଖୀ ହୃଦୟ ସହ ସତ୍‌ଗୁରୁଜୀ ଓ ନିରାକାରଙ୍କ ସମ୍ମୁଖରେ ବିନତି କରିଲେ । ଭଜନୀକ ସିଂହ ସବୁବେଳେ ଏହି କାମରେ ଲାଗିରହିଲେ ।

ପ୍ରାର୍ଥନା ସମ୍ପୂର୍ଣ୍ଣ ହେଲା । ସୃଜନଶୀଳ ପରମାତ୍ମା କାବୁଲର ବାଦଶାହ ନାଦିର ଶାହର ମନରେ ଇଚ୍ଛା ଜାଗ୍ରତ କରାଇଲେ ଓ ହିନ୍ଦୁସ୍ତାନ ଉପରେ ଆକ୍ରମଣ କରି ଧନ ଦୌଲତ ଲୁଟିବା ଇଚ୍ଛା ହେଲା ।

ନାଦିର ଆକ୍ରମଣର ଯୋଜନା ଦୃଢ଼ କରିଲା । କାର୍ଯ୍ୟକ୍ରମ ଅନୁଯାୟୀ ସେ ଲକ୍ଷ ଠାରୁ ଅଧିକ ଫୌଜ ଏକାଠି କରାଇଲା ଓ ଭାରତବର୍ଷ ଉପରେ ଆକ୍ରମଣ କରିଦେଲା । ଏହି ଆକ୍ରମଣ ଯୋଗୁଁ ସିଂହମାନଙ୍କ ଶତ୍ରୁମାନଙ୍କ ହାତ ଗୋଡ ବାନ୍ଧି ହୋଇଗଲା । ସୁବା ଶୀଘ୍ର ଶୀଘ୍ର ସିଂହମାନଙ୍କ ପିଛା କରୁଥିବା ଫୌଜମାନଙ୍କୁ ଡକାଇ ଆଣିଲା ଓ ନାଦିର ଶାହର ଯୋଜନା ଅଟକାଇବା ପ୍ରବନ୍ଧ କରିଲା । ନାଦିର ଶାହର ସୈନ୍ୟମାନେ ଗାଁ ଗାଁ ନଷ୍ଟ କରି ଚାଲିଲେ ଓ ଲାହୋରଠାରେ ପହଞ୍ଚିଗଲା । ସୁବା ଖାଁ ଯୋଜନାରେ ବ୍ୟସ୍ତ ଅଛି, କିନ୍ତୁ ନାଦିର ଶାହ ସେନା ରୂପୀ ବାଦଲ ସୁବା ଖାଁର ନିଦ ଉଡ଼ିଗଲା । ଯେତେବେଳେ ନାଦିର ଶାହ ଶାହଦରା ପହଞ୍ଚିଲା ସୁବା ଖାଁ ଯୁଦ୍ଧ ବଦଳରେ ୧୩ ଲକ୍ଷ ଟଙ୍କା ନଗଦ ଓ ବହୁମୂଲ୍ୟ ପୁରସ୍କାର ଦେଇ ନାଦିର ଶାହର ସ୍ୱାଗତ କରାଇଲା ଓ ବହୁତ ବିନତି କରି ମୁକ୍ତି ପାଇଲା । ଏହା ୧୭୯୭ ସମ୍ୱତର ଶେଷ ବେଳର ଘଟଣା ଥିଲା ଓ ୧୭୯୮ ଆରମ୍ଭର ସମୟ ଥିଲା ।

ନାଦିର ଲାହୋର ଠାରୁ ଦିଲ୍ଲୀ ଚାଲିଗଲା । ବାହାଦୁର ଶାହକୁ ମିଳିଥିଲା, ସେ ଯୁଦ୍ଧ ସକାଶେ ସେନା ଏକତ୍ରିତ କରିଲା ଓ କରନାଲ ନିକଟରେ ଯୁଦ୍ଧ ହୋଇଥିଲା । ସିଂହମାନଙ୍କୁ ମଧ୍ୟ ଏହି ସମସ୍ୟାର ଖବର ମିଳିଥିଲା ଓ ସେମାନେ ଜଙ୍ଗଲ ରାସ୍ତାରେ

ସେନାମାନଙ୍କ ନିକଟରେ ପହଞ୍ଚିଗଲେ । ଭାବିଥିଲେ କି କେତେଦିନ ଯୁଦ୍ଧ ଚାଲିବ, କିନ୍ତୁ ଦିଲ୍ଲୀ ସେନାମାନେ ଶୀଘ୍ର ଥକିଗଲେ । ଦୁରାନୀ ଓ ଅବଦାଲୀ ପଠାଣମାନଙ୍କୁ ଆକ୍ରମଣର ଏହି ସୌଖୀନ ସେନା କେତେଦିନ ଡରାଇପାରିବେ, ଜଣେ ଦୁଇ ଜଣ ସର୍ଦ୍ଦାରର ମୃତ୍ୟୁ ପରେ ଦିଲ୍ଲୀ ସେନାଙ୍କ ମଧ୍ୟରେ ଅସ୍ତବ୍ୟସ୍ତ ଖେଳିଗଲା । ଜଣେ ଦୁଇ ଜଣ ବୁଦ୍ଧିମାନ ପରାମର୍ଶଦାତା ଓ ସେତେବେଳ ରାଜିନାମା ପତ୍ର ଲେଖି ନାଦିର ପାଖକୁ ପଠାଇଲେ ଓ ଦୁଇ କୋଟି କ୍ଷତିପୂରଣ ଦେଇ ନାଦିର ଶାହାକୁ ମନାଇଦେଲେ ।

## ଦିଲ୍ଲୀଠାରେ ସର୍ବସାଧାରଣଙ୍କ ହତ୍ୟା

ନାଦିର ଶାହ ଓ ମୁହମ୍ମଦ ଶାହ ଏକାଠି ଦିଲ୍ଲୀରେ ପହଞ୍ଚିଲେ । ବହୁତ ବଢ଼ିଆ ଅତିଥି ଚର୍ଚ୍ଚା କରାଗଲା ଓ ଦିନ ଉତ୍ତମ ଭାବେ କଟିଗଲା । ଦ୍ୱିତୀୟ ଦିନ ଇଦ ଥିଲା । ବଢ଼ିଆ ରଙ୍ଗ ସଜାସଜି ଓ ଖୁସି ଖେଳି ଚାଲିଲା । ବଢ଼ିଆ ବଢ଼ିଆ ସୁନ୍ଦର ସୁନ୍ଦର ଜାଗା ଦେଖାଗଲା । କିନ୍ତୁ ଏହି ଖୁସି ଅଳ୍ପ ଦିନ ମଧ୍ୟରେ ଦୁଃଖ ଓ ଅଭିଶାପର ଦିନ ଭାବେ ପରିବର୍ତ୍ତନ ହୋଇଗଲା । ଅପପ୍ରଚାରର ସ୍ରୋତ ଖେଳିଗଲା କି ଆମର ବାଦଶାହ ନାଦିର ଶାହକୁ ହତ୍ୟା କରିଦେଲେ ଓ କାବୁଲର ଶାସନଭାର ଆଜିଠାରୁ ଆମ ବାଦଶାହ ଶାସନ କରିବେ ।

ତୋଷାମଦିଆମାନେ କହିଲେ ଓ ଶୁଣିବା ଲୋକମାନେ ଆହୁରି କ'ଣ ମିଶାଇ କହିଲେ । ଖୁସିର ଦିନ ଥିଲା, ସେଥିଯୋଗୁଁ ଲୋକମାନେ ଚଞ୍ଚଳ ମତିରେ ରହିଥିଲେ ଓ ଏକା ଦେଖି ନାଦିର ଶାହର ସିପାହୀ ଯେଉଁଠି ଦେଖିଲେ ସେଠି ମାରି ଚାଲିଲେ । ନାଦିରଠାରୁ ଏହି ଖବର ଶୁଣି ସେ ନିଜେ ଘୋଡ଼ାରେ ଚଢ଼ି ବାହାରକୁ ଆସିଲା ଓ ଲୋକମାନଙ୍କୁ ମୌଜ ମସ୍ତି କରିବାପାଇଁ କହିଲା; କିନ୍ତୁ ଚଳଚଞ୍ଚଳ ମତି ଓ ଖୁସି ଯୋଗୁଁ ସେମାନେ ମଧ୍ୟ ଇଟା ପଥର ମାରିଚାଲିଲେ ଓ କହିଲେ ତୁମେ ନାଦିର ନୁହେଁ, ନାଦିର ମରିଗଲା ।

ଏହି ପରିସ୍ଥିତି ଦେଖି ନାଦିରକୁ କ୍ରୋଧ ଆସିଲା । ସେ ନିଜର ତଲବାର ବାହାର କରିଲା ଓ ଦିଲ୍ଲୀର ନିଜର ସେନାଧକ୍ଷକୁ ସର୍ବସାଧାରଣଙ୍କୁ ହତ୍ୟା କରିବା ପାଇଁ ଆଦେଶ ଦେଲା । ତୋଫାନ ଭଳି ଆଫଗାନ ଓ ପଠାଣମାନେ ନିଶା ଭଳି ଆଦେଶ ମାନିଗଲେ । ଯାହାକୁ ଯେଉଁଠି ଦେଖିଲେ, ହତ୍ୟା କରିଚାଲିଲେ । ବଜାରମାନଙ୍କରେ ଶବ ଭରି ରହିଗଲା । ମନ୍ତ୍ରୀମାନେ କାନ୍ଦି କାନ୍ଦି ପୂରା ଖବର

ମୁହମ୍ମଦ ଶାହକୁ ଶୁଣାଇଲେ। ମୁହମ୍ମଦ ଶାହ ମଧ୍ୟ କାନ୍ଦି ପକାଇଲା ଓ କହିଲା – "ଏହା ଆମର ସ୍ୱାଗତର ଫଳାଫଳ ଅଟେ ନାଦିର ଶାହ ଆମ୍ଭମାନଙ୍କ ସକାଶେ ସଙ୍କଟ ହୋଇଆସିଲା।"

ଜଣେ ବୁଦ୍ଧିମାନ୍ ମନ୍ତ୍ରୀ ନାଦୀର ଶାହ ପାଖରେ ପହଞ୍ଚିଲା। ଗଳାରେ ଗାମୁଛା ରଖି ନୀର ବୁହାଇ ଲାଗିଲା। ତାହାକୁ ଦେଖି ନାଦିର କହିଲା– ବାବା ତୁମର କଣ ଦରକାର ?

ନାଦିର ମନରେ ଦୟା ଆସିଲା ଓ ସର୍ବସାଧାରଣଙ୍କ ହତ୍ୟା ବନ୍ଦ କରାଇଲା। ଏକ ଲକ୍ଷ ୩୩ ହଜାର ଠାରୁ ଊର୍ଦ୍ଧ୍ୱ ହତ୍ୟା ପରେ ଏହି ସଙ୍କଟର ସମାପ୍ତ ହେଲା।

ତାହା ପରେ ୫ ଦିନ ନାଦିର ଦିଲ୍ଲୀ ଠାରେ ରହିଲା। ଯାହା ଇଚ୍ଛା ତାହା କରିଲା, ଯାହାକୁ ଇଚ୍ଛା ତାକୁ ଧରିନେଲା, ଯାହାକୁ ଇଚ୍ଛା ତାହାକୁ ମାରିଦେଲା। ପାଖାପାଖି ଅଞ୍ଚଳରେ ଖୁବ୍ ଲୁଟପାଟ ହେଲା। ଶାହାଜାହାନ ସମୟରେ ତଖ୍‌ତ୍–ଏ–ତାଉସ୍ ଯାହାକି କୋଟି କୋଟି ଟଙ୍କା ମୂଲ୍ୟର ଥିଲା, କୋହିନୂର ହୀରା ଅଣ୍ଡା ଭଳି ବଡ଼ ଥିଲା ଓ ରାତି ସମୟରେ ଦୀପ ଭଳି ଜଳି ଆଲୋକିତ ହେଉଥିଲା। (ବର୍ତ୍ତମାନ ତାହା ମହାରାଣୀ ଏଲିଜାବେଥଙ୍କ ମୁକୁଟରେ ଚାରି ଖଣ୍ଡ କରି ଯୋଡ଼ା ଯାଇଛି) ଓ ରାଣୀମାନଙ୍କର ଗହଣା, ଭଲ ଧରଣର ଘୋଡ଼ା ଯାହା ମିଳିଲା ତାହା ନେଲା, ୫୦ ହଜାର ପୁଅ, ଝିଅ ସେମାନଙ୍କ ବେଶ୍ୟା ବୃତ୍ତି ସକାଶେ ଟାଣି ନେଲା ଓ ସେମାନଙ୍କୁ ବାନ୍ଧି ନିଜର ଦେଶ କାବୁଲକୁ ଚାଲିଗଲା।

## ନାଦିରର ସେନାଙ୍କୁ ସିଂହମାନଙ୍କ ଆକ୍ରମଣ

ନାଦିର ଶାହ ଯେଉଁ ସମୟରେ ଦିଲ୍ଲୀ ଯାଉଥିଲା ସେହି ସମୟରେ ସିଂହମାନେ ଦୂର ଦୂରରୁ ଆସି ବ୍ୟାସ ନଦୀ ଜଙ୍ଗଲ ଓ ରାବୀ ଜଙ୍ଗଲ ଠାରେ ଏକତ୍ରିତ ହୋଇ ରହିଥିଲେ ଓ ନାଦିର ଦିଲ୍ଲୀରୁ ଫେରିବା ଯାଏଁ ସମସ୍ତେ ଏକତ୍ରିତ ହୋଇ ଯାଇଥିଲେ। ଏହି ଦୁଇ ତିନିମାସ ମଧ୍ୟରେ ସେମାନେ ଦୁଖରେ ନିଃଶ୍ୱାସ ନେଉଥିଲେ, କାରଣ ସେହି ଅଞ୍ଚଳରେ ହାକିମମାନେ ସଙ୍କଟରେ ପଡ଼ିଥିଲେ, କିଛିଦିନ ଯାଏଁ ସିଂହମାନଙ୍କ ପଛରୁ ଦୂରେଇ ଯାଇଥିଲେ। ନାଦିର ପଛକୁ ବୁଲି ଗାଁ'କୁ ଗାଁ ଲୁଟି ଚାଲିଥିଲା। ସେନାମାନଙ୍କର ଉତ୍ପାତ ଦୁଷ୍ଟତା, ବ୍ୟଙ୍ଗ, ଉଚ୍ଚ ଅଟ୍ଟହାସ୍ୟ ଦୂର ଦୂର ଯାଏଁ ଧରିତ୍ରୀ କମ୍ପି ଉଠୁଥିଲା। ସିଂହମାନେ ସେହି ସମୟ ଏହି କର୍ତ୍ତବ୍ୟନିଷ୍ଠ ହୋଇଥିଲେ କି

ନିଜର ସ୍ୱାର୍ଥ ତ୍ୟାଗ କରି ଦୁଷ୍ଟମାନଙ୍କୁ ନଷ୍ଟ କରି ପରମାତ୍ମାଙ୍କ ସକାଶେ ମରିଯିବା ଶ୍ରେୟ ମନେ କରିଥିଲେ ।

ଯେତେବେଳେ ସିଂହମାନେ ଜାଣିପାରିଲେ କି ନାଦିର କନ୍ୟାମାନଙ୍କୁ ଧରି ନେଇ ଯାଉଛି, ସେତେବେଳେ ସିଂହମାନେ ସଚେତ ହୋଇଗଲେ । ସେମାନଙ୍କ ଦେଶ ଓ ଧର୍ମର ମର୍ଯ୍ୟାଦା ଓ ସମ୍ମାନର ରକ୍ଷା ନିମନ୍ତେ ବିବେକ ଜାଗ୍ରତ ହୋଇଗଲା । ନିଜକୁ ନିଜେ ବିଦେଶୀ ସୈନ୍ୟମାନଙ୍କଠାରୁ ଦୂରେଇ ରଖି ସାହସୀ ଓ ନିର୍ଭୀକ ସିଂହମାନେ ଦୁଷ୍ଟ, ପାପୀ, ଅତ୍ୟାଚାରୀ ବିଦେଶୀଙ୍କୁ ଖୁବ୍ ମଜା ଚଖାଇ ନଷ୍ଟ କରୁଥିଲେ ଓ ଯେଉଁଠି ପାଉଥଲେ ସେମାନଙ୍କୁ ସଫା କରି ଫେରୁଥିଲେ । ସେହି ସ୍ଥାନଠାରେ ସାହାଯ୍ୟ ପହଞ୍ଚିବା ପୂର୍ବରୁ ସେଠାରୁ 'ହରଣ' ହୋଇ ଯାଉଥିଲା । ଜଙ୍ଗଲ ମଧ୍ୟରେ ସିଂହମାନଙ୍କ ଫୌଜ ଓ ବାହାରେ ବିଦେଶୀ ଫୌଜ, ପରନ୍ତୁ ବିଦେଶୀ ସେନାମାନଙ୍କୁ ସିଂହମାନଙ୍କ ଖବର ମଧ୍ୟ ନଥିଲା । ସେଥି ଯୋଗୁଁ ସିଂହମାନେ ରାତି-ଦିନ ହଠାତ୍ ଆକ୍ରମଣ କରି ମାରିକାଟି ଲୁଟ୍‌ପାଟ୍ କରି ଚାଲି ଯାଉଥିଲେ । ଓଟ, ଗଧ ଓ ଘୋଡ଼ା ଉପରେ ଲଦି ଥିବା ଧନସମ୍ପତ୍ତିର ଚାରିପଟେ ବହୁତ ସେନାଙ୍କ ତତ୍ତ୍ୱାବଧାନରେ ରଖିଲେ ମଧ୍ୟ ସିଂହମାନେ ଅନ୍ଧାରରେ ଏମିତି ଆକ୍ରମଣ କରି ଉତ୍ତୀର୍ଣ୍ଣ ହୋଇ ଯାଉଥିଲେ । ସେନାମାନେ ପଛରେ ଯାଇ ଖୋଜିବେ କ'ଣ ଏମାନେ ପୂର୍ବରୁ ଜଙ୍ଗଲ ଅନ୍ଧାର କୋଣରେ ଯାଇ ଲୁଚି ରହୁଥିଲେ । ସିଂହମାନଙ୍କ ସକାଶେ ଜଙ୍ଗଲ ଘର ଭଳି ଥିଲା । ସେହିପରି ସିଂହମାନେ ନାଦିର ଶାହର ସେନାବାହିନୀଙ୍କୁ ଅସ୍ତବ୍ୟସ୍ତ କରି ପକାଇଥିଲେ । ଦେଶରୁ ବାହାରକୁ ଯାଉଥିଲା ଅଧା ଦୌଲତ ସିଂହମାନେ ଲୁଟି ନେଲେ ଓ ବହୁତ ପୁଅଝିଅମାନଙ୍କୁ ମୁକ୍ତ କରାଇ ସେମାନଙ୍କୁ ସେମାନଙ୍କ ଘରେ ପହଞ୍ଚାଇ ଦେଇଥିଲେ । ନାଦିର ତାହାର ରହସ୍ୟ ମଧ୍ୟ ବୁଝିପାରିଲା ନାହିଁ । ଦାନ୍ତ ତଳେ ଆଙ୍ଗୁଠି ଦବାଇ ରହିଗଲା ।

## ସୁବା ନାଦିର ଶାହକୁ ସିଂହମାନଙ୍କ ଚାଲି ଚଳଣି କହିଥିଲା

ଶେଷରେ ଏମିତି ଅବସ୍ଥାରେ ନାଦିର ଶାହ ଲାହୋର ପହଞ୍ଚିଲା ଓ ସୁବା କହିବାକୁ ଲାଗିଲା - "ମୋ ସାମନର କିଏ ଟିକ୍ଷି ପାରିଲେ ନାହିଁ, ପରନ୍ତୁ ରାତିଦିନ ଏକ କରି ମତେ କିଏ ଲୁଟୁଥିଲେ, ସେମାନେ କିଏ, ସେମାନଙ୍କ ଠିକଣା ମତେ କୁହ ।"

ସୁବା ହୃଦୟ ସିଂହଙ୍କ ବାହାଦୁରୀ ଯୋଗୁଁ ବହୁତ ଖୁସି ଥିଲା, ପରନ୍ତୁ ମୁହଁରେ କହୁ ନ ଥିଲା, ମୁହଁ ପୋତି କହିଲା, "ଜହାଁପନାହ, କ'ଣ କହିବି, ସେମାନେ ସିଂହମାନେ ହୋଇ ଥିବେ ଓ ଆଉ କିଏ ହୋଇଥିବ ଆପଣଙ୍କୁ ଲୁଟିବା ସାହାସ କରିବ ?"

"କିଏ ସେମାନଙ୍କ ଠିକଣା କହିପାରିବ ? ମୁଁ ସେମାନଙ୍କୁ ଠିକ୍ କରିଦେବି।"

ସୁବା ଭାବିଲା ଯଦି ସିଂହମାନଙ୍କ ଠିକଣା ମୁଁ ଏମାନଙ୍କୁ କହିବି, ବୋଧହୁଏ ସେମାନେ କେତେଦିନ ଯାଏଁ ରହିଯିବେ, ଫୌଜମାନେ ଡେରା ଛାଡ଼ିବେ ନାହିଁ। ସିଂହମାନଙ୍କର କିଛି କ୍ଷତି ହେଉ କିମ୍ଭା ନ ହେଉ କିନ୍ତୁ ମୋର ଜୀବନ ଏମାନେ ଖାଇସାରିଲେଣି। ଏମାନଙ୍କ ଠାରୁ କେମିତି ମୁକ୍ତି ପାଇବି। ଏହା ଭାବି କହିଲା -

'ଜହାଁପନାହ ମୁଁ ଏମାନଙ୍କୁ ଠିକ୍ କରି କରି ମରିବାକୁ ବସିଲିଣି, କିନ୍ତୁ ସେମାନେ ଠିକ୍ ହୋଇପାରି ନାହାନ୍ତି। ଏମାନେ ସିଂହ ଗୁରୁ ଶ୍ରୀ ଗୋବିନ୍ଦ ସିଂହଜୀଙ୍କ ରୂପାନ୍ତରିତ ମାନେ, ସେମାନେ ବଡ଼ ବାହାଦୁର ଓ ଆଦରଣୀୟ ହୋଇଥା'ନ୍ତି। ଏମାନଙ୍କ ବଡ଼ ନଅ ଜଣ ଗୁରୁ ଅଟନ୍ତି, ଏମାନଙ୍କ ଜୀବନ ଅତି ସାଧାରଣ ସାଧୁ ଓ ବାବାଜୀ ଜୀବନ ଥିଲା କିନ୍ତୁ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ ଅମୃତ ପାନ କରାଇ ଏମାନଙ୍କୁ ସିଂହର ବଳ ଦେଲେ ଓ ଲଢ଼ି ଓ ମରିବା ଶିଖାଇ ଦେଲେ। ଏମାନେ ହିନ୍ଦୁ ଓ ମୁସଲମାନମାନଙ୍କଠାରୁ ଅଲଗା ଅଟନ୍ତି। ଏମାନଙ୍କୁ ଏମିତି କିଛି ଗୋଟିଏ ମନ୍ତ୍ର ଦିଆଯାଇଛି ତାଙ୍କ ଗୁରୁ (ଗୁରୁ ଗୋବିନ୍ଦ ସିଂହଜୀ) ସେମାନେ ଯେଉଁଠି ଇଛା ସେଠି ନିଜର ଗୁରୁମାନଙ୍କ ଦ୍ୱାରା ଦର୍ଶା ଯାଇଥିବା ମନ୍ତ୍ର ପାଠ କରି ଅମୃତ ପ୍ରସ୍ତୁତ କରି ନିଅନ୍ତି ଓ ପାନ କରନ୍ତି, ନିର୍ଭୀକ ଓ ବାହାଦୂର ଜ୍ୟୋତିର୍ମୟ ହୋଇଯାଆନ୍ତି। ଏହି ଦଶ ଗୁରୁମାନଙ୍କୁ ଏକ ମାନନ୍ତି ଓ ଅନ୍ୟ କାହାରିକୁ ମାନନ୍ତି ନାହିଁ। ବର୍ତ୍ତମାନ ପୂଜା ଗୁରୁଗ୍ରନ୍ଥଙ୍କୁ କରନ୍ତି ଓ ତାହାର ପାଠ କରନ୍ତି। ପ୍ରକୃତରେ ସେଥିରେ ପରମାତ୍ମାଙ୍କ କଥା ରହିଛି ଓ ତାହା ନିକଟରେ ମୁଣ୍ଡ ନୁଆଁନ୍ତି। ଇଛାମୟଙ୍କ ଇଛା ସହ ଏକମତ ହୁଅନ୍ତି। ଏହା ସେମାନଙ୍କ ଗୂଢ଼ ରହସ୍ୟ ଓ ଯୁଦ୍ଧରେ ପାରଙ୍ଗମ, ବାହାଦୁର ଓ ମରିବା ପାଇଁ ତିଳେ ମଧ୍ୟ ଡରନ୍ତି ନାହିଁ। ସେମାନଙ୍କ ସେହି ଅମୃତର ଗଭୀର ଚମତ୍କାର ଦେଖା ଦେଇଛି। ଯୁଦ୍ଧ ଯୋଗୁଁ ଥର-ଥର କମ୍ପୁଥିବା ଲୋକମାନଙ୍କୁ ସମ୍ପୂର୍ଣ୍ଣ ନିର୍ଭୀକତା ଭାବେ ଯୁଦ୍ଧ କରିବା ମୁଁ ଦେଖିଛି। ଶହ ଶହଙ୍କ ସହିତ ଜଣେ ସିଂହ ସାମନା କରିବା ମୁଁ ଦେଖିଛି। ଏହି ସିଂହମାନଙ୍କୁ କେବେ ହୃଦୟରୁ ହାରିବା ମୁଁ ଦେଖି ନାହିଁ। ସମସ୍ତେ

ସର୍ଦ୍ଦାର ପଦବୀଯୁକ୍ତ ଅଟନ୍ତି, କିଏ ସର୍ଦ୍ଦାରଠାରୁ କମ୍ ନୁହନ୍ତି। ଆହୁରି ଗୋଟିଏ ମଜା କଥା ସବୁ ସିଂହ ସେବାଦାର ଓ ସର୍ଦ୍ଦାର ହୋଇଯାଆନ୍ତି।

"ଆହୁରି ପୁଣି ଆଶ୍ଚର୍ଯ୍ୟର କଥା ବାଦଶାହ। ଏମାନଙ୍କ କୌଣସି ନଗରୀ ନାହିଁ, ଶେଷ ପରିଣତି ନାହିଁ, ଦିନ ରାତି ଘୂରି ବୁଲନ୍ତି, ଘୋଡ଼ା କେଉଁଠି ବାନ୍ଧନ୍ତି କିଛି ଠିକଣା ନାହିଁ, ଯଦି ଠିକଣା ମିଳିବ ମୁଁ ଆପଣଙ୍କୁ କହିବି। ଏମାନେ ଜଙ୍ଗଲରେ ରୁହନ୍ତି କିନ୍ତୁ ଲକ୍ଷ୍ୟ ବାଦଶାହକୁ କରନ୍ତି।"

ନାଦିର ସବୁ କଥା ଶୁଣିଲା ଓ ତାହାର କ୍ରୋଧ ସବୁ ଶୁଣି ଶାନ୍ତ ହୋଇଗଲା। କହିଲା- ଯଦି ସିଂହମାନେ ସତରେ ଏମିତି ହୁଅନ୍ତି, ଯାହା ତୁମଠାରୁ ଶୁଣୁଛି। ତାହେଲେ ଠିକ ଜାଣିନିଅ କି ଦିନେ ତୋର ରାଜ୍ୟ ମୁଁ ଛଡ଼ାଇନେବି। ନିଜର ଏମିତି ବାହାଦୁରି ଜାତିକୁ ନଷ୍ଟ କରି କଣ ଉତ୍ତମ କାର୍ଯ୍ୟ କରିଛୁ ?

ସେଥିଯୋଗୁଁ ନାଦିର ୧୭୯୮ ସମୟରେ ହିନ୍ଦୁମାନଙ୍କୁ ଲୁଟି ଚାଲିଗଲା। ପରନ୍ତୁ ଅଧା ଲୁଟିଥିବା ସମ୍ପତ୍ତି ସିଂହମାନେ ଲୁଟି ନେଇଗଲେ ଓ ଅବଳାମାନଙ୍କୁ ମଧ ଛଡ଼ାଇ ରଖିଲେ। ଝେଲମ ଯାଏଁ ନାଦିରର ପଛେ ପଛେ ଯାଇ ନିଜର କାମରେ ଲାଗିରହିଲେ। ନିଜର କର୍ତ୍ତବ୍ୟ ପାଳନ କରି ରହିଲେ।

## ଭାଇ ସୁବେଗ ସିଂହଜୀ

ନାଦିର ଚାଲିଯିବା ପରେ ସୁବା ଖାଁ ବାହାଦୁର ସିଂହମାନଙ୍କ ସହ ପୁଣି ପିଛା କରିଲା। ୪/୫ ମାସ ନାଦିର ହିନ୍ଦୁସ୍ତାନରେ କଟାଇଲା ଓ ସିଂହମାନେ ଭଲ ସଂଖ୍ୟାରେ ଲୁଟିଥିଲେ। ହତିଆର, ଘୋଡ଼ା ଧନ ଦୌଲତ ସବୁ ସଂଗ୍ରହ କରିଥିଲେ କିନ୍ତୁ ଜଙ୍ଗଲ ରୁ ବାହାରକୁ ବାହାରିବା କାଠିକର ପାଠ ଥିଲା। ସ୍ଥାନେ ସ୍ଥାନେ ତୋଷାମଦିଆ ଓ ପୁରସ୍କାର ଲୋଭୀମାନେ ସିଂହମାନଙ୍କୁ ଖୋଜି ବୁଲୁଥିଲେ। ସେଥିଯୋଗୁଁ ଯୁଦ୍ଧରେ କ୍ଷତ ବିକ୍ଷତ ହୋଇ ଘରକୁ ଫେରିବା ପାଇଁ ଇଚ୍ଛା କରିଲେ ସହଜରେ ଧରା ପଡୁଥିଲେ। ପୁଣି କେତେକ ସିଂହ ଏମିତି ଥିଲେ କି, ଗାଁ ଓ ସହରଠାରୁ ଦୂରରେ ରହି କିଛି କାମଧନ୍ଦା କରି ଚଳୁଥିଲେ। ସେମାନେ ମଧ ଧରା ପଡୁଥିଲେ। ଭାଇ ତାରୁ ସିଂହଜୀଙ୍କ ଶହୀଦ ହେବା ଖବର ସେ ସମୟରେ ବିଖ୍ୟାତ ଥିଲା। ସେ ପହୁଲେ ଗ୍ରାମର ବାସିନ୍ଦା ଥିଲେ ଓ ଚାଷକାମ କରି ଜୀବିକା ଯାପନ କରୁଥିଲେ। ସେହି ସମୟରେ ଯିବା ଆସିବା ଶିଖମାନଙ୍କ ସେବା ସତ୍କାର କରୁଥିଲେ ଓ ବିଶେଷ ଭାବେ ଯୋଦ୍ଧାମାନଙ୍କୁ

ଖାଦ୍ୟ ସାମଗ୍ରୀ ପହଞ୍ଚାଉଥିଲେ। ଏମିତି କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କ ନାମରେ ଚୁଗୁଲି କେମିତି ହୁଅନ୍ତା ନାହିଁ। ସେଥିଯୋଗୁଁ ଜଡିଁୟାଲର ଗୁପ୍ତଚର ହରି ଭଗତ ନିରଞ୍ଜନ ଭାଇ ତାରୁ ସିଂହଜୀଙ୍କ ଖବର ସୁବା ଖାଁ'କୁ ଦେଲା କି ଏ ସିଂହମାନଙ୍କୁ ସାହାଯ୍ୟ କରୁଛି। ସିଂହମାନଙ୍କୁ ଖାଦ୍ୟସାମଗ୍ରୀ ଦେଉଛି, ଘରେ ସ୍ଥାନ ଦେଉଛି ରୁଟି ଓ ଖାଦ୍ୟ ରୋଷେଇ କରି ଜଙ୍ଗଲରେ ଦେଉଛି।

କିଛି ଦିନ ପୂର୍ବରୁ ଭାଇ ସୁବେଗ ସିଂହ ଓ ଶାହବାଜ ସିଂହଙ୍କୁ ମଧ୍ୟ ବିରକ୍ତ ହୋଇଥିଲା। ସୁବେଗ ସିଂହ, ସିଂହ ହୋଇ ମଧ୍ୟ ସୁବାକୁ ବହୁତ ସାହାଯ୍ୟ କରିଥିଲେ ଓ ରକ୍ଷା କରିଥିଲେ ଓ ସୁବା ମଧ୍ୟ ବହୁତ ଥର ଭାଇ ସାହେବଙ୍କୁ ବହୁ ପୁରସ୍କାର ଦେଇଥିଲା। କିନ୍ତୁ ଯେତେବେଳେ ଜାତି ଓ ଧର୍ମର ଭୂତ ଚଢ଼ିଲା ତାହାର ବୁଦ୍ଧି ଭ୍ରଷ୍ଟ ହୋଇଗଲା। ବିଶେଷ ଭାବେ ମୁସଲମାନମାନଙ୍କୁ ମଜହବର ଭୂତ ଅତି ଶୀଘ୍ର ଚଢିଯାଏ।

କୁହାଯାଇଛି କି, ସୁବେଗ ସିଂହ ସ୍ୱୟଂ ଫାରସୀ ବିଦ୍ୱାନ ଥିଲେ ଓ ତାହାଙ୍କ ପୁତ୍ର ଶାହବାଜ ସିଂହ ବହୁତ ଯୋଗ୍ୟ ଓ କୁଶଳ ଥିଲେ। ଥରେ କୌଣସି ଏକ ପ୍ରସଙ୍ଗରେ ଉସ୍ତାଦ ମୌଲବୀ ସହ ଯୁକ୍ତି ହୋଇଥିଲା, ଯୁକ୍ତିରେ ମୌଲବୀ ହାରି ଯାଇଥିଲେ। ଏହି ପ୍ରସଙ୍ଗ ଯୋଗୁଁ ସେ ରାଗିଥିଲା ଓ ଏହାର ଅଭିଯୋଗ ସୁବା ପାଖକୁ ଯାଇଥିଲା କି ଆପଣଙ୍କ ଚାକର ହୋଇ ମଧ୍ୟ ବିଶ୍ୱାସଘାତୀ ଆମର ମଜହବକୁ ନିନ୍ଦା କରୁଛି, ଏହା ଜଘନ୍ୟ ଅପରାଧ ଅଟେ। ଏହା ଶୁଣି ସୁବା ଖାଁ କ୍ରୋଧିତ ହୋଇଗଲା। ସେ ସୁବେଗ ସିଂହଜୀଙ୍କୁ ଡାକି କହିଲା 'ସୁବେଗ ସିଂହ! ତୋର ବୁଦ୍ଧିକୁ କ'ଣ ହେଲା?'

'କ'ଣ ହେଲା ଖାଁ ସାହେବ?'

'ତୋର ପୁତ୍ର ଆମର ଜାତି ଓ ଧର୍ମ ବିରୋଧରେ ନିନ୍ଦା କରି କହୁଛି।'

'ମୁଁ ଜାଣି ନାହିଁ କିନ୍ତୁ ଯୁକ୍ତିତର୍କ ସମୟରେ କୌଣସି କଥା କମ ବେଶି ହୋଇ ଯାଇଥିବ।'

(ନବାବ କ୍ରୋଧିତ ହୋଇଗଲା) – 'ସୁବେଗ ସିଂହ ବର୍ତ୍ତମାନ ଏହି ବିଷୟ ଆଉ ଚଳିବ ନାହିଁ। ମୁସଲମାନ ହୋଇଯାଅ ନଚେତ୍ ମୃତ୍ୟୁ ସକାଶେ ପ୍ରସ୍ତୁତ ହୋଇଯାଅ।' ଭାଇ ସୁବେଗ ସିଂହଜୀ କ'ଣ ଏହି କଥାରେ ଅଜ୍ଞାନ ଥିଲେ, ଅନେକ ସିଂହଙ୍କୁ ଶହୀଦ ପ୍ରାପ୍ତ କରିବା ସେ ଦେଖିଥିଲେ ଓ ଏହି ବିଷୟରେ ସେ ପ୍ରଥମରୁ

ଅନୁଭବ କରି ଆସୁଥିଲେ ଓ ମୋ ସହିତ ମଧ୍ୟ ଏହି ପରିସ୍ଥିତି ଆସିବା ସେ ମନ୍ଦହାସ୍ୟ କରି କହିଲେ, ଆପଣଙ୍କ ବଶୀଭୂତ ଏହା ନୁହଁ। ଏହା ଅତି ସାଧାରଣ ଓ ପ୍ରାକୃତିକ କଥା, ଯେତେବେଳେ କାହାର ଅନ୍ତ ହୁଏ ତାହାର ବୁଦ୍ଧିଭ୍ରଷ୍ଟ ହୋଇଥାଏ। ଏହି ପରିସ୍ଥିତି ବର୍ତ୍ତମାନ ଆପଣଙ୍କର ହୋଇଛି। ଆପଣ କାଜି ଓ ମୌଲବୀମାନଙ୍କୁ କହି ନ୍ୟାୟର ଗଳା ଦବାଇ ଦେଉଛନ୍ତି। ଖାଁ ବାହାଦୁର ! ଯେଉଁ ମୃତ୍ୟୁକୁ ଆପଣ ମୋତେ ଡରାଉଛନ୍ତି, ମୁଁ ସେହି ମୃତ୍ୟୁକୁ ଡରେ ନାହିଁ।

'ମୁସଲମାନ ହୋଇଯାଅ, ଅନ୍ୟଥା ଜୀବନ ଚାଲିଯିବ।'

'ନୁହେଁ ଖାଁ ସାହିବ ! ଅନ୍ୟଥା ନୁହେଁ, ମତେ ଯଦି ଏହିପରି ମରାଯିବ ତା'ହେଲେ ଯଶ କୀର୍ତ୍ତିର ହିସାବରେ ମୋର ନାମ ରହିଯିବ ?'

'ଏମିତି ଜିଦି କର ନାହିଁ ପୂରା ବୟସ ଅଛି ମୋ ସହିତ ରହିବ। ଅମୂଲ୍ୟ ସମୟ କାହିଁକି ନଷ୍ଟ କରୁଛ ?'

'ଖାଁ ସାହେବ ବୁଝିବାକୁ ଚେଷ୍ଟା କରନ୍ତୁ, ମୁଁ ଶିଖ ଧର୍ମ ଛାଡିପାରିବି ନାହିଁ।'

ସୁବା ବୁଝିପାରିଲା କି ଏ ଏମିତି ଭାବେ ମାନିବ ନାହିଁ। ସେ ପିତା ପୁତ୍ରଙ୍କୁ କରତରେ ଚଢ଼ିବା ପାଇଁ ଆଦେଶ ଦେଲା।

କରତ (ବଡ଼ ବଡ଼ ଗୋଲ ପୋଲ କରତ)ରେ ଚଢ଼ାଇବା ମାନେ, ସେତେବେଳେ ଭାଇ ସୁବେଗ ସିଂହ ଓ ଶାହବାଜ ସିଂହଙ୍କୁ କରତରେ ବାନ୍ଧି ଦେଲା ଓ ଘୂରାଇବାକୁ ଲାଗିଲା ଓ ପିତା ପୁତ୍ର ଦୁଇଜଣ ୱାହେଗୁରୁ ସତ୍‌ନାମ ନାମରେ ଯୋଡ଼ି ହୋଇଗଲେ। ଶରୀର ଖଣ୍ଡ ଖଣ୍ଡ ହୋଇ ରକ୍ତଧାର ବୋହି ଚାଲିଛି କିନ୍ତୁ ଏକ ଉଚ୍ଚାରଣ ଗୁଞ୍ଜନ ହୋଇ ଚାଲିଛି।

ସୁବା ଖାଁ ଶାହବାଜ ସିଂହଙ୍କୁ କରତରୁ ଓହ୍ଲାଇଲା। ଦୂରକୁ ନେଇ ବହୁତ ଲୋଭ ଦେଖାଇଲା, କିନ୍ତୁ ଶାହବାଜ ସିଂହ ମୁଣ୍ଡ ହଲାଇ ନାସ୍ତି କରିଲେ। ପୁଣି ଚାବୁକ ମାରିବା ପାଇଁ ଆଦେଶ ଦେଲା, ଚାବୁକ ମାଡ଼ ଯୋଗୁଁ ଶାହବାଜ ସିଂହ ଦୁଃଖକଷ୍ଟ ଯୋଗୁଁ ବହୁତ ଚିତ୍କାର କରିଲେ ଓ ସୁବା ଖାଁ ମତେ ଦୟା କରନ୍ତୁ। ସୁବା ତୁରନ୍ତ ବହୁତ ମିଠା ମିଠା କଥା ଆରମ୍ଭ କରିଲା ଓ ଶାହବାଜ ସିଂହଙ୍କୁ ମନାଇଲା।

ସୁବା ଖାଁ ବହୁତ ଖୁସି ହୋଇଗଲା ଓ ଭାଇ ସୁବେଗ ସିଂହଜୀଙ୍କ ପାଖକୁ ଯାଇ କହିଲା, 'ଭାଇ ସୁବେଗ ସିଂହ, ତୁ ମଧ୍ୟ ଜିଦି ଛାଡ଼ି ଦେ ଓ ମୋର କଥା ମାନେ ! ଶାହବାଜ ସିଂହଙ୍କୁ ମୁଁ ମନେଇଦେଲି।'

'କ'ଣ ! ଶାହବାଜ ମୁସଲମାନ ହେବା ପାଇଁ ମାନିଗଲା ?'

'ହଁ !'

'ଏହା ମୁଁ ମାନିବି ନାହିଁ, ମୋ ପାଖକୁ ଆଣ ।'

ତୁରନ୍ତ ସୁବା ଶାହବାଜ ସିଂହଙ୍କୁ ଡକାଇଲା । ପାଖରେ ପହଞ୍ଚିବା ପରେ ଶାହବାଜ ସିଂହ, ଭାଇ ସୁବେଗ ସିଂହଙ୍କୁ ଧ୍ୟାନ ସହ ଦେଖିଲା । ବସିବା ପାଇଁ ଇସାରା କରି ଶାହବାଜ ସିଂହ ନିଜ ପାଖରେ ବସାଇଲେ, ପୁଣି ସେ ଦୁଇ ଆଙ୍ଗୁଠିରେ ଅଛ ମାଟି ଧରିତ୍ରୀରୁ ଉଠାଇ ଲଗାଇଲେ ଓ ସତ୍‌ନାମ - ୱାହେଗୁରୁ କହି ଶାହବାଜ ସିଂହର ମଥାରେ ଗୋଟିଏ ରେଖା ଜୋର୍‌ରେ ରଗଡ଼ି ଦେଲେ । କିଛି କ୍ଷଣ ସକାଶେ ଆଖି ବନ୍ଦ କରି ସତ୍‌ଗୁରୁ କଳଗୀଧର(ଚୂଡ଼ାମଣି ଧାରୀ)ଙ୍କୁ ପ୍ରାର୍ଥନା କରିଲେ । ପୁଣି ଆଖି ଖୋଲିଲେ ଓ ସୁବାକୁ କହିଲେ, 'ଖାଁ ସାହେବ, ଶାହବାଜ ସିଂହ ଧର୍ମ ତ୍ୟାଗ କରି ମୋର ନାମକୁ କଳଙ୍କିତ କରିପାରିବ ନାହିଁ, 'କିନ୍ତୁ ଏ ମୋ ସମ୍ମୁଖରେ ମାନି ସାରିଛି, ତୋର କଥା ଭୁଲ୍ ଅଟେ, ସୁବା କହିଲା ।'

ପୂର୍ବର କଥା ଛାଡ଼ ବର୍ତ୍ତମାନ ପଚାର ।'

ସୁବା ପଚାରିବା ପରେ ଶାହବାଜ ସିଂହ ମନା କରିଦେଲ, ପୁଣି କରତରେ ଚଢ଼ାଇ ଓ ଚାବୁକ ମାଡ଼ ଦିଆଗଲା, ଶରୀରରୁ ରକ୍ତ ବୋହି ଚାଲିଲା ଓ ଶାହବାଜ ସିଂହ ବେହୋସ ହୋଇଗଲେ । ହୋସ ଆସିବା ପରେ ସୁବା ପଚାରିବା ପରେ ସେ ମୁଣ୍ଡ ବୁଲାଇ ଦେଲେ । ସୁବା ଆଶ୍ଚର୍ଯ୍ୟ ହୋଇ ଭାଇ ସୁବେଗ ସିଂହଙ୍କୁ ପଚାରିଲା, ସୁବେଗ ସିଂହ ! ତୁ ତୋର ପୁତ୍ରକୁ କ'ଣ କରିଦେଲୁ ? ପ୍ରଥମେ ସେ ମାନି ଯାଇଥିଲା, କିନ୍ତୁ ବର୍ତ୍ତମାନ କାହିଁକି ମାନୁନାହିଁ ?

'ଖାଁ ବାହାଦୁର, ସତ୍‌ଗୁରୁଜୀଙ୍କ କୃପା ଯୋଗୁଁ, ଯେଉଁ ଭୁଲ୍ ରେଖା ତାହାର ମଥାରୁ ବାହାରି ଯାଇଥିଲା ଓ ଲିଭିଗଲା, ସେଥି ଯୋଗୁଁ ବର୍ତ୍ତମାନ ସେ ଶହୀଦ ହୋଇଯିବ, କିନ୍ତୁ ମୁସଲମାନ ହେବ ନାହିଁ ।'

ସୁବା ହସି ହସି କହିଲା, 'ତୁମେ ତ ଜ୍ୟୋତିଷ ଶାସ୍ତ୍ର ମଧ୍ୟ ଜାଣିଛ ।' ସେ ଗୋଟିଏ ଘୋଡ଼ା ଅଣାଇଲା, ସେ ଗର୍ଭଧାରଣ କରିଥିଲା । କହିଲା - 'କୁହ ଏ କ'ଣ ଜନ୍ମ ଦେବ ? ଓ ତାହାର ରଙ୍ଗ କିପରି ହେବ ? ଯଦି ତୁ ଠିକ୍ କହିବୁ, ତା'ହେଲେ ବାପ, ପୁଅ ଦୁଇଜଣ ମୁକ୍ତି ପାଇବ ।'

'ଏହି ଘୋଡ଼ୀ ଗର୍ଭରେ ଧଳା ଓ ଛିଟ ରଙ୍ଗର ଛୁଆ ଜନ୍ମ ହେବ।'

ଭାଇ ସୁବେଗ ସିଂହଜୀ ଘୋଡ଼ୀକୁ ଭଲ ଭାବେ ନିରେଖି ଦେଖି କହିଲେ ଦୁଇ-ତିନି ଦିନ ପରେ ଭାଇ ସାହେବଙ୍କ କହିବା ଅନୁଯାୟୀ ଛୁଆ ଜନ୍ମ ହେଲା। ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଓ ଏହି ସମାଚାର ଚାରିଆଡ଼େ ପ୍ରଚାର ହୋଇଗଲା। ସୁବାର ମନରେ କେଜାଣି କେମିତିକା ବିଚାର ଆସିଲା, ସେ ଭାଇ ସୁବେଗ ସିଂହଜୀଙ୍କୁ ପଚାରିଲା 'ମୋର ଆୟୁ କେତେ ଦିନ ଅଛି ? 'କେବଳ ୩୧ ଦିନ ବାକି ଅଛି ଖାଁ ସାହିବ।' ସୁବାର ଗୋଡ଼ ତଳୁ ମାଟି ଖସିଗଲା, 'ଆଚ୍ଛା ଦେଖିବି'। କହି ପିତା ଓ ପୁତ୍ର ଦୁହିଁଙ୍କୁ ବନ୍ଦୀ କରି ରଖିଦେଲା।

## ଭାଇ ତାରୁ ସିଂହଜୀଙ୍କ ଶହୀଦ ହେବା ଓ ସୁବାର ମୃତ୍ୟୁ

ସେହି କଥା ହେଲା। ଭାଇ ତାରୁ ସିଂହଜୀ ପହୁଲେ ଗ୍ରାମରୁ ଦିନ-ଚାରି ଦିନ ପରେ ଲାହୋର ଅଣାଗଲା। ଭାଇ ତାରୁ ସିଂହଜୀଙ୍କୁ ଧରିବା କାରଣ ହେଲା ସେ ସିଂହମାନଙ୍କୁ ଲଙ୍ଗର ରୋଷେଇ କରି ଖୁଆଉଥିଲେ ଓ ଜଙ୍ଗଲକୁ ପଠାଉଥିଲେ। ଭାଇ ତାରୁ ସିଂହଜୀ ସେତେବେଳେ ୨୫ ବର୍ଷ ବୟସର ଯୁବକ ଥିଲେ କିନ୍ତୁ ପୂର୍ଣ୍ଣ ଭାବେ ଗୁରୁ ଶିଖ ଗୁରୁବାଣୀ ପ୍ରେମୀ ଥିଲେ, ବାଣ୍ଟି ଖାଉଥିଲେ। ଧର୍ମୀ କର୍ମୀ ସିଂହ ଥିଲେ। କଚେରି ମଧ୍ୟରେ ପହଞ୍ଚିବା ସହିତ ଭାଇ ତାରୁ ସିଂହଜୀ ସୁବା ଖାଁ ଗର୍ଜନ କରି (ବିଜୟ) ୱାହେଗୁରୁଜୀକା ଖାଲସା ୱାହେଗୁରୁଜୀକୀ ଫତେହ କହିଲେ, ପଚାରିଲେ, ଖାଁ ବାହାଦୁର। ମୋତେ କାହିଁକି ଧରି ଆଣିଲ, ମୁଁ ଚୋରି କରି ନାହିଁ, ଡକାୟତି କରି ନାହିଁ ନା କାହାକୁ ମାରି ନାହିଁ କିମ୍ବା କାହାର କିଛି ଅନିଷ୍ଟ କରି ନାହିଁ, କଣ ପାଇଁ ମୋତେ ଏଠାକୁ ଅଣାଗଲା।

ଫତେହ ଶୁଣି ସୁବାର ରକ୍ତ ମୁଣ୍ଡକୁ ଚଢିଗଲା, କହିଲା 'ତୁମେ ପଚାରୁଛ କି ତୁମକୁ କାହିଁକି ଏଠାକୁ ଅଣାଗଲା ? ଏଥିଯୋଗୁଁ କି ତୁମକୁ ମୋର ଡର ନାହିଁ। ତୁମେ ସିଂହମାନଙ୍କୁ ମୋର ଶତ୍ରୁମାନଙ୍କୁ ସାହାଯ୍ୟ କର, ସେଥିଯୋଗୁଁ ଯଦି ମଙ୍ଗଳ କାମନା କରୁଛ ତାହେଲେ ମୁସଲମାନ ହୋଇଯାଅ। ଖାଁ ବାହାଦୁର ! ହାକିମ ହୋଇ ନ୍ୟାୟ ନ କରିଲେ, ଏହା ସିଧା ନର୍କକୁ ରାସ୍ତା ବାହାରୁଛି। ତୁମେ ଜାଣିଛ କି ଏଠାରୁ ତୁମ ଭଳି ପୂର୍ବରୁ ବହୁତ ଚେଲା ଯାଇ ସାରିଛନ୍ତି ଓ ତୁମେ କଣ ପାଇଁ ଅନ୍ୟାୟ କରୁଛ ?



ଭାଇ ତାରୁ ସିଂହ ଜୀ ଧର୍ମ ସକାଶେ
ନିଜ ଖପୁରି କଟାଇଦେଲେ




ଭାଇ ତାରୁ ସିଂହ ଜୀ ଧର୍ମ ସକାଶେ
କରତ ଚକରେ ଚଢ଼ିଲେ



ଭାଇ୍ ତାରୁ ସିଂହ ଜୀ ଧର୍ମ ସକାଶେ
ନିଜ ଖପୁରି୍ କଟାଇ୍ଦେଲେ୍




ଭାଇ୍ ତାରୁ ସିଂହ ଜୀ ଧର୍ମ ସକାଶେ
କର୍ତ ଚକରେ୍ ଚଢ଼ିଲେ୍

ସୁବାକୁ ଆହୁରି କ୍ରୋଧ ଆସିଲା, ତୁରନ୍ତ ସେ ହତ୍ୟାକାରୀମାନଙ୍କୁ ଆଦେଶ ଦେଲା ଏହାକୁ କରତ ଉପରେ ଚଢ଼ାଇ ମାରିଦିଅ। ପଥର ହୃଦୟର ହତ୍ୟାକାରୀମାନଙ୍କୁ କଣ ଦୟା ଆସିବ, ତୁରନ୍ତ ସେମାନେ ଭାଇ ତାରୁ ସିଂହଜୀଙ୍କୁ କରତ ଉପରେ ଚଢ଼ାଇଦେଲେ। ପକ୍ଷୀ ଭଳି ଶରୀରକୁ ବଙ୍କାଟଙ୍କା କରି ହାଡ଼ଗୁଡ଼ିକ କଡ଼ କଡ଼ ହୋଇ ଶବ୍ଦ ହେଉଥିଲା, କିନ୍ତୁ ଧନ୍ୟ ଭାଇ ତାରୁ ସିଂହଜୀ ଦୃଢ଼ମନା, ମୁହଁରୁ ଓହୋ ମଧ ବାହାରିଲା ନାହିଁ, କେବଳ ୱାହେଗୁରୁ, ୱାହେଗୁରୁ ଧ୍ୱନି ଗୁଞ୍ଜନ ସହ ମଗ୍ନ ଥିଲେ। ନୃଶଂସ ହତ୍ୟାକାରୀମାନେ କରତରୁ ଓହ୍ଲାଇ ଜେଲ ଭିତରେ ଫୋପାଡି ଦେଲେ। ସିଂହଜୀ ଧ୍ୱନୀ ସହ ମଗ୍ନ ଥିଲେ।

ଦ୍ୱିତୀୟ ଦିନ ପୁଣି ଭାଇ ସାହିବଙ୍କୁ ଦରବାରରେ ଡକାଗଲା। ମୁସଲମାନ ହେବାପାଇଁ କୁହାଗଲା। ପୁଣି ସେ ପ୍ରଥମ ଦିନ ଭଳି ମନା କରିଲେ ଓ କହିଲେ ଖାଁ ବାହାଦୁର। ତୁମେ ଶାସନର ଗାଦି ଯୋଗୁଁ ଅହଙ୍କାରର ଅନ୍ଧକାରରେ ରହିଛି ଓ ଧର୍ମାନ୍ଧତା ତୁମକୁ ଅନ୍ଧ କରିଦେଇଛି। ମନେରଖ ଏହି ଅତ୍ୟାଚାରର ହିସାବ ତୁମକୁ ଦେବାକୁ ପଡ଼ିବ। କିନ୍ତୁ ଆମର ଶିଖ ଜୀବନ ଯାପନ ମହତ୍ତ୍ୱ ବର୍ତ୍ତମାନ ଯାଏଁ ତୁମେ ବୁଝି ନାହଁ। ଆମର ଶିଖମାନେ ତ କେଶ ଓ ଶ୍ୱାସ ସହିତ ସଂଲଗ୍ନ ଓ ତ୍ୟାଗୀ ଶିଖ ଅଟନ୍ତି।

ସତ୍ୟତା ଯୋଗୁଁ ସୁବା କ୍ରୋଧିତ ହୋଇଗଲା। ସେ ହତ୍ୟାକାରୀମାନଙ୍କୁ ଆଦେଶ ଦେଲା 'ଏହାର ଦୁଇ ହାତ ଓ ମୁହଁ ବାନ୍ଧି ଦିଅ ଓ ବାରିକକୁ ଡକାଇ ଏହାର ବାଳ କଟାଇଦିଅ, ଦେଖିବି ଏହାର ଶିଖ ଜୀବନ ଓ କେଶ ଶ୍ୱାସ ସହିତ ତ୍ୟାଗ ଓ ବଳିଦାନ। ତାଙ୍କୁ ବନ୍ଧାଗଲା ଓ ବାରିକ ଆସିଲା, କିନ୍ତୁ ବାରିକ ଯେତେ ଚେଷ୍ଟା ଓ ବଳ ପ୍ରୟୋଗ କରି ମଧ ବାଳ କାଟିପାରିଲା ନାହିଁ, ଅସ୍ତ୍ର ଛୁଇଁପାରିଲା ନାହିଁ, ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। କିନ୍ତୁ ଅତ୍ୟାଚାରୀର ଜିଦି ଆହୁରି ବଢ଼ିଗଲା, ସୁବା କହିଲା ଯଦି ବାଳ କାଟି ପାରୁନା ତାହେଲେ ତାହାର ଖପୁରୀ କାଟିଦିଅ।'

ଏହି ଭୟାନକ ଆଦେଶ ଶୁଣି ଭାଇ ତାରୁ ସିଂହଜୀ କହିଲେ- 'ସୁବେ ! ଏହି ହୁକୁମ ଦେଲୁ, ତୁ ମଧ ପ୍ରସ୍ତୁତ ହୋଇଯାଅ। ମୁଁ ତ ଗୁରୁ ପୁରୀ ଠାରେ ପହଞ୍ଚିବି। କିନ୍ତୁ ତାହା ପୂର୍ବରୁ ତୁମକୁ ଯମପୁରୀ ପଠାଇଦେବି। କିନ୍ତୁ ସେହି ଗର୍ବୀ ଓ ଅହଙ୍କାରୀକୁ ଏହାର କଣ ପ୍ରଭାବ ହୁଅନ୍ତା। ହତ୍ୟାକାରୀ ମସ୍ତକ ପାଖରୁ ଖପୁରୀ ଉଠାଇବା ଆରମ୍ଭ କରିଦେଲା। ବଡ଼ ଭୟାନକ ଦୃଶ୍ୟ ହୋଇଗଲା। ଯେମିତି ଯେମିତି ଖପୁରୀକୁ କାଟିବା

ଆରମ୍ଭ ହେଲା ରକ୍ତର ବର୍ଷା ଛିଟା ଭଳି ବୋହି ଚାଲିଲା । କ୍ଷଣକ ମଧ୍ୟରେ ସିଂହଜୀଙ୍କ ବସ୍ତ୍ର ଓ ଶରୀର ରକ୍ତରେ ଜଡ଼ୀଭୂତ ହୋଇଗଲା । କିନ୍ତୁ ସେ ଓହୋ ଶବ୍ଦ ମଧ୍ୟ ବାହାର କରିଲେ ନାହିଁ । ଶୁଦ୍ଧ ଓ ନିର୍ମଳ ଗୁରୁପ୍ରେମୀଙ୍କ ମୁହଁରୁ ୱାହେଗୁରୁ ଓ ସତ୍‌ନାମର ବୋଲ ଲାଗିରହିଥିଲା । ବର୍ତ୍ତମାନ ଖପୁରୀର ଅଧା କଟା ହୋଇଗଲା, ସେତେବେଳେ ଦୟାଳୁ ଓ କୋମଳ ହୃଦୟ ଲୋକମାନେ ସଭାରୁ ଉଠିବା ଆରମ୍ଭ କରିଦେଲେ ଓ ସୁବା ମଧ୍ୟ ବ୍ୟସ୍ତ ହୋଇଗଲା, କହିଲା- ବାସ୍ ତାକୁ ଏଠାରୁ ନେଇଯାଅ ।

ହତ୍ୟାକାରୀ ଯେଉଁଠି ଭାଇ ତାରୁ ସିଂହଜୀଙ୍କ ଶହୀଦ ଗଞ୍ଜ ଅଛି, ସେଠାକୁ ରକ୍ତାକ୍ତ ଅବସ୍ଥାରେ ଭାଇ ସାହିବଙ୍କୁ ଆଣି ବସାଇଦେଲା । ଭାଇ ସାହିବ ଅନ୍ନ ଜଳ ତ୍ୟାଗ କରିଦେଲେ । ସୁବା ବ୍ୟସ୍ତ ହୋଇ ଉଠି ଘରକୁ ଚାଲିଗଲା, ନିରହଙ୍କାର ପରମାତ୍ମା କୌତୁକମୟ ରଚନା ରଚିଦେଲେ । କିଛି ସମୟ ପରେ ସୁବାକୁ ଅସହନୀୟ ବ୍ୟଥା ଆରମ୍ଭ ହୋଇଗଲା । ପରିସ୍ରା ବନ୍ଦ ହୋଇଗଲା । ବର୍ତ୍ତମାନ ସୁବା କୁ ଭାଇ ସାହେବଙ୍କ ବାକ୍ୟ ମନେପଡିଲା । ତୁରନ୍ତ ସେ ନିଜର କର୍ତ୍ତୃତ୍ୱ ଯୋଗୁଁ ଛଟପଟ ହୋଇଗଲା । ସେ ଲୋକ ପଠାଇ ଭାଇ ତାରୁ ସିଂହଜୀଙ୍କୁ କ୍ଷମା ମାଗିବା ପାଇଁ ଇଚ୍ଛା କରିଲା, ପରନ୍ତୁ ଭାଇ ତାରୁ ସିଂହଜୀ ଉତ୍ତର ଦେଲେ । କହିଲେ – 'କ୍ଷମାର ସମୟ ଚାଲିଗଲା, ବର୍ତ୍ତମାନ ଯିବା ବ୍ୟବସ୍ଥା କର ଓ ମୁଁ ନିଆଁ ଲଗାଇ ଯିବି ।'

ବର୍ତ୍ତମାନ ସୁବାକୁ ପ୍ରତ୍ୟକ୍ଷ ମୃତ୍ୟୁ ଦେଖାଗଲା ଓ ବନ୍ଦୀ ଗୃହରେ ଥିବା ଭାଇ ସୁବେଗ ସିଂହଙ୍କ ସେହି ବାକ୍ୟ ମନେ ପଡ଼ିଗଲା – 'ଖାଁ ବାହାଦୁର । ତୁମର ୩୧ ଦିନ ଯାଏଁ ଆୟୁ ଅଛି ।' ସେତେବେଳେ ପିତାପୁତ୍ରଙ୍କୁ ବନ୍ଦୀଗୃହ ମଧ୍ୟରୁ ବାହାରକୁ ଆଣି ପାଖକୁ ଡାକିଲା ଓ କହିଲା – ସୁବେଗ ସିଂହ, ଠିକ୍ ଅଛି, ମୁଁ ୩୧ ଦିନ ପରେ ମରିଯିବି; କିନ୍ତୁ ଏହି ଦୁଃଖ ଓ କଷ୍ଟରୁ ଉଦ୍ଧାର କରିଦେ । କୌଣସି ଉପାୟରେ ବଞ୍ଚାଇ ଦେ । ମତେ ବହୁତ କଷ୍ଟ ହେଉଛି । ଏତେ ଦୁଃଖ ୧୯–୨୦ ଦିନ କେମିତି କଟାଇବି । ଗୁରୁଙ୍କ ପାଇଁ, ମତେ କୌଣସି ପ୍ରକାରେ ଭାଇ ତାରୁ ସିଂହଜୀ ଥରେ ମତେ କ୍ଷମା କରିଦେ, ମୁଁ ଭବିଷ୍ୟତରେ କେବେ କୌଣସି ଶିଖକୁ ଦୁଃଖ ଦେବି ନାହିଁ, ଆହୁରି ସେବା କରିବି ।

ଭାଇ ସୁବେଗ ସିଂହଜୀଙ୍କୁ ଦେଖ, ପୂର୍ଣ୍ଣ ରୂପେ ଗୁରୁ ଶିଖ ଅଟନ୍ତି 'ଯାହାକି ଗୁରୁଙ୍କ ସକାଶେ' ଶୁଣି ଶୀଘ୍ର ନିଜର ବିରୋଧୀର ସାହାଯ୍ୟ ସକାଶେ ମନ ବଳାଇଲେ । ସୁବାର ଦୁଃଖ ଦର୍ଦ୍ଦର କାହାଣୀ ଭାଇ ତାରୁ ସିଂହଜୀଙ୍କ ନିକଟରେ ଶୁଣାଇଲେ ଓ

କହିଲେ - 'ବର୍ତ୍ତମାନ ଏହି ଅତ୍ୟାଚାରୀ କ୍ଷମା ମାଗୁଛି, ଯଦି ଯୋଗ୍ୟ ମନେକର ତା'ହେଲେ କ୍ଷମା କରି ଦିଅ।'

ଭାଇ ତାରୁ ସିଂହଜୀ କହିଲେ- ସୁବେଗ ସିଂହଜୀ, ସେହି ଅତ୍ୟାଚାରୀର ତରଫରୁ ସନ୍ଦେଶ ନେଇ ମୋ ପାଖକୁ ଆସିଛ ? ଆପଣଙ୍କୁ ଜଣା ନାହିଁ ସେ କେତେ ଅନ୍ୟାୟ ଅତ୍ୟାଚାର କରିଛି।

ଭାଇ ସାହେବ, ମୁଁ ସବୁ ଜାଣିଛି। କିନ୍ତୁ କଣ କରିବି, ଗୁରୁଙ୍କୁ ଅନୁଭବ କରିଲି, ସେଥିଯୋଗୁଁ ଆସିଲି।

ଦେଖିବ, ସୁବେଗ ସିଂହଜୀ ମୋତେ ଗୁରୁଙ୍କ ପାଇଁ କୁହ ନାହିଁ। ଏହି ଅତ୍ୟାଚାରୀର ଉପଚାର ଏହା ଅଟେ କି ତାହାକୁ ଯମପୁରୀ ପହଞ୍ଚିବାକୁ ପଡ଼ିବ।'

ଭାଇ ସୁବେଗ ସିଂହଜୀ ଫେରି ଆସିଲେ ଓ ସମସ୍ତ କଥାବାର୍ତ୍ତା କହିଦେଲେ। ଏହା ଶୁଣି ସୁବା ବହୁତ ବ୍ୟସ୍ତ ହୋଇ ପଡ଼ିଲା, ବର୍ତ୍ତମାନ କ'ଣ କରିବି। ବ୍ୟଥା ତାହାକୁ ଚିତ୍କାର କରାଉଥିଲା। ରାଜବୈଦ୍ୟ ଓ ହାକିମମାନେ ସମସ୍ତ ପ୍ରକାର ବଳ - ବୁଦ୍ଧି ଲଗାଇ ନିରାଶ ହୋଇଗଲେ। ସୁବାର ବୁଦ୍ଧି ଛଟପଟ ହୋଇ ଚାଲିଛି ଗୋଟିଏ ବିଚାର ଆସିଲା। ସେ ଖାଲସାଙ୍କ ସଚ୍ଚୋଟତା ଓ ବାହାଦୁରି ହୃଦୟର ନିର୍ମଳତା ବିଷୟରେ ଜ୍ଞାତ ଥିଲା, ସେଥିଯୋଗୁଁ ଭାଇ ସୁବେଗ ସିଂହଜୀଙ୍କୁ ନିକଟକୁ ଡାକି କହିଲା, - ସୁବେଗ ସିଂହ! ତୁମେ ଆହୁରି ଏକ କାମ କର! ତୁମେ ଗୁରୁ ପନ୍ଥ (ତତ ଖାଲସା)ଙ୍କ ପାଖକୁ ଯାଅ ! ତୁମ ବିଚାରରେ ମୁଁ ସବୁଠାରୁ ବଡ଼ ଶତ୍ରୁ ହେଲେ ମଧ୍ୟ, ମୋର ଭରସା ଓ ବିଶ୍ୱାସ ଅଛି କି ଖାଲସା ଘୃଣା କରନ୍ତି ନାହିଁ ଓ ସେମାନେ ଯାହା ଦଣ୍ଡ ଦେବେ ତାହା ମୁଁ ଭରିଦେବି, କିନ୍ତୁ ମତେ ଏହି ଦୁଃଖକଷ୍ଟରୁ ଥରଟିଏ ପାଇଁ ବାହାର କରିଦିଅ।

ସେତେବେଳ ସମୟରେ ସୁବା ୫୦୦୦ ଟଙ୍କା ଖାଲସାଙ୍କ ଦର୍ଶନ ଭେଟି ଓ ୧୦୧ ଟଙ୍କା କଡ଼ାହ ପ୍ରସାଦ (ଅଟା ହାଲୁଆ) ସକାଶେ ସୁବେଗ ସିଂହଙ୍କୁ ଦେଲା ଓ ଶୀଘ୍ର ଯାଇ ଦେଇ ଆସ ବୋଲି କହିଲା। ତା ସହିତ ସେହି ଦିନ ଭାଇ ସୁବେଗ ସିଂହଜୀଙ୍କୁ ନିଜର ଗୋଟିଏ ବିଶେଷ ହୁକୁମ ଦ୍ୱାରା ଲାହୋର ପୋଲିସ ଥାନାଠାରେ ନିଯୁକ୍ତି କରାଇଲା।

ଭାଇ ସୁବେଗ ସିଂହଜୀ ଜଙ୍ଗଲର ଖାଲସାମାନଙ୍କ ପାଖରେ ପହଞ୍ଚିଲେ ଓ ସମସ୍ତ କଥା ଶୁଣାଇଲେ। ଖାଲସା ମଧ୍ୟ ଶରଣ ପାଳକ ଗୁରୁଙ୍କ ପରୋପକାର ଥିଲା,

କିନ୍ତୁ ତା ମଧ୍ୟରେ କେତେ ଜଣ ଗରମ ସ୍ୱଭାବର ସିଂହ କହିଲେ ଆମ୍ଭେ ସେହି ପାପୀର ଅରଦାସ କରିବାପାଇଁ ଦେବୁ ନାହିଁ, କିନ୍ତୁ ବୁଦ୍ଧିମାନ୍ ସିଂହମାନେ ବୁଝାଇବା ପରେ ଖାଲସା ନିଜ କର୍ତ୍ତବ୍ୟର ଲାଜ ରଖିବା ଦରକାର, ସମସ୍ତେ ଏକମତ ହୋଇଗଲେ। ଶେଷ ନିଷ୍ପତ୍ତିରେ ପହଞ୍ଚିଲେ କି ଅରଦାସ ହେବା ଜରୁରୀ ଅଟେ। କିନ୍ତୁ ଭାଇ ତାରୁ ସିଂହଜୀଙ୍କ ଦ୍ୱାରା ଛଡ଼ାଯାଇଥିବା ତୀର ମଧ୍ୟ ବନ୍ଦ କରିବା ଅନୁଚିତ। ସେଥିଯୋଗୁଁ କଡ଼ାପ୍ରସାଦ ଦେଇ ତିଆରି କରି ବହୁତ ଜୟ ଜୟକାର ଛାଡିଲେ ଓ ଗୁରୁ ମହାରାଜଙ୍କ ଦରବାର (ହୁଜୁରୀ କୁହାଯାଏ) ଅରଦାଶ କରାଗଲା- 'ହେ ପନ୍ଥର ଦାତା ସତ୍‌ଗୁରୁଜୀ, ତୁମର ପନ୍ଥର ବଡ଼ ଦୋଷି ସୁବା ଏହି ସମୟରେ ସିଂହକୁ ଆଗରେ ରଖି ଜୀବନର ବଚନ କରିସାରିଛି। ତାହାକୁ ସଫଳ କରାଅ। ସିଂହମାନଙ୍କ ବଚନ ପୂରା କର, ପରନ୍ତୁ ପିତା ଗୁରୁଜୀ, ଗୋଟିଏ ପ୍ରାର୍ଥନା ଅରଦାଶ ହେଉଛି କି ଏହି ବ୍ୟଥାକୁ କମ କରିଦିଅନ୍ତୁ, ଏହି ବ୍ୟଥା କଟିବ ଓ ପରିସ୍ରା ତାହାର ହେବ 'ଯଦି ଆପଣଙ୍କ ସିଂହଜୀଙ୍କ ଯୋତା ସୁବାର ମୁଣ୍ଡରେ ଲାଗିବ।

ସେଥିଯୋଗୁଁ ସେମିତି କରାଗଲା। ଭାଇସାହିବଙ୍କ ଯୋତା ଯେତେବେଳେ ସୁବା ଖାଁ ବାହାଦୁରର ମୁଣ୍ଡରେ ଲାଗିଲା, କିଛି ସମୟ ଯାଏଁ ତାହାର ବ୍ୟଥା କମିଲା ଓ ପରିସ୍ରା ମଧ୍ୟ ହେଲା। କିନ୍ତୁ କିଛି ସମୟ ପରେ ପୁଣି ବ୍ୟଥା ଆରମ୍ଭ ହେଲା ଓ ତାହା କଟିବା ପାଇଁ ପୁଣି ଯୋତା ମାରିବାକୁ ପଡ଼ିଲା। ସେଥିଯୋଗୁଁ ଏହିପରି ଭାବେ ଯୋତା ମାରି ମାରି ୨୨ ଦିନରେ ସୁବା ଖାଁ ବାହାଦୁର ଚାଲିଗଲା। ଭାଇ ତାରୁ ସିଂହଜୀ ମଧ୍ୟ ଏହି ଖବର ଶୁଣି କଡ଼ା ପ୍ରସାଦ ମଗାଇଲେ, ଜପୁଜୀ ସାହିବର ପାଠ କରିଲେ, ଅରଦାଶ କରିଲେ ଓ ପୁଣି ଏହି ନଶ୍ୱର ଶରୀର ତ୍ୟାଗ କରି ଗୁରୁ ପୁରୀ ଚାଲିଗଲେ।

## ଭାଇ ସୁବେଗ ସିଂହଜୀ ଓ ଶାହବାଜ ସିଂହଙ୍କ ଶହୀଦ

ଭାଇ ସୁବେଗ ସିଂହଜୀ ପୋଲିସ ଅଫିସର ହେବାପରେ ବହୁତ ଭଲ କାମ କରିଲେ। ସିଂହମାନଙ୍କର ମସ୍ତକ କାଟି କୂଅଗୁଡ଼ିକରେ ଭରାଯାଇଥିଲା। ସେ ସେହି କୂଅଗୁଡାକୁ ସଫା କରାଇଲେ ଓ ମସ୍ତକଗୁଡ଼ାକର ସଂସ୍କାର କରାଗଲା। ଭଙ୍ଗାରୁଜା ଗୁରୁଦ୍ୱାର ମାନଙ୍କର ମରାମତି ଓ ସେବା କରାଗଲା। ଗୁରୁ ଦେବଜୀଙ୍କ ସ୍ମରଣ ଓ ଚିନ୍ତନ କରିବା ଲୋକମାନଙ୍କୁ ଯେଉଁ କଷ୍ଟ ଦିଆଯାଉଥିଲା, ସେଥିରୁ ସେମାନଙ୍କୁ

ଉଦ୍ଧାର କରିଲେ ଓ ସେମାନଙ୍କର ମନୋବଳ ବଢ଼ାଇଲେ। ବହୁତ ଜାଗାରେ ସତ୍‌ସଙ୍ଗର ମାର୍ଗ ଖୋଲିଦେଲେ। ଏହିପରି ଭାବେ ଇତିହାସ କହୁଛି ଯେ, ସୁବା ଖାଁର ମୃତ୍ୟୁର ଦୁଇ ବର୍ଷ ଯାଏଁ ଭାଇ ସୁବେଗ ସିଂହ ଅଫିସର ହୋଇ ରହିଥିଲେ।

ସେତେବେଳେ ଲାହୋରର ସୁବା ଖାଁର ପୁତ୍ର ବିଜୟ ଖାଁ ନିଜର ଦୁଇ ଭାଇଙ୍କୁ ହତ୍ୟା କରି ଓ ଜଣକୁ ବନ୍ଦୀ କରି ସାରିଥିଲା। ଏହି ଖବରରେ ଗରମ ୭-୮ ମାସ ଯାଏଁ ଲାଗି ରହିଲା। ନୂଆ ଦୀବାନ ଲଖପତି ରାଏ ହୋଇଥିଲା! ଅନ୍ୟ ମୁଫତି କାଜୀ ଓ ପରାମର୍ଶଦାତା ଥିଲେ, ଯେଉଁମାନେ ପୂର୍ବରୁ ଥିଲେ।

ଲାହୋର ପୋଲିସ ଅଫିସର ଭାଇ ସୁବେଗ ସିଂହଜୀ ବର୍ଷେ ଦୁଇ ବର୍ଷ ମଧ୍ୟରେ ଲାହୋରକୁ ସ୍ୱର୍ଗରେ ପରିଣତ କରିଥିଲେ। ସହରର ମୁଖ୍ୟ ପ୍ରବନ୍ଧକ ସେତେବେଳେ ଲାହୋର ଠାରେ ରହୁଥିଲେ। ସେଥିଯୋଗୁଁ ଭାଇଜୀ ସହରରେ ବୁଲି ବୁଲି ଲୋକମାନଙ୍କର ଦୁଃଖକଷ୍ଟ ଦେଖି ତାହାର ନିବୃତି କରୁଥିଲେ। ସହର ବାସିନ୍ଦାମାନଙ୍କୁ ସେତେବେଳେ ଅଫିସରମାନଙ୍କ ଦ୍ୱାରା ଯେତେ ସୁଖ ମିଳିଥିଲା ତାହା ଅକଥନୀୟ, ଚୋରି, ଡକାୟତି, କାହାକୁ ମାରିବା ସାଧାରଣ ଲୁଟିବା ମାନେ ଯେଉଁମାନେ ଥିଲେ, ସେମାନେ ସିଂହମାନଙ୍କୁ ଡରୁଥିଲେ। ସିଂହମାନେ ମଧ୍ୟ ଭାଇସାହେବଙ୍କ ଅଫିସ ସମୟରେ କେବେ ଲାହୋର ଆଡ଼କୁ ମୁହଁ କରି ନ ଥିଲେ। ସେହି ଲାହୋରର ପାଖାପାଖି ଯେଉଁଠି କି ସବୁବେଳେ ଅଶାନ୍ତି ଲାଗି ରହୁଥିଲା, ତାହା ଶାନ୍ତି ହୋଇଗଲା।

କିନ୍ତୁ ମୁସଲମାନ ରାଜ୍ୟରେ ଜଣେ ଶିଖଙ୍କର ଅଫିସର ହେବା, ଯିଏ ସତ୍ୟତାର ବଳ ଯୋଗୁଁ ସେମାନଙ୍କୁ ନୀଚ ଦେଖିବ, ତାହାର ଈର୍ଷାର ଅଗ୍ନିରେ ଜଳି କାଜୀ ଓ ମୌଲବୀମାନେ ସମ୍ଭାଳି ପାରୁ ନ ଥିଲେ, ସେଥିଯୋଗୁଁ ଭାଇ ସାହେବଙ୍କ ବିରୋଧରେ ଅଭିଯୋଗ ହେବାକୁ ଲାଗିଲା, ଲଖପତ ରାଏ ଦୀବାନ ମଧ୍ୟ ଭାଇ ସାହେବଙ୍କ ବିରୋଧୀ ହୋଇଗଲା। ବିଜୟ ଖାଁ ସୁବାକୁ ଏହିପରି କୁହାଯାଇଥିଲା କି ଏ ସିଂହମାନଙ୍କର ଗୁପ୍ତଚର ଅଟେ।

ଏହି ବାହାନା ଯଥେଷ୍ଟ ଥିଲା। ସେଥିଯୋଗୁଁ ଭାଇ ସାହେବଙ୍କ ଏହି ଦୋଷ ଦୁଇ ବର୍ଷ ପରେ ଧରାପଡ଼ିଗଲା କି ତୁମେ ସିଂହମାନଙ୍କର ମସ୍ତକ କୂଅମାନଙ୍କରୁ ବାହାର କରି ସଂସ୍କାର କାହିଁକି କରିଲ ? ତାହାର ଦଣ୍ଡ ହେଲା କି, ତୁମେ ମୁସଲମାନ ହୁଅ ନଚେତ୍ ମୃତ୍ୟୁ ସକାଶେ ପ୍ରସ୍ତୁତ ହୁଅ। ପରନ୍ତୁ ପୂର୍ଣ୍ଣ ଓ ଶୁଦ୍ଧ ଶିଖ କେମିତି

ମୁସଲମାନ ହୋଇପାରନ୍ତି । ସେହି ପିତା-ପୁତ୍ର ଦୁଇ ଜଣ ଶହୀଦ ହେବାପାଇଁ ସ୍ୱୀକାର କରିଲେ। ଏହି ଖବର ସହରରେ ବିଜୁଳି ଭଳି ଖେଳି ଚାଞ୍ଚଲ୍ୟ ସୃଷ୍ଟି କରିଲା। କେତେଜଣ ଶାନ୍ତିପ୍ରେମୀ ସହରବାସୀ ସୁବାର ଏହି ଅତ୍ୟାଚାରକୁ ଆକଟ କରିଲେ, ପରନ୍ତୁ ନିଷ୍ଫଳ ହେଲେ। ଦୁଇ ଜଣ ବାଣୀ ପଢ଼ି ପଢ଼ି, ପିତା-ପୁତ୍ରଙ୍କ ମସ୍ତକ ନରହତ୍ୟାକାରୀଙ୍କ ତଲବାର ଅଲଗା କରିଦେଲା।

## ସିଂହମାନଙ୍କ ଲାହୋରକୁ ଆକ୍ରମଣ

ସେହି ଶୁଦ୍ଧ ଓ ଦୃଢ଼ଚିତ୍ତ ପିତା-ପୁତ୍ରଙ୍କ ଶହୀଦ ହେବାପରେ ଏହି ଚାଞ୍ଚଲ୍ୟକର ଘଟଣାର ସମାଚାର ସିଂହମାନଙ୍କୁ ତାହାର ପରଦିନ ମିଳିଗଲା। ସିଂହମାନଙ୍କ ମନରେ ଭାରି ରୋଷ ଜାଗି ଉଠିଲା। ସବୁ ସିଂହମାନେ ଏକାଠି ହୋଇ ନିଷ୍ପତ୍ତି ନେଲେ କି ଏହି ମୁଫତି କାଜିମାନଙ୍କୁ ଥରେ ଭଲ ଭାବେ ଦଣ୍ଡ ଦିଆଯିବା ଉଚିତ ଓ ଭାଇ ସାହିବଙ୍କ ଶହୀଦ ହେବା ପ୍ରତିଶୋଧ ନେବା ଉଚିତ। ବିଜୁଳି ଭଳି ଚମକି ଉଠୁଥିବା ତଲବାରଗୁଡ଼ାକ ରକ୍ତରେ ସ୍ନାନ କରିବା ଆରମ୍ଭ କରିଦେଲେ। ଦେଢ଼-ଦୁଇ ଘଣ୍ଟା ମଧ୍ୟରେ ଶବର ପାହାଡ଼ ହୋଇଗଲା। ୪-୫ ହଜାର ତଲବାର ଅକାଳ ଅକାଳ ଗୁଞ୍ଜନ କରି ଚାଲିଲା ଓ ପୁଣି ସିଂହମାନଙ୍କ ତଲବାର ଖୋଳ ମଧ୍ୟ ଲୁଚିଗଲେ।

ସକାଳ ହେବା ପରେ ବିଜୟ ଖାଁ ସହରର ଅବସ୍ଥା ବୁଲି ବୁଲି ଦେଖିଲା। ରକ୍ତାକ୍ତ ସହରକୁ ଦେଖି ଲଖପତ ରାଏକୁ ସିଂହମାନଙ୍କୁ ଆକ୍ରମଣର ଆଦେଶ ଦେଲା। ଏହା ୧୮୦୨ର ଘଟଣା, ଯାହାକି ଲଖପତ ରାଏ ସିଂହମାନଙ୍କ ବିରୋଧରେ ଅନ୍ଧାର ବାଦଲ ଉଠାଇଥିଲା। ପୁଣି ଦିନ ରାତି ଫୌଜମାନେ ଏପଟେ ସେପଟେ ଦୌଡ଼ାଦୌଡ଼ି ହୋଇ ବ୍ୟସ୍ତ ରହିବା ଆଦେଶ ମିଳିଗଲା। ସିଂହମାନେ କାର୍ଯ୍ୟରତ ହୋଇ ଗଲେ। ଏହିପରି ଦେଶରେ ୩-୪ ବର୍ଷ ପରେ ଶାନ୍ତି ଭଙ୍ଗ ହୋଇ ବଜ୍ରପାତ ହୋଇଗଲା।

## ଅହମ୍ମଦ ଶାହ ଅବଦାଲ

ଅହମ୍ମଦ ଶାହର ପ୍ରାରମ୍ଭିକ ସମୟ ବଡ଼ ରହସ୍ୟମୟ ଥିଲା। ଐତିହାସିକମାନେ ଲେଖିଛନ୍ତି କି, ସେ ଜଣେ ଗରିବ ମାତା ପିତାଙ୍କ ପୁତ୍ର ଥିଲା, ତାହାର ଆୟୁ ସେତେବେଳେ ୭ ବର୍ଷ ବୟସର ଥିଲା। ପିତାଙ୍କ ଦେହାନ୍ତ ହୋଇଗଲା। ମାତା ତାହାର ପାଳନ ପୋଷଣ କରିଲେ। ସେହି ଗ୍ରାମର ବାହାରେ ଗୋଟିଏ ସାବରଶାହ

ନାମକ ଫକୀରର କୁଟୀର ଥିଲା, ସେ ଖେଳୁ ଖେଳୁ ସେହି ଆଶ୍ରମକୁ ଯାଇ ବସୁଥିଲା। ଯଦି କିଛି କାମ ଥିଲେ ଶୀଘ୍ର ଶୀଘ୍ର କରୁଥିଲା। ଫକୀର ତାହାକୁ ଆଦର ସହ 'ଅହମ୍ମଦ ଶାହ' କହି ଡାକୁଥିଲେ।

ଥରେ ସେହି ଫକୀରର ମନରେ ଗୋଟିଏ ଆଶ୍ଚର୍ଯ୍ୟଜନକ ବିଚାର ଆସିଲା, ସେ ଲମ୍ବା ଲମ୍ବା ଘାସ ଆଣି ସିଂହାସନ ଭଳି ତିଆରି କରିଲା ଓ ତାହା ଉପରେ ସେହି ବାଳକ ଅହମଦ ଶାହକୁ ବସାଇଲା ଓ ଲମ୍ବା ଘାସ ଛିଣ୍ଡାଇ ଯୋଡି ଚାମର ଭଳି ତିଆରି କରି ତାହାକୁ ଚାମର କରାଇଲା। ସଂଯୋଗବଶତଃ ସେହି ସମୟରେ ନାଦୀର ଶାହ ଘୋଡ଼ା ଚଢ଼ି ସେହି ରାସ୍ତାରେ ଯାଉଥିଲା। ଫକୀର ଏହି ଅବସ୍ଥାରେ ଦେଖି ପଚାରିଲା, 'ସାଇଜୀ କଣ କରୁଛ'

ଖୁଦା ଅହମ୍ମଦ ଶାହକୁ ରାଜଗାଦୀ ଦେଇଛନ୍ତ। ସେଥିଯୋଗୁଁ ଏହାକୁ ଚାମର କରୁଛି, ଫକୀର କହିଲା। ନାଦୀରଶାହ ଆଶ୍ଚର୍ଯ୍ୟ ହୋଇ କହିଲା, ଏମିତି କଣ ସେବା ମୋତେ ମଧ୍ୟ କୁହ। ତୋର ସେବା ଏତିକି କି ଏହାକୁ ତୋର ସେନା ମଧ୍ୟରେ କରି ଗୋଟିଏ ଉଚ୍ଚ ପଦବୀରେ ଲଗାଇ ଦେ', ତାହାର କଥା ନାଦୀର ଶୁଣିଥିଲା।

ନାଦୀରଶାହ ଯେତେବେଳେ ହିନ୍ଦୁସ୍ତାନ ଉପରେ ଆକ୍ରମଣ କରିଥିଲା, ସେତେବେଳଯାଏଁ ଅହମଦ ଶାହ ଜଣେ ଭଲ ଫୌଜ ଜନରଲ ହୋଇସାରିଥିଲା। ଆଜି ସେ ଚତୁରତା କରି ନାଦୀରର ଫୌଜ ମଧ୍ୟରେ ଅବଦାଲୀ ପଠାଣମାନଙ୍କ ମଧ୍ୟରେ ଉଚ୍ଚ ସ୍ଥାନ ପାଇଥିଲା। ନାଦୀରର ଶଳାକୁ ଏହା ଭଲ ଲାଗି ନ ଥିଲା। ସେ ନାଦୀରଶାହକୁ ମନାକରି କହିଲା ଅବଦାଲୀ ପଠାଣଙ୍କୁ ନାଦୀରର ଫୌଜ ମଧ୍ୟରେ ନିଷ୍କାଷିତ କରାଯାଉ। କରିଦେଲ! ପୁଣି କଣ ଥିଲା- ଅବଦାଲୀ ପଠାଣ ନାଦୀର ବିରୋଧରେ ଶକ୍ତିଶାଳୀ ବିରୋଧ କରି ଉଠିଲା। ସେ ନାଦୀରର ଶିବିର ଉପରେ ଆକ୍ରମଣ କରିଦେଲା। କଳହର ମୂଳ ନାଦୀରର ଶଳାକୁ ମାରିଦେଲା ଓ ନାଦୀରଶାହକୁ ମଧ୍ୟ ଖୁବ୍ ମାଡ଼ ଦେଲା। ତତ୍ ପଶ୍ଚାତ୍ ଅବଦାଲିମାନେ ଅହମଦଶାହକୁ କାବୁଲର ଗାଦୀ ଉପରେ ବସାଇଦେଲେ।

## ଅହମ୍ମଦ ଶାହର ପ୍ରଥମ ଆକ୍ରମଣ

ବିଜୈର ଆଦେଶ ଅନୁଯାୟୀ ଲଖପତ ରାଏ ସିଂହମାନଙ୍କର ଦୁଃଖର କାରଣ ହୋଇ ରହିଥିଲା କି ସେତେବେଳେ ୱାହେଗୁରୁଜୀ କାବୁଲର ରାଜସିଂହାସନ ଉପରେ

ନୂତନ ଶାସକ ଅହମ୍ମଦ ଶାହର ମନରେ ହିନ୍ଦୁସ୍ତାନ ଉପରେ ଆକ୍ରମଣ କରିବାପାଇଁ ବିଚାର ଜାଗ୍ରତ ହୋଇଗଲା। ସେଥିଯୋଗୁଁ ୧୮୦୨ ସମ୍ୱତ ସମୟରେ ଅହମ୍ମଦ ଶାହ ଅବଦଲୀ ପଠାଣମାନଙ୍କର ବହୁ ସଂଖ୍ୟାର ସେନାମାନଙ୍କ ସହ ହିନ୍ଦୁସ୍ତାନକୁ ଆକ୍ରମଣ କରିଦେଲା। ଏହି ଆକ୍ରମଣର ଖବର ଶୁଣି ଲାହୋରର ସୁବା ବିଜୈକୁ ବଡ଼ ଚିନ୍ତା ହେଲା। ସେ ଭାରି ବ୍ୟସ୍ତ ହୋଇପଡ଼ିଲା। ସେ ସିଂହମାନଙ୍କ ପଛରେ ଲାଗିଥିବା ସବୁ ସୈନ୍ୟମାନଙ୍କୁ ଲାହୋର ଫେରିବା ପାଇଁ ଆଦେଶ ଦେଲା। ସବୁ ଫୌଜ ଲାହୋର ଫେରିଆସିଲେ ଓ ଲଖପତ ରାଏ ତଥା ଅନ୍ୟ ପରାମର୍ଶଦାତାମାନେ ବିଚାର ବିମର୍ଶ କରିଲେ କଣ ଉପାୟ ଖୋଜିଲେ।

ବିଚାର ବିମର୍ଶ ସହ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ, କିନ୍ତୁ ଅହମଦ ଶାହର ସେନାବାହିନୀ ଦେଖି ଯୁଦ୍ଧ ପୂର୍ବରୁ କଲିଜା ପାଣି ହୋଇଗଲା। ଅହମ୍ମଦ ଶାହକୁ ସ୍ୱାଗତ ସତ୍କାର ସହ ଲାହୋରର ଦୁର୍ଗକୁ ନିଆଗଲା। ଅହମ୍ମଦ ଶାହ ନିଜେ ଦୁର୍ଗ ଭିତରେ ବୁଲି ଭଲ ଭାବେ ନିରୀକ୍ଷଣ କରିଲା ଓ ଯେଉଁ ବସ୍ତୁ ଇଚ୍ଛା କରିଲା ଅଧିକାର କରିନେଲା, କିନ୍ତୁ ଗୋଟିଏ ଜିନିଷ ଉପରେ ଅଧିକାର କରି ନିଜର ବାଜି ହାରିଗଲା। ସେହି ଜିନିଷଟି କ'ଣ ଥିଲା, ଦୁର୍ଗର ମଧ୍ୟଭାଗରେ କେତେକ ଏମିତି ତୀରର ଗୋଛାଟିଏ ହୋଇ ରଖାଯାଇଥିଲା ତାହା ବାରୁଦ ଭରା ଥିଲା ଓ ତାହା ନିଆଁ ଦ୍ୱାରା ବ୍ୟବହାର କରାଯାଉଥିଲା। ଭଲ ଭାବେ ଜାଣିବା ପୂର୍ବରୁ ଅହମଦ ଶାହ ସବୁ ନିଜର ଅସ୍ତ୍ରଶସ୍ତ୍ର ଖଜଣାରେ ରଖିବାପାଇଁ ପଠାଇ ଦେଇଥିଲା।

ଜଙ୍ଗଲ ରାସ୍ତାରେ ସିଂହମାନେ ସଡ଼କ ପାଖାପାଖି ପହଞ୍ଚି ସାରିଥିଲେ। ସେମାନଙ୍କୁ ଅସ୍ତ୍ରଶସ୍ତ୍ର, ଘୋଡ଼ା ଓ ଆବଶ୍ୟକ ଜିନିଷର ଆବଶ୍ୟକତା ଥିଲା ଓ ସେମାନେ ଏହାର ଅପେକ୍ଷାରେ ଥିଲେ। ଅହମଦ ଶାହ ବିଶ୍ରାମ କରି ଦିଲ୍ଲୀ ଯିବାପାଇଁ ଅଗ୍ରସର ହେଲା। ସେ ପୂର୍ବରୁ ନାଦିର ସହିତ ଦିଲ୍ଲୀ ଆସିଥିଲା। ସେଥିପାଇଁ ଦିଲ୍ଲୀର ରାଜସିଂହାସନ ଅଧିକାର କରିବା ଲାଳସା ଥିଲା। ସେଥିଯୋଗୁଁ ସେ ସୈନ୍ୟମାନଙ୍କ ସହ ସେପଟକୁ ଚାଲିଗଲା। ଦିଲ୍ଲୀ ବାଦଶାହକୁ ଖବର ଦେଲା, ସେମାନେ ମଧ୍ୟ ସୈନ୍ୟମାନଙ୍କ ସହ ଆସିଲେ। ସିଂହମାନେ ମଧ୍ୟ କମ୍ ନ ଥିଲେ। ସେମାନେ ସମୟ ନଷ୍ଟ କରିଲେ ନାହିଁ। ସେମାନେ ପ୍ରାଣପଣେ ଚେଷ୍ଟା କରି ଚାଲିଲେ। ଯୁଦ୍ଧ ଆରମ୍ଭ ହୋଇଗଲେ ଅହମଦ ଶାହ ଲାହୋର ଠାରୁ ଆଣିଥିବା ବାରୁଦଯୁକ୍ତ ବାଣ ପ୍ରୟୋଗ କରିବାପାଇଁ ଆଦେଶ ଦେଲା, ପରନ୍ତୁ ଅଜ୍ଞାନତା ଯୋଗୁଁ ସେହି ବାଣ ଗୁଡ଼ିକ ଯୋଗୁଁ

ହାରିଯାଇଥିଲା । ମୂର୍ଖତା ବଶତଃ ସେହି ତୀରଗୁଡ଼ିକର ମୁହଁ ନିଜ ପଟକୁ ରଖି ଓ ନିଜର ସେନାମାନଙ୍କ ପଟକୁ ରଖିଲା । ସେଥିଯୋଗୁଁ ଯେତେବେଳେ ତୀର ଚଳାଇବା ପାଇଁ ନିଆଁ ଲଗାଗଲା, ସେଗୁଡିକ ନିଜ ପଟକୁ ଆସିଗଲା । ଆଉ କିଛି କଥା ବାକି ନ ଥିଲା, ଆଖି ପିଛୁଳାକେ ହଜାର ହଜାର ଅବଦାଲୀ ମରିଗଲେ । ଅହମଦ ଶାହ ବହୁ କଷ୍ଟରେ ଫେରିଗଲା ।

## ସିଂହମାନଙ୍କ ତରଫରୁ ଦୋଷୀମାନଙ୍କୁ ଦଣ୍ଡ

ସିଂହମାନଙ୍କୁ ଯେତେବେଳେ ବଢ଼ିଆ ସୁଯୋଗ ମିଳିଲା । ହାକିମମାନେ ଅହମଦ ଶାହର ଡରରେ ରହିଥିଲେ । ସିଂହମାନେ ରାସ୍ତାରେ ଯାଉଥିବା ଆବଶ୍ୟକୀୟ ଜିନିଷ ସଂଗ୍ରହ କରି ରଖିଲେ । ଯେତେବେଳେ ଦେଶର ହାକିମମାନେ ଅବଦାଲୀମାନଙ୍କୁ ଡରି ପାଦ ତଳେ ରହି ସିଂହମାନଙ୍କ ବିରୋଧରେ କାନ ଫୋଡୁଥିଲେ, ସିଂହମାନେ ସେମାନଙ୍କୁ ସେହି କାପୁରୁଷମାନଙ୍କୁ ଦଣ୍ଡ ଦେବାକୁ ଚାହୁଁଥିଲେ । ଯେଉଁ ମିଥ୍ୟା ଅଭିଯୋଗ ଦେଇ ସିଂହମାନଙ୍କୁ ଧରୁଥିଲେ ଓ ମୃତ୍ୟୁଦଣ୍ଡ ଦେଉଥିଲେ । ସେଥିରେ ସିଂହମାନେ ପ୍ରଥମ ଆକ୍ରମଣ ନୌଶହର ଉପରେ କରିଥିଲେ ଓ ସାହିବଚନ୍ଦ ମରିଥିଲା । ଯାହାକି ଭାଇ ତାରା ସିଂହଜୀ ଦଲବା ଉପରେ ୫୦୦୦ ଫୌଜ ଆକ୍ରମଣ କରିଥିଲେ । ସେଠାରୁ ବାହାରି ଦୁଷ୍ଟ ହରି ଭଗତ ନିରଞ୍ଜନ ଯମପୁରୀ ପଠାଇ ତାହାର ଅଭିଯୋଗ ଯୋଗୁଁ ମୁସଲମାନ ସେନାମାନେ ମସ୍ସା ରଂଘଡକୁ ମାରିଥିବା ଭାଇ ମହତାବ ସିଂହଜୀଙ୍କ ଗ୍ରାମଠାରେ ମୀରାକୋଟକୁ ଘେରାଉ କରିଥିଲେ ଓ ଚୌଧୁରୀ ନଡ଼ା ସିଂହଜୀ ତାଙ୍କର ପୁଅ-ପୁତୁରା ଇତ୍ୟାଦି ଭାଇ ମହତାବ ସିଂହଙ୍କ ପୁତ୍ର ରାଏ ସିଂହଙ୍କୁ ଉଦ୍ଧାର କରିଥିବା ବ୍ୟକ୍ତି ସେଠାରେ ଯୁଦ୍ଧ ସମୟରେ ଶହୀଦ ହୋଇଥିଲେ । ସେହି କାନଫୋଡ଼ା ନିରଞ୍ଜନ ଆତଙ୍କ ସୃଷ୍ଟି କରିଥିଲା । ସେ ସିଂହମାନଙ୍କୁ ଧରାଇ ଧରାଇ ସୁବା ଖାଁ ଠାରୁ ବଡ଼ ବଡ଼ ପୁରସ୍କାର ପ୍ରାପ୍ତ କରୁଥିଲା । ତାହାର ବିଚାର ଯୋଗୁଁ ଭାଇ ତାରୁ ସିଂହଜୀ ଧରା ପଡ଼ିଥିଲେ । ଏହି ଦୁଷ୍ଟ ଜଂଡିୟାଲ ଠାରେ ଥିଲା କି ସିଂହମାନେ ଶପଥ କରିଥିଲେ ଓ ତାହାର ସପରିବାରକୁ ତଲବାରର ଧାରରେ ଯମପୁରୀକୁ ପଠାଇଦେଲେ । ଏହିପରି ଭାବେ ବହୁତ ଦୁଷ୍ଟ ଓ ପାପୀମାନଙ୍କୁ ସିଂହମାନେ ଉଚିତ ଶିକ୍ଷା ଦେଇ ସମାପ୍ତ କରିଦେଲେ । ଏହା ପ୍ରମାଣିତ ହୋଇଗଲା କି ସିଂହମାନେ ନିଜର ଦୋଷୀମାନଙ୍କୁ ଛାଡ଼ିବେ ନାହିଁ । ବହୁତ ପୂର୍ବରୁ ସେମାନେ ଦୌଡ଼ି ଦୌଡ଼ି

ଲାହୋର ଯାଉଥିଲେ, କିନ୍ତୁ ସେମାନଙ୍କୁ ବର୍ତ୍ତମାନ କିଏ ସାହାଯ୍ୟ କରିବ ? ବର୍ତ୍ତମାନ ସେମାନଙ୍କ ଜୀବନ ସଙ୍କଟମୟ ହୋଇଥିଲା । ପରନ୍ତୁ ଯେତେବେଳେ ଅହମଦ ଶାହ ଲାହୋର ଫେରିଆସିଲା, ସେ ସିଂହମାନଙ୍କ ପଛରେ ପୁଣି ସେନା ନିଯୁକ୍ତି କରିଦେଲା ।

## ଜସପତର ମୃତ୍ୟୁ

ଏହିପରି ଭାବେ ଲଢ଼ାଇ ଝଗଡ଼ା ଯୁଦ୍ଧ ସହ ସମୟ କଟୁଥିଲା ସିଂହମାନଙ୍କର । ଗୋଟିଏ ଦଳ ସିୟାଲକୋଟର ନିକଟ ଜଙ୍ଗଲଠାରେ ଭ୍ରମଣ କରୁଥିଲେ । ୧୮୦୫ ସମ୍ୱତ କଟିଯାଇଥିଲା ଓ ବୈଶାଖୀ ନିକଟ ହେବା କାରଣ ଯୋଗୁଁ ସେହି ଦଳର ସିଂହମାନେ ବିଚାର କରିଲେ କି ଏହିଥର ବୈଶାଖୀ ଉତ୍ସବ ଏମନାବାଦ ଗୁରୁଦ୍ୱାର ରୋଡି ସାହିବଠାରେ ପାଳନ କରିବା । ସେହି ଗୁରୁଦ୍ୱାର ନଗର ଠାରୁ ଦୂରରେ ଥିଲା ଓ ଏକାନ୍ତ ସ୍ଥାନ ଯୋଗୁଁ ସିଂହମାନଙ୍କର ମନପସନ୍ଦ ସ୍ଥାନ ଥିଲା । ସେଠାର ଦିବାନ ଲଖପତ ରାଏ ଥିଲା, ସେ ବିଜୈ ଖାଁର ମନ୍ତ୍ରୀ ଥିଲା ଓ ତାହାର ଭାଇ ଜସପତ ରାଏ ଏମନାବାଦଠାରେ ରହୁଥିଲା । ସେଥିଯୋଗୁଁ ସିଂହମାନଙ୍କର ରୋଡ଼ି ସାହିବ ଠାରେ ପହଞ୍ଚିବା ଖବର ସେହି ଦୁଷ୍ଟକୁ କିଏ ଖବର କରିଦେଲା । ସେ କ'ଣ କରିଲା ? ସିଂହମାନଙ୍କୁ ନିଜର ପରାକ୍ରମ ଦେଖାଇବା ପାଇଁ ହାତୀ ଉପରେ ବସି ଶହେ ଅଶ୍ୱାରୋହୀ ସହ ଶୀଘ୍ର ସିଂହମାନଙ୍କ ପାଖରେ ପହଞ୍ଚିଗଲା । ସିଂହମାନେ ମଧ୍ୟ ଦୂରରୁ ଦେଖିନେଲେ ଓ ଦୀବାନ ଲଖପତ ରାଏର ଅହଙ୍କାରୀ ଭାଇ ସେମାନଙ୍କ ଆଡକୁ ଆସୁଥିଲା, ସେ ମଧ୍ୟ ସତର୍କ ହୋଇଗଲା । ନିକଟରେ ପହଞ୍ଚି ସେହି ଅହଙ୍କାରୀ ସିଂହମାନଙ୍କୁ କହିଲା, ଏ ଶିଖମାନେ ! ତୁମେମାନେ ଜାଣି ନାହିଁ ଏହା ଶାସକୀୟ ଦିବାନଙ୍କ ସହର ଓ ତୁମେମାନେ ଶାସକୀୟଙ୍କ ଦୋଷୀ ଅଟ, ସେଥିଯୋଗୁଁ ତୁମେମାନେ ଏଠାକୁ କାହିଁକି ଆସିଛ ? ମୁଁ ତୁମମାନଙ୍କୁ ଏହା କହିବା ପାଇଁ ଆସିଛି, ତୁମେମାନେ ଏଠାରୁ ଚାଲିଯାଅ ।

ସିଂହମାନେ କହିଲେ, ଦିବାନ ସାହେବ ! ପଅରଦିନ ବୈଶାଖୀ, ଆମ୍ଭେମାନେ ସେହିଦିନ ପ୍ରାତଃ କାଳ ସ୍ନାନ ସାରି ଏଠାରୁ ଚାଲିଯିବୁ, ବହୁତ ଦିନ ଆମ୍ଭେ ଏଠାରେ ରହିବୁ ନାହିଁ ।

କିନ୍ତୁ ଜସପତର ମନରେ ଦିବାନର ଗର୍ବ, ଅହଙ୍କାର ଥିଲା ଓ ସିଂହମାନଙ୍କୁ ଦୋଷୀ ଭାବୁଥିଲା କହିଲା 'ମୁଁ ତୁମମାନଙ୍କୁ ବର୍ତ୍ତମାନ ବାହାର କରିବାକୁ ଚାହୁଁଛି । ସିଧା ଚାଲିଯାଅ ନଚେତ୍ ଠିକ ହେବ ନାହିଁ, ନଚେତ୍ ଯୋତା ମାରି ବାହାର କରିବି ।'

ହାତୀ ଉପର ସବାର ହୋଇ ଜସପତକୁ ସମସ୍ତେ ପିମ୍ପୁଡ଼ି ଭଳି ନଜର ଆସୁଥିଲେ। ଅହଙ୍କାରରେ ଜଡ଼ିଭୂତ ଜସବତ ବହୁତ କିଛି ଅପଶବ୍ଦ ପ୍ରୟୋଗ କରିଲା। ସିଂହମାନଙ୍କର କେଶରେ ହୁକ୍କାର ପାଣି ଢାଳି ତୀର ମଧ୍ୟ ଛାଡ଼ିଲା, ସହ୍ୟ କରିବା ମଧ୍ୟ ସୀମା ଥାଏ। ଶେଷରେ ସିଂହମାନେ ଦୁଗାଡ଼ ର ମୁହଁ ହାତୀ ଉପରେ ବସିଥିବା ଜସପତ ତରଫକୁ କରି ଦବାଇ ଦେଲେ। ତାହା ଯାଇ ଠିକ୍ ଲକ୍ଷ୍ୟ ସହ ଲାଗିଲା ଓ ଅହଂକାରୀ ଧଡାମ ହୋଇ ହାତୀ ଉପରୁ ତଳେ ପଡ଼ିଗଲା। ଅନ୍ୟ ସିଂହମାନେ ସେତେବେଳେ ଜୟ ଜୟକାର ଉଚ୍ଚାରଣ କରି ଜସପତ ସହିତ ଆକ୍ରମଣ କରିଲେ। ସିଂହମାନେ ଆଖି ପିଛୁଳାକେ ୧୦-୧୫ ମସ୍ତକ ଉଡ଼ାଇ ଦେଲେ ଓ ଶୀଘ୍ର ଶୀଘ୍ର ସେ ଉଠି ଦୌଡ଼ିବାକୁ ଲାଗିଲା। ସିଂହମାନେ ତୁରନ୍ତ ଶୀଘ୍ର ଶୀଘ୍ର ଘୋଡ଼ା ଦୌଡ଼ାଇବାକୁ ଲାଗିଲା ଓ ଏମନାବାଦଠାରେ ପହଞ୍ଚିଲେ। ଦିବାନର ମହଲ ଭଲ ଭାବେ ଲୁଟିନେଲେ ଓ ଯାହା କିଛି ନଜରରେ ଆସିଲା ତାହା ହରଣ କରି ସେହି ସ୍ଥାନ ଛାଡ଼ିଦେଲେ।

## ଲଖପତର ସିଂହମାନଙ୍କ ସହ ଶତ୍ରୁତା

ସିଂହମାନେ ଲଖପତକୁ ମାରି ଜଙ୍ଗଲ ଭିତରକୁ ଚାଲିଗଲେ, କିନ୍ତୁ ଯେତେବେଳେ ଲାହୋରଠାରେ ଲଖପତ ଦୀବାନକୁ ଭାଇ ମରିବା ଖବର ମିଳିଲା ସେ କ୍ରୋଧାଗ୍ନିରେ ଜଳିଗଲା। ଏମନାବାଦରେ ପହଞ୍ଚି ସେ ପ୍ରତିଶୋଧରେ ସିଂହମାନଙ୍କୁ ସମାପ୍ତ କରିବା ଶପଥ ନେଲା। ଲାହୋର ପହଞ୍ଚି ସେ ନିଜର ପଗଡି ବାହାର କରି ବିଜୈ ଖାଁ ନିକଟରେ ଫୋପାଡ଼ି କହିଲା - 'ଖାଁ ସାହେବ ଆଜି ମୁଁ ଆପଣଙ୍କ ସାମ୍ରାଜ୍ୟରେ ଶପଥ କରୁଛି କି ମୁଁ ମୋର ମୁଣ୍ଡର ପଗଡ଼ି ସେତେବେଳେ ରଖିବି ଯେତେବେଳେ ମୁଁ ସମସ୍ତ ସିଂହଙ୍କୁ ସମାପ୍ତ କରିବି।'

ସୁବା ତାହା ଖୋଜୁଥିଲା, ସେ କହିଲା - 'ହେ ଦିବାନ ସାହେବ, ଏହି କାମ ପାଇଁ ମୁଁ ସମସ୍ତ ସାହାଯ୍ୟ କରିବି, ଏହି ସିଂହମାନେ ଆମର ଶତ୍ରୁ ଅଟନ୍ତି। ଯଦି ଆପଣ ଏମାନଙ୍କୁ ସମାପ୍ତ କରିବା ପାଇଁ ସଂକଳ୍ପ କରି ଯାଉଛନ୍ତି, ତା'ହେଲେ ଏହାଠାରୁ ଭଲ କାମ ଆଉ କ'ଣ ?

ଯେତେ ଅଧିକାରୁ ଅଧିକା ମଦ୍ୟ, ଔଷଧ, ଧନ ଓ ସେନା ଆବଶ୍ୟକ ତାହା ତୁମକୁ ମୁଁ ଦେଉଛି, ଏହି ଦୁଷ୍ଟମାନଙ୍କୁ ମାରିବା ପାଇଁ ପୂରା ଶକ୍ତି ପ୍ରୟୋଗ କର, ମୁଁ

ଆପଣଙ୍କ ପ୍ରତି ବହୁତ ଖୁସି ଅଛି। ଏହା କହି ସେ ଲଖପତ୍ ରାଏକୁ ଆହୁରି ଜମିଦାରୀ ବତାଇ ଦେଲା।

ସୁବାଠାରୁ ଏହା ଶୁଣି ତାହାର ମନୋବଳ ବଢ଼ିଗଲା, ପରନ୍ତୁ ଅହଂକାର ତାହାର ଏତେ ବେଶି ହୋଇଗଲା କି ତାହାର ସୀମା ନଥିଲା, ଅହଂକାର ସହ ଅନ୍ଧ ହୋଇ, ଏହି ଶିଖ ପନ୍ଥର ଜଣେ କ୍ଷତ୍ରିୟ (ଗୁରୁ ଗୋବିନ୍ଦ ସିଂହ)ଙ୍କ ପରିଚାଳନା ଆରମ୍ଭ ଦ୍ୱାରା ହୋଇଛି ଓ ମୁଁ ମଧ୍ୟ ଜଣେ କ୍ଷତ୍ରିୟ, ମୋ ହାତରେ ଏହି ପନ୍ଥର ସମାପ୍ତ ହୋଇଯିବ, ଏହା ମୋ ନିଜର ବିଶ୍ୱାସ ଅଛି।'

ସୁବା ତଥା ନିକଟରେ ବସିଥିବା ସମସ୍ତ ସଭାସଦ୍ - କାଜିମାନେ ତାହାର ବହୁତ ପ୍ରଶଂସା କରିଲେ ଓ କଥା କହି କହି ତାକୁ ପ୍ରୋତ୍ସାହିତ କରାଇଲେ, ତାହାର ମସ୍ତିଷ୍କ ଓ ହୃଦୟକୁ ଉତ୍ତେଜିତ କରାଇଲେ।

ଏହି ଦୀବାନ ଲଖପତ (ଯାହାର ନାମ ଇତିହାସରେ ଲଖୁ ଭସୁ ନାମରେ ଲେଖାଯାଇଛି।) ସେ ସର୍ବପ୍ରଥମ କ'ଣ କରିଲା କି ଲାହୋର ଠାରେ ଡିଣ୍ଡିମ ବଜାଇଲା କି କେହି ଗୁରୁମାନଙ୍କ ଗୁରୁବାଣୀ ପାଠ କରିବ ନାହିଁ ଓ ଯିଏ ପାଠ କରିବ ତାହାର ବଂଶ ନିପାତ କରାଯିବ।

ଡିଣ୍ଡିମ ବାଜିବା ପରେ ଅଳ୍ପ ସମୟ ମଧ୍ୟରେ ଯେଉଁମାନେ ଗୁରୁ ନାନକ ଦେବଜୀଙ୍କ ନାମ ଜପୁଥିବା ଓ ନେଉଥିବା ସାଧାରଣ ବ୍ୟକ୍ତି ମଧ୍ୟ ଧରା ପଡିଗଲେ। ଯେଉଁମାନେ ମୃତ୍ୟୁକୁ ଡରୁଥିଲେ ସେମାନେ ମୁସଲମାନ ହୋଇଗଲେ ଓ ଯେଉଁମାନେ ଉଲ୍ଲଘଂନ କରିଲେ ସେମାନେ ମୃତ୍ୟୁଦଣ୍ଡ ପାଇଲେ। ଲଖପତର ଅତ୍ୟାଚାର ଦେଶରେ ଚାଞ୍ଚଲ୍ୟ ସୃଷ୍ଟି କରିଲା। ସିଂହମାନଙ୍କ ସକାଶେ ଜଙ୍ଗଲରୁ ବାହାରିବା କଷ୍ଟକର ହୋଇଗଲା। ଧୀରେ ଧୀରେ ସବୁ ସିଂହମାନେ ଜଙ୍ଗଲଠାରେ ଏକତ୍ରିତ ହୋଇଗଲେ।

ସେତେବେଳେ ବିଜୈ ଖାଁ ସାଧାରଣ ମୁସଲମାନମାନଙ୍କ ମଧ୍ୟରେ ସିଂହମାନଙ୍କ ବିରୋଧରେ ବହୁତ ଗଭୀର ଭାବେ ଅପପ୍ରଚାର କରାଇଲା ଓ ସାଧାରଣ ମୁସଲମାନମାନେ ସେମାନଙ୍କୁ ଧରିବା ପାଇଁ ଲାହୋରଠାରେ ଶିବିର ଖୋଲାଗଲା। ସେଥିଯୋଗୁଁ ମାସେ-ଦେଢ଼ମାସ ମଧ୍ୟରେ ଲାହୋର୍ ଠାରେ ୨-୩ ଲକ୍ଷ ଦୁଷ୍ଟଲୋକ (ତୋଷାମଦିଆ) ଏକତ୍ରିତ ହୋଇଗଲେ। ସୁବାକୁ ଗୁପ୍ତଚର ଦ୍ୱାରା ଖବର ମିଳିଲା କି ସିଂହମାନେ ବହୁ ସଂଖ୍ୟାରେ କାହନୁବାନ ଛଂଭ ଠାରେ ଏକତ୍ରିତ ହୋଇଛନ୍ତି। ଐତିହାସିକଙ୍କ ହିସାବରେ ସେତେବେଳେ ସିଂହମାନଙ୍କ ସଂଖ୍ୟା ୨୦ ହଜାରରୁ

ଅଧିକ ନ ଥିଲେ । ଲଖପତ ସିଂହମାନଙ୍କୁ ସମାପ୍ତି ସକାଶେ ବଡ଼ ଯୋଜନା କରିଲା । ଅଗଣିତ ତୋପ, ଜଂବୁରଚ ଇତ୍ୟାଦି ବାରୁଦ ଓ ଅସ୍ତ୍ରଶସ୍ତ୍ର ଓ ବହୁତ ହତ୍ୟା ଅସ୍ତ୍ରଶସ୍ତ୍ର ଯୋଗାଡ଼ କରିଲା । ପ୍ରାୟ ୩ ଲକ୍ଷ ସୈନ୍ୟଦଳ ଏକତ୍ରିତ କରି କାହନୁବାନ ଛଂଭ ଆଡ଼କୁ ଅଗ୍ରସର ହେଲା । ବିଜୈ ଖାଁ ଏହି ଭାରି ସେନାବାହିନୀର ଅଧିନତ୍ୱ ଲଖପତ ରାଏର ହାତରେ ସମର୍ପି ଦେଲା । ସେମାନେ ବିଶ୍ରାମ କରି କରି କାହନୁବାନ ନିକଟରେ ପହଞ୍ଚିଗଲେ । ସବୁ ସେନାମାନେ ଜଙ୍ଗଲର ପାଖାପାଖି ଘେରିଗଲେ ।

## ଛୋଟ ଯୁଦ୍ଧ (ଛୋଟ ଘଲୁଘାରା)

ଏହି କାହାନୁବାନ ଛଂଭ ଜଙ୍ଗଲକୁ ସିଂହମାନେ ନିଜର ଦୁର୍ଗ ମନେକରୁଥିଲେ, ସେହି ଛଂଭ (ପାଣିର ଧାରା) ଚାରିପଟେ ଦୁଇ ଦୁଇ ତିନି ତିନି ମାଇଲ ଯାଏଁ ବିସ୍ତାରିତ ଥିଲା । ସେହି ଜଙ୍ଗଲ ବହୁତ ଘଞ୍ଚ ଓ କଣ୍ଟାବଣ ଥିଲା । ତାହା ଭିତରେ ଅଧା କୋଶ ଯିବା ଭାରି କଷ୍ଟକର ଥିଲା । କିନ୍ତୁ ଧନ୍ୟ ସେହି ସିଂହମାନେ ଓ ଧନ୍ୟ ସେହି ସିଂହ, ଘୋଡ଼ାମାନେ ଯେଉଁମାନେ ହରିଣ ଭଳି ଡେଇଁ ଡେଇଁ ଦୌଡୁଥିଲେ । ସିଂହମାନଙ୍କୁ ଖବର ମିଳିଲା ଜଙ୍ଗଲ ମଧ୍ୟକୁ ଶତ୍ରୁମାନେ ପଶି ଆସିଲେ ସିଂହମାନେ ତୁରନ୍ତ ପରମାତ୍ମାଙ୍କୁ ପ୍ରାର୍ଥନା ସକାଶେ ଗୁରୁ ଦରବାର ସଜାଇ ଗୁରୁବାଣୀର କୀର୍ତ୍ତନ ଆରମ୍ଭ କରିଦେଲେ । ସାମ୍ନା କରିବା ଓ ବଞ୍ଚାଇବା ବିଚାର ସମସ୍ତଙ୍କ ମନରେ ଆସିଲା । ସବୁଠାରୁ ବଡ଼ ଦଳପତି ନବାବ କପୁର ସିଂହଜୀ କହିଲେ ଆମ୍ଭମାନଙ୍କୁ ବଞ୍ଚାଇବା ସତର୍କତା ସହ ଯୁଦ୍ଧ କରିବା ଉଚିତ । ଶତ୍ରୁ ଅଗଣିତ ଅଛନ୍ତି ତାହା ଭାବି ହେଉ ନାହିଁ ।

ଶେଷରେ ନିଜକୁ ନିଜେ ବଞ୍ଚାଇ ଯୁଦ୍ଧ କରିବା ବିଚାର ହେଲା । ସେଠାରୁ ଦୂର ଘନ ଜଙ୍ଗଲକୁ ଚାଲିଯିବା ଯୋଜନା ହେଲା । ସିଂହମାନେ ପ୍ରାତଃକାଳ ସମୟ ଉଠିଗଲେ ଓ ଶତ୍ରୁମାନେ ନିଶ୍ଚିନ୍ତରେ ଶୋଇଥିଲେ । ଯେଉଁପଟେ ଅଳ୍ପ ସଂଖ୍ୟାରେ ସୈନ୍ୟମାନେ ଥିଲେ, ସିଂହମାନେ ସେହି ପଟରୁ ବାହାରକୁ ବାହାରିବାବେଳେ, ସେମାନଙ୍କୁ ଲୁଟି ମାରିବା ନୀତି ପ୍ରୟୋଗ କରି ତଲବାରକୁ ରକ୍ତରେ ସ୍ନାନ କରାଇ ଓ ସାମ୍ନା କରିବାମାନଙ୍କୁ ଠିକ୍ ଠାକ୍ କରି ସକାଳ ହେବା ପୂର୍ବରୁ ଅନ୍ୟ ଜଙ୍ଗଲରେ ପଶିଗଲେ । ସେମାନଙ୍କ ସହିତ ହଜାର ହଜାର ଶତ୍ରୁଙ୍କୁ ବିନାଶ କରି ଆବଶ୍ୟକ ସାମାନ ସହିତ ଜଙ୍ଗଲକୁ ଚାଲିଗଲେ । ସକାଳ ହେବା ପରେ ଯେତେବେଳେ ଲଖପତ ନିଜର ସୈନ୍ୟମାନଙ୍କ ଦୁର୍ଦ୍ଦଶା ଦେଖିଲା ସେ ଅନୁତପ୍ତ ହୋଇଗଲା । ସେ ସିଂହମାନଙ୍କ

ଠିକଣାରୁ ଉଦ୍ଧାର ପାଇବା ପାଇଁ ଆଗରେ ପଛରେ ତୋପ ଭଣ୍ଡାର ଓ ମଝିରେ ସୈନ୍ୟମାନଙ୍କୁ ରଖିଦେଲା । ବର୍ତ୍ତମାନ ସିଂହମାନେ ଯେଉଁ ଜଙ୍ଗଲ ମଧ୍ୟରେ ଥିଲେ ସେମାନଙ୍କୁ ଚାରିପଟୁ ଘେରାଉ କରିଦେଲା । ଦୂର ନିକଟ ଅଞ୍ଚଳରୁ ସବୁ ଲୋକମାନଙ୍କୁ ଏକତ୍ରିତ ହୋଇ ରାଜା ମହାରାଜାଙ୍କ ସୈନ୍ୟମାନଙ୍କୁ ଅନ୍ନ, ଜଳ, ଅତ୍ୟାବଶକୀୟ ସାମଗ୍ରୀର ସହାୟତା ପାଇଁ ଆଦେଶ ଦିଆଗଲା । ଯେତେବେଳେ ଲଖପତକୁ ଜଙ୍ଗଲ ମଧ୍ୟରେ ସିଂହମାନେ ମିଳିଲେ ନାହିଁ ସେ ଜଙ୍ଗଲର ଚାରିପଟେ ବହୁ ମାତ୍ରାରେ ସେନାମାନଙ୍କୁ ପ୍ରସାରିତ କରି ହଜାର ହଜାର ଲୋକ ନିଯୁକ୍ତି କରି ଜଙ୍ଗଲ କାଟି ଚାଲିଲା । ଜଙ୍ଗଲ କାଟି ସଫା କରିବା ପରେ ମଧ୍ୟ ସିଂହମାନେ ସାମନାକୁ ଆସିଲେ ନାହିଁ । ତାପରେ ସେ ଜଙ୍ଗଲରେ ନିଆଁ ଲଗାଇଦେଲା । ଏହି କାର୍ଯ୍ୟକ୍ରମ ଦ୍ୱାରା ସିଂହମାନଙ୍କୁ ଜଙ୍ଗଲ ଛାଡ଼ିବା ପାଇଁ ବାଧ କରାଇଲା । ଆଗରେ ପାହାଡ଼ ଥିଲା । ଲଖପତ ସେହି ପାହାଡ଼ୀ ରାଜାମାନଙ୍କୁ ସନ୍ଦେଶ ପଠାଇଲା କି ସିଂହମାନଙ୍କ ରାସ୍ତା ଅବରୋଧ କରାଯାଉ । ସେଥିଯୋଗୁଁ ଯେତେବେଳେ ଦେଖିଲେ ଜଙ୍ଗଲ ଛାଡ଼ି ପାହାଡ଼ ଆଡ଼କୁ ଚାଲିଲେ, ସେତେବେଳେ ପାହାଡ଼ୀ ସୈନ୍ୟଙ୍କୁ ଦେଖି ବ୍ୟସ୍ତ ହୋଇଗଲେ । ସିଂହମାନେ ସୈନ୍ୟମାନଙ୍କ ଦ୍ୱାରା ଚାରିପଟୁ ଘେରିଗଲେ । ଆଗରେ ପାହାଡ଼ୀ ଓ ପଛରେ ଲଖପତ୍‌ର ସୈନ୍ୟ ଗୋଟିଏ ପଟରେ ନଦୀ ଓ ଅନ୍ୟ ପଟରେ ଖାଲୁଆ ଜାଗା ।

କେତେ ଜଣ ସିଂହ ନଦୀ ପାର ହୋଇ ଚାଲିଗଲେ, କିନ୍ତୁ ଅଧା ପାର ହୋଇପାରିଲେ ନାହିଁ । ସେପଟରୁ ଶତ୍ରୁମାନଙ୍କ ତରଫରୁ ତୀର ଓ ବନ୍ଧୁକର ଆକ୍ରମଣ ସିଂହମାନଙ୍କୁ ଅସ୍ତବ୍ୟସ୍ତ କରୁଥିଲା । ଏହା ଦେଖି ମୁଖ୍ୟ ସିଂହମାନେ ବିଚାର କରିଲେ କଣ କରିବା ? ତୁରନ୍ତ ଏହି ନିଷ୍ପତ୍ତି ନିଆଗଲା କି ପୁରୁଷମାନଙ୍କୁ ପୁରୁଷଙ୍କ ଭଳି ମରିବା ଉଚିତ । ଜୀବନ ବଞ୍ଚାଇ ଲଢ଼ିବା ସମୟ ଚାଲିଗଲା । ନିଷ୍ପତ୍ତି ନିଆଗଲା କି ଶତ୍ରୁ ସେନାମାନଙ୍କ ମଝିରେ ପଶି ହଇରାଣ କରିଦେବା । ଠିକ୍ ସେତିକିବେଳେ ଯୋଜନା ଅନୁଯାୟୀ ହଠାତ୍ ତଲବାର ଚଳାଇ କେତେ ମାଇଲ ଯାଏଁ ବିସ୍ତାରିତ ହୋଇଥିବା ଶତ୍ରୁମାନଙ୍କ ମଧ୍ୟରେ ସିଂହମାନେ ପଶିଗଲେ । ମଧ୍ୟ ସ୍ଥଳରେ ପଶି ସବୁ ସିଂହମାନେ ନିରୀକ୍ଷଣ କରିଲେ । ପ୍ରାୟ ୫ ହଜାର ସିଂହସେନାଙ୍କ ମଧ୍ୟରେ ପଶି ଆଗକୁ ବଢି ରାସ୍ତା ସଫା କରି ଚାଲିଲେ । ବାକି ୧୫ ହଜାର ଦୁଇପଟକୁ ପିଠି ଯୋଡ଼ିନେଲେ, ଶତ୍ରୁମାନଙ୍କ ଘେରାଉ ମଧ୍ୟରେ ରହି ମଧ୍ୟ ନିଜର ଲକ୍ଷ୍ୟକୁ ଦୃଢ ରଖି ଲଢ଼ି ଚାଲିଲେ ।

୫ ହଜାର ସିଂହ ଶତ୍ରୁମାନଙ୍କ ସେନା ମଧ୍ୟ ପଶି ରାସ୍ତା ସଫା କରି କରି ଆଗକୁ ବଢୁଥିଲେ ଓ ଅନ୍ୟ ସିଂହମାନେ ନିର୍ଦ୍ଧାରିତ ଯୋଜନା ଅନୁଯାୟୀ ଲଢୁଥିଲେ ଓ ଆଗକୁ ବଢ଼ି ଚାଲିଥିଲେ। ଏତିକିବେଳେ ନବାବ କପୂର ସିଂହ ଓ ଅନ୍ୟ ଦଳ ସିଂହମାନଙ୍କୁ ଚମକୌର ସାହେବ ଜାଦା (ଗୋବିନ୍ଦ ସିଂହ ମହାରାଜଙ୍କ ଚାରିପୁତ୍ରଙ୍କ ସହ ଯୁଦ୍ଧ ଓ ଶହୀଦ ବିଷୟ)ଙ୍କ କଥା ମନେପକାଇ ଲଢ଼େଇ କରିବାପାଇଁ ପ୍ରୋତ୍ସାହିତ କରାଉଥିଲେ। ଏହିପରି ଭାବେ ଭୟାନକ ଯୁଦ୍ଧ ଆରମ୍ଭ ହୋଇଗଲା। ପୂରା ଦିନ ଯୁଦ୍ଧ ଚାଲିଲା। ହଜାର ହଜାର ଶତ୍ରୁ ଓ ହଜାର ହଜାର ସିଂହ ଶହୀଦ ହୋଇଗଲେ। ଏହି ଭୟାନକ ଯୁଦ୍ଧ ଦ୍ୱାରା ଭାଇ ସୁଖ୍ଖା ସିଂହ ମାଡ଼ି କମ୍ବୋକି ବାସିନ୍ଦାଙ୍କ ଗୋଡ଼ ତୋପର ଗୁଳି ଲାଗିବା ଦ୍ୱାରା ଭାଙ୍ଗିଗଲା। ନିଜର ଗୋଡ଼କୁ କାଠରେ ବାନ୍ଧିଦେଲେ ଓ ଘୋଡ଼ାର ତଳକୁ ନ ଓହ୍ଲାଇ ବୋଧହୁଏ ଚଢ଼ିବାବେଳେ ହୋଇଥିବା ଗୁଳି ସେତିକି ବେଳେ ଲାଗିଲା, ଯେତେବେଳେ ସେ ଯୁଦ୍ଧରେ ଶତ୍ରୁମାନଙ୍କୁ ଯୋର ଯୋରରେ କହୁଥିଲେ- 'ଏ ଲୁଖ୍ଖ ତାଜିଆ ! (ମୁସଲମାନ ମାନଙ୍କ ତଳିପାଦ ଚଟା )'। ନିଜେ ସାମ୍ନାକୁ ଆସେ, ଏହି ନିରୀହ ସେନାମାନଙ୍କୁ ଅନ୍ୟଥାରେ କାହିଁକି ମରାଇ ଚାଲିଛ। ଓ ସିଂହମାନେ ମଧ୍ୟ ବଡ଼ ବାହାଦୁରି ସହ ଲଢୁଥିଲେ। ଲଖପତର ପୁତ୍ର ଓ ବିଜୈ ଖାଁ'ର ପୁତ୍ର ମଧ୍ୟ ସେହିଦିନ ଲଢ଼େଇ କରି ମରିଗଲେ।

ଅନ୍ଧାର ହେବାଯାଏଁ ସିଂହମାନେ ଧୀରେ ଧୀରେ ଶତ୍ରୁମାନଙ୍କୁ ଚିରି ପକାଇଲେ ଓ ଦୁଇ ମାଇଲ ଦୂରରେ ଯାଇ ଅଟକିଗଲେ। କାହାର ଗୋଟିଏ, କାହାକୁ ଦୁଇଟି କାହାକୁ ୫-୫ ଦଶ-ଦଶ କ୍ଷତ ହୋଇଥିଲା ଓ ରକ୍ତରେ ସମସ୍ତେ ଗାଧୋଇ ପଡ଼ିଥିଲେ।

ମୁସଲମାନମାନଙ୍କ ପାଇଁ ଭୋଜନ ପାଣି ଆସିଗଲା ଓ ସେମାନେ ମଧ୍ୟ ଡେରା ଲଗାଇ ଖାଦ୍ୟ ପାନୀୟ ଯୋଗାଡ଼ କରୁଥିଲେ କିନ୍ତୁ ସିଂହମାନେ କେବଳ ବାଣୀ ପାଠ କରିବା ଓ ପରମାତ୍ମାଙ୍କ ଇଚ୍ଛା ମାନିବା ଛଡ଼ା ଆଉ କଣ କରନ୍ତେ ? ସମସ୍ତେ କ୍ଷତ ବିକ୍ଷତ ହୋଇଥିଲେ। ଯେମିତି ଯେମିତି କ୍ଷତ ଥଣ୍ଡା ହେଲା, ଶରୀର ଅଚଳ ହୋଇଗଲା ଓ ଆଣ୍ଠୁ, ଗଣ୍ଠିରେ କଷ୍ଟ ବଢିଗଲା। ଏହା ଦେଖି ଭାଇ ସୁଖ୍ଖା ସିଂହଜୀ କହିଲେ ଖାଲସାଜୀ, ଏହା ତ ପରମାତ୍ମା ଅକାଳ ପୁରୁଷଙ୍କ ଇଚ୍ଛା କି ଆମ୍ଭେମାନେ ସଫଳ ହୋଇପାରିବା କି ଅସଫଳ ହୋଇବା। କିନ୍ତୁ ଇଚ୍ଛାକୁ ମଧୁରତା ସହ ଗ୍ରହଣ କର, ଏହା ଆମ୍ଭ ସତ୍‌ଗୁରୁଜୀଙ୍କ ଶିକ୍ଷା ଅଟେ। ଏହି ସମୟରେ ଯଦି ଆମ୍ଭେମାନେ ଏହିପରି ଭାବେ ଛିଡ଼ା ହୋଇ ରହିବା ସକାଳ ଯାଏଁ ଆମ୍ଭେମାନେ

ହଲିପାରିବା ନାହିଁ। ସେଥିଯୋଗୁଁ ଆସ ଧୈର୍ଯ୍ୟ ଓ ସାହସ ରଖ ଓ ଆରାମ ସହ ମଜାରେ ରୁଟି, ପଲାଉ ଖାଉଥିବା ଆଉ ଆମ ଶତ୍ରୁମାନଙ୍କୁ ଆମର ଦୁଃଖର ଭାଗ ବାଣ୍ଟି ଆସିବା। ଛାପ ମାର ଯାହା ମିଳିବ ତାହା ଲୁଟି ଆଣ ଓ ପୁଣି ଆଗରେ କୌଣସି ଏକ ଘଞ୍ଚ ଜଙ୍ଗଲ ମଧ୍ୟରେ ପଶି ଆମର ସ୍ଥାନ ଦରକାର। ବର୍ତ୍ତମାନ ଏଠାରେ ଛିଡ଼ା ହୋଇ ସମୟ ନଷ୍ଟ କରିବା ନାହିଁ।

ପ୍ରକୃତରେ ଏହା ଉଚିତ କି ଥିଲା ଏହି ସମୟ ସିଂହମାନଙ୍କ ପାଇଁ ଉପଯୁକ୍ତ ସମୟ ଥିଲା। ଯଦି ସେଠାରେ ଅଟକିଯାଆନ୍ତେ, ତାହାହେଲେ ସକାଳ ହେବାଯାଏଁ କ୍ଷତର ବ୍ୟଥା ଯୋଗୁଁ ସେମାନଙ୍କ ଗୋଡ଼ ତଳେ ରଖି ପାରିନଥାନ୍ତେ ଓ ଶତ୍ରୁମାନେ ସହଜରେ ବିଜୟ ପ୍ରାପ୍ତ କରିନିଅନ୍ତେ। ସବୁ ସିଂହମାନେ ଏହି ପ୍ରସ୍ତାବକୁ ଉଚିତ ମନେ କରିଲେ। ଶତ୍ରୁମାନେ ସେତେବେଳେ ହିଁ ବିଶ୍ରାମ କରୁଥିଲେ ଓ ସେମାନେ ସ୍ୱପ୍ନରେ ମଧ୍ୟ ଭାବିନଥିଲେ ଓ ସିଂହମାନେ ଏତେ ବେଶି ଯୁଦ୍ଧ କରିବା ପରେ ମଧ୍ୟ ହଠାତ୍ ଚଢ଼ାଉ କରିବେ।

ୱାହା! ଧୈର୍ଯ୍ୟ ଓ ସାହାସର ଖାଲସା! ତୁମେ ଧନ୍ୟ ଅଟ। ପୁରା ଦିନ ଜୀବନ ମୃତ୍ୟୁର ସଂଘର୍ଷ ପରେ ଶତ୍ରୁଙ୍କୁ ଆକ୍ରମଣ କରିଦେଲ। ଯାହାକୁ ଘୋଡ଼ା ଦରକାର ଥିଲା, ସେ ଘୋଡା ଓ ତଲବାର ନେଲା। ଅନ୍ଧାରରେ ବହୁତ ମାର-କାଟ କରିଲେ କି ସିଂହମାନେ ପୂରା ଦିନର ପ୍ରତିଶୋଧ ନେଲେ। ଶୁଦ୍ଧତା ଓ ସତ୍‌ଗୁରୁଜୀଙ୍କ ଉପରେ ଅଗାଢ଼ ଭରସା ରଖିବା ସିଂହମାନେ, ଅସମ୍ଭବକୁ ସମ୍ଭବ କରି ଦେଖାଇଲେ। ମୁସଲମାନମାନେ ମୁଣ୍ଡରେ ହାତ ଦେଇ ରହିଗଲେ, କହିଲେ, ହେ ଖୁଦା! (ଭଗବାନ୍) କେଉଁଠି ଆମକୁ ଛାଡ଼ିଦେଲ! ଅନ୍ଧାରରେ! କିଛି ଜଣାପଡ଼ିଲା ନାହିଁ କି କିଏ କାହାକୁ ମାରୁଛି। କେତେଜଣ ଯେଉଁପଟେ ମିଳିଲା ସେପଟେ ଦୌଡ଼ି ଚାଲିଲେ।

ମୁସଲମାନ ଉଚ୍ଚ ପଦବୀ କର୍ମଚାରୀମାନେ ମଧ୍ୟ ବୁଝିପାରିଲେ ନାହିଁ, ଯେଉଁ ସିଂହମାନେ ଦିନ ସାରା ଯୁଦ୍ଧ କରୁଥିଲେ, ବଡ଼ କଷ୍ଟରେ ଆମ୍ଭ କବଳରୁ ବଞ୍ଚି ଯାଇଥିଲେ, ସେମାନେ ଭୋକରେ କେମିତି ଲୁଚି ବଞ୍ଚିଯିବେ, କିନ୍ତୁ ଫେରିଆସି ଆମ ଉପରେ ଆକ୍ରମଣ କରିପାରିବେ ନାହିଁ। ସେଥିଯୋଗୁଁ ପ୍ରସ୍ତୁତ ନ ହୋଇ ନିଶ୍ଚିନ୍ତ ହୋଇ ଶୋଉଥିଲେ; କିନ୍ତୁ ଯେତେବେଳେ ଆକାଶମାର୍ଗରେ ଆଲୁଅ କରାଇବା ତୋପ ଛାଡ଼ିଲେ, ଆଲୁଅ ହେବା ପରେ ସେମାନେ ଦେଖିଲେ, ଆଶ୍ଚର୍ଯ୍ୟ ହୋଇଗଲେ ଓ କହିଲେ, 'ଓହୋ! ଏହି ସିଂହମାନେ ତ ମରୁ ମରୁ ଆମ ପାଖକୁ ଆସିଛନ୍ତି।'

ଏହି ଆଲୁଅ ଦେଖି ସିଂହ ଦଳପତିମାନଙ୍କୁ ଅପହରଣ କରିବାପାଇଁ ଇସାରା କରିଲେ। ଦେଖୁ ଦେଖୁ ସିଂହମାନଙ୍କର ଘୋଡ଼ା ଅପହରଣ ହୋଇଗଲା। ସେଥିଯୋଗୁଁ ସେମାନେ ଘନ ଜଙ୍ଗଲରେ ପଶି ନିଃଶ୍ୱାସ ନେଲେ।

ସକାଳ ହେବା ପରେ ଲଖପତ ସେନାମାନଙ୍କ ପ୍ରତି ନଜର ପକାଇଲା। ସେନାମାନଙ୍କ ସାହସ ଓ ମନୋବଳ ଭାଙ୍ଗି ଯାଇଥିଲା। ସେଥିଯୋଗୁଁ ୧୦-୧୫ ଦିନ ଲଖପତ ଭଲରେ ଖୋଜି ବୁଲିଲା, କିନ୍ତୁ ସିଂହମାନେ କ୍ଷତର ଉପଶମ କରି ବେଶୀ କ୍ଷତାହତମାନଙ୍କୁ ବିଶ୍ରାମ ଦେଲେ। ତାଜା ଘାସ ଓ ବନ୍ୟଜନ୍ତୁଙ୍କୁ ଶିକାର କରି ସିଂହମାନେ ପେଟ ଭର୍ତ୍ତି କରିଲେ। ଲଖପତିକୁ କିଛି ବୁଦ୍ଧି ମିଳିଲା ନାହିଁ। ସେଥିଯୋଗୁଁ ସେ ଜଙ୍ଗଲରେ ନିଆଁ ଲଗାଇଦେଲା। ଏହା ଦେଖି ସିଂହମାନେ ଜଙ୍ଗଲ ଜଙ୍ଗଲ ମଧ୍ୟରେ ପଠାଣକୋଟ ଠାରେ ପହଞ୍ଚି ରାବୀ ଠାରେ ପୁଣି ବ୍ୟାସର ଘନ ଜଙ୍ଗଲ ଠାରେ ପଶିଗଲେ। ଲଖପତ ବ୍ୟାସର ସବୁ ପୋଲ ଅବରୋଧ କରିଦେଲା ଓ ଅନ୍ୟ ହାକିମମାନଙ୍କୁ ସନ୍ଦେଶ ପଠାଇଲା ଓ ସିଂହମାନଙ୍କୁ ଘେରାଉ କରିବାପାଇଁ ପୂରା ବଳ ଓ ବୁଦ୍ଧି ପ୍ରୟୋଗ କରିଲା। କିନ୍ତୁ ସିଂହମାନେ ଶ୍ରୀ ହରଗୋବିନ୍ଦପୁର ଠାରେ ପୋଲ ସାହାଯ୍ୟରେ ନଦୀ ପାର କରି ସଫଳ ହୋଇଗଲେ। ପୋଲ ଉପରେ ପହରା ଦେଉଥିବା ଅଳ୍ପସଂଖ୍ୟକ ସେନାମାନଙ୍କୁ ସିଂହମାନେ ମାରି ହଟାଇବା ପାଇଁ ବିଳମ୍ବ କରି ନ ଥିଲେ। ଅନ୍ୟ ପଟରେ ଛଡ଼ା ହୋଇଥିବା ଶତ୍ରୁମାନେ ଅବରୋଧ କରିଲେ କିନ୍ତୁ ସେମାନଙ୍କ ମୁଣ୍ଡ କାଟି ସେମାନଙ୍କ ହାତରେ ରଖିଦେଲେ। ସିଂହମାନେ ପାର ହୋଇ ଚାଲିଗଲେ ଓ ଶତ୍ରୁମାନେ ପିଛା କରି ଅସଫଳ ହୋଇଥିଲେ। କରତାରପୁର ନିକଟରେ ପହଞ୍ଚି ସେମାନେ ଖାଦ୍ୟପାନୀୟର ବ୍ୟବସ୍ଥା କରିଥିଲେ, କିନ୍ତୁ ସେପଟେ ଜଲନ୍ଧରର ସୁବା ସେଠାରେ ସୈନ୍ୟ ସହ ପହଞ୍ଚିଗଲା। ସିଂହମାନେ ରୁଟି ଛାଡ଼ି ପୁଣି ପ୍ରସ୍ତୁତ ହୋଇଗଲେ। ସିଂହମାନଙ୍କୁ ଜଲନ୍ଧରର ସୁବା ଅବରୋଧ କରିବାପାଇଁ ଶତପ୍ରତିଶତ ଚେଷ୍ଟା କରିଲା, ପରନ୍ତୁ ସିଂହମାନେ ତାହାର ସେନା ଜାଲକୁ ଚିରି ଚିରି ଆଗକୁ ଚାଲିଗଲେ। ଫିଲୌର ନିକଟରେ ଆସି ସେମାନେ ସତଲୁଜ ପାର କରିନେଲେ ଓ ଆଗରେ ଶହ ଶହ ମାଇଲର ଘନ ଜଙ୍ଗଲର ଅଞ୍ଚଳ ଦେଇ ମାଲବେଠାରେ ପହଞ୍ଚିଲେ। କେତେ ମାସ ସିଂହମାନେ ସେଠାରେ ରହି ସୁଖରେ ନିଃଶ୍ୱାସ ନେଇଥିଲେ।

ଯେତେବେଳେ ଲଖପତ ରାଏ ଦେଖିଲା କି ସବୁ ସିଂହମାନଙ୍କୁ ସେ ମାରିପାରିଲା ନାହିଁ, ଶହୀଦ ହୋଇଥିବା ସିଂହମାନଙ୍କର ମୁଣ୍ଡ କାଟି ସେ ବ୍ୟାସ ଠାରୁ ଲାହୋର ଫେରିଗଲା। ତିନି-ଚାରି ମାସ ଯାଏଁ ସେ ସିଂହମାନଙ୍କୁ ଖୋଜି ବୁଲିଲା ଓ ନିଜର ୨୦-୨୫ ହଜାର ଲୋକଙ୍କୁ ମରାଇ ୮-୯ ହଜାର ସିଂହମାନଙ୍କୁ ମାରିପାରିଲା। ତଥାପି ସେ ବିଜୟର ବିଗୁଲ ବଜାଇ ୮-୯ ହଜାର ସିଂହମାନଙ୍କ ମୁଣ୍ଡ ଗଧ ଉପରେ ଲଦି ସାଥିରେ ନେଲା, ତାହା ଲାହୌର ଠାରେ ପହଞ୍ଚି ସହରର ସବୁ ମୁଖ୍ୟଦ୍ୱାର ମାନଙ୍କରେ ଝୁଲାଇ ଦେଲା।

ଲାହୋରରେ ପହଞ୍ଚି ସେ ଘୋଷଣା କରିଲା କି ସିଂହମାନଙ୍କୁ ମାରି ସମାପ୍ତ କରିଦେଲା। ସେ ସିଂହମାନଙ୍କ ପ୍ରତି ଭୀଷଣ ଅତ୍ୟାଚାର ଓ ଶତ୍ରୁତା କରି ମଧ୍ୟ ଚୁପ ରହୁନଥିଲା। ତାହାପରେ ସେ ଅମୃତସର ହରମନ୍ଦିରର ସରୋବରକୁ ଭର୍ତ୍ତି କରିବା ପାଇଁ ଘୋଷଣା କରିଲା ଓ ସେଠାକୁ ଲୋକ ପଠାଇଲା, କୁହାଯାଇଛି କି ପାପର ଖଜଣା ଭରି ବୁଡିଯାଏ।

## ବିଜୈ ଖାଁ ଓ ଲଖପତ୍ ରାଏ ବନ୍ଦୀ

ଯେବେଠାରୁ ବିଜୟ ଖାଁ ସୁବା ହୋଇଥିଲା, ସେ ନିଜର ଭାଇ ଶାହନବାଜକୁ ବନ୍ଦୀ ଭାବେ ରଖିଥିଲା। ଶାହନବାଜ ବନ୍ଦୀ ଅବସ୍ଥାରେ ରହି ପରାମର୍ଶଦାତାମାନଙ୍କୁ ନିଜର ହାତରେ ଅଧୀନସ୍ଥ କରି ରଖିଥିଲା ଓ ତୁରନ୍ତ ସୁଯୋଗ ପାଇ ସେ ବିଜୈ ଖାଁକୁ ବନ୍ଦୀ କରି ନିଜ ସ୍ଥାନରେ ରଖିଲା ଓ ସେ ନିଜେ ସୁବା ପଦ ଗ୍ରହଣ କରିଲା। ଲଖପତକୁ ମଧ୍ୟ ବିଜୈ ଖାଁ ସହିତ ବନ୍ଦୀ କରିନେଲା। ସୁଯୋଗ ପାଇ ବିଜୈ ଖାଁ ବନ୍ଦୀ ଗୃହରୁ ଲୁଚି ଦିଲ୍ଲୀ ଠାରେ ପହଞ୍ଚିବାରେ ସଫଳ ହୋଇଗଲା। ବାଦଶାହ ଶାହନବାଜ ବିରୋଧରେ ସୈନିକ ପଠାଇଲା। ଶାହନବାଜ ଅହମ୍ମଦ ଶାହର ସାହାଯ୍ୟ ପାଇବା ପାଇଁ ଅନୁରୋଧ ପତ୍ର ପଠାଇଲା। ଦିଲ୍ଲୀର ବାଦଶାହ ପାଖରେ ଏହି ଖବର ପହଞ୍ଚିଲା। ସେ ପୁଣି ଶାହନବାଜକୁ ନିଜର ଦଳରେ ମିଶାଇ ରଖିଲା; କିନ୍ତୁ ଅହମଦ ତରଫରୁ ବାହାରିବା ଯୋଗୁଁ ତାକୁ ବହୁତ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା।

## ଅହମ୍ମଦ ଶାହର ଦ୍ୱିତୀୟ ଆକ୍ରମଣ

'ଆପେ ପାଂଥୁଡୀୟେ ତୈନୁ କୌନ ଛଡ଼ାବେ' କଥନ ଅନୁଯାୟୀ ଶାହନବାଜ ଅହମ୍ମଦ ଶାହର ଆକ୍ରମଣର ବଡ଼ିଆ ଶିକାର ହୋଇଗଲା। ଅହମ୍ମଦ ଶାହକୁ ସେ ବହୁତ ସନ୍ଦେଶ ପଠାଇଲା କି ତୁମର ସାହାଯ୍ୟର ଆବଶ୍ୟକତା ନାହିଁ। କିନ୍ତୁ ଅହମ୍ମଦ ଶାହକୁ ଲୁଟିବା ସ୍ୱାଦ ପାଟିରେ ଲାଗିଥିଲା। ସେ ସେଠାରେ ରୁହନ୍ତେ କିପରି ? ସମ୍ୱତ ୧୮୦୬ ବେଳେ ପୁଣି ଚଢ଼ାଉ କରିଦେଲା। ଏହା ଶୁଣି ଶାହନବାଜ ଦିଲ୍ଲୀକୁ ବିଶ୍ୱାସ କରି ଯୁଦ୍ଧ ସକାଶେ ଯୋଜନା ପ୍ରସ୍ତୁତ କରି ଚାଲିଲା। ଏହି ସମୟରେ ସିଂହ ମଧ୍ୟ ଶକ୍ତିଶାଳୀ ହୋଇ ଯାଇଥିଲେ ଓ ପୁଣି ପଞ୍ଜାବରେ ପଶିଯାଇଥିଲେ। ଯେତେଜଣ ଶହୀଦ ହୋଇଯାଇଥିଲେ, ଆହୁରି ଅଧିକ ନୂତନ ଅମୃତଧାରୀ ଅମୃତ ଧାରଣ କରି ସିଂହ ସାଜି ଯାଇଥିଲେ। ଅହମଦ ଶାହର ଆସିବା ଯୋଗୁଁ ସେମାନଙ୍କୁ ସୁଯୋଗ ମିଳିଗଲା ଓ ସେମାନେ ଗୁରୁପନ୍ଥର ଦୋଷୀମାନଙ୍କୁ ଯମଲୋକ ପଠାଇବା ଆରମ୍ଭ କରିଦେଲେ।

ଅହମ୍ମଦ ଶାହ ଓ ଶାହନବାଜ ମଧ୍ୟରେ ଯୁଦ୍ଧ ଚାଲିଲା। ଲଖପତର ବନ୍ଧୁବାନ୍ଧବ ଓ ଶାହନବାଜର କେତେକ ବିରୋଧୀମାନେ ଅହମଦ ଶାହକୁ ସାହାଯ୍ୟ କରିଲେ, ଯାହାଦ୍ୱାରା ଶାହନବାଜ ପରାସ୍ତ ହୋଇଗଲା। ଗିଲଜର ପଠାଣମାନେ ଲାହୋରକୁ ବହୁତ ଭଲ ଭାବେ ଲୁଟିଦେଲେ। ଲଖପତକୁ ଅହମ୍ମଦ ଶାହ ପୁଣି ଦିବାନ ପଦରେ ନିଯୁକ୍ତ କରିଦେଲା। ୧୭ ଦିନ ଅହମଦ ଶାହ ଲାହୋର ଠାରେ ରହିଲା ଓ ତାହାର ସମସ୍ତ ପ୍ରବନ୍ଧ ଠିକ୍‌ଠାକ୍ କରି ସେ ଦିଲ୍ଲୀ ଚାଲିଗଲା। ସରହନ୍ଦ ପାଖରେ ଦିଲ୍ଲୀର ସେନା ପହଞ୍ଚିଗଲେ ଓ ଯୁଦ୍ଧ ଆରମ୍ଭ ହୋଇଗଲା।

ଦୁଇ ପକ୍ଷର ସିଂହମାନଙ୍କ ସହ ଶତ୍ରୁତା ଥିଲା। ସେଥିଯୋଗୁଁ ଯାହାକୁ ଦେଖୁଥିଲେ ସଫା କରି ଚାଲୁଥିଲେ। ଏହିଥର ଦିଲ୍ଲୀର ସେନାମାନଙ୍କ ଲକ୍ଷ୍ୟ ରଖାଯାଇଥିଲା ଓ ଗିଲଜ ପଠାଣଙ୍କ ମଧ୍ୟରେ ଚାଞ୍ଚଲ୍ୟ ଖେଳି ଯାଇଥିଲା। ଦିଲ୍ଲୀ ଫୌଜମାନଙ୍କ ଉପରେ ଯୋର ଦିଆଗଲା ଓ ସେମାନେ ଗିଲଜମାନଙ୍କୁ ଲାହୋର ଠାରୁ ଦୂରକୁ ପଠାଇଦେଲେ। ଆଗରେ ଝେଲମ ଯାଏଁ ସିଂହମାନେ ଚାଞ୍ଚଲ୍ୟ କରାଇଦେଲେ। ତାହାପରେ ବୈଶାଖିର ଶୁଭ ଅବସରର ସୁଯୋଗ ଯୋଗୁଁ ସମସ୍ତ ସିଂହମାନେ ଅମୃତସରଠାରେ ଏକତ୍ରିତ ହୋଇଗଲେ।

## ଲଖପତର କୃତକର୍ମ ଯୋଗୁଁ ଦଣ୍ଡ

ଅନ୍ୟପଟର କାହାଣୀ ମଧ୍ୟ ଶୁଣନ୍ତୁ। ଦିଲ୍ଲୀ ଫୌଜମାନେ ଲଖପତକୁ ଅବିଶ୍ୱାସୀ ବୁଝିପାରି ଦୀବାନ ଛଡ଼ାଇନେଲେ ଓ ବନ୍ଦୀ କରିନେଲେ। ଅହମଦ ଶାହକୁ ସାହାଯ୍ୟ କରିବା ବଦଳରେ ତାକୁ ୩୦ ଲକ୍ଷ ଟଙ୍କା ଆର୍ଥିକ ଦଣ୍ଡ ଦିଆଗଲା। ଲଖପତର ପର୍ଯ୍ୟାପ୍ତ ସମ୍ପତ୍ତି ଜୁର୍ମାନ ଆଦାୟ ସକାଶେ ବିକ୍ରି କରିଦିଆଗଲା, କିନ୍ତୁ ୮ ଲକ୍ଷ କମ୍ ଆଦାୟ ହେଲା। ଏହି ୮ ଲକ୍ଷର ବଦଳରେ ତାହାକୁ ବାଦଶାହର ଆଦେଶ ଅନୁଯାୟୀ ବନ୍ଦୀ ଗୃହରେ ରଖାଗଲା।

ଦିଲ୍ଲୀର ବାଦଶାହଙ୍କ ତରଫରୁ ମୀର ମନୁ ଯିଏକି ଦିଲ୍ଲୀର ମନ୍ତ୍ରୀର ପୁତ୍ର ଥିଲା ଓ ତାହାର ଉଚ୍ଚ ବିଚାର ଯୋଗୁଁ ଏହିଥର ଅହମଦଶାହ ପରାସ୍ତ ହୋଇଥିଲା ଓ ତାହାକୁ ଲାହୋରର ସୁବେଦାର ପଦ ଦିଆଗଲା। ସେ ସେଠାରେ ପହଞ୍ଚି ଲଖପତର ସ୍ଥାନରେ ଦିବାନ କୌଡ଼ାମଲକୁ ନିଯୁକ୍ତି କରିଦେଲା। ଦିବାନ କୌଡ଼ାମଲ ସିଂହମାନଙ୍କର ଶୁଭକାଂକ୍ଷୀ ଥିଲା ଓ ଲଖପତର ତରଫରୁ ସିଂହମାନଙ୍କ ପ୍ରତି ହୋଇଥିବା ଅନ୍ୟାୟ ଓ ଅତ୍ୟାଚାରକୁ ବହୁତ ଥର ପ୍ରତିରୋଧ କରିଥିଲା, କିନ୍ତୁ ଯାହାର ମତି ବୁଦ୍ଧି ଅହଙ୍କାର ରୂପକ ଶଇତାନ କାର୍ଯ୍ୟ କରେ ସେ କଣ କାହାର ବୁଦ୍ଧି ଓ ବିଚାରକୁ ଗ୍ରହଣ କରେ? ସିଂହମାନେ ବଡ଼ କଷ୍ଟରେ ଅଳ୍ପ ଦିନ ପୂର୍ବରୁ ହରିମନ୍ଦିରର ସରୋବରର ମାଟି ବାହାର କରି ସଫା କରିଥିଲେ। କିନ୍ତୁ ତାହାର ମନ୍ଦ ବୁଦ୍ଧି ପୂରା ହୋଇନଥିଲା। ସେତେବେଳେ ଅକାଳ ପୁରୁଷ ଅବଦାଲୀର ଆକ୍ରମଣ ଚକ୍ରରେ ଚଲାଇ ଦେଇଥିଲେ। ସିଂହମାନେ ଏଥିପ୍ରତି କ୍ରୋଧିତ ଥିଲେ। ସେଥିଯୋଗୁଁ ବର୍ତ୍ତମାନ ଯେତେବେଳେ ଦିବାନ କୌଡ଼ାମଲ ମନ୍ତ୍ରୀ ହୋଇଗଲା ସିଂହମାନେ ତାହାକୁ ନିଜର ହିତୈଷୀ ଭାବି ନିଜର ଲୋକ ପଠାଇ ତାଙ୍କୁ ଅନୁରୋଧ କରିଲେ 'ଦିବାନ ସାହେବ' ଏହି ଲଖ୍ଖୁ ଭସୁକୁ ଆମର ହାତରେ ଦେଇଦିଅ। ସେ ଆମ ବିରୋଧରେ ବହୁତ ବଡ଼ ବଡ଼ ଅପରାଧ କରିଛି, ସେଥିଯୋଗୁଁ ସମୟ ଅନୁସାରେ ଦାବି କରୁଛୁ କି ତାହାର ପୂର୍ବ କର୍ମ ଯୋଗୁଁ ଫଳ ମିଳିବା ଉଚିତ। ତାହାର ବଦଳରେ ଯାହା କାମ କହିବ ଆମେ କରିବୁ।

ଦିବାନ କୌଡ଼ାମଲ୍ଲ ଲଖପତର କର୍ମ ଯୋଗୁଁ ପରିଚିତ ଥିଲା। ସେ ଲଖପତକୁ ହିନ୍ଦୁମାନଙ୍କର ଶତ୍ରୁ ଓ ଅବିଶ୍ୱାସୀ ବିରୋଧ ଭାବୁଥିଲା ସେଥିଯୋଗୁଁ ସେ ବିଳମ୍ବ

କରିଲା ନାହିଁ। ମୀର ମନୁକୁ ଲଖପତର ଦାୟିତ୍ୱରୁ ବାହାର କରିବା ପାଇଁ ୮ ଲକ୍ଷ ଟଙ୍କା ନିଜେ ଦେଲା। ତାହାକୁ ପୂର୍ବରୁ ପ୍ରଥମେ ନିଜର ଅଧିକାରରେ ରଖିଲା ଓ ତା'ପରେ ସିଂହମାନଙ୍କୁ ଦେଲା।

ଯେତେବେଳେ ଏହି ଦୁଷ୍ଟ ସିଂହମାନଙ୍କର ବଡ଼ ଶତ୍ରୁ ସିଂହମାନଙ୍କ ହାତରେ ପଡ଼ିଲା, ସେହି ସିଂହମାନେ ତାହାକୁ ଚନ୍ଦୁ ଭଳି ତାହାର କର୍ମଫଳ ଦେବାପାଇଁ ନିଷ୍ପତ୍ତି କରିଲେ ଓ ପ୍ରଥମେ ଦୁଇ-ଚାରି ଦିନ ଭଲ ଭଲ ଥାପଡ଼ ଖୁଆଇଲେ କିନ୍ତୁ ପରେ ଜଙ୍ଗଲ ଭିତରେ ଗୋଟିଏ ଛୋଟ କୋଠରି ତିଆରି କରି ତାହା ଭିତରେ ତାକୁ ନଜରବନ୍ଦୀ କରି ରଖିଲେ। ଭିତରେ ମଳମୂତ୍ର ତ୍ୟାଗ କରୁଥିଲା। ସେହି ସ୍ଥାନରେ ତାହାର ରୁଟି ଖାଇବାକୁ ଦିଆଯାଉଥିଲା। ବାହାରେ କେତେଜଣ ସିଂହ ପହରା ଦେଉଥାନ୍ତି। ଏହିପରି ୬ମାସ ଯାଏଁ ସେହି କୋଠରି ଭିତରେ ସେହି ପାପୀକୁ ବନ୍ଦ କରି ମରାଗଲା। ତାହାର ପରିଣାମ ସେ ଭୋଗିଲା।

## ସିଂହମାନେ ଦୁର୍ଗ ତିଆରି କଲେ

କୌଡ଼ାମଲ୍ଲ ଦିବାନ ହେବା ପରେ ଲଖପତ ଭଳି କଣ୍ଟା ସିଂହମାନଙ୍କୁ ଗଳାରୁ ବାହାରିଗଲା। ସେମାନେ କେତେଦିନ ଯାଏଁ ସୁଖରେ ନିଃଶ୍ୱାସ ମାରିଲେ। ହରି ମନ୍ଦିରର ପବିତ୍ର ସରୋବର ତଥା ଓ ଅନ୍ୟ ଗୁରୁଦ୍ୱାରମାନଙ୍କ ସେବା ଭଲ ଭାବେ ହୋଇପାରିଲା। ସେତେବେଳେ ସିଂହମାନଙ୍କ ମନରେ ପ୍ରବଳ ଇଚ୍ଛା ହୋଇଥିଲା କି ଖାଲସାମାନଙ୍କ ସ୍ଥାନ ହେବା ଉଚିତ। ସିଂହମାନେ ସବୁବେଳେ ଅସ୍ତବ୍ୟସ୍ତ ରହିବା ଯୋଗୁଁ ବଡ଼ ସଙ୍କଟ ସମୟ ସମ୍ମୁଖୀନ କରିବାକୁ ପଡୁଥିଲା। ଏହି ବିଚାର ସମସ୍ତଙ୍କ ମନରେ ଆସିଲା। ସିଂହମାନେ ଦୁର୍ଗ ତିଆରି କରିବା ପାଇଁ ପ୍ରସ୍ତାବରେ ସମସ୍ତେ ସହମତ ହେଲେ ଓ ରାମସର ନିକଟରେ "ନିଚଲୀ ଜଗହ" ସ୍ଥାନଟିକୁ ସମସ୍ତେ ପସନ୍ଦ କରିଲେ।

ସିଂହ ଓ ଦଳପତିମାନେ ସମସ୍ତେ ମିଳିମିଶି କାମରେ ଯୋଡ଼ି ହୋଇଗଲେ। ପ୍ରାର୍ଥନା କରାଗଲା ଓ ଦୁର୍ଗର ନାମ ରାମଗଡ଼ ରଖାଗଲା। ପ୍ରାୟ ମାଇଲ, ଦେଢ଼ ମାଇଲ ଘେରରେ ଚାରି ଖୋଳାଗଲା ଓ ସେହି ମାଟିର ଗାତକୁ ଚାରିପଟୁ ପୋଖରୀର କୂଳ ଉଚ୍ଚା ହୁଡ଼ା ଭଳି ଉଚ୍ଚା ଉଠାଗଲା। ପୁଣି ଭିତର ବାହାର ୪-୫ ଗଜରେ ପାଖାପାଖି ଭଲ ବଙ୍କାବଙ୍କି କରି ଦୁଇ ଫୁଟ ଚୌଡ଼ାର ପକ୍କା କାନ୍ଥ ଉଠାଗଲା। ପକ୍କା

କାନ୍ଥ ତିଆରି ହେବା ଯୋଗୁଁ ଦୁର୍ଗ ଭଲ ମଜବୁତ ହୋଇ ତିଆରି ହେଲା। ଏହା ପ୍ରସ୍ତୁତ ହେବାପାଇଁ ପ୍ରାୟ ଦୁଇ ମାସ ସମୟ ଲାଗିଥିଲା।

ଦୁର୍ଗରେ ସୁରକ୍ଷା ନିମନ୍ତେ ଚାରି-ପାଞ୍ଚଶହ ସିଂହ ରହିଲେ। ବାକି ୧୦୦-୧୦୦ ଦଳ ହୋଇ ଦୂର ଦୂରକୁ ଚାଲିଗଲେ ଓ ଖାଦ୍ୟସାମଗ୍ରୀ, ଅସ୍ତ୍ରଶସ୍ତ୍ର ଓ ଆବଶ୍ୟକୀୟ ସାମଗ୍ରୀ ଏକତ୍ରିତ କରି ଚାଲିଲେ। ସିଂହମାନଙ୍କୁ ଏହି କାର୍ଯ୍ୟ କରିବାପାଇଁ ୭-୮ ମାସ ସମୟ ଲାଗିଥିଲା। ଧୀରେ ଧୀରେ ସିଂହମାନେ ଦୁର୍ଗ ତିଆରି କରି ଯୁଦ୍ଧ ପ୍ରସ୍ତୁତି କରିବା ଖବର ଲାହୋର ଠାରେ ମୀର ମନୁ ପାଖରେ ପହଞ୍ଚିଲା। ମୀର ମନୁ ଦୀବାନ କୌଡାମଲ୍ଲକୁ ହୁକୁମ ଦେଲା କି ଫୌଜମାନଙ୍କ ସହ ଯାଇ ଆକ୍ରମଣ କରି ଦୁର୍ଗ ନିଜ ଅଧିକାର କରିବାପାଇଁ। ଏହି କାମ କରିବାପାଇଁ ବଡ଼ ଯୋଜନା କରାଗଲା। ଦୂର ନିକଟରୁ ମୁସଲମାନ ହାକିମମାନେ ଏହି ଯୋଜନାରେ ଏକମତ ଓ ଯୋଗ ଦେଇ ବିଶେଷ ଭାବେ ସନ୍ଦେଶ ପଠାଇଲେ।

ସେଥିଯୋଗୁଁ ଯୋଜନା ଅନୁଯାୟୀ ଲାହୋର ଠାରେ ଦିବାନ କୌଡ଼ାମଲ୍ଲ, ଜଲନ୍ଧରର ସୁବା ଅଦୀନା ବେଗ ଓ କେତେକ ସ୍ଥାନରୁ ଛୋଟ ଛୋଟ ହାକିମ ମାନେ ନିଜ ନିଜର ସେନା ଦଳ ସହ ଅମୃତସର ପଟକୁ ଚାଲିଲେ। ନିର୍ଦ୍ଧାରିତ ଦିନରେ ସମସ୍ତେ ପହଞ୍ଚିଗଲେ। ସିଂହମାନଙ୍କୁ ଖବର ମିଳିଥିଲା, ସେଥିଯୋଗୁଁ ଯେତେବେଳେ ନିକଟ ହୋଇ ଆକ୍ରମଣ କରିବାକୁ ଲାଗିଲେ, ସିଂହମାନଙ୍କ ନିକଟରେ ଶତ୍ରୁ ପହଞ୍ଚିବା ଦେଖି ସେମାନେ ବନ୍ଧୁକ ଚଳାଇଦେଲେ। ପ୍ରଥମ ଚେଷ୍ଟାରେ ହଜାର ହଜାର ଶତ୍ରୁ ଧରାଶାୟୀ ହୋଇଗଲେ ଓ ଅନ୍ୟମାନେ ପଛକୁ ହଟିଗଲେ। ଏହି ପ୍ରଥମ ଆକ୍ରମଣ ଦ୍ୱାରା ସେନାମାନଙ୍କର ବହୁତ କ୍ଷତି ହୋଇଥିଲା ଓ ପଛକୁ ହଟିବା ପାଇଁ ବାଧ ହୋଇଥିଲେ ଓ ସିଂହମାନଙ୍କର କିଛି ମଧ୍ୟ କ୍ଷତି ହୋଇନଥିଲା। ଲାହୋର ସୈନ୍ୟମାନେ ପଛକୁ ଯାଇ ଦୁର୍ଗର ଚାରିପଟେ ଘେରାଉ କରି ବସି ରହିଲେ।

ଚାରି ମାସ ଯାଏଁ ଯେତେବେଳେ ଘେରାଉ ମଧ୍ୟରେ ରହି ସିଂହମାନଙ୍କ ଖାଦ୍ୟସାମଗ୍ରୀ ଶେଷ ହୋଇଗଲା ସେତେବେଳେ ସେହି ରାତ୍ରି ସମୟରେ ସିଂହମାନେ ବାହାର ଶତ୍ରୁମାନଙ୍କୁ ଆକ୍ରମଣ କରିଦେଲେ। ଖାଦ୍ୟସାମଗ୍ରୀ ସଞ୍ଚୟ କରିନେଲେ ଓ ବଳ ପ୍ରୟୋଗ କରି ଯେତେ ପାରିଲେ ଲୁଟିନେଲେ। ଆହୁରି କିଛି ଦିନ ବିତିଗଲା। ବାହାର ଶତ୍ରୁମାନଙ୍କ ଭଣ୍ଡାର ଖାଲି କରି ସିଂହମାନେ ଲୁଟି ନେଲେ। ସିଂହମାନଙ୍କୁ ପୁଣି ଥରେ ଦୁଇ ଥର ସାହସ ଆସିଲା। କିନ୍ତୁ କିଛି ମିଳିଲା ନାହିଁ।

ଯେତେବେଳେ କ୍ଷୁଧାରେ ଆତୁର ହୋଇ ସିଂହମାନେ ନିଷ୍ପତ୍ତି ନେଲେ କ୍ଷୁଧା କଷ୍ଟରେ ମରିବା ଅପେକ୍ଷା ଶହିଦ ମରିବା ଉଚିତ ଓ ବାହାରକୁ ବାହାରି ସମ୍ମୁଖ ଶହୀଦ ପ୍ରାପ୍ତ କରିବା ଉଚିତ । ଯଦି ଶତ୍ରୁଙ୍କ ଘେରାଉରୁ ବାହାରି ପାରିବା, ତାହାଲେ ପୁଣି କୌଣସି ଜଙ୍ଗଲର ଆଶ୍ରୟରେ ବଞ୍ଚି ରହିବା ।

## ସର୍ଦ୍ଦାର ଜସ୍ସା ସିଂହ ରାମଗଢ଼ିଆ

ଅଦିନା ବେଗ ଜଲନ୍ଧରର ସେନାମାନଙ୍କ ମଧ୍ୟରେ ସର୍ଦ୍ଦାର ଜସ୍ସା ସିଂହ ରାମଗଢ଼ ନିବାସୀ ମଧ୍ୟ ବାହାର ସେନାମାନଙ୍କ ସହ ଥିଲା । ସେ କୌଣସି କଥାରେ କ୍ରୋଧିତ ହୋଇ ସିଂହମାନଙ୍କଠାରୁ ଅଲଗା ହୋଇ ନିଜର ସାଥି ପ୍ରାୟ ଶହେ ଜଣଙ୍କ ସହିତ ଜଲନ୍ଧରର ସୁବା ଅଦୀନା ବେଗ ପାଖରେ ରହୁଥିଲା । ଯେତେବେଳେ ଦୁର୍ଗ ଭିତର ସିଂହମାନେ ବାହାରକୁ ବାହାରି ଶହୀଦ ହେବା ଖବର ସର୍ଦ୍ଦାର ଜସ୍ସା ସିଂହକୁ ମିଳିଲା ତାହାର ମନ ଛଟପଟ ହୋଇଗଲା । ସେହି ଅନ୍ୟ ସାଥିମାନଙ୍କ ସହ ପରାମର୍ଶ କରି ନିଷ୍ପତ୍ତି ନେଲା କି ଆମ୍ଭେମାନେ ମଧ୍ୟ ସିଂହମାନଙ୍କ ସହିତ ମରିବା ଓ ବଞ୍ଚିବା ଉଚିତ ହେବ । ସେହି ମୁସଲମାନ ହାକିମ ଯେଉଁମାନେ ଅନ୍ୟ ସିଂହମାନଙ୍କ ଶତ୍ରୁ ଥିଲେ, ସେମାନେ ଆମର କେବେ ହିତାକାଂକ୍ଷୀ ହୋଇଛନ୍ତି । ଭାଇ ସୁବେଗ ସିଂହ ଜୀବନ ସାରା ସେମାନଙ୍କ ସାଙ୍ଗରେ ରହିଲେ ଓ ଅନେକ କଷ୍ଟକର କାମ ସେ ସୁରୁଖୁରୁ ସହିତ ପରିଚାଳନା କରିଥିଲେ । ତାଙ୍କୁ ମଧ୍ୟ ଏହି ଅତ୍ୟାଚାରୀ ପାପୀମାନେ ବୁଝି ପାରିନଥିଲେ, ତା'ହେଲେ ଆମ୍ଭମାନଙ୍କ ସହିତ କେତେଦିନ ମିତ୍ରତା କରି ରହିବେ ? ଏହା ଭାବି ସର୍ଦ୍ଦାର ଜସ୍ସା ସିଂହଜୀ ଗୋଟିଏ ଚିଠି ଲେଖିଲେ । ତୀରରେ ବାନ୍ଧି ଦୁର୍ଗ ଭିତରକୁ ପଠାଇଲା "ଖାଲସାଜୀ ! ମୁଁ ମଧ୍ୟ ଆପଣ ମାନଙ୍କ ସହିତ ରହିବି । ଜୀବନ ମୃତ୍ୟୁ ମୋ ପାଇଁ ସମାନ । ସେଥିଯୋଗୁଁ ଆଜ୍ଞା ଦିଅନ୍ତୁ ଓ ଦୁର୍ଗର ଦ୍ୱାର ଖୋଲି ଦିଅନ୍ତୁ ତା'ହେଲେ ମୁଁ ଖାଦ୍ୟସାମଗ୍ରୀ ସହ ଭିତରକୁ ଆସିବି ।"

ଭିତରେ ରହିଥିବା ସିଂହମାନେ ଚିଠି ପଢ଼ି ସତଗୁରୁଜୀଙ୍କୁ ଧନ୍ୟବାଦ ଦେଲେ ଓ ତୀର ଦ୍ୱାରା ଚିଠିର ଉତ୍ତର ଦେଲେ, "ମଧ୍ୟରାତ୍ରୀ ରେ ଦ୍ୱାର ଖୋଲାଯିବ, ପ୍ରସ୍ତୁତ ରୁହ ।"

ଚିଠି ପାଇବା ସଙ୍ଗେ ସଙ୍ଗେ ସର୍ଦ୍ଦାର ଜସ୍ସା ସିଂହଜୀ ପ୍ରସ୍ତୁତିରେ ଲାଗି ପଡିଲେ ଓ ଅଧିକାରୁ ଅଧିକା ଖାଦ୍ୟ ସାମଗ୍ରୀ, ଅସ୍ତ୍ରଶସ୍ତ୍ର ଓ ଗୁଳିଗୋଳାବାରୁଦ ଓ ଟଙ୍କା ସଂଗ୍ରହ

କରିଲେ। ଯେତେବେଳେ ରାତିରେ ଦ୍ୱାର ଖୋଲିଲା, ସବୁ କିଛି ନେଇ ଦୁର୍ଗ ମଧ୍ୟରେ ପ୍ରବେଶ କରିଲେ, ଦୂରେଇ ଯାଇଥିବା ସାଥିମାନଙ୍କ ସହ ମିଶି ଖୁସି ହୋଇଗଲେ।

## ଅହମ୍ମଦ ଶାହର ତୃତୀୟ ଆକ୍ରମଣ

ଯେଉଁ ଖାଦ୍ୟସାମଗ୍ରୀ ଦୁର୍ଗ ଭିତରକୁ ଗଲା ସେଥିରେ ସିଂହମାନେ ଦୁଇ ତିନି ମାସ ଚଳିଗଲେ। ଏହି ସମୟରେ ଅହମ୍ମଦ ଶାହ ପୁଣି ଆକ୍ରମଣ କରିଦେଲା। ଏହା ଶୁଣି ମୀରା ମନ୍ନୁକୁ ଚିନ୍ତା ହୋଇଥିଲା। ସେ ଅମୃତସର ଯାଇଥିବା ସେନାବାହିନୀକୁ ତୁରନ୍ତ ଲାହୋର ପହଞ୍ଚିବା ପାଇଁ ଆଦେଶ ଦେଲା। ସେଥିଯୋଗୁଁ ୭-୮ ମାସ ପରେ ଶିବିର ଉଠାଇବା ଯୋଗୁଁ ସିଂହମାନେ ମୁକ୍ତି ପାଇଥିଲେ। ସେତେବେଳେ ୧୮୦୮ ବିକ୍ରମୀ ଥିଲା।

ସେନା ବାହିନୀ ଲାହାର ପହଞ୍ଚିବା ପରେ ମୀର ମନ୍ନୁ ଦେଖିଲା ଓ ସେନା ଦଳପତିମାନେ ମଧ୍ୟ ଏହି ପ୍ରସ୍ତାବ ଦେଲେ କି ଯୁଦ୍ଧ ଅନୁଚିତ, ସେଥିଯୋଗୁଁ, ମୀର ମନ୍ନୁ ୧୫ଲକ୍ଷ ଟଙ୍କା ଲାଞ୍ଚଦେଇ, ଭବିଷ୍ୟତରେ ଏକମତ ହୋଇ ଅହମ୍ମଦ ଶାହର ଆଦେଶ ମାନି ଚଳିବା ପାଇଁ  ଅହମ୍ମଦ ଶାହକୁ ଗୁଜୁରାତ ସହରରୁ ଫେରାଇ ଦେଇଥିଲା।

ଦିଲ୍ଲୀର ବାଦଶାହକୁ ଯେତେବେଳେ ଏହି ଖବର ମିଳିଲା ସେ ମନ୍ନୁ ପ୍ରତି ଭୀଷଣ କ୍ରୋଧିତ ହୋଇଗଲା। ସେ ଶାହନବାଜକୁ ଦିଲ୍ଲୀର ସେନା ପଠାଇ ମୁଲତାନକୁ ଅଧିକାର କରିବା ପାଇଁ ପଠାଇ ଦେଲା। ଶାହନବାଜ ଦୀପାଳପୁରର ରାସ୍ତାରେ ହଠାତ୍ ଆସି ମନ୍ନୁର ସେନା ମାନଙ୍କ ସହ ଆକ୍ରମଣ କରିଦେଲା ଓ ମୁଲତାନ ଅଧିକାର କରିଦେଲା।

## ସିଂହମାନେ କୌଡ଼ା ମଲ୍ଲକୁ ସାହାଯ୍ୟ କରିବା

ଏହି ଖବର ମନ୍ନୁକୁ ଚିନ୍ତାରେ ପକାଇଲା। ସେ ପରାମର୍ଶ କରିଲା କି ମୁଲତାନ ଶାହ ନିବାଦ ପାଖରେ ରହିବା ଅନୁଚିତ। ସେ ଦିବାନ କୌଡ଼ା, ମଲ ଓ ଅଦୀନା ବେଗ ସୁବା ଜଲନ୍ଧରର ମୁଲତାନ ଉପରେ ଆକ୍ରମଣ କରିବା ପାଇଁ ହୁକୁମ ଦେଲା। ସେହି ସମୟରେ ଦିବାନ କୌଡା ମଲ ମୀର ମନ୍ନୁକୁ ପ୍ରସ୍ତାବ ଦେଲା କି ଯଦି ଏହି କାର୍ଯ୍ୟ ସିଂହମାନଙ୍କୁ  ନିଜ ସାଥିରେ ରଖିବା ତା'ହେଲେ ଆମର ବିଜୟ ସୁନିଶ୍ଚିତ।

"ପରନ୍ତୁ ସେମାନେ ମାନିବେ କେମିତି ?"

'ଏହି କାମ ମୋ ଉପରେ ଛାଡ଼ି ଦିଅନ୍ତୁ ।' ଦିବାନ କହିଲା । ମନ୍ନୁ ମାନିଗଲା, କୌଡ଼ା ମଲ ଅମୃତସର ପହଞ୍ଚିଲା, ନାମ ତାହାର କୌଡ଼ା ମଲ ଥିଲା (ଚାବୁକ ମାଡ଼) କିନ୍ତୁ ସିଂହମାନେ ତାହାକୁ ଆଦରରେ ମିଠା ମଲ୍ଲ ବୋଲି ଡାକୁଥିଲେ । କୌଡା ମଲ୍ଲ ହୁକ୍କା ଟାଣୁଥାଏ, ସେଥିଯୋଗୁଁ ଯେବେ ସେ ସିଂହମାନଙ୍କ ପାଖକୁ ଆସେ ସିଂହମାନେ ତାହାଠାରୁ ଜୋରିମାନା ଲଗାଉ ଥିଲେ ଓ ତାହାକୁ ପାଖରେ ବସାଉଥିଲେ । ବସୁଲର ସକ୍କାର କରିବା ବ୍ୟକ୍ତି ଦିବାନ କୌଡ଼ା ମଲ୍ଲକୁ ସିଂହମାନେ ଯେଉଁ ଜୁର୍ମାନା ଲଗାଉଥିଲା ସେ ଭରୁ ଥିଲା । ସେଥିଯୋଗୁଁ ବର୍ତ୍ତମାନ ମଧ୍ୟ ଜୁର୍ମାନା ଭରି ସିଂହମାନଙ୍କୁ ମୁଲତାନ ଆକ୍ରମଣ କରିବା ପାଇଁ ମନେଇଦେଲା । ୧୦ହଜାର ଦିବାନୀଙ୍କ ସହିତ ମୁଲତାନ ଆଡ଼କୁ ଚାଲିଗଲେ ।

କୁହାଯାଉଛି କି ମୁଲତାନର ଯୁଦ୍ଧ ପ୍ରାୟ ୬ମାସ ହୋଇଥିଲା, କିନ୍ତୁ ସିଂହମାନେ ବର୍ତ୍ତମାନ ସୁଦ୍ଧା ଆଗକୁ ଯାଇ ଯୁଦ୍ଧ କରି ନ ଥିଲେ ଓ ଲାହୋରର ଫୌଜଙ୍କୁ କିଛି ବୁଝା ପଡୁ ନ ଥିଲା । ଶାହନବାଜ ଖୋଲା ପଡ଼ିଆରେ ଲାହୋରର ସୈନ୍ୟମାନଙ୍କୁ ଆଗକୁ ବଢ଼ାଇ ଯାଇଥିଲା କି ଦିବାନ କୌଡ଼ା ମଲ୍ଲର ଲଲକାର କରିବା ଦ୍ୱାରା ସିଂହମାନେ ଏକଦମ ତେଜ ସହ ମୁସଲମାନମାନଙ୍କ ପ୍ରତି ଆକ୍ରୋଶିତ ହୋଇଗଲେ ଓ ଗୋଟିଏ ପହରର ଯୁଦ୍ଧ ଦ୍ୱାରା ଶାହ ନବାଜର ସେନା ମାନଙ୍କୁ ଧୂଳି ଚଟାଇ ଦେଲେ ।

ଶାହନବାଜ ହାତୀ ଉପରେ ଚଢ଼ି ଫୌଜମାନଙ୍କୁ ଲଢ଼ାଉ ଥିଲା । ନିଜର ସେନାମାନଙ୍କର ଅସ୍ତବ୍ୟସ୍ତ ଦେଖି ଶାହନବାଜ ମଧ୍ୟ ପଛକୁ ହଟି ଯାଇଥିଲା । ଏହା ଦୌଡ଼ ଘୋଡ଼ା ସବାରମାନେ ସିଂହମାନେ ମଧ୍ୟ ଘୋଡ଼ାମାନଙ୍କୁ ଦୌଡ଼ାଇ ସେମାନଙ୍କ ତରଫକୁ ଦୌଡ଼ାଇଲେ । କୁହାଯାଇଛି କି ଜଣେ ଭୀମ ସିଂହ ନାମକ ସିଂହ ସେ ହାତୀର ନିକଟ ହୋଇ ଏମିତି ଜୋର୍ ସହ ତଲବାର ଚଳାଇଲା କି ହାତୀର ଗୋଟିଏ ଗୋଡ଼ କଟିଗଲା ଓ ହାତୀ ସହିତ ଶାହନବାଜର ଜୋରରେ ଧରାଶାୟୀ ହୋଇଗଲା । ସିଂହମାନଙ୍କ ତୀକ୍ଷ୍ଣ ତଲବାର ପ୍ରୟୋଗ ଦ୍ୱାରା ଶାହନବାଜର ମୁଣ୍ଡ ଓ ଶରୀର ଅଲଗା ହୋଇଗଲା ।

ସିଂହମାନଙ୍କ ବାହଦୁରି ଯୋଗୁଁ କୌଡ଼ା ମଲ୍ଲ ପୂର୍ବରୁ ମୋହିତ ଥିଲା, କିନ୍ତୁ ଏହି ବାହାଦୁରି ଯୋଗୁଁ ମୀର ମନ୍ନୁ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲା । ଏହା ସମ୍ୱତ ୧୮୦୯ ସମୟର ଘଟଣା ।

ବର୍ତ୍ତମାନ ସିଂହମାନଙ୍କ ପାଇଁ ସୁଖ ସମୟ କିଛି ଦିନ ସକାଶେ ଆସିଲା। ଶିକାର ଖେଳିବାକୁ ମଧ୍ୟ ଦୂର ଦୂରକୁ ଯାଉଥିଲେ। ମୀର ମନ୍ନୁ ସେତେବେଳେ ଦିଲ୍ଲୀକୁ ଦୁର୍ବଳ ଦେଖି ସରହନ୍ଦକୁ ଅଧିକାର କରିଥିଲା।

## ଅହମ୍ମଦ ଶାହର ଚତୁର୍ଥ ଆକ୍ରମଣ

ଅହମ୍ମଦ ଶାହ ଯେତେବେଳେ ପଛଥର ଆକ୍ରମଣ କରିଥିଲା ସେତେବେଳେ ତାହାକୁ ମୀର ମନ୍ନୁ ପ୍ରତ୍ୟେକ କିଛି କିଛି ଲାଞ୍ଚ ଦେଇ ତାହାକୁ ଗୁଜୁରାତ ଠାରୁ (ପାକିସ୍ତାନ ଗୋଟିଏ ଗୁଜୁରାତ ଅଛି) ଫେରାଇ ଦେଇଥିଲା, କିନ୍ତୁ ଯେତେବେଳେ ମୁଲତାନ ଓ ସରହନ୍ଦ ମୀର ମନ୍ନୁ ଅଧିକାର କରିନେଲା, ସେତେବେଳେ ସେ ଅହମଦ ଶାହକୁ କିଛି ଟଙ୍କା ଦେଲା ନାହିଁ ଓ ପ୍ରସ୍ତାବ ଥିଲା କି ବର୍ତ୍ତମାନ ଯଦି ଅହମ୍ମଦ ଆସେ ତା'ହେଲେ ତାକୁ ମଜା ଚଖାଇବା। ଅହମ୍ମଦ ଶାହକୁ ଯେତେବେଳେ ଧନ ମିଳିଲା ନାହିଁ, ସେ ମନ୍ନୁ ପାଖକୁ ଓକିଲ ପଠାଇଲା ଓ ହିସାବ କରି ୩୫ଲକ୍ଷ ଟଙ୍କା ଦାବି କରିଲା ଓ ମୀର ମନ୍ନୁ ତାହା ଦେବା ପାଇଁ ନାସ୍ତି ବଚନ ଶୁଣାଇଲା। ଏହା ଶୁଣି ଅହମଦ ଶାହ ୧ଲକ୍ଷ ସୈନ୍ୟ ବଳ ସହ କ୍ରୋଧିତ ହୋଇ ଯୁଦ୍ଧ ସକାଶେ ଆସିଲା। ଏହା ୧୮୧୦ ବେଳର ଘଟଣା। ମୀର ମନ୍ନୁ ଯୁଦ୍ଧ ପାଇଁ ପ୍ରସ୍ତୁତ ଥିଲା। କୌଡା ମଲ୍ଲ ଦିବାନ କହିବା ଯୋଗୁଁ ସିଂହମାନେ ମଧ୍ୟ ପହଞ୍ଚିଗଲେ। ମନ୍ନୁର ସେନାମାନେ ନଦୀ ପାର ହୋଇ ଶାହଦରାର ଯୁଦ୍ଧକ୍ଷେତ୍ରରେ ଆମନା ସାମନା ହେଲେ। କିନ୍ତୁ ଅହମଦ ଶାହର ଜୋର ଦେଖି ପୁଣି ଦୂର୍ଗ ମଧ୍ୟରେ ପଶି ରହିଲା ଓ ଅହମ୍ମଦ ଶାହ ସେନା ବଳକୁ ବାହାରୁ ଲଢାଇଲା।

## ଦିବାନ କୌଡ଼ା ମଲ୍ଲର ମୃତ୍ୟୁ

କୁହାଯାଇଛି କି ଏହି ଯୁଦ୍ଧ ୫ମାସ ଯାଏଁ ଲାଗି ରହିଲା। ପରନ୍ତୁ ନିଜ ନିଜ ଦଳ ମଧ୍ୟରେ  ବସି ରହି ଯାହା ଦ୍ୱାରା ଭିତର ଲୋକମାନଙ୍କୁ ଅନ୍ନ-ଜଳର ଅଭାବ ହୋଇଗଲା। ଶେଷରେ ମନ୍ନୁ ବିଚାର କରି ମରାମରିର ନୀତି କରିଲା। ପ୍ରାତଃକାଳ ସମୟରେ ଦୁର୍ଗ ମଧ୍ୟରୁ ବାହାରି ମନ୍ନୁର ଫୌଜ ଅହମ୍ମଦ ଶାହର ଫୌଜଙ୍କୁ ଆକ୍ରମଣ କରିଦେଲେ। ମଧ୍ୟାହ୍ନ ଯାଏଁ ଖୁବ୍ ଯୁଦ୍ଧ ଚାଲିଲା। ମନ୍ନୁ, କୌଡ଼ା ମଲ୍ଲ, ଅଦିନା ବେଗ୍ ଇତ୍ୟାଦି ସାହସୀ ଓ ଯୋଦ୍ଧାମାନେ ଖୁବ୍ ଉତ୍ସାହିତ ଭାବେ ଲଢ଼ିଲେ ଓ ଆଗକୁ

ବଢ଼ି ଚାଲିଲେ। ଅବଶ୍ୟ ଅହମ୍ମଦ ଶାହ କିଛି ସମୟ ଯାଏଁ ଅସ୍ତବ୍ୟସ୍ତ ହୋଇଥିଲା କିନ୍ତୁ ପ୍ରକୃତିକୁ ଏହା ମଞ୍ଜୁର ନ ଥିଲା। ଏହି ଅବସରରେ ଅହମ୍ମଦ ଶାହ ଦୌଡ଼ି ଛିଡ଼ା ହେବା ବେଳେ ମନ୍ନୁର ଫୌଜ ଆଗକୁ ବଢୁଥିଲା, ସେତେବେଳେ ଦିବାନ କୌଡ଼ା ମଲ୍ଲଙ୍କ ହାତୀ ନରମ ମାଟିରେ ଗୋଡ଼ ରଖିବା ଯୋଗୁଁ ସେ ପଡ଼ିଗଲା। କୌଡା ମଲ୍ଲକୁ ପଡ଼ିଯିବା ଦେଖି ଅହମ୍ମଦ ଶାହର ସେନାମାନଙ୍କ ଜଣେ ମୁଖିଆ ଶାହ ଜମୀନ ନିଜର ସୈନ୍ୟ ସହ ଦିବାନକୁ ଆକ୍ରମଣ କରିଦେଲା ଓ ତାଙ୍କ ମୁଣ୍ଡ କାଟିଦେଲା। ବାସ୍! ଦିବାନ କୌଡ଼ା ମଲ୍ଲଙ୍କ ମୃତ୍ୟୁ ଯୋଗୁଁ ବିଜୟ ମୁକୁଟ ପରାଜୟରେ ପରିଣତ ହୋଇଗଲା। ବିଦେଶୀ ପଠାଣ ଫେରୁଥିବାବେଳେ ପୁଣି ଫେରି ଆସି ମନ୍ନୁର ଫୌଜମାନଙ୍କ ପ୍ରତି ଆକ୍ରମଣ କରିଚାଲିଲେ ଓ ଦିବାନ କୌଡ଼ା ମଲ୍ଲର ମୃତ୍ୟୁ ଯୋଗୁଁ ଅନ୍ୟ ଦଳପତି ଓ ସେନାମାନେ ଛିନ୍ନଛତ୍ର ହୋଇଗଲେ। ମନ୍ନୁ ଦୌଡ଼ି ଯାଇ ଦୁର୍ଗ ମଧ୍ୟରେ ଲୁଚିଗଲା ଓ ପୁଣି ଅହମ୍ମଦ ଶାହର ସମ୍ମୁଖରେ ହାଜିର ହୋଇ କ୍ଷମା ମାଗିଥିଲା। ସେତେବେଳେ ସିଂହମାନେ ଆଡ଼େଇ ହୋଇଥିଲେ କିନ୍ତୁ ସମୟ ଅନୁଯାୟୀ ସେମାନେ ମଧ୍ୟ ଯୁଦ୍ଧ ଛାଡ଼ି ଲୁଚିଗଲେ ଓ ଜଙ୍ଗଲ ଭିତରେ ରହିଗଲେ।

ପାଠକବୃନ୍ଦ ପଢ଼ି ସାରିଛନ୍ତି ଅହମ୍ମଦ ଶାହର ଚତୁର୍ଥ ଯୁଦ୍ଧର ସମୟ ଯାହାକି ଆକ୍ରମଣ ହୋଇଥିଲା, ସେତେବେଳେ ଶିଖ ପନ୍ଥର ବଡ଼ ସମ୍ମାନ ସତ୍କାର କରିବା କୌଡ଼ା ମଲ୍ଲ ମଧ୍ୟ ଶହୀଦ ହୋଇଗଲେ। ସେଥିଯୋଗୁଁ ସ୍ୱାଭାବିକ ଥିଲା କି ମୁସଲମାନ ହାକିମ ସିଂହମାନଙ୍କ ଶତ୍ରୁ ଥିଲେ। ଦିବାନ କୌଡ଼ା ମଲ୍ଲଙ୍କ ସମୟରେ ସିଂହମାନେ ପ୍ରାୟ ୨/୩ ବର୍ଷ ଖୁସିରେ ସମୟ କଟାଇଥିଲେ। ପରନ୍ତୁ ପୁଣି ସିଂହମାନଙ୍କ ବଦନାମ କରିବା ମାନେ ବଳବନ୍ତ ହୋଇଗଲେ ଓ ଅହମ୍ମଦ ଶାହର ଫୌଜ ସହ ଜହାଁନ ଖାଁର ଦଳରେ ୫ ହଜାର ସୈନିକ ଥିଲେ, ଯାହାର ଅହମ୍ମଦ ଶାହ କାବୁଲ ଯିବା ବେଳେ ଲାହୋର ଠାରେ ମୀର ମନ୍ନୁକୁ ନଜର ରଖିବା ପାଇଁ ରଖା ଯାଇଥିଲା। ସେହି ସରଦାରକୁ ଯେତେବେଳେ ଅହମ୍ମଦ ଶାହ ଲାହୋର ଫୌଜମାନଙ୍କ ସହ ଲଢ଼ିବା ବେଳେ ସିଂହମାନଙ୍କ ଠିକଣା ଖୋଜି ବାହାର କରି ବହୁତ ହଇରାଣ କରିଥିଲା। ସେଥିଯୋଗୁଁ ନିଷ୍ପତ୍ତି ନିଆଗଲା କି ସିଂହମାନଙ୍କୁ ସମାପ୍ତ କରାଯାଉ କିମ୍ବା କ୍ରୀତଦାସ କରାଯାଉ। ସିଂହମାନଙ୍କୁ ସର୍ତ୍ତ ଶୁଣାଗଲା, କିନ୍ତୁ ସ୍ୱାଭିମାନୀ ଓ ଦୃଢ଼ ଶ୍ରଦ୍ଧେୟ ସିଂହମାନେ ଜବାବ ଦେଲେ କି ଏହି ପ୍ରସ୍ତାବ ଆମେ ମାନିବୁ ନାହିଁ, ତୁମର ଯାହା ଇଚ୍ଛା ତାହା କର।

## ସିଂହମାନେ ଧର୍ମ ଯୁଦ୍ଧ କରି ଦେଖାଇଲେ

ଏହା ଯୋଗୁଁ ମୋମନ ଖାଁ ଓ ଜାହାନ ଖାଁ ୫୦/୬୦ ହଜାର ଫୌଜ ସହ ସିଂହମାନଙ୍କୁ ମାରିବା ପାଇଁ ବାହାରିଲା । ଏହା ଦେଖି ସିଂହମାନେ ସବୁକିଛି ଛାଡ଼ି ପୁଣି ଜଙ୍ଗଲରେ ପଶିଗଲେ ଓ ଦିନରାତି ଛାପା ମାରି ସେମାନଙ୍କୁ ବ୍ୟତିବ୍ୟସ୍ତ କରିଲେ । ବହୁତ ଦଳ ଭାବେ ବାଣ୍ଟି ହୋଇଗଲେ ଓ କେତେ ମାଇଲ ଯାଏଁ ବିସ୍ତାରିତ ହୋଇ ଯାହାକୁ ଯେମିତି ସୁବିଧା ହେଉଥିଲା ସେମିତି ଶତ୍ରୁମାନଙ୍କୁ ଲକ୍ଷ ରଖି ଲୁଟପାଟ କରି ଅସ୍ତବ୍ୟସ୍ତ କରିପକାଉଥିଲେ । ଯାହାଦ୍ୱାରା ସୈନ୍ୟମାନଙ୍କ ଶକ୍ତି ଓ ବୁଦ୍ଧି କାମ କରୁ ନ ଥିଲା ।

ଅହମ୍ମଦ ଶାହର ଏହି ସୈନ୍ୟମାନଙ୍କ ଜହାଁନ ଖାଁ ମଧ୍ୟ ଏହି ଉଦ୍ଦେଶ୍ୟରେ ଥିଲା, ତାହାକୁ ସିଂହମାନେ ବହୁତ ହଇରାଣ କରିଥିଲେ ଓ ମୋମନ ଖାଁ, ଯାହାକୁ ଏହାର ଅଧୀନତ୍ୱ ଦେଇ ପଠାଯାଇଥିଲା, ସେ ଅନ୍ୟ କାହାକୁ ସେନାମାନଙ୍କ ଦାୟିତ୍ୱ ଦେଇ ନିଜେ ବାହାନା କରି ଲାହୋର ଚାଲିଗଲା । ଜହାଁନ ଖାଁ ଭାବିଲା ଯଦି ସିଂହମାନେ ସାମ୍ନାକୁ ଆସନ୍ତେ ତାହାଲେ ଲଢ଼େଇର ସ୍ୱାଦ ଆସନ୍ତା । ଏମିତି କିଛି ମଜା ଆସୁ ନାହିଁ। କିଛି ଗୋଟିଏ ବିଚାର ଆସିଲା ନିଜ ବୁଦ୍ଧି ଯୋଗୁଁ ସେ ସତଲୁଜ ଓ ବ୍ୟାସର ମିଳନ ହେଉ । ସେଠାରୁ ସେ ଲୋକ ପଠାଇଲା ଓ ଗୋଟିଏ ଚିଠି ସିଂହମାନଙ୍କୁ ପଠାଇଲା । ସେଥିରେ ଲେଖିଲା, ଶୁଣିଛୁ କି ଆପଣମାନେ ବହୁତ ସାହସୀ ଓ ନିର୍ଭୀକ ବାହାଦୁର ଆପଣ ମାନେ ସିଂହ ଅଟନ୍ତି ଓ ଆମ୍ଭେମାନେ ମଧ୍ୟ ଆଫଗାନର ବହୁତ ଶକ୍ତିଶାଳୀ ବୋଲି ସମସ୍ତେ ଜାଣନ୍ତି, ସେଥିଯୋଗୁଁ ଆସ ଧର୍ମଯୁଦ୍ଧ କରିବା, ଜଣକ ସହ ଜଣେ ଲଢ଼ି ଦେଖ, ମୋର ଏହି ଇଚ୍ଛା । ଏହିପରି ଭାବେ ଖରାପ ନ ହେଉ । ଯଦି ଆପଣମାନେ ମୋର ଏହି ପ୍ରସ୍ତାବକୁ ନ ମାନନ୍ତି ତାହେଲେ ମୁଁ ଭାବିବି କି ଆପଣମାନେ ଚୋର, ଡାକୁ ଅଟ, ଲୁଟେରା ମଧ୍ୟ ଅଟ । ସିଂହ ନୁହଁ ଓ ଏହିପରି ବହୁତ କିଛି ଲେଖିଲା ଓ ଶେଷରେ ଏହା ମଧ୍ୟ ଲେଖିଲା କି ଆପଣମାନଙ୍କୁ ଆପଣଙ୍କ ଗୁରୁଙ୍କ ରାଣ, ଥରେ ଆସି ଆମ ସହିତ ଯୁଦ୍ଧ କର, ଆମ ସହିତ ଧର୍ମଯୁଦ୍ଧ କର, ଏକା ଏକା ଲଢ଼ ନାହିଁ, ତୀର ବନ୍ଧୁକ ଚଳାଇବା ନାହିଁ କେବଳ ଖଣ୍ଡା ଯୁଦ୍ଧ କରିବା ।

ଗୁରୁଙ୍କ ରାଣ ଓ ତାହା ଉପରେ ବିଭିନ୍ନ ପ୍ରକାରର ଢଙ୍ଗହୀନ କଥା କିଏ ସମ୍ଭାଳିବ ? ସିଂହମାନଙ୍କୁ ଏହା ତୀର ବିନ୍ଧି ହେଲା ଭଳି ଲାଗିଲା ଓ ଜୟ ଜୟକାର

ଛାଡ଼ିଲେ। କହିବାକୁ ଲାଗିଲେ- "ଆସ ଯାହାକୁ ଆସିବାକୁ ଅଛି, ଖାଲସାମାନେ ପ୍ରସ୍ତୁତ ଅଛନ୍ତି ଓ ବର୍ତ୍ତମାନ ଯଦି ତୁମେମାନେ ଆସିବ ନାହିଁ, ତାହେଲେ ତୁମମାନଙ୍କୁ ତୁମର କୋରାନର ରାଣ।"

ଖାଲସାମାନଙ୍କ ଜବାବ ଶୁଣି ଜଣେ ଲୁହାରେ ଜଡ଼ୀଭୂତ ଜଣେ ରାକ୍ଷସ-ରୂପକ ଗିଲଜା ପଠାଣ ଚିତ୍କାର କରି ନଦୀ ମଝିରେ ଆସି ଛିଡାହେଲା ଓ ଲଲକାର କରି କହିଲା କି ଆସ କିଏ ସିଂହ ମୋ ସାମ୍ନାକୁ ଆସ। ଅନ୍ୟପଟରେ କସୁର ନିକଟରେ ମୁସଲମାନମାନେ ଛିଡ଼ା ହୋଇଥିଲେ ଓ ଫିରୋଜପୁରର ନିକଟରେ ଖାଲସା ଦଳ ଛିଡ଼ା ହୋଇଥିଲେ। ମଝିରେ ମାଇଲ ଦେଢ଼ ମାଇଲର ଚଉଡା ଥିଲା ଯାହାକି ନଦୀ ବୋହୁଥିଲା, କିନ୍ତୁ ତାହା ଶୁଖିଲା ଥିଲା। ତାହା ମଝିରେ ଗୋଟିଏ ଉଚ୍ଚା ସ୍ଥାନରେ ଗୋଟିଏ ପଠାଣ ଛିଡା ହୋଇ କିଳିକିଳା ରାବ ଛାଡୁଥିଲା।

ସର୍ଦ୍ଦାର ଚଢ଼ତ ସିଂହଜୀ ସେତେବେଳେ ନବଯୌବନର ଥିଲେ। ସେ କହିଲେ ମୋତେ ପଠାଇଦିଅ, ଏହି ପଠାଣକୁ ମୁଁ ମଜା ଚଖାଇବି। ଏହା ଶୁଣି ନବାବ କପୁର ସିଂହଜୀ କହିଲେ, ଚଢ଼ତ ସିଂହ! ଦେଖୁ ନାହଁ କେମିତି ଏହି ଦୁଷ୍ଟ ଶତ୍ରୁ ଲୁହାରେ ଛାଉଣୀ ହୋଇ ରହିଛି ? ତୁମକୁ ବର୍ତ୍ତମାନ ଲଢ଼େଇର କୂଟନୀତି ଶିଖିବାକୁ ପଡ଼ିବ। ଏହାର ସାମ୍ନା ପାଇଁ ଜଣେ ପାରଙ୍ଗମ କୂଟନୀତିକ ଓ ଯୋଦ୍ଧାଙ୍କୁ ପଠାଇବାକୁ ପଡ଼ିବ।

ଏହା ବହୁତ କଷ୍ଟକର ପରୀକ୍ଷା ସମୟ ଥିଲା। ଆମନା ସାମନା କରିବାର ଜ୍ଞାନ ସିଂହମାନଙ୍କ ପରାଜୟ, ଶିଖପନ୍ଥର ପରାଜୟ ହେଉଥିଲା। ନବାବ କପୁର ସିଂହଜୀ ଏହା ବିଚାର କରି ସିଂହମାନଙ୍କ ତରଫକୁ ଦେଖୁଥିଲେ ଓ ତାଙ୍କ ନଜର ଭାଇ ସୁଖ୍ଖା ସିଂହଜୀ ମାଡ଼ି କମ୍ଭୋକି ବାସିଙ୍କ ଉପରେ ଥିଲା, ଯାହାର ଗୋଡ଼ ପୂର୍ବ ଯୁଦ୍ଧରେ ତୋପ ମାଡ଼ରେ କଟିଯାଇଥିଲା ଓ ସେହି କଟା ଗୋଡ଼ରେ ବହୁତ ଦିନ ଯାଏଁ ଶତ୍ରୁମାନଙ୍କ ସହ ଲଢ଼ିଥିଲେ। ବର୍ତ୍ତମାନ ଏହି ଯୁଦ୍ଧ ସକାଶେ ତାଙ୍କୁ ଦାୟିତ୍ୱ ଦିଆଗଲା ଓ ସମସ୍ତ ସିଂହମାନେ ମିଶି ଅରଦାଶ କରିଲେ-

'ସତ୍‌ଗୁରୁ "ଚୂଡ଼ାମଣୀ ଧାରୀ" ମହାରାଜ ବର୍ତ୍ତମାନ ଯାଏଁ ଆପଣ ଅଙ୍ଗସଙ୍ଗ ହୋଇ ନିଜର ପନ୍ଥର ରକ୍ଷା କରିଆସୁଛନ୍ତି ଓ ବର୍ତ୍ତମାନ ମଧ୍ୟ ଆପଣଙ୍କ ଦୟାରୁ ଆମେ ସଂହାର କରିଆସୁଛୁ। ସେଥିଯୋଗୁଁ କୃପା କର, ବର୍ତ୍ତମାନ ଏହି ସୁଯୋଗ ମଧ୍ୟ ନିଜର ପନ୍ଥକୁ ବିଜୟ ପ୍ରଦାନ କରନ୍ତୁ।

ଅରଦାଶ ପରେ ନବାବ ସାହିବ ଭାଇ ସୁଖା ସିଂହଙ୍କୁ କାନ୍ଧରେ ହାତ ରଖି ଥାପୁଡ଼ାଇ ଦେଲେ ଓ ଅନ୍ୟ ସିଂହମାନେ ଜୟ ଜୟକାରର ଶବ୍ଦରେ ଆକାଶ ଥରାଇ ଦେଲେ। (ଯୋ- ବୋଲେ- ସୋ- ନିହାଲ୍!- ସତଶ୍ରୀ ଅକାଳ)

ଭାଇ ସୁଖା ସିଂହଜୀ ଜୟ ଜୟକାର ଧ୍ୱନି ସହ ପଠାଣମାନଙ୍କ ଆଡ଼କୁ ଅଗ୍ରସର ହୋଇପଡ଼ିଲେ। ହାତାହାତିରେ ଦୁହେଁ ଧୁରନ୍ଧର ଥିଲେ। ସେଥିଯୋଗୁଁ ହାତାହାତି ଫଳରେ ଢାଲଗୁଡ଼ିକ ଲଣ୍ଡିତ ହୋଇ ବିଖଣ୍ଡ ହୋଇଗଲେ ଓ ଦୁଇଜଣଙ୍କ ତଲବାର ମଧ୍ୟ ଭାଙ୍ଗିଗଲା। ଯେତେବେଳେ ହାତ ଖାଲି ହୋଇଗଲା ତା'ପରେ ହାତରେ ଚମତ୍କାର ଚାଲିଲା ଓ ଏତେ ବେଶି ଯୁଦ୍ଧ ଚାଲିଲା କି ଦୁହେଁ ଥକି ଧଇଁସଇଁ ହୋଇ ତଳେ ପଡ଼ିଗଲେ।

କେତେସମୟ ଯାଏଁ ଦୁହେଁ ଉଠିନଥିଲେ, କିନ୍ତୁ ଅଳ୍ପ ସମୟ ପରେ ସିଂହଜୀଙ୍କ ହୋସ ଆସିଲା। ପଠାଣକୁ ବେହୋସ ଦେଖି ବଡ଼ ଫୂର୍ତ୍ତି ସହ କଟାରରେ ପଠାଣର ସାଞ୍ଜୁ ବାହାର କରି ତାହାର କାମ ଶେଷ କରିଦେଲେ ଓ ସ୍ୱୟଂ ଜୟ ଜୟକାର ଛାଡ଼ି ସିଂହମାନଙ୍କ ନିକଟରେ ପହଞ୍ଚିଗଲେ।

ପୁଣି ଦୁଇଜଣ ପଠାଣ ଆସିଲେ ଓ ସିଂହ ଦୁଇ ଜଣ ହିଁ ଗଲେ। ପୁଣି ଆହୁରି ଦୁଇଜଣ ଏହିପରି କୁହାଯାଇଛି କି ୧୨ଜଣ ପଠାଣ ଓ ଚାରି ସିଂହ ଶହୀଦ ହୋଇଥିଲେ। ଏହା ଦେଖି ପଠାଣ ଅସହ୍ୟ ହୋଇଗଲେ ଦେଇଥିଲା ରାଣକୁ ମଝିରେ ଫୋପାଡ଼ି ଏକାଥରେ ସିଂହମାନଙ୍କ ତରଫକୁ ଦୌଡ଼ି ଆସିଲେ। ସିଂହମାନେ କଣ ଅଳସୁଆ ଥିଲେ ? ବହୁତ ଭୟଙ୍କର ଯୁଦ୍ଧ ହୋଇଥିଲା। ଯୋଗରେ ଆସି ସିଂହମାନେ ଶତ୍ରୁଙ୍କ ଦଳ ମଝିରେ ପଶି ଦଳ ଦଳ ହୋଇ ଲଢ଼ି ଚାଲିଲେ ଓ ଯେଉଁ ପଠାଣମାନେ କିଳିକିଳା ରାବ ଦେଉଥିଲେ ପ୍ରଥମେ ସେମାନଙ୍କ ଭାଗ ଆସିଲା ଓ ଏହି ଯୁଦ୍ଧ କ୍ଷେତ୍ରରେ ସିଂହମାନେ ବିଜୟ ହୋଇଥିଲେ।

## ମୀର ମନ୍ନୁର ଅତ୍ୟାଚାର

ଯେତେବେଳେ ମୁହାଁମୁହିଁ ଲଢ଼େଇ ଦ୍ୱାରା ମୁସଲମାନ ସେନାମାନେ ସିଂହମାନଙ୍କର କିଛି ଅନିଷ୍ଟ କରିପାରିନଥିଲେ, ସେଥିଯୋଗୁଁ ପୁଣି ମୁସଲମାନ ହାକିମମାନେ ଓଲଟା ବୁଦ୍ଧି ଆରମ୍ଭ କରିଦେଲେ, ସିଂହମାନଙ୍କ ଗାଁମାନଙ୍କର ଆରାମରେ ରହୁଥିବା ନିରୀହ ବାଳକମାନଙ୍କୁ ଧରି ଆଣିବା ଆରମ୍ଭ କରିଦେଲେ।

ଦୁଷ୍ଟ ପାପୀମାନଙ୍କର ୫ଗୋଟି ଅଙ୍ଗୁଳି ଘିଅରେ ବୁଡ଼ିରହିଲା । ପ୍ରଥମେ ସିଂହମାନଙ୍କୁ ଧରୁଥିଲେ, ବର୍ତ୍ତମାନ ଠିକଣା ପଚାରି ପଚାରି ସିଂହମାନଙ୍କ ସ୍ତ୍ରୀ ଓ ପିଲାମାନଙ୍କୁ ଧରିବା ଆରମ୍ଭ କରିଦେଲେ । ମୁସଲମାନ ଫୌଜ ଦ୍ୱାରା ସିଂହମାନଙ୍କ ଘର ଧନ ସମ୍ପତ୍ତି ଲୁଟି ଚାଲିଲେ ଓ ଘର ଧ୍ୱଂସ କରିଲେ ଓ ପୂରା ଦେଶରେ ଚାଞ୍ଚଲ୍ୟ ଖେଳିଗଲା । ବହୁତ ସିଂହ ସ୍ତ୍ରୀମାନେ ସନ୍ତାନ-ସନ୍ତତିମାନଙ୍କୁ ଦୌଡ଼ି ଦୌଡ଼ି ଲୁଟିବା ଆରମ୍ଭ କରିଦେଲେ । କେତେଜଣ ଫୌଜମାନଙ୍କ ସହ ଲଢ଼େଇ କରିଲେ ଓ ରାସ୍ତାରେ ଶହୀଦ ହେଉଥିଲେ । ବନ୍ଦୀ ହୋଇ ଲାହୋର ଯାଉଥିଲେ । କେତେଜଣ ଦୌଡ଼ି ଦୌଡ଼ି ଜଙ୍ଗଲରେ ସିଂହମାନଙ୍କ ପାଖରେ ପହଞ୍ଚି ଦୁଷ୍ଟମାନଙ୍କର ଏହି ଖବର ସିଂହମାନଙ୍କୁ ଶୁଣାଇଲେ ।

ବୃଦ୍ଧା ସ୍ତ୍ରୀଙ୍କୁ ଫୌଜମାନେ ରାସ୍ତାରେ ମାରିଦେଉଥିଲେ । କିନ୍ତୁ ଯୁବତୀ ସ୍ତ୍ରୀଙ୍କୁ ସୁରକ୍ଷା ସହ ଲାହୋର ପଠାଇ ସୁବାର ଖୁସୀର ପାତ୍ର ହେଉଥିଲେ ।

ଲାହୋର ଠାରେ ବର୍ତ୍ତମାନ ସମୟରେ ସିଂହ ସ୍ତ୍ରୀମାନଙ୍କର ଶହୀଦଗଞ୍ଜ ଅଛି, ସେଠାରେ ସବୁସ୍ତ୍ରୀମାନଙ୍କୁ ଏକାଠି ବନ୍ଦୀ କରିଦିଆଗଲା । ବହୁତ ଦିନ ଯାଏଁ ଖାଦ୍ୟପାନୀୟ ନ ଦେଇ ରଖାଗଲା । ଛୋଟ ଛୋଟ ପିଲାମାନେ ଦୁଧ ପିଇବାପାଇଁ କାନ୍ଦି କାନ୍ଦି ଶରୀର ଚିପି ହୋଇ ଲାଗି ରହୁଥିଲେ । କିନ୍ତୁ ମା'ମାନେ ଭୋକରେ ରହୁଥିଲେ, ସେଥିଯୋଗୁଁ ସେମାନେ କେଉଁଠି ଦୁଧ ପିଆଇପାରିବେ ?

ଧୈର୍ଯ୍ୟ-ଧନ୍ୟବାଦର ଆଶ୍ରୟରେ ବାହାରକୁ ବାହାରୁ ନ ଥିଲେ, ପିଲାମାନଙ୍କୁ ବାଣୀ ପାଠର ଭଜନ ଶୁଣାଇ ଶୁଣାଇ ଚୁପ୍ କରାଉଥିଲେ । ଚକ୍କି ପେଷିବାକୁ ମିଳୁଥିଲା, ମହଣ ମହଣ ଦାନା । ପେଷିବାପାଇଁ ମିଳୁଥିଲା, ହୁକୁମ ମିଳୁଥିଲା । କେତେ ଦିନ ପରେ ଅଧା ଅଧା ରୁଟି ଓ ପାଣି ଗିନାରେ ମିଳୁଥିଲା । ଶ୍ରୀ ଗୁରୁ ଅର୍ଜୁନ ଦେବ ଓ ଗୁରୁ ତେଗ ବାହାଦୁରଙ୍କ ପ୍ରସଙ୍ଗକୁ ମନେପକାଇ ଜୀବନ କ୍ଷଣକୁ କଟାଉଥିଲେ । ନିଜର ଦୁଃଖ ଓ କଷ୍ଟକୁ ଧୈର୍ଯ୍ୟ-ଧନ୍ୟବାଦ ସାନ୍ତ୍ୱନା ସହ ଠୋକର ଦ୍ୱାରା ଦୂର କରିବାପାଇଁ ଚେଷ୍ଟା କରୁଥିଲେ ।

ଯେତେବେଳେ ବହୁତ ମାସ ଏହି କ୍ଷୁଧା, ତୃଷା, ଅଧା ରୁଟି ଖାଇ ରହୁଥିଲେ, ଦିନ ମୀର ମନ୍ନୁ ନିଜେ ଆସି ସିଂହ ସ୍ତ୍ରୀମାନଙ୍କୁ କହିଲା, କାହା ପାଇଁ କଷ୍ଟ ଭୋଗୁଛ ? ଯେଉଁ ସିଂହମାନଙ୍କ ସକାଶେ ତୁମେମାନେ ସମୟ ନଷ୍ଟ କରୁଛ ସେମାନେ ଜଙ୍ଗଲ ବାଟବଣା ହୋଇ ବୁଲୁଛନ୍ତି ।

ସିଂହ ସ୍ତ୍ରୀମାନେ କହିଲେ, 'ସୁବା ତୁମର ଏହା ଭ୍ରମ ଅଟେ, ଆମେ ସୁଖ ପାଇଁ କିଛି କରୁନାହିଁ। ଆମ୍ଭେମାନେ କଳଗୀଧର ଚୂଡ଼ାମଣୀଧାରୀଙ୍କ ଅମୃତପାନ କରିଛୁ ତାଙ୍କର ସମ୍ମାନ ସକାଶେ ଏହା କରୁଛୁ ଓ ଜୀବନକୁ ତୁମେ ଦୁଃଖ ଓ କଷ୍ଟ କହି କହି ଆମ୍ଭମାନଙ୍କୁ ଭ୍ରମିତ କରାଉଛ। ଏହା ଆମ ଧର୍ମକୁ ଦୃଢ଼ କରାଉଛି, ଶିଖମାନଙ୍କ ପରୀକ୍ଷା ଦୁଃଖ ମଧ୍ୟରେ ଅଛି। ଯେଉଁ ଇସଲାମ ସକାଶେ ତୁମେ କହୁଛ ତାହା ଆମେ ସ୍ୱୀକାର କରୁ ନାହୁଁ । ଜୀବନ ରହୁ କିମ୍ବା ଯାଉ; ତାହା ଆମ ପାଇଁ କିଛି ଜରୁରୀ ନୁହେଁ। ଶିଖ ଜୀବନ ଆମ୍ଭେ ପ୍ରଥମରୁ ଶିର ଦେଇ ଆସିଛୁ, ଯେତେବେଳେ ଆମ୍ଭେ ଅମୃତପାନ କରିଥିଲୁ। ଏହି ଶିର ସତ୍‌ଗୁରୁଜୀଙ୍କ, ଏହା ଶିଖଙ୍କ ସକାଶେ ପ୍ରାୟୋଜିତ ଅଟେ। ଜୀବନର ସୁଖ ସକାଶେ ଆମେ ସତ୍‌ଗୁରୁଜୀଙ୍କ ନିକଟରୁ ଦୂରେଇ ବେମୁଖ ହୋଇ ରହିବୁ ନାହିଁ । ଅତ୍ୟାଚାରୀ ମନୁ ସିପାହୀମାନଙ୍କୁ ଆଦେଶ ଦେଲା ଏହି ସିଂହ ସ୍ତ୍ରୀ ଲୋକମାନଙ୍କଠାରୁ ଛୋଟ ଛୋଟ ପିଲାମାନଙ୍କୁ ଛଡ଼ାଇ ତାଙ୍କ ସାମନାରେ ହିଁ ଖଣ୍ଡ ଖଣ୍ଡ କରି କାଟିଦିଅ। ଦେଖିବି ସେମାନେ ମୋର ଆଦେଶ କେମିତି ମାନିବେ ନାହିଁ ?

ଆଉ କି କଥା ଥିଲା, ଅତ୍ୟାଚାରୀମାନେ ପିଲାମାନଙ୍କୁ ଯେମିତି ଇଚ୍ଛା ସେମିତି ଛଡ଼ାଇ ନେଲେ। ବିକଳରେ କାନ୍ଦି ବୋବାଉଥିବା ପିଲାମାନଙ୍କୁ ମାରିଦେଲେ। କାହାକୁ ତଲବାରରେ କାହାକୁ ନେଜା (ବର୍ଚ୍ଛା)ରେ। ସେହି ମାଆମାନେ ଧନ୍ୟ ଥିଲେ। ପିଲାମାନଙ୍କୁ ମାରୁଥିବା ଅବସ୍ଥାରେ ଦେଖି, ଧନ୍ୟ ସତ୍‌ଗୁରୁ! ଧନ୍ୟ ୱାହେଗୁରୁ! କହୁଥିଲେ ଓ ଏହା ମଧ୍ୟ କହୁଥିଲେ କି ' ହେ ପାତଶାହ ! ଏହା ମଧ୍ୟ ଇଚ୍ଛା ହେଲା, ଯାହାକି ଆଗର ପିଲାମାନେ ଶହୀଦ ହେଉଛନ୍ତି। ଶିଖ ହୋଇଥିବା ଯୋଗୁଁ ସେମାନଙ୍କୁ ମାରୁଛନ୍ତି। ଯଦି ଏହି ଅତ୍ୟାଚାରୀମାନେ ଆମ୍ଭମାନଙ୍କୁ ମାରି ଆମ୍ଭ ପିଲାମାନଙ୍କୁ ପାଳିବେ ଓ ସେମାନେ ବଡ଼ ହୋଇ ମୁସଲମାନ ହୁଅନ୍ତୁ। ସେଥିପାଇଁ ହେ ୱାହେଗୁରୁଜୀ ! ଆପଣଙ୍କୁ ଧନ୍ୟବାଦ। ସେଥିପାଇଁ ଏହି ପାପୀମାନଙ୍କୁ ପାପ କରିବା ପାଇଁ ଅଟକାଇଲେ ନାହିଁ ଓ ଆମର ଗର୍ଭରେ ଦାଗ ଲଗାଇ ଦେଲେ ନାହିଁ।

ଏମିତି ଅତ୍ୟାଚାର କରି ମଧ୍ୟ ତାଙ୍କୁ ଶାନ୍ତି ମିଳୁ ନ ଥିଲା। ସିଂହ ସ୍ତ୍ରୀମାନଙ୍କୁ ଅନବରତ ଲୁହ ବୋହିବା ଦେଖି ଭାବିଲା କି ବର୍ତ୍ତମାନ ସେମାନେ ମୋର ହୁକୁମ ମାନିଯିବେ। ସେ କହିଲା- "ବର୍ତ୍ତମାନ ମଧ୍ୟ ସମୟ ଅଛି ମୋ କଥା ମାନି ଇସଲାମ ଗ୍ରହଣ କର।" ତା ସହିତ ସେମାନଙ୍କୁ ସୁଖର ଲୋଭ ମଧ୍ୟ ଦେଖାଇଲା।

ପରନ୍ତୁ ସିଂହ ସ୍ତ୍ରୀମାନେ କହିଲେ- "ଏ ଅତ୍ୟାଚାରୀ ! ଯେଉଁ ବିଚାର ଓ ମତର ଲୋକମାନେ ଏତେ ଅତ୍ୟାଚାରୀ, ନିର୍ଦ୍ଦୟ ତଥା ନୀଚ ହୋଇ ଶିଶୁମାନଙ୍କୁ ମାରିବା ପାଇଁ କୁଣ୍ଠାବୋଧ କରନ୍ତି ନାହିଁ, ଏମିତିକା ଧର୍ମ ଗ୍ରହଣ କିଏ କରିବ ? ନର୍କର ନିଆଁରେ ତୁମ ଭଳି ପାପୀମାନଙ୍କୁ ଜାଳିବା ପାଇଁ ହୁ-ହୁ ହୋଇ ଜଳି ରହିଛି। ତୁ ଆହୁରି ଅତ୍ୟାଚାର କର, ମନଇଚ୍ଛା ଯେତେ ଯାହା କର, ପରନ୍ତୁ ଏହି ଆଶା ଛାଡ଼ିଦେ କି ଆମେମାନେ ମୁସଲମାନ ହେଇଯିବୁ। ଯାହା ଇଚ୍ଛା ତାହା କର, ଆମ୍ଭମାନଙ୍କୁ ଖଣ୍ଡ ଖଣ୍ଡ କରିପାରୁ, ଆମେ ଆମର ଧର୍ମ ଛାଡ଼ିବୁ ନାହିଁ।"

ଏହା ଶୁଣି ପାପୀ ମନ୍ନୁ ସିଂହ ସ୍ତ୍ରୀମାନଙ୍କୁ ଚାବୁକ୍‌ରେ ମାରି ଘାଇଲା କରିଦେଲା, ପରନ୍ତୁ କେହି ତାହାର କଥା ଶୁଣିଲେ ନାହିଁ। ପୁଣି ସେ ଭାବିଲା କାଲି ହୁଏତ୍ ମନ ବଦଳାଇ ଦେବେ, ଏହା ଭାବି କାଲିପର୍ଯ୍ୟନ୍ତ ଅପେକ୍ଷା କରିଲା।

## ସିଂହ ସ୍ତ୍ରୀମାନଙ୍କ ପ୍ରାର୍ଥନା ଯୋଗୁଁ ମନ୍ନୁର ମୃତ୍ୟୁ

ଯେତେବେଳେ ମନ୍ନୁ ଚାଲିଗଲା ଓ ସିଂହ ସ୍ତ୍ରୀମାନେ ପରେ ବହୁତ ଦୁଃଖିତ ହୃଦୟରେ ସତ୍‌ଗୁରୁଜୀଙ୍କ ପାଖରେ ପ୍ରାର୍ଥନା କରିଲେ ଓ ସମସ୍ତେ ମିଶି ଏକାଗ୍ର ଚିତ୍ତରେ ସତ୍‌ଗୁରୁଜୀଙ୍କ ଶ୍ରୀଚରଣ କମଳ ଯାଏଁ ସ୍ୱର ପହଞ୍ଚାଇଲେ, 'ହେ ପାତଶାହ ! କ୍ଷମା କରନ୍ତୁ ଆମର ଭୁଲ୍‌କୁ କ୍ଷମା କରନ୍ତୁ ଓ ଏହି ସମୟରେ ଆପଣ ଆମ୍ଭମାନଙ୍କ ଲଜ୍ଜା ହରଣ କରନ୍ତୁ। ପୁଣି ଫରୀଦଜୀଙ୍କ ଶ୍ଳୋକ ସମସ୍ତେ ମିଶି ପାଠ କରିଲେ।

ଫରିଦା ଚିନ୍ତ ଖଟୋଲା ବାଣୁ ଦୁଃଖୁ ବିରହି ବିଛାବଣ ଲେଫୁ।।
ଏହୁ ହମାରା ଜୀବଣା ତୁ ସାହିବ ସଚେ ବେଖୁ ।। ୩୫ ।।

ସିଂହ ସ୍ତ୍ରୀମାନେ ସତ୍‌ଗୁରୁଜୀଙ୍କ ଶ୍ରୀଚରଣରେ ଯୋଡ଼ି ହୋଇ ବସିଥିଲେ, କଣ ହେଲା ସେତେବେଳେ ? ମନ୍ନୁ ସେଠାରୁ ଯାଇ ଘୋଡ଼ା ଚଢ଼ି କେତେଜଣ ଫୌଜଙ୍କ ସହିତ ଶିକାର ସକାଶେ ଚାଲିଗଲା। ସେ ବହୁତ ଦୂରକୁ ଚାଲିଗଲା। କୌଣସି କାରଣବଶତଃ ଘୋଡା ଅଚାନକ ବହୁତ ଜୋରରେ ହଲିଲା ଓ ମନ୍ନୁ ଘୋଡ଼ା ଉପରୁ ତଳକୁ ଖସି ପଡ଼ିଲା, ପରନ୍ତୁ ପାପୀକୁ ସାଂଘାତିକ ଭାବେ ମୃତ୍ୟୁ ଯୋଗ ଥିଲା। ସେଥିଯୋଗୁଁ ତାହାର ଗୋଟିଏ ଗୋଡ଼ ଲଗାମ ମଝିରେ ଫସିଗଲା ଓ ଘୋଡ଼ା ବଡ଼ ବ୍ୟସ୍ତ ହୋଇ ବହୁତ ଦୌଡ଼ିଲା। ମନ୍ନୁ ତାସହିତ ଘୋଷାରି ହୋଇ ଚାଲିଲା। ତାହାର ହାତ, ମୁହଁ, କାନ୍ଧ ଘୋଷାଡ଼ି ହୋଇ ରକ୍ତାକ୍ତ ହୋଇଗଲା ଓ

କେତେ ଘଣ୍ଟା ଯାଏଁ ଘୋଡ଼ା ଦୌଡ଼ି ଦୌଡ଼ି ଶେଷରେ ଲାହୋର ପଟକୁ ଘୁରିଗଲା। ସେପଟେ ସିଂହମାନଙ୍କୁ ମଧ୍ୟ ଖବର ମିଳିଗଲା କି ସିଂହ ସ୍ତ୍ରୀମାନେ ବନ୍ଦୀ ହୋଇଛନ୍ତି। ସେମାନେ ଜଙ୍ଗଲରେ ଲାହୋର ପାଖାପାଖି ହୋଇ ଘୂରି ବୁଲୁଥିଲେ। ସେମାନେ ସୁଯୋଗ ଖୋଜୁଥିଲେ। ସେତେବେଳେ ମନ୍ନୁର ମୃତ୍ୟୁ ଖବର ମିଳିଲା।

ମନ୍ନୁର ମୃତ ଶରୀର ଲାହୋର ପହଞ୍ଚିବା ପୂର୍ବରୁ ସିଂହମାନେ ଲାହୋର ଠାରେ ଏକାଠି ହୋଇଗଲେ ଓ କ୍ରୋଧିତ ହୋଇ ମାରକାଟରେ ଲାଗିପଡିଲେ। ମନ୍ନୁ ମରିଯିବା ଯୋଗୁଁ ସେନାମାନେ ପ୍ରାଣ ବଞ୍ଚାଇବାକୁ ଲାଗିଲେ ଓ ସିଂହମାନେ ଅନ୍ଧାରର ଆଶ୍ରୟ ନେଇ ଲାହୋର ଠାରେ ପହଞ୍ଚି ସିଂହାନୀମାନଙ୍କୁ ବନ୍ଦୀ ଗୃହରୁ ବାହାର କରିବା ପାଇଁ ସଫଳ ହୋଇଗଲେ ଓ ସେହିପରି ଭାବେ ସତ୍‌ଗୁରୁ ମହାରାଜ ସିଂହ ସ୍ତ୍ରୀମାନଙ୍କ ଲାଜ ରଖିଲେ ଓ ଅତ୍ୟାଚାରୀର ଅତ୍ୟାଚାର ତାକୁ ଗୋଟିଏ ଗୋଟିଏ ଫଳ ମିଳିଗଲା।

କୁହାଯାଇଛି କି ସେହି ସମୟରେ ଫୌଜମାନଙ୍କର କେତେମାସର ବେତନ ବାକି ଥିଲା। ସେଥିଯୋଗୁଁ ଫୌଜମାନେ ସୁଯୋଗର ଫାଇଦା ଉଠାଇ ମନ୍ନୁର ମୃତ ଶରୀରକୁ ଘେରାଉ କରିଦେଲେ। ଯେତେବେଳ ଯାଏଁ ସେମାନେ ମୃତ ଶରୀର ଦେଇନଥିଲେ ସେଥିଯୋଗୁଁ ତାହାର ବେଗମ ମୁସ୍କିଲରେ ସେନାମାନଙ୍କୁ କିଛି କିଛି ବେତନ ଦେଇ ପାଞ୍ଚ ଦିନ ପରେ ମନ୍ନୁର ମୃତ ଶରୀରକୁ କବର କରାଇଥିଲା।

## ଅହମ୍ମଦ ଶାହ ପଞ୍ଚମ ଆକ୍ରମଣ

ମନ୍ନୁର ମୃତ୍ୟୁ ପରେ ତାହାର ବେଗମ (ରାଣୀ), ଓ ମୀର ମୋମନ ସିଂହମାନଙ୍କ ପିଛା ଛାଡ଼ି ନ ଥିଲା; କିନ୍ତୁ ଅତି ଶୀଘ୍ର ମୁରାଦ ବେଗମର ମନଇଚ୍ଛା ଯୋଗୁଁ ସମସ୍ତ ପରାମର୍ଶଦାତାଙ୍କୁ ଦୁଃଖିତ କରାଇଦେଲା। ମୀର ମୋମନ ସିଂହମାନଙ୍କ ସହ ମନ୍ନୁକୁ ଯେମିତି ଦଣ୍ଡ ମିଳିଥିଲା ସେମିତି ଦଣ୍ଡ ଦେଉଥିଲା ଓ ଦୁର୍ବ୍ୟବହାର କରୁଥିଲା। ଯେତେବେଳେ ଭାଇ କପୂର ସିଂହଙ୍କ କହିବା ଯୋଗୁଁ କେତେଜଣ ସିଂହ ତାହାର ଶିକାର ସକାଶେ ବାହାରିଲେ, ସେତେବେଳେ ଭାଇ ଅଘଡ଼ ସିଂହ (ଶହୀଦ, ଭାଇ ମନୀ ସିଂହଜୀଙ୍କ ପୁତୁରା) ନିଜର ବେଶ ପରିବର୍ତ୍ତନ କରି ଲାହୋର ଗଲେ ଓ ମୀର ମୋମନର ମସ୍ତକ କାଟି ନେଇ ଆସିଲେ। ତାହାର

ମୃତ୍ୟୁ ପରେ ମୁରାଦ ବେଗମ ଦୁର୍ବଳ ହୋଇଗଲା ଓ ଯେତେବେଳେ ତାହାର ଶକ୍ତି ଦୁର୍ବଳ ହୋଇଗଲା ସେ ତୁରନ୍ତ ଅହମ୍ମଦ ଶାହ ପାଖକୁ ଗଲା ଓ ତାହାକୁ ଆକ୍ରମଣ ସକାଶେ ଆଣିଲା।

ଏହା ୧୮୧୨ ମସିହାର କଥା ଓ ଅହମ୍ମଦ ଶାହର ପଞ୍ଚମ ଥର ଆକ୍ରମଣ ଥିଲା। ସିଂହମାନେ ମଧ୍ୟ ସମୟର ସୁଯୋଗ ଉଠାଇ ଦୋଷୀମାନଙ୍କୁ ଖୁବ୍ ଦଣ୍ଡ ଦେଇଥିଲେ। ଅହମ୍ମଦ ଶାହ ଏହି ସମୟରେ ଦିଲ୍ଲୀ ଆକ୍ରମଣ କରିଲା। ଲାହୋରକୁ ଅଧିକାର କରିସାରିଥିଲା। କିନ୍ତୁ ଏହିଥର ସେ ଜଲନ୍ଧର ଓ ସରହନ୍ଦକୁ ମଧ୍ୟ ଅକ୍ତିଆର କରିନେଲା। ବର୍ତ୍ତମାନ ସିଂହମାନଙ୍କ ମସ୍ତକ ସିଧା କାବୁଲ ଶତ୍ରୁଙ୍କ ଅଧୀନରେ ରହିଲା।

### ଅହମ୍ମଦ ଶାହ ସିଂହମାନଙ୍କ ସାହସ ଦେଖିଲା

ଯେତେବେଳେ ଅହମ୍ମଦ ଶାହ ଦିଲ୍ଲୀ ଠାରୁ ମୁହଁ ଫେରାଇଲା ସେତେବେଳେ ପ୍ରାୟ ୨୦ ଜଣ ସିଂହଙ୍କୁ ଧରିନେଇ ଅହମ୍ମଦ ଶାହ ନିକଟରେ ପ୍ରସ୍ତୁତ କରାଇଲେ। ସେମାନଙ୍କ ମଧ୍ୟରେ ଭାଇ ତାରୁ ସିଂହ, ବାଘ ସିଂହ ଇତ୍ୟାଦି ପ୍ରସିଦ୍ଧ ବାହାଦୁର ଧୈର୍ଯ୍ୟଶୀଳ ସିଂହ ମଧ୍ୟ ଥିଲେ। ଅହମ୍ମଦ ଶାହ କହିଲା, ତୁମେମାନେ ନିଜକୁ ନିଜେ ସିଂହ କାହିଁକି କୁହୁଛ ? ସିଂହର ଅର୍ଥ ସିଂହ (ଶେର) ଅଟେ। ଯଦି ତୁମେ ନିଜକୁ ନିଜେ ସିଂହ କୁହୁଛ, ତାହେଲେ ପ୍ରକୃତ ସିଂହ ସହିତ ଲଢ଼ି ଦେଖାଇ ଦିଅ।

ସିଂହମାନେ ଅହମ୍ମଦ ଶାହର ଏହି ପ୍ରସ୍ତାବକୁ ସ୍ୱୀକାର କରିଲେ। ସେତେବେଳେ ଭାଇ ବାଘ ସିଂହଜୀ ସାମନାକୁ ଆସିଲେ। ସେ ଖାଲି ହାତରେ ଯୁଧାର୍ତ୍ତ ସିଂହ ସହିତ ଲଢ଼ିଥିଲେ। ବଡ଼ ସାହସ ଓ ଫୂର୍ତ୍ତୀ ସହ ସିଂହର ପାଟି ଭିତରେ ହାତ ଭର୍ତ୍ତି କରି ଜିଭକୁ ବହୁତ ଜୋରରେ ଟାଣିଦେଲେ, ଯାହାକି ଦାନ୍ତ ପକାଇ ପାରିଲା ନାହିଁ। ଆହୁରି ତଳେ ପଡ଼ିଗଲା ଦୁଇ ଘଣ୍ଟା ଯାଏଁ ଲଢ଼ି ଚାଲିଲେ ଓ ତାହାପରେ ବାହାଦୁର ସିଂହଜୀଙ୍କ ବାହାର ଶକ୍ତି ଦୁର୍ବଳ ହୋଇଯାଇଥିଲା। କିନ୍ତୁ ସିଂହକୁ ମାରି ଦେଖାଇଦେଲେ। ଏହା ଦେଖି ଅହମ୍ମଦ ଶାହ ସ୍ତବ୍ଧ ହୋଇଗଲା। ପୁଣି ଅହମ୍ମଦ ଶାହ ଜଣ ଜଣଙ୍କ ସହିତ ଓ ଜଣଙ୍କ ସହିତ ଦୁଇଜଣ ଓ ନିଜର ପାଞ୍ଚ ସୈନ୍ୟଙ୍କୁ ଛାଡ଼ି ଦେଖିଲା କିନ୍ତୁ ମସ୍ତକକୁ ଅଲଗା କରି ହାତରେ ରଖି ଲଢ଼ିବା ସିଂହମାନେ ପ୍ରଥମ ସ୍ଥାନ ପାଇଲେ। ସିଂହମାନଙ୍କର ଏହି ବାହାଦୁରି ଓ ନିର୍ଭୀକତା ଦେଖି ଅହମ୍ମଦ ଶାହ ବହୁତ ଖୁସି ହୋଇଗଲା ଓ ସେ ଅନ୍ୟ ଅବଶିଷ୍ଟାଂଶ ୧୫ ସିଂହମାନଙ୍କୁ ସେହି

ସମୟରେ ଛାଡିଦେଲା। ସେ ବୁଝିପାରିଲା କି ଏହିପରି ଭାବେ ଲଢ଼ି ସିଂହମାନେ କେବଳ ୫ଜଣ ମରିଲେ କିନ୍ତୁ ମୋର ୧୭ଜଣ ସେନା ମରିଗଲେ।

## ଗୁରୁଦ୍ୱାର ଥମ୍ଭ ସାହିବ (କରତାରପୁର)ର ଅପମାନ ଓ ଅନ୍ୟାୟର ପ୍ରତିଶୋଧ

ଇତିହାସ ସାକ୍ଷୀ ଅଛି କି ମୁସଲମାନ ହାକିମମାନେ ହିନ୍ଦୁମାନଙ୍କୁ ଧର୍ମ ସ୍ଥାନର ଅନ୍ୟାୟ ଓ ଅପମାନ କରିବା ପରେ ଶିଖ ଧର୍ମର ଧାର୍ମିକ ସ୍ଥାନମାନଙ୍କୁ ଧ୍ୱସ୍ତବିଧ୍ୱସ୍ତ କରିବା ପାଇଁ ଲାଗିପଡ଼ିଲେ। ହିନ୍ଦୁମାନଙ୍କର ବଡ଼ ବଡ଼ ମନ୍ଦିର ଧ୍ୱଂସ ବିଧ୍ୱଂସ କରିଦେଲେ। କିନ୍ତୁ ତାହାର ପ୍ରତିଶୋଧ ନେବାପାଇଁ ମୁସଲମାନମାନଙ୍କ ସହ ଲଢ଼ିବାପାଇଁ କେହି ନ ଥିଲେ। ଆହୁରି ବଡ଼ ବଡ଼ ରାଜପୁତ୍, ମରାଠୀ ତଥା କେତେକ ଯୋଦ୍ଧା ଶକ୍ତିଶାଳୀ ହିନ୍ଦୁ ସେତେବେଳେ ଥିଲେ ଓ ଇତିହାସରେ ବର୍ଣ୍ଣିତ ଅଛି କି, ଶିଖ ଶୂର ବୀରମାନଙ୍କ ବ୍ୟତୀତ ଅନ୍ୟ କୌଣସି ଧର୍ମ ସ୍ଥାନର ଅପମାନ ଧ୍ୱଂସ ବିଧ୍ୱଂସର ପ୍ରତିଶୋଧ ନେଉ ନ ଥିଲେ ଓ ଶିଖ ଧାର୍ମିକ ସ୍ଥାନର ଅପମାନ ଓ ପ୍ରତିଶୋଧ ମୁସଲମାନମାନଙ୍କୁ ବହୁତ ଶୀଘ୍ର ଖୁବ ଭଲ ଭାବେ ମିଳିଥିଲା।

ମୀର ମନ୍ନୁର ମୃତ୍ୟୁ ପରେ ତାହାର ସ୍ତ୍ରୀ ମୁରାଦ ବେଗମ ନିଜର ତୀକ୍ଷ୍ଣ ବୁଦ୍ଧି ଯୋଗୁଁ ବହୁତ ପରାମର୍ଶଦାତାଙ୍କ ସହିତ ମତଭେଦ ହୋଇଥିଲା, ଯାହାଦ୍ୱାରା ବହୁତ ମୁସଲମାନ ହାକିମ ଓ ବିଶେଷ ଭବେ ଜଲନ୍ଧରର ସୁବା ଅଦିନା ବେଗ ସିଂହମାନଙ୍କର ଘନିଷ୍ଠ ମିତ୍ର ହୋଇଗଲା। ମୁରାଦ ବେଗମ୍ ଅତି ବେଶିରେ ବର୍ଷେ ଦେଢ଼ବର୍ଷ ଶାସନ କରିଲା। କିନ୍ତୁ ସେ ଅହମଦ ଶାହର ଶରଣରେ ପଶିଗଲା। ୧୮୧୨ ସମ୍ୱତ ୫ଥର ଅହମ୍ମଦ ଶାହ ଅବଦାଲି ମୁରାଦ ବେଗମ କହିବା ଅନୁଯାୟୀ ଯେତେବେଳେ ହିନ୍ଦୁସ୍ତାନକୁ ଆକ୍ରମଣ କରିଲା ସେତେବେଳେ ପ୍ରତିରୋଧ ବ୍ୟତୀତ ଦିଲ୍ଲୀ ଯାଏଁ ପହଞ୍ଚିଗଲା। ଦିଲ୍ଲୀ ଠାରୁ ଫେରି ସେ ସରହିନ୍ଦ, ଜଲନ୍ଧର ଓ ଲାହୋର କୁ ନିଜ ଅଧୀନରେ ରଖିଲା। ନିଜର ଲୋକମାନଙ୍କୁ ସୁବେଦାର ପଦବୀରେ ନିଯୁକ୍ତି କରାଇଲା।

ଅହମ୍ମଦ ଶାହ ଅବଦାଲୀର ଆକ୍ରମଣ ସମୟ ମଧ୍ୟରେ ଜଲନ୍ଧରର ସୁବେଦାର ଅଦିନା ବେଗ୍ ଜଲନ୍ଧରକୁ ଛାଡ଼ି ପାହାଡ଼ ଅଞ୍ଚଳରେ ପଶିଥିଲା ଓ ଅହମ୍ମଦ ଶାହର ନିଯୁକ୍ତି କରାଇଥିବା ସୁବେଦାର ନାସିର ଦୀନ ସିଂହମାନଙ୍କ ପ୍ରତି ତୋଫାନ ହୋଇ

ଚାଞ୍ଚଲ୍ୟ କରିଥିଲା । ଲାହୋରର ସୁବେଦାର ଭାବେ ଅହମ୍ମଦ ଶାହ ପୁତ୍ର ତୈମୁର ଶାହକୁ ନିଯୁକ୍ତି କରାଇଲା । ସେ ମଧ ନାସିର ଦୀନକୁ ସାହାଯ୍ୟ କରାଇଲା ।

କରତାରପୁର ଜଳନ୍ଧରରର ଅତି ନିକଟ ହୋଇଥିବା ଯୋଗୁଁ ନାସିର ଦୀନର ନଜର ଏଠାରେ ଶୀଘ୍ର ପଡ଼ିଥିଲା । ପ୍ରଥମେ କୁତୁବଦୀନ ଜଳନ୍ଧରର ସୁବେଦାର ଏହି ପବିତ୍ର ସ୍ଥାନର ଅପମାନ କରିଥିଲା ଓ ଗୁରୁଦ୍ୱାରାକୁ ଧ୍ୱଂସ ବିଧ୍ୱଂସ କରିଥିଲା । ଏହି କୁତୁବଦୀନ ଅଳ୍ପ ଦିନ ପରେ ସ.ବାଘ ସିଂହ ହଲେବାଲିଆଙ୍କ ହାତରେ ମରିଥିଲା । ସମୟ ପାଇ ସିଂହମାନେ ଗୁରୁଦ୍ୱାରର ପୁନଃ ନିର୍ମାଣ କରିଥିଲେ । ଧୀର ମଲ୍ଲଙ୍କ ବଂଶଜ ମାନେ ଏହି ସମୟରେ ବାବା ବଡ଼ଭାଗ ସିଂହଜୀ ଥିଲେ, ସେ ଅମୃତ ସେବନ କରି ସିଂହମାନଙ୍କ ସହ ସୁସମ୍ପର୍କରେ ଥିଲେ । ସିଂହମାନେ ମଧ ମନଇଚ୍ଛା ସେଠାକୁ ଆସୁଥିଲେ ଓ ରହୁଥିଲେ । ନାସିର ଦୀନକୁ ଜଳନ୍ଧର ନିକଟରେ ଶ୍ରୀ କରତାରପୁରଠାରେ ଏହି ସିଂହମାନଙ୍କର ଏହି ସମାଗମ କେମିତି ଠିକ ଲାଗିଥାନ୍ତା ? ସେ ସୈନ୍ୟମାନଙ୍କ ସହ କରତାରପୁର ଆକ୍ରମଣ କରିଦେଲା । ସୋଢ଼ିମାନେ ଓ ସିଂହମାନେ ଖୁବ୍ ସାମନା କରିଥିଲେ, କିନ୍ତୁ ସୈନ୍ୟ ସମୁଦ୍ର ରୂପୀ ଶତ୍ରୁଙ୍କ ମଧରେ ଅଳ୍ପର କଣ କ୍ଷମତା; ଶେଷରେ ଲଢ଼ି ଝଗଡ଼ା କରି କରତାରପୁର ପାର ହୋଇଗଲେ । ବାବା ବଡ଼ ଭାଗ ସିଂହଜୀ ପାହାଡ଼ ଆଡ଼କୁ ଚାଲିଗଲେ, ବର୍ତ୍ତମାନ ସମୟରେ ଡେରା ବଡ଼ଭାଗ ସିଂହ ଅଟେ, ସେଠାରେ ଯାଇ ରହିଲେ ।

ସେପଟରେ ନାସିର ଦୀନ କରତାରପୁରଠାରେ ପ୍ରବେଶ ହୋଇ ଖୁବ୍ ଉପଦ୍ରବ କରିଲା । ଗୁରୁଦ୍ୱାର ଥମ୍ଭ ସାହିବକୁ ଧ୍ୱଂସ କରିଦେଲା ଓ ସେଠାରେ ଗୋହତ୍ୟା କରିଲା । ହିନ୍ଦୁ ସ୍ତ୍ରୀମାନଙ୍କୁ ବାଧ୍ୟତାପୂର୍ବକ ମୁସଲମାନ ଭାବେ ପରିବର୍ତ୍ତନ କରାଇଲା । ପୂରା ୧୬ ବର୍ଷ ପରେ ୧୮୧୨ ସମ୍ୱତ ବିକ୍ରମୀ ସମୟରେ ଗୁରୁଦ୍ୱାର ଥମ୍ଭ ସାହିବଠାରେ ଏହା ଦ୍ୱିତୀୟ ଘୋର ଅପମାନ, ବିରୁଦ୍ଧତା ଓ ଅନ୍ୟାୟ ହୋଇଥିଲା ।

ସେହି ସମୟରେ ସିଂହମାନଙ୍କର ଠିକଣା କେବଳ ଜଙ୍ଗଲ ଥିଲା, ଯେଉଁ ପାହାଡ଼ର ଶିଖର ସ୍ଥାନରେ ବାବା ବଡ଼ଭଗା ସିଂହଜୀ ରହିଥିଲେ, ସେହିପଟକୁ ଅଦୀନା ବେଗ ସୁବା ଜଳନ୍ଧର ଅହମ୍ମଦ ଶାହକୁ ଭୟଭୀତ ହୋଇ ଦୌଡ଼ି ସେଠାରେ ପହଞ୍ଚିଲା । ବୁଲି ବୁଲି ଅଦୀନା ବେଗ ଦୁଇ ବର୍ଷ ପୂର୍ବରୁ ସିଂହମାନଙ୍କ ସହ ଖୁବ୍ ସମ୍ପର୍କ ହୋଇସାରିଥିଲା । ସେଥିଯୋଗୁଁ ସେ ଯେତେବେଳେ ବାବା ବଡଭାଗ ସିଂହଜୀଙ୍କ ସହିତ ମିଶିଲା କଥା ସମ୍ପର୍କରେ କହିଲା, ବାବାଜୀ, ଆପଣ ଏଠି ଏକାନ୍ତରେ ବସି

ରହିଛନ୍ତି, ସିଂହମାନଙ୍କ ସାହାଯ୍ୟରେ ନାସିର ଦୀନକୁ କର୍ମଫଳର ଦଣ୍ଡ ଦେବେ ନାହିଁ ?

ନିଜର ସୁଖ ସକାଶେ କାହାକୁ କଣ କଷ୍ଟ ଦେବା ?

ବାବାଜୀ, ଆପଣଙ୍କ ସୁଖ ଏଠାରେ ପ୍ରଶ୍ନ ଉଠୁ ନାହିଁ, ଏଠାରେ ଅତ୍ୟାଚାରୀମାନଙ୍କୁ ଦଣ୍ଡ ଓ ଗୁରୁଦ୍ୱାରର ଅପମାନ ଓ ପ୍ରତିଶୋଧର ପ୍ରଶ୍ନ ଉଠୁଛି ।

ପ୍ରକୃତରେ ଅଦିନା ବେଗ ନିଜେ ଚାହୁଁଥିଲା କି କେମିତି ଅହମଦ ଶାହର ସୈନ୍ୟ ସମୁଦ୍ରକୁ ଜଳନ୍ଧରଠାରୁ ମାରି ବାହାର କରାଯିବ । କିନ୍ତୁ ତାହା ପାଖରେ ଏକା ଏମିତି ଶକ୍ତି ନାହିଁ ଯାହାକୁ ଶତ୍ରୁମାନଙ୍କ ସହ ଲଢି ପାରିବ । ସେଥିଯୋଗୁଁ ସିଂହମାନଙ୍କ ସାହାଯ୍ୟ ଦେଇ ନିଜର ମନୋରଥକୁ ସଫଳ କରାଇବା ଇଚ୍ଛା କରୁଥିଲା । ସେ ବାବା ବଡ଼ ଭାଗ ସିଂହଜୀଙ୍କ ଦ୍ୱାରା ଏହି କାର୍ଯ୍ୟ ସଫଳତା କରାଇଲା । ହତିଆର, ଔଷଧ, ଟଙ୍କା ଓ ଅନ୍ୟାନ୍ୟ ଖର୍ଚ୍ଚ ସବୁ କିଛିର ଦାୟିତ୍ୱ ସେ ନିଜେ ଗ୍ରହଣ କରିଲା ଓ ସଂହମାନଙ୍କୁ ଡକାଇବାପାଇଁ ବାବାଜୀ ଚିଠି ଲେଖିଲେ ।

ସିଂହମାନେ ବାବାଜୀଙ୍କୁ ଖୁବ୍ ସମ୍ମାନ କରୁଥିଲେ । କାରଣ କଠିନ ସମୟରେ ବାବାଜୀ ସିଂହମାନଙ୍କୁ ବହୁତ ସାହାଯ୍ୟ କରିଥିଲେ । ଯିବା ଆସିବା ସମସ୍ତ ସଙ୍କଟରେ ସାହାଯ୍ୟ କରୁଥିଲେ । ସେ ଚିଠି ଲେଖି ଅଦୀନା ବେଗର ସମସ୍ତ ଯୋଜନା ପ୍ରସ୍ତାବ ସିଂହମାନଙ୍କୁ ଲେଖି ପଠାଇଲେ । ସେ ନିଜେ ନିଜେ ପ୍ରସ୍ତାବ ପଠାଇଲା କି ଏହି ଅଞ୍ଚଳ ପ୍ରତି ନଜର ରଖ ତାହେଲେ ପରାମର୍ଶ କରିବ ।

ଏହି ସନ୍ଦେଶ ପ୍ରାପ୍ତ କରି ସବୁ ସିଂହମାନେ ଧୀରେ ଧୀରେ ସେପଟକୁ ଚାଲିଲେ । ପ୍ରାୟ ସବୁ ସିଂହ ପହଞ୍ଚିଗଲେ, ତାହା ପରେ ବିଚାର ବିମର୍ଶ ଆରମ୍ଭ ହେଲା । ସମସ୍ତେ ଏହି ପ୍ରସ୍ତାବରେ ଏକମତ ହେଲେ କି ଜଳନ୍ଧର ଉପରେ ଆକ୍ରମଣ କରି ନାସିରଦୀନକୁ କର୍ମଫଳ ଅବଶ୍ୟ ଦିଆଯାଉ । ସେତେବେଳେ ଯୋଦ୍ଧା ସିଂହମାନଙ୍କ ସଂଖ୍ୟା ପ୍ରାୟ ୨୦-୨୫ ହଜାର ଥିଲେ ଓ ଅଦୀନା ବେଗ ପାଖରେ ମଧ୍ୟ ୮-୧୦ ହଜାର ପାଖାପାଖି ସୈନ୍ୟ ଥିଲେ । ଧନ, ଔଷଧ, ହତିଆର ଅନ୍ୟାନ୍ୟ ସାମଗ୍ରୀ ଅଦୀନା ବେଗ ପାଖରେ ଅଗଣତି ଥିଲା । ସେଥିଯୋଗୁଁ ସବୁ ସିଂହମାନେ ତାହାର ପ୍ରସ୍ତାବରେ ଏକମତ ହୋଇଗଲେ ।

ସବୁ କିଛି ସାରିବା ପରେ ପୁଣି ସିଂହମାନେ କଡ଼ା ପ୍ରସାଦ ପ୍ରସ୍ତୁତ କରିଲେ ଓ ସତ୍‌ଗୁରୁଙ୍କୁ ସମର୍ପିତ କରି ଅରଦାଶ କରିଲେ, ହେ ଚୂଡ଼ାମଣୀ ଧାରୀ ଫୌଜଙ୍କ

ଅଧିପତ କଳଗୀଧର ପାତଶାହ! ତୁମର ଖାଲସା ପନ୍ଥ ଧର୍ମର ଦ୍ରୋହୀ ଅତ୍ୟାଚାରୀମାନଙ୍କୁ ବଶୀଭୂତ କରିଚାଲିଲା। ଏହା ଆପଣ ସ୍ୱୟଂ କରିଥିଲେ ଓ ଆମ୍ଭମାନଙ୍କୁ ଶିକ୍ଷା ଦେଇଛନ୍ତି। ସେଥିଯୋଗୁଁ କୃପା କରନ୍ତୁ। ଅଙ୍ଗସଙ୍ଗ ସହାୟ ହୋଇ ନିଜର ପନ୍ଥର ବିଜୟ କରାନ୍ତୁ।

କୁହାଯାଇଛି କି ଅରଦାଶ ପରେ ଯେତେବେଳେ ଯୁଦ୍ଧର ପ୍ରସ୍ତୁତି କରି ସିଂହମାନେ ଆଗକୁ ବଢ଼ିଲେ, ସେତେବେଳେ ସ.ଜସ୍ସା ସିଂହ କହିଲେ- 'ଅଦୀନା ବେଗ! ଗୋଟିଏ କଥା ବଡ଼ ବିପଦ ଅଛି, ତୁମର ସୈନ୍ୟମାନଙ୍କର ଓ ଶତ୍ରୁମାନଙ୍କ ପୋଷାକର ରଙ୍ଗ ଏକା ଦେଖାଯାଉଛି। ଯଦି ଆମ୍ଭେମାନେ ଭ୍ରମିତ ହୋଇ ସିଂହମାନେ ତୁମର ସୈନ୍ୟମାନଙ୍କୁ ଆକ୍ରମଣ କରିଦେବେ ତାହେଲେ ଆମ୍ଭର ସମସ୍ତ ଯୋଜନା ପାଣି ଫାଟିଯିବ। ଆପଣଙ୍କ କଥା ଠିକ୍ ଅଛି "ଅଦୀନା ବେଗ କହିଲା ପରନ୍ତୁ ଏତେ ଶୀଘ୍ର ପୋଷାକ ପରିବର୍ତ୍ତନ କରିବା ମଧ୍ୟ ଅସମ୍ଭବ ଥିଲା, ତାହା ସହିତ ଅରଦାଶ ହୋଇସାରିଛି। ବର୍ତ୍ତମାନ କ'ଣ କରାଯିବ?

ସ.ଜସ୍ସା ସିଂହଜୀଙ୍କ ଗୋଟିଏ ପ୍ରସ୍ତାବ ମନକୁ ଛୁଇଁଲା। ନିକଟରେ ଗୋଟିଏ ଗହମ କ୍ଷେତ ଥିଲା। ସେଥିରୁ ୪,୫ଟି ଗଛ ଉପାଡ଼ି ଆଣିଲେ ଓ ଅଦୀନା ବେଗର ମୁଣ୍ଡ ଉପରେ ଦେଇ କହିଲେ - ବାସ୍ ଏତିକି ଅନ୍ତର ଅଟେ। ଯାହାର ମୁଣ୍ଡ ଉପରେ ଏହି ଚିହ୍ନ ରହିବ, ସିଂହମାନେ ବୁଝିବେ କି ଏମାନେ ଆମର ସିପାହୀ ଅଟନ୍ତି।

ଅଦୀନା ବେଗ କହିଲା- "ସର୍ଦ୍ଦାର ଜୀ, ଏହାର ବିଜୟର ଚିହ୍ନ ଅଟେ।" ତାହାପରେ ଅଦୀନା ବେଗ ନିଜର ସବୁ ସିପାହୀମାନଙ୍କୁ ଗହମ ଘାସ ଲଗାଇବା ପାଇଁ କହିଲା। ତାହା ସହିତ ପଗଡ଼ିକୁ ଅଳ୍ପ ଝୁଲାଇ ବାନ୍ଧିବା ପାଇଁ କହିଲା, ଯାହାକି ପୋଷାରକ ମଧ୍ୟରେ ପ୍ରଭେଦ ଆସିବ। କୁହାଯାଇଛି କି, (ପଞ୍ଜାବୀ ଭାଙ୍ଗଡ଼ା ପଗଡ଼ି) ତୁଲା (କୁଞ୍ଚ କୁଞ୍ଚ ହୋଇ ପଗଡ଼ି ଉପରେ ଥାଏ ଓ ପଗଡ଼ି ତଳକୁ ଝୁଲି ଲାଞ୍ଜ ଭଳି ରହିଥାଏ) ଏହିପରି ପଗଡ଼ି ବାନ୍ଧିବା ପ୍ରଚଳନ ପଞ୍ଜାବ ଠାରେ ସେହି ସମୟ ଠାରୁ ଆରମ୍ଭ ହୋଇଥିଲା।

ସିଂହମାନଙ୍କ ଆକ୍ରମଣର ଖବର ନାସିର ଦୀନକୁ ଖବର ମିଳିଥିଲା, ସେ ଖୁବ୍ ପ୍ରସ୍ତୁତ ସହ ଅପେକ୍ଷା କରିଥିଲା। ତୈମୁର ଶାହ (ଅହମଦ ଶାହ ଅବଦାଲୀର ପୁତ୍ର) ତାହାକୁ ସାହାଯ୍ୟ ସକାଶେ ଲାହୋର ଠାରୁ ସେନା ପଠାଇଥିଲା। ରୋପଡ଼ ଠାରୁ ପଠାଣମାନେ ମଧ୍ୟ ନାସିରଦୀନର ସାହାଯ୍ୟ ସକାଶେ ସେଠାରେ ପହଞ୍ଚିଥିଲେ

ଓ ସେହି ଅଞ୍ଚଳର ସବୁ ମୁସଲମାନ ଫୌଜ ମଧ୍ୟ ଜଲନ୍ଧର ଠାରେ ପହଞ୍ଚିଥିଲେ। ଜଲନ୍ଧର ବାସୀ ସହରର ଦୂର ଦୂରରୁ ଯେଉଁଠାରୁ ସିଂହ ବଢ଼ି ଆସୁଥିଲେ ଦଳ ତିଆରି କରୁଥିଲେ ତୋପ, ବନ୍ଧୁକ ଅସ୍ତ୍ରଶସ୍ତ୍ର ସବୁ ଜିନିଷର ସୁବ୍ୟବସ୍ଥା ପୂର୍ବକ ପ୍ରବନ୍ଧ କରି ରଖିଲେ।

ସିଂହମାନେ ଓ ଅଦୀନା ବେଗର ସେନାମାନେ ଏକପ୍ରହର ଲଢ଼େଇ କରିଲେ, ପରନ୍ତୁ ଏ ଯୁଦ୍ଧରେ ସିଂହମାନଙ୍କର କ୍ଷତି ହୋଇଥିଲା। ଶତ୍ରୁମାନଙ୍କର ତୋପ ଖାନା ବହୁତ ସୁଦୃଢ଼ ଥିଲା। ସିଂହମାନେ ଯୋଜନା ବଦଳାଇଥିଲେ ଥରେ ଶ୍ରୀ ସାହିବ ସହ ଶତ୍ରୁମାନଙ୍କ ଦଳ ମଧ୍ୟରେ ଅଚାନକ ପଶି ଯୁଦ୍ଧ କରିବାପାଇଁ ଯୋଜନା କରିଲେ। ସେଥିଯୋଗୁଁ ଯୋଜନା ଅନୁଯାୟୀ ସେମାନେ ଯେତେବେଳେ ଶତ୍ରୁ ଦଳ ମଧ୍ୟରେ ପଶିଲେ ସିଂହମାନଙ୍କ ଜ୍ୱାଳା କିଏ ସମ୍ଭାଳିପାରିବ? ଯେତେବେଳେ ସିଂହମାନେ ଖଣ୍ଡା ସହ ସାମନାକୁ ଆସିଲେ। କୁହାଯାଏ କି ପହର ଯାଏଁ ଲଢ଼େଇ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା ଓ ଯୁଦ୍ଧ କ୍ଷେତ୍ରରେ ଶବର ପାହାଡ଼ ହୋଇଗଲା। ଅବଦାଲୀ ନିଜର ନୂଆ ଯୋଜନା ଓ ସେନାମାନଙ୍କୁ ପଠାଇ ସିଂହମାନଙ୍କ ସହ ଖୁବ୍ ଜୁଝିଲା, କିନ୍ତୁ ଧୀରେ ଧୀରେ ସିଂହମାନଙ୍କ ଶକ୍ତି ଆଗକୁ ବଢ଼ି ଚାଲିଲା ଓ ଶତ୍ରୁ ପଛକୁ ହଟି ଚାଲିଲେ। ଏହାଦେଖି ସିଂହ – 'ଅକାଳ' 'ଅକାଳ' କହି ଶତ୍ରୁଙ୍କ ନିକଟରେ ପହଞ୍ଚି ଏମିତି ଦଣ୍ଡ ଦେଲେ ବିଜୁଳି ମଧ୍ୟ ତ୍ରାହି ତ୍ରାହି କରିଲା। ସିଂହମାନଙ୍କ ଆଗକୁ ବଢ଼ିବା ବେଳେ ଅଦୀନା ବେଗ ମଧ୍ୟ କମ୍ ଶକ୍ତିଶାଳୀ ନ ଥିଲା। ସେ ମଧ୍ୟ ସିଂହମାନଙ୍କ ଅନୁସାରେ ଚାଲିଲା। ବର୍ତ୍ତମାନ ଗିଲଜ ପଠାଣ ତ୍ରାହି ତ୍ରାହି କରି ଦୌଡ଼ିବାକୁ ଲାଗିଲା। ତୈମୁର ପଠାଇଥିବା ସେନା ମୁଖ୍ୟାଧିପତି ଓ କେତେକ ଅଂଚଳର ପ୍ରମୁଖ ମୁସଲମାନମାନଙ୍କୁ ସିଂହମାନେ ମାରିଦେଲେ। ରଣକ୍ଷେତ୍ର ଛାଡ଼ି ପ୍ରାଣ ବଞ୍ଚାଇ ଦୌଡୁଥିବା ଶତ୍ରୁ ତ ଅର୍ଦ୍ଧମୃତ ହୁଏ, ସେଥିଯୋଗୁଁ ସିଂହମାନେ ଏହି ଡରୁଆ ବହୁତ କାପୁରୁଷଙ୍କୁ ମଧ୍ୟ ମାରିଦେଲେ ଓ ଅବଶିଷ୍ଟାଂଶ ଜଲନ୍ଧରଠାରେ ପହଞ୍ଚିଗଲେ। ତୁରନ୍ତ ସିଂହମାନେ ବିଜୁଳି ଭଳି ଜଲନ୍ଧରଠାରେ ପ୍ରବେଶ କରି ଶୀଘ୍ର ଶୀଘ୍ର ନିଜ ନିଜର କାମ କରିବାକୁ ଲାଗିଲେ। ଯିଏ ସମ୍ମୁଖରେ ଆସିଲା ସିଏ ମରିଲା। ପରନ୍ତୁ ଯିଏ ଶରଣାଗତ ହେଲା ତାହାକୁ କ୍ଷମା ମିଳିଲା। ସେହି ପାପୀ ନାସିରଦୀନକୁ ଜୀବିତ ଅବସ୍ଥାରେ ଧରିନେଲେ।

ନାସିରଦୀନକୁ ଜୀବିତ ଅବସ୍ଥାରେ ଧରି ସୋଢି ବଡ଼ଭାଗ ସିଂହଜୀଙ୍କ ନିକଟରେ ହାଜର କରାଇଲେ ଓ କହିଲେ କି ପ୍ରକାର ଦଣ୍ଡ ଦିଆଯିବ କୁହନ୍ତୁ ?

ବାବାଜୀ କହିଲେ -ଏ ଯେମିତି ଭାବେ ଧାର୍ମିକ ସ୍ଥାନମାନଙ୍କର ଓ ଅବଳାମାନଙ୍କୁ ଅପମାନିତ ଓ ଅତ୍ୟାଚାର କରିଛି ତାହାର ଫଳ ଏହାକୁ ମିଳୁ। ସିଂହମାନେ ମୋଗଲ ରାଣୀମାନଙ୍କୁ ଧରି ନେଲେ, କିନ୍ତୁ ସେମାନଙ୍କୁ ମୁକ୍ତ କରାଗଲା। ସେ ଯେଉଁ ସିଂହଙ୍କୁ ଇଚ୍ଛା କରେ ତାହା ସହିତ ବିବାହ କରିପାରିବ। ସେଥିଯୋଗୁଁ ବହୁତ ଜଣଙ୍କୁ ଅମୃତ ସେବନ କରାଇ ସିଂହ ସଜାଇ ଦିଆଗଲା ଓ ଅନ୍ୟମାନଙ୍କୁ ଅନ୍ୟ ଯେଉଁ ମାନେ ଶିଖ ନୁହନ୍ତି ସେମାନଙ୍କୁ ଦିଆଗଲା ଓ ବାଧତାପୂର୍ବକ କାହାରିକୁ ଧର୍ମ ପରିବର୍ତ୍ତନ କରାଗଲା ନାହିଁ।

ନାସିରଦୀନ ଗୁରୁଦ୍ୱାର ସାହିବକୁ ଜଳାଇ ସେଠାରେ ଗୋହତ୍ୟା କରାଇଥିଲା, କିନ୍ତୁ ସିଂହମାନେ ଜଳନ୍ଧରର ବଡ଼ ମସଜିଦକୁ ଧ୍ୱଂସ କରି ନିଆଁ ଲଗାଇବା ସ୍ଥାନରେ ଏତିକି କରିଲେ କି ସେଠାରେ ଅଗଣିତ ଘୁଷୁରି ହତ୍ୟା କରି ସେହିଠାରେ ସେହି ମାଂସ ରାନ୍ଧିଥିଲେ। ଅତ୍ୟାଚାରୀ ଓ ନିର୍ଦ୍ଦୟୀ ନାସିରଦୀନକୁ ଜୀବନ୍ତ ଜଳାଇବା ନିଷ୍ପତ୍ତି ନିଆଗଲା ଓ ତାହାକୁ ଜୀବନ୍ତ ମସଜିଦ ମଧ୍ୟରେ ଜଳାଗଲା। ତାହାପରେ ଖାଲସା ନିଜର ନିବାସ ସ୍ଥାନମାନଙ୍କୁ ଜଙ୍ଗଲକୁ ଚାଲିଗଲେ ଓ ଅଦୀନା ବେଗ ଜଳନ୍ଧରର ସୁବେଦାରକୁ ପୁଣି ନିଜ ଅଧୀନସ୍ଥ କରିନେଲା। ଏହାର ପ୍ରତିଶୋଧ ସିଂହମାନେ ୧୮୧୩ ବିକ୍ରମ ସମୟରେ ନେଇଥିଲେ।

ମୁସଲମାନ ଲେଖକ ଖାଫୀ ଖାଁ ଏହି କାର୍ଯ୍ୟକଳାପକୁ ଅତ୍ୟାଚାରତା ଓ ଅପଶବ୍ଦ ପ୍ରୟୋଗ କରି ଲେଖିଛନ୍ତି। କିନ୍ତୁ ମୋଗଲ ଓ ପଠାଣ ହାକିମମାନଙ୍କର ନିର୍ଦ୍ଦୟତା ଓ ରାକ୍ଷସ ବୁଦ୍ଧିଯୁକ୍ତ କର୍ମ ଭୁଲିଗଲେ, ସିଂହମାନେ କେବଳ ଅତ୍ୟାଚାରୀଙ୍କୁ ମାରୁଥିବାବେଳେ ଅନ୍ୟମାନଙ୍କର କିଛି କ୍ଷତି କରୁ ନ ଥିଲେ।

## ମରାଠୀମାନେ ପଞ୍ଜାବକୁ ଅଧିକାର କରିବା

ଯେତେବେଳେ ଅହମ୍ମଦ ଶାହ ନିଯୁକ୍ତି କରିବା ସୁବା ବହୁ ସଂଖ୍ୟକ ସୈନ୍ୟବଳ ସହ ସିଂହମାନଙ୍କ ସହ ଯୁଦ୍ଧ ଲଢ଼େଇ ଯୋଗୁଁ ମୃତ୍ୟୁବରଣ କରିଲା ତାହା ଦେଖି ଅନ୍ୟ ସୁବାମାନେ ସଚେତ ହୋଇଗଲେ। ପରନ୍ତୁ ଜାଲନ୍ଧର ପଟକୁ ଚାହିଁବାପାଇଁ

କାହାର ସାହସ ହୋଇନଥିଲା । ଅଦୀନା ବେଗକୁ ସାହାଯ୍ୟ କରିବାପାଇଁ ସିଂହମାନେ ପ୍ରତି ମୁହୂର୍ତ୍ତରେ ତାହାର ଚାରି ପାଖରେ ଘୂରି ବୁଲୁଥିଲେ ।

ସେହି ସମୟରେ ହିନ୍ଦୁସ୍ତାନର ଦକ୍ଷିଣ ଦିଗରେ ମରାଠୀ ଓ ଭରତପୁର ଜାଠମାନଙ୍କର ଭାରି ଯୋର ଚାଲିଥିଲା । ଦିଲ୍ଲୀବାସୀଙ୍କ ଦୁର୍ବଳତାକୁ ନଜର ରଖି ଦୁଇ ଶକ୍ତି ମିଶି ଧୀରେ ଧୀରେ ଦିଲ୍ଲୀ ପଟକୁ ବଢ଼ି ଚାଲିଲେ । ଗୋଟିଏ ପଟରେ ତୈମୁର ଲାହୋରଠାରୁ ପଞ୍ଜାବର ସମସ୍ତ ବିଷୟ ଅହମ୍ମଦ ଶାହ ପାଖକୁ କାବୁଲ ଲେଖି ପଠାଇଲା । ଅଦୀନା ବେଗ ଜଳନ୍ଧରବାସୀ ସିଂହମାନଙ୍କ ଉପରେ ସମ୍ପୂର୍ଣ୍ଣ ଭରସା ଥିଲା । କିନ୍ତୁ ଅହମ୍ମଦ ଶାହର ଆକ୍ରମଣର ଚିନ୍ତା ତାହାର ଭୟାନକ ରୋଗ ଭଳି ଲାଗିରହିଥିଲା । ତାହାର ନଜର ଦୁର୍ବଳ ଦିଲ୍ଲୀ ଉପରେ ପଡ଼ିଲା ନାହିଁ । ମରାଠୀମାନଙ୍କ ଉପରେ ନଜର ପଡ଼ିଲା । ମରାଠୀମାନେ ମଧ୍ୟ ଦକ୍ଷିଣ ଦିଗରୁ ଆଗକୁ ବଢ଼ି ବଢ଼ି କେତେକ ଅଞ୍ଚଳ ଅଧିକାର କରିସାରିଥିଲେ । ସେଥିଯୋଗୁଁ ଅଦୀନା ବେଗ ସେମାନଙ୍କୁ ପଞ୍ଜାବର ଦୁର୍ବଳ ଅବସ୍ଥା ଜଣାଇ ଏହାକୁ ଅଧିକାର କରିବାପାଇଁ ସନ୍ଦେଶ ଦେଲା ଓ ସେ ନିଜେ ପୂରା ସାହାଯ୍ୟ କରିବାପାଇଁ ବିଶ୍ୱାସ ଦେଲା ।

କିଛି ଦିନ ପରେ ମରାଠୀମାନେ ପ୍ରସ୍ତୁତ ହୋଇ ଦିଲ୍ଲୀ ଆକ୍ରମଣ କରିଲେ । ସେମାନେ ଭାବିଥିଲେ କି ଦିଲ୍ଲୀ ବିଜୟ ନ କରି ଆମ୍ଭେମାନେ ପଞ୍ଜାବ ଉପରେ ଅଧିକାର କରିପାରିବା ନାହିଁ । ପରନ୍ତୁ ମରାଠୀମାନଙ୍କ ଶକ୍ତି ଦେଖି ଦିଲ୍ଲୀର ମନ୍ତ୍ରୀ ଗାଜୀଦୀନ ପ୍ରସ୍ତାବ ଦେଲା । ସେ ନିଜର ସେନାଙ୍କୁ ସାଥିରେ ପଠାଇ ମରାଠୀମାନଙ୍କୁ ସରହନ୍ଦ ବିଜୟ କରିବାପାଇଁ ପଠାଇଲା । କାରଣ ସେହି ସମୟରେ ପଞ୍ଜାବର ସବୁଠାରୁ ବଡ଼ସ୍ଥାନ ସରହନ୍ଦ ଥିଲା ଓ ସେଠାରେ ବହୁତ ଦୂର ଯାଏଁ ବହୁତ ଦୁର୍ଗ ଥିଲା । ସିଂହମାନେ ବନ୍ଦା ବାହାଦୁରର ବିଜୟ ପ୍ରାପ୍ତ ସମୟରେ ସେହି ଦୁର୍ଗ ସବୁ ଧ୍ୱଂସ କରିବା ପ୍ରସ୍ତାବ ଯୋଜନା ରଖିଥିଲେ । ପରନ୍ତୁ ବନ୍ଦା ବାହାଦୁର ଏହି ପ୍ରସ୍ତାବକୁ ଅବରୋଧ କରିବା ଯୋଗୁଁ ସିଂହମାନେ ଏହାକୁ ଧ୍ୱଂସ ଓ ନଷ୍ଟ ବିନଷ୍ଟ କରିବା ବନ୍ଦ କରିଥିଲେ । ବର୍ତ୍ତମାନ ଯେତେବେଳେ ମରାଠୀମାନେ ଏହି ଦୁର୍ଗ ଉପରେ ଚଢ଼ାଉ କରିଥିଲେ, ସେଠାରେ ଅହମ୍ମଦ ଶାହ ଦ୍ୱାରା ନିଯୁକ୍ତି କରାଯାଇଥିବା ସୁବାମାନେ ତାହା ନିକଟକୁ ପହଞ୍ଚିବା ପାଇଁ ଦେଇ ନ ଥିଲେ । ଅଦୀନା ବେଗ ଜଳନ୍ଧରବାସୀ ମଧ୍ୟ ସେତେବେଳେ ସେମାନଙ୍କ ସାହାଯ୍ୟ ପାଇଁ ସେଠାରେ ପହଞ୍ଚିଥିଲେ ।

## ଅହମ୍ମଦ ଶାହ ଅବଦାଲୀର ଷଷ୍ଠ ଆକ୍ରମଣ

ଯେତେବେଳେ ଅହମ୍ମଦ ଶାହ ଅବଦାଲୀକୁ ଏହି ଖବର ମିଳିଲା, ବହୁତ ରାଗିଯାଇ ହିନ୍ଦୁସ୍ତାନ ଉପରେ ଅଧିକାର କରିବା ଇଛା କରିଲା । ପରନ୍ତୁ ସେ ତାହାର ଗୋଡ଼ ପଞ୍ଜାବରେ ହିଁ ସ୍ଥିର କରିପାରି ନ ଥିଲା । ସେଥିପାଇଁ ମରାଠାମାନଙ୍କ ସହ ବଡ଼ ସଂଘର୍ଷ କରିବା ପାଇଁ ପ୍ରସ୍ତୁତ ହେଲା ।

ହିନ୍ଦୁସ୍ତାନ ସହ ସଂଘର୍ଷ କରିବା ପାଇଁ ବର୍ତ୍ତମାନ ଅହମ୍ମଦ ଶାହ ଅବଦାଲୀ ଜୋରସୋରରେ ପ୍ରସ୍ତୁତ କରିଲା । ସେ ଭାବିଥିଲା କି ପଞ୍ଜାବ ତା'ର ନିଜର ରାଜ୍ୟ ଭାବେ ଗଢ଼ିଥିଲା, ସେଥିପାଇଁ ସବୁବେଳେ ପଞ୍ଜାବକୁ ନିଜ ପ୍ରବନ୍ଧରେ ରଖିବାକୁ ପ୍ରବଳ ଲାଳସା ଥିଲା । ସେଥିପାଇଁ ୧୮୧୪ ବିକ୍ରମୀ ସମୟରେ ଭାରି ପ୍ରବନ୍ଧ କରି ହିନ୍ଦୁସ୍ତାନକୁ ଷଷ୍ଠଥର ଆକ୍ରମଣ କରିଥିଲା । ପଞ୍ଜାବକୁ ଅଟକାଇ ରଖି ରହିଥିବା ମରାଠାମାନେ ଏହି କବର ପାଇ ସଂଘର୍ଷ ପୂର୍ବରୁ ଅଞ୍ଚଳ ଛାଡ଼ି ଦିଲ୍ଲୀ ନିକଟରେ ଏକାଠି ହେଲେ ଓ ବଡ଼ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ସ୍ୱାଧୀନ ଭାବେ ଘୁରି ବୁଲୁଥିବା ସିଂହମାନଙ୍କୁ ଯେବେ ଏହି ଖବର ମିଳିଲା ସେମାନେ ମଧ୍ୟ ଜଙ୍ଗଲ ସ୍ଥିତ ଦୁର୍ଗରେ ରହିଲେ । ଏହା ଅଦିନା ବେଗ୍ କେମିତି ସହ୍ୟ କରନ୍ତା ? ସେ ମଧ୍ୟ ଜଳନ୍ଧରକୁ ଖାଲି ଛାଡ଼ି ଚାଲିଗଲା ! ଅହମ୍ମଦ ଶାହ ଖୁଲେ ଦରବାଜେ ଅଟକ ଜେହଲମ୍, ଲାହୋର, ମୁଲତାନ ଓ ସରହନ୍ଦକୁ ଅଧିକାର କରିନେଲା ।

ସେହି ସମୟରେ ଅହମ୍ମଦ ଶାହ ଏତେ ଜାଗାରେ ଅଧିକାର ଲୋଭରେ ସେନା ସମୁଦ୍ରକୁ ଚାରିଆଡ଼େ ଖେଳେଇ ରଖିଥିଲା । ସେଥିପାଇଁ ଦିଲ୍ଲୀ ତରଫକୁ ଆଗକୁ ମାଡ଼ିଯିବା ପୂର୍ବରୁ ସେମାନେ ଅଟକିଗଲେ । ମରାଠୀମାନଙ୍କ ପ୍ରସ୍ତୁତ ଜାଣିପାରିଲା । ସେଥିପାଇଁ ସେ ସେହିଠାରୁ ହିଁ ସେହି ସ୍ଥାନମାନଙ୍କରେ ସୁବା ନିଯୁକ୍ତ କରାଇ କାବୁଲ ଫେରିଗଲା ।

## ଅହମ୍ମଦ ଶାହର ସପ୍ତମ ଥର ଆକ୍ରମଣ ଓ ମରାଠୀମାନଙ୍କ ସହ ଯୁଦ୍ଧ

ଅହମ୍ମଦ ଶାହ ପଞ୍ଜାବର ସମସ୍ତ ଦାୟିତ୍ୱ ନିଜ ଲୋକମାନଙ୍କୁ ଦେଇ ବର୍ତ୍ତମାନ କାବୁଲ ପହଞ୍ଚିଥିଲା, ତାହାର ସୁଯୋଗ ପାଇ ମରାଠୀ ମାନେ ପଞ୍ଜାବ ଆଡ଼କୁ ମାଡ଼ି ଆସିଲେ । ଦିଲ୍ଲୀ ରାଜ୍ୟ ନିୟମ ଅନୁଯାୟୀ ବର୍ତ୍ତମାନ ଅହମଦ ଶାହର ଦାୟିତ୍ୱାଧୀନରେ ଥିଲା । ସେଥିଯୋଗୁଁ ମରାଠୀମାନେ ଆକ୍ରମଣ ଦିଲ୍ଲୀଠାରୁ ଆରମ୍ଭ କରିଲେ । ସେମାନେ

ଅହମ୍ମଦ ଶାହର ଅଧୀନସ୍ଥ ମନ୍ତ୍ରୀକୁ ମାରି ଦିଲ୍ଲୀକୁ ଖୁବ୍ ଲୁଟିନେଲେ । ସିଂହମାନେ ମଧ୍ୟ ସେତେବେଳେ ପୂର୍ବ ଅଞ୍ଚଳରେ ପହଞ୍ଚି ଭଲ ଭାବେ ମାରଧର କରି ଲୁଟି ଚାଲିଥିଲେ, କିନ୍ତୁ ଫେରିବା ବେଳେ ରାସ୍ତାରେ ମରାଠୀମାନଙ୍କ ସହ ସମ୍ମୁଖୀନ କରିବା ବେଳେ ଅଗଣିତ ସିଂହ ଶହୀଦ ପ୍ରାପ୍ତ କରିଥିଲେ ।

ଯେତେବେଳେ ମରାଠୀମାନେ ପୁଣି ପଞ୍ଜାବ ଠାରେ ପ୍ରବେଶ କରିଲେ, ତାହା ଅହମ୍ମଦ ଶାହକୁ ଖବର ମିଳିଗଲା । ସେ ଦୁଇବର୍ଷ ପରେ ଦେଢ଼ଲକ୍ଷ ଅଶ୍ୱବାହିନୀ ସହ ପୁଣି ଆକ୍ରମଣ କରିଦେଲା । ଲାହୋର ଠାରେ ପହଞ୍ଚି ସେ ସବୁ ପଞ୍ଜାବୀ ଇତ୍ୟାଦି କେତେ ହିନ୍ଦୁସ୍ତାନୀ ଅଞ୍ଚଳରେ ମୁସଲମାନ ନବାବମାନଙ୍କୁ ସନ୍ଦେଶ ଦେଇ ଡକାଇ ଦେଲା । ସେହିପରି ଅହମଦ ଶାହର ଫୌଜ ସଂଖ୍ୟା ପ୍ରାୟତଃ ତିନି ଲକ୍ଷ ସାଢ଼େ ତିନିଲକ୍ଷ ପାଖାପାଖି ଥିଲା ।

ମରାଠୀମାନେ ଯେତେବେଳେ ଅହମ୍ମଦ ଶାହକୁ ଆକ୍ରମଣ କରିଲେ, ତା'ପରେ ସବୁ କିଛି ଛାଡ଼ି ପ୍ରଥମ ଥର ଭଳି ଦିଲ୍ଲୀ ପାଖରେ ଆସି ରହିଗଲେ ଓ ଅହମ୍ମଦ ଶାହ ସହିତ ସାମନା କରିବା ପାଇଁ ଯୋଜନା କରିଲେ । ଅହମ୍ମଦ ଶାହ ଯେତେବେଳେ ଲାହୋର ଠାରେ ରହି ଯୋଜନା କରିଥିଲା, ମରାଠୀମାନେ ମଧ୍ୟ ଦିଲ୍ଲୀ ନିକଟରେ ରହି ଯୁଦ୍ଧ ଯୋଜନା କରୁଥିଲେ । ସେମାନେ ଦକ୍ଷିଣ ପ୍ରାନ୍ତରୁ ଆହୁରି କୁମକ (ସୈନ୍ୟ) ଅଣାଇଲେ ଓ କେତେକ ହିନ୍ଦୁ ରାଜା ବିଶେଷ କରି ଭରତପୁରୀ ଜାଠମାନଙ୍କୁ ନିଜର ସାଥି କରିବା ପ୍ରଯତ୍ନ କରିଲେ, କିନ୍ତୁ ଏଥିରେ ସେମାନେ ସଫଳତା ପାଇ ନ ଥିଲେ । ହିନ୍ଦୁ ରାଜାମାନଙ୍କର ଏହି ଦୁର୍ବଳତା ଯୋଗୁଁ ସେମାନଙ୍କୁ ପୂର୍ବ ଗୋଲାମୀ ମିଳିଥିଲା, ପରନ୍ତୁ ବର୍ତ୍ତମାନ ପୁଣି ଏହି ପୂର୍ବ ସୁଯୋଗକୁ ସେମାନଙ୍କ ଦୁର୍ବଳତା ନଷ୍ଟ କରିଦେଲା । ପୁଣି ମରାଠୀମାନେ ପ୍ରାୟ ତିନି ଲକ୍ଷ ସୈନ୍ୟ ସହ ପହଞ୍ଚିଲେ । ଯୁଦ୍ଧ ସାମଗ୍ରୀ ମଧ୍ୟ ସେମାନେ ବହୁ ସଂଖ୍ୟାରେ ଏକତ୍ରିତ କରିଦେଲେ । ବର୍ତ୍ତମାନ ସେମାନେ ଦିଲ୍ଲୀ ପହଞ୍ଚ ପାନିପଥ ଓ କରନାଲର ଯୁଦ୍ଧକ୍ଷେତ୍ର ଠାରେ ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଲେ । ମରାଠୀମାନେ ମଧ୍ୟ ହିନ୍ଦୁମାନଙ୍କ ମଧ୍ୟରେ ଖୁବ୍ ପ୍ରସିଦ୍ଧ ଯୋଦ୍ଧା ଜାତିର ଥିଲେ । ସେଥିଯୋଗୁଁ ବର୍ତ୍ତମାନ ମରାଠୀମାନେ ମଧ୍ୟ ବହୁତ ବିଜୟୀମାନଙ୍କ ମଧ୍ୟରେ ଥିଲେ । ନିଜ ଉପରେ ସେମାନଙ୍କର ପୂରା ବିଶ୍ୱାସ ଥିଲା । ଏହିପରି ପ୍ରବନ୍ଧ ସହ ସେମାନେ ଅହମ୍ମଦ ଶାହକୁ ପ୍ରତୀକ୍ଷା କରିଥିଲେ ।

## ଦୁଇ ଦଳର ସଂଘର୍ଷ ଓ ସିଂହମାନଙ୍କ ଆକସ୍ମିକ ଆକ୍ରମଣ

ଠିକ୍ ସେତିକିବେଳେ ଯେତେବେଳେ ଅହମ୍ମଦ ଶାହ ଅବଦାଲୀ ଲାହୋରଠାରୁ ବାହାରିଲା, ସିଂହମାନଙ୍କୁ ମଧ୍ୟ ଏହି ସମସ୍ତ ଖବର ମିଳିଗଲା ଓ ସେମାନେ ମଧ୍ୟ ପ୍ରସ୍ତୁତି ହେବା ଛାଡ଼ି ଆକସ୍ମିକ ଯୁଦ୍ଧ ସକାଶେ ପ୍ରସ୍ତୁତ ହୋଇଗଲେ। ଖୁବ୍ ଭଲ ବାଜି ଲଗାଇଲେ। ଅହମ୍ମଦ ଶାହ ରଣକ୍ଷେତ୍ରରେ ପହଞ୍ଚିବା ସଙ୍ଗେ ସଙ୍ଗେ ଯୁଦ୍ଧ ଆରମ୍ଭ ହୋଇଗଲା। ସିଂହମାନେ ମଧ୍ୟ ରଣଭୂମିରେ ଯୁଦ୍ଧ ସମୟରେ ନିଜର କାମ କରି ଚାଲିଲେ। ସେତେବେଳେ ପଞ୍ଜାବଠାରେ ମୁସଲମାନ ହାକିମ ଖାଲି ହୋଇଯାଇଥିଲେ କାରଣ ସମସ୍ତ ହାକିମମାନେ ନିଜ ନିଜ ସୈନ୍ୟମାନଙ୍କ ସହ ଅହମ୍ମଦ ଶାହ ସହିତ ଯୁଦ୍ଧରେ ଯୋଗ ଦେଇଥିଲେ ଓ ସିଂହମାନଙ୍କୁ ଅବରୋଧ କରିବା ପାଇଁ କେହିନଥିଲେ, ସେଥିଯୋଗୁଁ ସିଂହମାନେ ସେତେବେଳେ ତୋଷାମଦିଆଙ୍କୁ ସୋଧନ କରିବାପାଇଁ ଫରକ ରଖିନଥିଲେ।

## ମରାଠୀମାନଙ୍କ ପରାଜୟ

ମରାଠି ଓ ଅହମ୍ମଦ ଶାହ ଅବଦାଲୀର ସଂଗ୍ରାମ ପ୍ରାୟ ତିନି ମାସ ଲାଗିରହିଲା ଓ କେହି ପଛକୁ ହଟୁ ନାହାନ୍ତି। ସେତେବେଳେ ହିନ୍ଦୁସ୍ତାନରେ ମରାଠୀ ବ୍ୟତୀତ ରାଜପୁତ ରାଜାମାନଙ୍କର ମଧ୍ୟ ଖୁବ୍ ଶକ୍ତି ଥିଲା, କାରଣ ସେମାନଙ୍କୁ କେହି ନିମନ୍ତ୍ରିତ କରିନଥିଲେ କିମ୍ବା ଜଣେ ଜଣଙ୍କୁ ସାହାଯ୍ୟ କରିବା ପରାମର୍ଶ ନ ଥିଲା। ମୁସଲମାନ ଲକ୍ଷ୍ନୌ ଯାଏଁ ଅହମ୍ମଦ ଶାହକୁ ସାହାଯ୍ୟ ସକାଶେ ସଂପୃକ୍ତ ଥିଲେ। କୁହାଯାଇଛି କି ଯେତେବେଳେ ଖାଦ୍ୟସାମଗ୍ରୀ ଶେଷ ହୋଇଗଲା, ଦୁଇ ପକ୍ଷର ସେନାମାନଙ୍କ ମଧ୍ୟରେ ବ୍ୟସ୍ତତା ଖେଳେଇ ଯାଉଥିଲା। ଏହି ସମୟରେ ସେନାମାନଙ୍କୁ ସମ୍ଭାଳିବା ଓ ଯୁଦ୍ଧ ପରିଚାଳନା କରିବା କଷ୍ଟକର ଥିଲା। ମରାଠୀମାନେ ନିଶ୍ଚିତ ଭାବେ ପ୍ରସିଦ୍ଧ ଯୋଦ୍ଧା ଥିଲେ, କିନ୍ତୁ ସେହି ସମୟରେ ହୃଦୟ ଛାଡ଼ି ଦେଲେ। ଅନ୍ୟପଟରେ ଅହମ୍ମଦ ଶାହ ନିଜେ ଚଣା, ମୁଢ଼ି ଭଜା ଫୌଜମାନଙ୍କୁ ବାଣ୍ଟୁଥିଲା, ସେମାନଙ୍କୁ ଉତ୍ସାହିତ ଓ ପ୍ରେରଣା ଦେଉଥିଲା। ସେଥିଯୋଗୁଁ ସେ ସେହି କଠିନ ସଙ୍କଟ ସମୟରେ ମନ ରଖିଲେ ପରନ୍ତୁ ଏହିପରି ଲଢୁଥିବା ମରାଠୀମାନଙ୍କ ମନୋବଳ ଭାଙ୍ଗିଗଲା ଓ ସେମାନଙ୍କ ମୁଖ୍ୟ ନାୟକ ବାଜୀ ରାଓର ଯୁଦ୍ଧରେ ମୃତ୍ୟୁ ହେଲା। ଏହିପରି ୩-୪ ମାସର ବଡ଼ ଯୁଦ୍ଧ ପରେ ଅହମ୍ମଦ ଶାହ ବିଜୟ ପ୍ରାପ୍ତ କରିଲା ଓ ମରାଠୀମାନଙ୍କ ଏତେ କ୍ଷତି

ହେଲା, ଯାହାକି ସେମାନେ ଦ୍ୱିତୀୟରେ ଛିଡା ହୋଇପାରିନଥିଲେ। ସେମାନଙ୍କ ସବୁ ଜିନିଷ ଅହମ୍ମଦ ଶାହର ହାତରେ ଆସିଲା ଓ ତାହା କେତେ କୋଟି ଟଙ୍କାର ଥିଲା। ଇତିହାସରେ ବର୍ଣ୍ଣିତ ଅଛି କି- ମରାଠୀମାନଙ୍କ ପରାସ୍ତ ପରେ ଅହମ୍ମଦ ଶାହର ବହୁତ ଗର୍ବ ହୋଇଗଲା। ତାହା ସ୍ପଷ୍ଟ ଜଣାପଡ଼ିଲା, ସେତେବେଳେ ହିନ୍ଦ୍‌ରେ ତାହାକୁ ପ୍ରତିରୋଧ କରିବାପାଇଁ କିଏ ଅଛି ? ସେ ତୁରନ୍ତ ଅଗ୍ରସର ହୋଇ ଦିଲ୍ଲୀ ଲୁଟିଲା ଓ ପାଖାପାଖି ଶହ ଶହ ମାଇଲ ଯାଏଁ ତାହା ଫୌଜ ଲୁଟି ଉତ୍ପାତ କରିଚାଲିଲେ। ଯାହା ମନରେ ଆସିଲା ତାହା କରିଲେ, ବହୁତ ହିନ୍ଦୁ ବାଳକ ବାଳିକାମାନଙ୍କୁ ଧରି ସାଥିରେ ନେଲା। ସେମାନଙ୍କୁ ଚାକର କରି ରଖିଲା। ସେମାନଙ୍କ ମୁଣ୍ଡରେ ବୋଝ ଲଦି ସାଙ୍ଗରେ ନେଲା।

## ଅହମ୍ମଦ ଶାହ ସିଂହମାନଙ୍କ ପଛରେ

ଅହମ୍ମଦ ଶାହ ନିଜର ମନଇଚ୍ଛା କାମ କରିଲା ଓ ସିଂହମାନେ ମଧ୍ୟ ମନଇଚ୍ଛା ଲୁଟ୍‌ପାଟ କରିଲେ, ଅହମ୍ମଦ ଶାହର ଜିନିଷ, ଧନ ଖୁବ୍ ଲୁଟିଲେ। ସେମାନେ ଚିତ୍କାର କରି ରହୁଥିଲେ, ଧକ୍କା ମାରି ମାରି ଆଗକୁ କାବୁଲ ତରଫକୁ ଯାଉଥିଲେ, ସେମାନଙ୍କଠାରୁ ଛଡ଼ାଇବା ଶକ୍ତି ସିଂହ ଛଡ଼ା ଆଉ କିଏ କରିପାରିବ ? ସେଥିଯୋଗୁଁ ସେମାନଙ୍କ ପାଇଁ ସିଂହମାନେ ବିଶେଷଭାବେ ସାହସପୂର୍ଣ୍ଣ କାର୍ଯ୍ୟ କରିଥିଲେ। ବ୍ୟାସ ନଦୀ ଘାଟକୁ ଏମିତି ଘେରାଉ କରିଲେ କି ଦୂର ଯାଏଁ ବିସ୍ତାରିତ ହୋଇଥିବା ବହୁସଂଖ୍ୟକ ସେନାବାହିନୀ ସିଂହମାନଙ୍କର କିଛି କ୍ଷତି କରିପାରିଲା ନାହିଁ ଓ ସିଂହ ନିଜ କାମ କରିଚାଲିଲେ। ଲାହୋର ପହଞ୍ଚି ଅହମ୍ମଦ ଶାହ ବିଚାର କରିଲା କି-ମୁଁ ମରାଠୀମାନଙ୍କ ବହୁତ ବଡ ଶକ୍ତିକୁ ନଷ୍ଟ କରିପାରିଲି, କିନ୍ତୁ ଏହି ମୁଠାଟିଏ ସିଂହମାନଙ୍କୁ ମୋର ଭୟ ନାହିଁ। କିନ୍ତୁ ମୋ ନିକଟରେ ସିଂହମାନେ କଣ ? ସେ ନିଜେ ଲାହୋର ଠାରେ ରହି ନିଜର ଜଣେ ପ୍ରସିଦ୍ଧ ସେନାଧକ୍ଷ ବୁଲନ୍ଦ ଖାଁ ସହିତ ହଜାର ଅବଦାଲୀ ଫୌଜଙ୍କ ସହିତ ସିଂହମାନଙ୍କୁ ମାରିବା ପାଇଁ ପଠାଇଲା। ସେହି ସମୟରେ ସିଂହମାନେ ମଧ୍ୟ ଆକ୍ରମଣର ଆକ୍ରୋଶରେ ଏକତ୍ରିତ ହୋଇଥିଲେ, ଯାହାକି ଶହ ଶହ ମାଇଲ ଯାଏଁ ବିସ୍ତାରିତ ଜଙ୍ଗଲ ଥିଲା। ବିଦେଶୀ ସେନାମାନେ ସିଂହମାନଙ୍କୁ ଖୋଜି ଖୋଜି ଏକତରଫା ହୋଇ ପହଞ୍ଚୁଥିଲେ। ସିଂହ ରାତି ଦିନ ଆକସ୍ମିକ ଆକ୍ରମଣ କରିଚାଲିଲେ ଓ ବିଦେଶୀ ଶତ୍ରୁ ଲକ୍ଷ ପ୍ରକାର ଚେଷ୍ଟା କରି ମଧ୍ୟ ବିଫଳ ହେଉଥିଲେ।

ସିଂହମାନଙ୍କ ପଛରେ ଯାଇ ପଠାଣମାନେ କଣ୍ଟା ପଶି ରକ୍ତାକ୍ତ ହୋଇ ଲୁଗାପଟା ଚିରି ଫାଡ଼ି ଫେରି ଆସୁଥିଲେ, ପ୍ରାୟ ଅଧମାଇଲ ଯାଏ ଜଙ୍ଗଲ ରାସ୍ତାରୁ ଫେରି ଆସୁଥିଲେ କିନ୍ତୁ ସିଂହମାନଙ୍କ ଘୋଡ଼ାମାନେ ହରିଣ ଭଳି ଦୌଡ଼ି, କ୍ଷଣକ ମଧ୍ୟରେ ଜଙ୍ଗଲରେ ଶୂନ୍ୟ ହୋଇଯାଉଥିଲେ।

## ସିଂହମାନେ ପୁଣି ଧର୍ମଯୁଦ୍ଧ କରିଥିଲେ

ବୁଲନ୍ଦ ଖାଁର ଏହିପରି ଯୁଦ୍ଧରେ କିଛି ବୁଦ୍ଧି ଆସିଲା ନାହିଁ। ସେ ସିଂହମାନଙ୍କୁ ସନ୍ଦେଶ ପଠାଇଲା, ଆପଣମାନେ ଏମିତି ଭାବେ ଆମମାନଙ୍କୁ ଖରାପ କରନ୍ତୁ ନାହିଁ, ଆସ ଧର୍ମ ଯୁଦ୍ଧ କରିବା, ଦୁଇ ଚାରି ହଜାର ଆପଣମାନେ ବାହାର କରନ୍ତୁ ଓ ଆମ୍ଭେ ମଧ୍ୟ ସେମିତି କରିବୁ। ଅନ୍ୟ ସେନାମାନେ ପଛରେ ରହି ବାହାଦୁର ଭଳି ଯୁଦ୍ଧ ସାମନାକୁ ଆସି ଯୁଦ୍ଧ କରନ୍ତୁ ଓ ଯେଉଁମାନେ ହାରିବେ ସେମାନେ ପଞ୍ଜାବ ଛାଡ଼ିଦେବେ। ଏହି ସର୍ତ୍ତ ସହ ଆସି ଧର୍ମ ଯୁଦ୍ଧ କରନ୍ତୁ। ସିଂହମାନେ ତ କାପୁରୁଷ ନ ଥିଲେ, ସେମାନେ ନିର୍ଭୀକ ଥିଲେ। ସେଥିଯୋଗୁଁ ଦୁଇ ହଜାର ଯୋଦ୍ଧା ସିଂହଙ୍କୁ ଆଗକୁ ପଠାଇଦେଲେ ଓ ବାକି ଖାଲସା ଦଳ ପଛରେ ରହିଲେ। ଦୁରାନୀ ମଧ୍ୟ ଦୁଇ ହଜାର ଆଗକୁ ବଢ଼ିଲେ ଓ ଚାଲିଲା ରକ୍ତର ହୋଲି ଖେଳ। ଯାହ ଅଲ୍ଲା ଓ ସତ ଶ୍ରୀ ଅକାଳର ଶବ୍ଦରେ ରଣଭୂମି ଗୁଞ୍ଜରିତ ହୋଇଉଠିଲା। ଦୁରାନୀ ପଠାଣମାନଙ୍କ ଶକ୍ତିରେ ବଡ଼ ଅହଙ୍କାର ଥିଲା। କିନ୍ତୁ ଏହିପରି ସମ୍ମୁଖ ହୋଇ ସିଂହମାନଙ୍କ ହାତ ଏମିତି କେବେ ଦେଖି ନ ଥିଲେ। ସେଥିଯୋଗୁଁ ଘଣ୍ଟେ ଦେଢ଼ ଘଣ୍ଟାରଯୁଦ୍ଧ ମଧ୍ୟରେ ଦୁରାନୀ ପଠାଣ ସୈନ୍ୟ ଅଧାରୁ ଅଧିକଙ୍କୁ ସିଂହମାନେ ମାରି ଖାଲି କରିଦେଲେ ଓ ଅବଶିଷ୍ଟାଂଶ ପ୍ରାଣ ବଞ୍ଚାଇ ତୋବା ତୋବା କରି ଦୌଡ଼ି ଚାଲିଲେ। ସିଂହମାନେ ଦୁରାନୀମାନଙ୍କୁ ରଣଭୂମି ଛଡ଼ାଇବା ଖୁବ୍ ମଜା ଚଖାଇଲେ।

ନିଜ ସୈନ୍ୟମାନଙ୍କ ଲଜ୍ଜାଜନକ ପରାସ୍ତ ଦେଖି ବୁଲନ୍ଦ ଖାଁ ଜିଭ କାମୁଡ଼ି ଦେଲା। ଶପଥ ମଧ୍ୟ ନେଲା କି ମୁଁ ଧୋକା ଦେବି ନାହିଁ। ଏହା ଭୁଲ ହୋଇଗଲା ଓ ସମସ୍ତ ଫୌଜଙ୍କୁ ଏକତ୍ରିତ କରି ଆକ୍ରମଣ କରିବାପାଇଁ ହୁକୁମ ଦେଲା କିନ୍ତୁ ଅବଶିଷ୍ଟାଂଶ ଖାଲସା ପଛରେ ଅଳସ ହୋଇ ଛିଡା ହୋଇନଥିଲେ, ସେଥିଯୋଗୁଁ ଆସୁଥିବା ଦୁରାନୀମାନଙ୍କୁ ସିଂହ ପ୍ରଥମରୁ ଆକ୍ରମଣ କରି ଚାଞ୍ଚଲ୍ୟ ଖେଳେଇ ଦେଲେ ଓ ବୁଲନ୍ଦ ଖାଁର ସବୁ ସେନାମାନେ ପରାସ୍ତ ହେଲେ ଓ ବୁଲନ୍ଦ ଖାଁ ପଛକୁ ପଳାୟନ କରିଲା।

## ବୁଲନ୍ଦ ଖାଁ ବଚନ ଭ୍ରଷ୍ଟ କରିଲା ଓ ପୁଣି ସେନା ଅଣାଇଲା

ବର୍ତ୍ତମାନ ଅହମଦ ଶାହ ଲାହୋର ଠାରେ ଥିବା ବୁଲନ୍ଦ ଖାଁ ପୁଣି ସେନା ମଗାଇଲା। ସିଂହମାନେ ଦେଖିଲେ ଯେତେବେଳେ ମୁସଲମାନ ଫୌଜ ଆସିବା ଜାଣିପାରିଲେ ସେମାନେ ଗରିଲା ଯୁଦ୍ଧ ଆରମ୍ଭ କରିଦେଲେ। ବିଦେଶୀ ସୈନ୍ୟମାନେ ସିଂହମାନଙ୍କୁ ପିଛା କରି ପଛରେ ପଛରେ ଜଙ୍ଗଲ ମଧ୍ୟରେ ପଶିଗଲେ; କିନ୍ତୁ ଅଜ୍ଞାତ ରାସ୍ତା, କଣ୍ଟାବାଡ଼, ପାଣି ଅଭାବ ସେମାନଙ୍କୁ ବହୁତ କଷ୍ଟ ଭୋଗିବାକୁ ପଡ଼ିଲା। ସିଂହମାନେ ଜଙ୍ଗଲ ବାସିନ୍ଦା ଥିଲେ। ସେମାନଙ୍କ ପ୍ରତିଦିନର ଅଭ୍ୟାସ ଥିଲା ଘୋଡ଼ା ହରିଣ ଭଳି ଦୌଡ଼ାଇ ଜଙ୍ଗଲ ମଧ୍ୟରେ ଅଦୃଶ୍ୟ ହୋଇଯାଉଥିଲେ। ଏହିପରି ଭାବେ ସେମାନଙ୍କର ଦେଢ଼ମାସ ନଷ୍ଟ ହୋଇଗଲା ଓ ବୁଲନ୍ଦ ଖାଁ ଲାହୋର ଫେରିଗଲା। ଅହମଦ ଶାହକୁ ଖବର ଦେଲା କି ସିଂହମାନେ ମୋର ବଶୀଭୂତ ହୋଇପାରିଲେ ନାହିଁ।

କୁହାଯାଇଛି କି ସେହି ଅବସରରେ ପୁଅ-ଝିଅମାନଙ୍କୁ ଓ ସାଧାରଣ ପୁଅ ଝିଅଙ୍କୁ ବାନ୍ଧି ବସ୍ତା ସହିତ ଅହମଦ ଶାହ ସୈନ୍ୟମାନଙ୍କୁ ନେଉଥିଲା ଓ ସେମାନଙ୍କୁ ସିଂହମାନେ ବ୍ୟାସ କୂଳରୁ ମୁକ୍ତ କରାଇପାରି ନ ଥିଲେ ସେମାନଙ୍କୁ ଲାହୋର ଠାରେ କିଛିଦିନ ରଖି ପୁଣି ଆଗକୁ ଯାଇଥିଲା। ସିଂହମାନେ ଏହି ସମାଚାର ପାଇଲେ। ଅହମ୍ମଦ ଶାହ ସିଂହମାନଙ୍କ ତଦନ୍ତ ଜାରୀ ରଖିବାପାଇଁ ହୁକୁମ ଦେଇ କାବୁଲି ଚାଲିଗଲା। ସିଂହମାନେ ଏହି ସମୂହଙ୍କୁ ଚିନାବ ଘାଟି ପାଖରେ ଘେରାଉ କରିଲେ ଓ ଅହମ୍ମଦ ଶାହର ସୈନ୍ୟମାନଙ୍କୁ ତଲବାର ଦ୍ୱାରା ମାରି ସମସ୍ତଙ୍କୁ ମୁକ୍ତ କରାଇଲେ। ସେମାନଙ୍କୁ ଖାଲସା ଖର୍ଚ୍ଚ ଦେଇ ସେମାନଙ୍କ ସଠିକ୍ ଘର ଠିକଣାରେ ପହଞ୍ଚାଇଥିଲେ।

## ସିଂହମାନେ ଅନ୍ୟ ଏକ ଦୁର୍ଗ ତିଆରି କରିଲେ

ସିଂହମାନେ ଜଙ୍ଗଲ ଠାରେ ରହୁଥିଲେ, କିନ୍ତୁ ସେମାନଙ୍କ ଶକ୍ତି ଦିନକୁ ଦିନ ବଢ଼ି ଚାଲିଥିଲା। ଅହମ୍ମଦ ନିଯୁକ୍ତି କରାଇଥିବା ହାକିମ ଯେଉଁମାନେ ସିୟାଲକୋଟ୍ ଓ ଲାହୋର ଇତ୍ୟାଦି ଠାରେ ରହୁଥିଲେ। ସିଂହମାନେ ସେମାନଙ୍କୁ ଖୁବ୍ ଦଣ୍ଡ ଦେଲେ। ସିୟାଲକୋଟ୍ ହାକିମ ମରିଗଲା କିନ୍ତୁ ଲାହୋର ହାକିମ ଡରିମରି ସମାଧାନ କରିନେଲା। ତାହାକୁ ଅହମ୍ମଦ ଶାହ ବହିଷ୍କାର କରିଦେଲା। ତାହା ବଦଳରେ ଅନ୍ୟ ଜଣେ ଲୋକକୁ କାବୁଲଠାରୁ ୭ହଜାର ସୈନ୍ୟ ସହ ପଠାଇଲା।

ସେତେବେଳେ ୧୮୧୬ ସମୟରେ ଦ୍ୱିତୀୟ ଦୁର୍ଗ ଗୁଜରା ନିବାସୀ ସିଂହମାନେ ପ୍ରସ୍ତୁତ କରିଲେ। ତାହାର ପ୍ରବନ୍ଧତା ସ.ଚଢତ ସିଂହଙ୍କ ଦାୟିତ୍ୱରେ ରହିଲା। ତାହା ଏହି ଦୁର୍ଗ ଥିଲା ଯେଉଁଠାରେ ସ. ମହାସିଂହ ଓ ମହାରାଜା ରଣଜିତ ସିଂହଙ୍କ ଜନ୍ମ ହୋଇଥିଲା। ସେହି ଦୁର୍ଗ ବହୁତ ଦିନ ଯାଏଁ ଠିକ୍ ଥିଲା। ଅହମ୍ମଦ ଶାହର ନିଯୁକ୍ତି ପାଇଥିବା ସୁବାକୁ ସିଂହମାନେ ଝେଲମ କୂଳରେ ଘେରାଉ କରିଲେ। ତାହାକୁ ସାହାଯ୍ୟ କରିବାପାଇଁ ସେହି ଅଞ୍ଚଳର ମୁସଲମାନ ହାକିମମାନେ ପହଞ୍ଚିଗଲେ, କିନ୍ତୁ ଶେଷରେ ଲାହୋର ଠାରୁ ଯାଇ ସେନାମାନେ ତାହାକୁ ସାହାଯ୍ୟ କରିଲେ ଓ ଲାହୋର ପହଞ୍ଚିଗଲେ। ସେହି ନୂଆ ସୁବା ସ.ଚଢତ ସିଂହଙ୍କ ଦୁର୍ଗକୁ ଘେରାଉ କରିଲା। ସ.ଚଢତ ସିଂହଙ୍କ ପାଖରେ ବହୁତ କମ ସିଂହ ଥିଲେ, କିନ୍ତୁ ସେମାନେ ଖୁବ୍ ସାହାସିକତା ସହ ସେମାନଙ୍କ ସହ ଲଢି ଚାଲିଲେ ଓ ୧୩ ଦିନ ଯାଏଁ ଶତ୍ରୁ ମାନଙ୍କ ସହ ଲଢି ଚାଲିଲେ। ୧୩ ଦିନ ପରେ ଖାଲସାମାନଙ୍କୁ ଖବର ମିଳିଲା ଯେଉଁମାନେ ଜଙ୍ଗଲ ବାହାରେ ଥିଲେ ସେମାନେ ଶତ୍ରୁଙ୍କ ସହିତ ଆକ୍ରମଣ କରିଦେଲେ। ଯାହାଦ୍ୱାରା ମୁସଲମାନମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ଖେଳିଗଲା। ଅଗଣିତ ଯୁଦ୍ଧ ସାମଗ୍ରୀ ତୋପ ଇତ୍ୟାଦି ଖାଲସାଙ୍କ ହାତରେ ପଡ଼ିଲା। ସେଗୁଡ଼ିକୁ ଦୁର୍ଗ ମଧ୍ୟରେ ରଖିଲେ।

## ଜୈନ ଖାଁର ଅତ୍ୟାଚାର

ଅହମ୍ମଦ ଶାହ ଏହା ଶୁଣି ଖୁବ୍ ଚିନ୍ତିତ ହୋଇଗଲା। ସେ ମୁଲତାନର ସୁବା ବୁଲନ୍ଦ ଖାଁ ଓ ସରହଦର ସୁବା ଜୈନ ଖାଁକୁ ଲାହୋରର ସୁବାକୁ ସାହାଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଲା। ଅହମ୍ମଦ ଶାହ ୨୦ ହଜାର ସୈନ୍ୟ ପଠାଇଲା। ଯେତେବେଳେ ଏହି ସୈନ୍ୟଦଳ ଲାହୋର ଠାରେ ପହଞ୍ଚିଲେ ପୁଣି ଥରେ ସିଂହମାନଙ୍କ ଉପରେ ଘୋର ସଙ୍କଟ ମାଡ଼ି ଆସିଲା। ଜୈନ ଖାଁ ପଟ୍ଟୀକୁ ମୁଖ୍ୟ କାର୍ଯ୍ୟାଳୟ ସ୍ଥାପନା କରିଲା ଓ ନିର୍ଦ୍ଦେଶ ଦେଲା ଗୋଟିଏ ଗୋଟିଏ ଗାଁରେ ୩୦- ୩୦ ସୈନ୍ୟ ରହି ଗାଁର ମୁଖିଆଙ୍କୁ କହିଲା କି ଯେଉଁ ଗ୍ରାମରେ ସିଂହ ଦିନରେ ରାତିରେ ରହୁଛନ୍ତି ଜଣାପଡ଼ିବ। ସେମାନଙ୍କୁ ଲୁଟାଯାଉ ଓ ହତ୍ୟା କରାଯାଉ। ସେଥିଯୋଗୁଁ ସେ ଏହିପରି ଭାବେ ସେ ସମଗ୍ର ପଞ୍ଜାବଠାରେ ତାହାର ହୁକୁମ ସହ ସେନା ଶିବିର ଖୋଲିଲା। କେତେକ ଗ୍ରାମବାସୀ ସିଂହଙ୍କୁ ଧରି ସେମାନଙ୍କୁ ହତ୍ୟା କଲେ।

## ସିଂହନୀଙ୍କ ପ୍ରତି ଜୈନ ଖାଁର ଅତ୍ୟାଚାର

ସେତେବେଳେ ସିଂହମାନେ ବହୁତ ଦୂର ଦୂର ଜଙ୍ଗଲ ଭିତରକୁ ଚାଲିଗଲେ। ପରନ୍ତୁ ସିଂହମାନଙ୍କ ଘରମାନଙ୍କୁ ଧ୍ୱଂସ କରାଗଲା। ସିଂହମାନଙ୍କ ସନ୍ତାନ ଓ ସ୍ତ୍ରୀ (ସିଂହନୀ)ମାନଙ୍କୁ ହତ୍ୟା କରାଗଲା। କେତେଜଣଙ୍କୁ ଗାଁରେ ହତ୍ୟା କରାଗଲା, କିନ୍ତୁ ବହୁତଙ୍କୁ ଧରି ଧରି ପଟ୍ଟି ପଠାଇଦିଆଗଲା। ଦୁଇ ତିନି ଦିନ ଯାଏଁ ସେମାନଙ୍କୁ ଖାଦ୍ୟ ଦିଆଯାଉନଥିଲା, ପରନ୍ତୁ ତୃତୀୟ ଦିନ ପରେ ସେମାନଙ୍କୁ ଜୈନ ଖାଁ କହିଲା, ତୁମେମାନେ ମୁସଲମାନ ହୋଇଯାଅ। ନଚେତ୍ ତୁମମାନଙ୍କୁ ହତ୍ୟା କରାଯିବ। ସିଂହ ସ୍ତ୍ରୀମାନେ ମଧ୍ୟ ସିଂହନୀ ଥିଲେ, ସେମାନଙ୍କୁ ଗୋଟିଏ କଥା କହିଲେ ସେମାନେ ଦୁଇଟି କଥା ଶୁଣାଇଲେ, ପୁଣି ଯିଏ ବେଶି କହିଲା ଓ ତୀକ୍ଷ୍ଣ ଉତ୍ତର ଦେବାକୁ ଚାବୁକରେ ପିଟିଲା। ସେମାନେ ମଧ୍ୟ ଧାର୍ମିକ ଥିଲେ, ଗୁରୁ ଅର୍ଜୁନ ଦେବଜୀ ଓ ଗୁରୁ ତେଗ ବାହାଦୁରଜୀଙ୍କ ବଳିଦାନକୁ ସ୍ମରଣ କରି ସମସ୍ତ ଦୁଃଖକୁ ସହ୍ୟ କରି ମଧ୍ୟ ଓ୍ୱାହେଗୁରୁଙ୍କୁ ଧନ୍ୟବାଦ ଦେଉଥିଲେ। ଯେତେବେଳେ ସିଂହନୀମାନେ ମାନିଲେ ନାହିଁ, ଜୈନ ଖାଁ କହିଲା କାଲି ସେମାନଙ୍କୁ ପଚାରିବା, ଆଜି ତାଙ୍କୁ ଛାଡ଼ିଦିଅ। କିନ୍ତୁ ଚକ୍କି (ଘୋରଣା) ସେମାନଙ୍କ ଆଗରେ ରଖ ଓ ଦେଢ଼ ଦେଢ଼ ମହଣ ଦାନା ପେଷିବାକୁ ଦିଅ। ଯିଏ ପେଶିବ ନାହିଁ ତାହାର ଶରୀରରେ ଚାବୁକ ମାଡ଼ ଦିଅ।

ଚତୁର୍ଥ ଦିନ ପୁଣି ଗୋଟିଏ ଗୋଟିଏ ରୁଟି ଓ ଗିନାଟିଏ ପାଣି ସିଂହନୀମାନଙ୍କୁ ଦିଆଗଲା। ନବଜାତ ଶିଶୁ ଦୁଧ ମାଗୁଥିଲେ, କିନ୍ତୁ ଦୁଧ କେଉଁଠାରୁ ମିଳିବ ଶିଶମାନେ କାନ୍ଦି କାନ୍ଦି ତଳେ ଶୋଇପଡ଼ିଲେ। ଦାନା ପେଷିବା ପାଇଁ ମିଳିବା ବେଳେ ସିଂହନୀମାନେ ଦାନା ପେଷୁଥିଲେ ଓ ଗୁରୁଜୀଙ୍କୁ ଧନ୍ୟବାଦ ଦେଇ କହୁଥିଲେ ହେ ପ୍ରଭୁ ଯାହା ତୁମର ଇଚ୍ଛା। ତୁମେ ଯାହା ଆମ୍ଭମାନଙ୍କ ଠିକ୍ ବିଚାର କରୁଛ ତାହାହିଁ ହେଉ ଓ ମଧୁର ମନରେ ଆମ୍ଭେ ତାହା ସ୍ୱୀକାର କରୁଛୁ ଏହା ମନେ ପକାଇ-

ତେରା କୀଆ ମୀଠା ଲାଗୈ
ହରି ନାମୁ ପଦାର୍ଥୁ ନାନକୁ ମାଁଗୈ।।

ଦିନ ଆରମ୍ଭ ହେଲା, ଜୈନ ଖାଁ ପୁଣି ଧର୍ମ ବଦଳାଇବା ପାଇଁ ସିଂହନୀମାନଙ୍କୁ କହିଲା, ବହୁତ ଦୁଃଖ ସହ ଭୟଭୀତ କରାଇଦେଲା। ପରନ୍ତୁ ସେମାନେ ମୋଟେ ଶୁଣି ନ ଥିଲେ। ତାହାପରେ ସେ ସିପାହୀମାନଙ୍କୁ ଆଦେଶ ଦେଲା କି ସେମାନଙ୍କର

ନବଜାତ ଶିଶୁମାନଙ୍କୁ ବାଧ୍ୟତାପୂର୍ବକ ଛଡ଼ାଇନେଲେ । ହତ୍ୟାକାରୀମାନଙ୍କୁ ଆଦେଶ ଦେଇ ସେହି ଶିଶୁମାନଙ୍କୁ ଖଣ୍ଡ ଖଣ୍ଡ କରି କାଟି ସେମାନଙ୍କ କୋଳରେ ପକାଇଦେଲା ।

କୁହାଯାଇଛି କି ଏହି ଅତ୍ୟାଚାରିତା ଓ ନିଷ୍ଠୁର ବ୍ୟବହାର ଦେଖି ନରମ ହୃଦୟର ମୁସଲମାନମାନେ ମଧ୍ୟ ରୋଦନ କରିଥିଲେ, ପରନ୍ତୁ ଏହି ନିର୍ମମ ବ୍ୟବହାରର କାର୍ଯ୍ୟକଳାପକୁ ବନ୍ଦ କରିବାପାଇଁ କାହାର ସାହସ ନ ଥିଲା । ଶିଶୁମାନଙ୍କ ଖଣ୍ଡ ଖଣ୍ଡ ହୋଇଥିବା ଅବସ୍ଥାରେ ଦେଖି ମାତୃତ୍ୱ ପୂର୍ଣ୍ଣ ସିଂହନୀମାନେ ଗଭୀର ଶୋକାକୁଳ ହୋଇଥିଲେ, ପରନ୍ତୁ ତାହା ହୃଦୟ ମଧ୍ୟରେ ପାନ କରିଗଲେ । ଯେଉଁ ସିଂହ ସ୍ତ୍ରୀମାନେ ଜବାବ ଦେଉଥିଲେ, ଶିଶୁମାନଙ୍କୁ ଖଣ୍ଡ ଖଣ୍ଡ କରି ମାଳ ତିଆରି କରି ସେମାନଙ୍କ ଗଳାରେ ଝୁଲାଇ ଦେଉଥିଲେ । ଏହି ସମୟରେ ସେମାନଙ୍କ ମୁହଁରୁ କେବଳ ୱାହେଗୁରୁ ଶବ୍ଦ ବାହାରି ପରିବେଶକୁ ଗୁଞ୍ଜରିତ କରୁଥିଲା । ଏମିତି ଭାବେ ସିଂହନୀମାନେ ଏହି ବଳିଦାନର ସ୍ରୋତ ନିଜ ଭାଗରେ ରଖିଥିଲେ ।

## ସିଂହମାନେ ପଟ୍ଟୀକୁ ଆକ୍ରମଣ

ଯେତେବେଳେ ସିଂହମାନଙ୍କୁ ଏହି ଅତ୍ୟାଚାରର ଖବର ପହଞ୍ଚିଲା, ସେମାନେ କ୍ରୋଧରେ ଅଗ୍ନି ଭଳି ଲାଲ ହୋଇଗଲେ । ରକ୍ତ ଗରମ ହୋଇ ମୁଣ୍ଡ ଗରମ ହୋଇଗଲା । ସେମାନେ କ୍ରୋଧ ଓ ଆବେଶ ହୋଇ ପଟ୍ଟୀର ଚାରିପାଖ ଜଙ୍ଗଲମାନଙ୍କରେ ଏକତ୍ରିତ ହୋଇଗଲେ । ଏହି ଅତ୍ୟାଚାରର ଷଷ୍ଠଦିନ ପରେ (ପ୍ରାତଃ) ଅମୃତ ସମୟ ସିଂହମାନେ ପଟ୍ଟୀକୁ ଆକ୍ରମଣ କରିଥିଲେ । ଫୌଜମାନେ ଗାଁମାନଙ୍କରେ ଜାଲ ଭଳି ବିଛେଇ ହୋଇ ରହିଥିଲେ । ସେଥିଯୋଗୁଁ ସିଂହମାନଙ୍କୁ ଏହି ବିରାଟ ଆକ୍ରମଣ ସମୟ ଅବରୋଧ କରିବା ପାଇଁ କେହି ନ ଥିଲେ । ଦୁଇ - ଚାରିହଜାର ସିଂହମାନଙ୍କର କିଛି କ୍ଷତି କରିପାରିଲେ ନାହିଁ, ସିଂହମାନେ ସାହସିକତା ଓ ପରାକ୍ରମ ସହ ପଟ୍ଟୀଠାରେ ପହଞ୍ଚିଗଲେ । କାପୁରୁଷ ଓ ଅତ୍ୟାଚାରୀ ଜୈନ ଖାଁ ସେତେବେଳେ ଲୁଚିଛପି ଦୌଡ଼ି ପ୍ରାଣ ବଞ୍ଚାଇବା ପାଇଁ ସଫଳ ହୋଇଗଲା ଓ ସେ ସରହଁଦ ଠାରେ ନିଃଶ୍ୱାସ ନେଲା । ଅବଶିଷ୍ଟାଂଶ ଲାହୋରର ସୁବା ମୁହମ୍ମଦ ଖାଁ ଓ ମୋମନ ଖାଁଙ୍କୁ ସିଂହମାନେ ଘେରାଉ କରି ଜୀବନ୍ତ ଧରି ନେଲେ ଓ ସେହି ଦୁଷ୍ଟ ପାପୀମାନଙ୍କୁ ଜୀବନ୍ତ ଜଳାଇ ଦେଲେ ।

ସେହି ଧୈର୍ଯ୍ୟଶାଳୀ ଓ ଧନ୍ୟ ସିଂହନୀମାନଙ୍କୁ ସିଂହମାନେ ଛଡ଼ାଇ ନେଲେ। ଶିଶୁ ସନ୍ତାନମାନଙ୍କୁ ଖଣ୍ଡ ଖଣ୍ଡ ଅବସ୍ଥାରେ ଦେଖି ନିଆଁ ଭଳି କ୍ରୋଧିତ ହୋଇଗଲେ। ସିଂହ ଗ୍ରାମମାନଙ୍କରେ ଶିବିର ଲଗାଇ ରହୁଥିବା ରୁହେଲେ ପଠାଣମାନଙ୍କୁ ମଧ୍ଯ ଖୁବ୍ ଦଣ୍ଡ ଦେଲେ ଓ ଥାନା ଶିବିରଗଡ଼ାକୁ ଧ୍ବଂସ କରିଦେଲେ। ଯେତେବେଳେ ମୁସଲମାନ ଫୌଜମାନେ ଏହି ପରିସ୍ଥିତି ଦେଖିଲେ ସେମାନେ ନିଜର ପ୍ରାଣର ଭିକ୍ଷା ମାଗିଲେ, କେତେଜଣ ଶିବିର, ଥାନା ଛାଡ଼ି ରାତାରାତି ଲୁଚି ଚାଲିଗଲେ। ଗ୍ରାମମାନଙ୍କରେ ରହିବା ପାଇଁ କେହି ସାହସ କରି ନ ଥିଲେ।

## ବାବା ଦୀପ ସିଂହଜୀଙ୍କ ଯୁଦ୍ଧ

ଯେତେବେଳେ ଅହମ୍ମଦ ଶାହର ସୈନ୍ୟମାନଙ୍କୁ ସିଂହମାନେ .ମାରି ପଠାଇଦେଲେ, କାବୁଲଠାରେ ରହି ଅହମ୍ମଦ ଶାହ ଦାନ୍ତ ମଝିରେ ଆଙ୍ଗୁଠି ରଖି ଦବାଇ ଚାଲିଲା। ସେ କହିବାକୁ ଲାଗିଲା – ଏହି ପଞ୍ଜାବ ଠାରେ ଆମ ରାସ୍ତାର କଣ୍ଟା ହୋଇ ରାସ୍ତା ଅବରୋଧ କରୁଛି। ସେମାନେ ଆମ୍ଭ ପାଦକୁ ପଞ୍ଜାବରେ ମଧ୍ଯ ପକାଇବାକୁ ଦେଉ ନାହାନ୍ତି, ଯେଉଁଦିନଯାଏଁ ଏମାନଙ୍କୁ ସମାପ୍ତ କରାଯାଉ ନାହିଁ। ବହୁତ ଥର ଏମାନଙ୍କ ସହ ମୁହାଁମୁହିଁ ହୋଇ ସାରିଛି, ପରନ୍ତୁ, 'ମଖନ ଭିତରେ ବାଳ ଭଳି' ଦାନ୍ତ ମଝିରେ ଆସି ଯାଉଛନ୍ତି। ଯେତେଦିନ ଯାଏଁ ଏହି ପଞ୍ଜାବ ଠାରେ ଆନ୍ଦୋଳନ ଓ ଅବରୋଧ ଶେଷ ହୋଇପାରୁ ନାହିଁ, ଆଗକୁ ମୋର ଦିଲ୍ଲୀ ଇତ୍ୟାଦିର ଅଧିକାର କେମିତି ସଫଳ ହୋଇପାରିବ ?

ଏହା ଭାବି ଭାବି ଅହମ୍ମଦ ଶାହ ଭଲ ଭାବେ ସେନାଦଳ ପଞ୍ଜାବକୁ ପଠାଇଲା। ଅଳ୍ପ ଦୂରକୁ ସେନାମାନେ ଯାଇଥିଲେ, ସେଥିଯୋଗୁଁ ବର୍ତ୍ତମାନ ଲକ୍ଷ ଲକ୍ଷ ବିଦେଶୀ ଫୌଜ ସିଂହମାନଙ୍କୁ ମାରିବା ପାଇଁ ଅଗ୍ରସର ହୋଇଗଲେ।

ସିଂହମାନେ ମଧ୍ଯ ଏହି ସୁଯୋଗ ଖୋଜୁଥିଲେ, ତୁରନ୍ତ ଘଞ୍ଚ ଜଙ୍ଗଲ ମଧ୍ଯରେ ପଶିଗଲେ। କେତେ ପାହାଡ଼ ଅଞ୍ଚଳକୁ ଓ କେତେ ମାଳବ ପଟକୁ ଯାଇଥିଲେ, ଅହମ୍ମଦ ଶାହର ଜଣେ ସେନାଧକ୍ଷ କରନେଲ ଜହାନ ଖାଁ ସାତହଜାର ସୈନ୍ୟ ସହ ଅମୃତସର ଠାରେ ଶିବିର ଲଗାଇଲା। ସେଠାରେ ପହଞ୍ଚି ସେ କୂଟନୀତି ମନ୍ଦବୁଦ୍ଧି ପ୍ରୟୋଗ କରିଲା କି ଅମୃତ ସରୋବରକୁ ମାଟି ଭର୍ତ୍ତି କରି ପୂରଣ କରିବାକୁ ଲାଗିଲା। ତାହା ମନରେ ମନ୍ଦବୁଦ୍ଧି ପଶିଗଲା ଓ ଦୁଷ୍ଟମାନେ ତାହାର ତୋଷାମଦ କରି ମୁଣ୍ଡରେ

ଭର୍ତ୍ତି କରିଲେ କି ଏହି ସରୋବରର ଅମୃତ ପାନ କରି ହିଁ ସିଂହମାନେ ବାହାଦୁର ଓ ଯୋଦ୍ଧା ହେଉଛନ୍ତି।

୨୫ ବର୍ଷ ପରେ ମୁସଲମାନ ହାକିମମାନଙ୍କ ଏହି ପବିତ୍ର ଶ୍ରୀ ହରିମନ୍ଦିରକୁ ଦ୍ୱିତୀୟ ଆକ୍ରମଣ ଓ ଅପମାନ କରିଥିଲେ। ପ୍ରଥମେ ମସ୍ସା ରଂଘଡ ଥିଲା ଓ ବର୍ତ୍ତମାନ ଜହାନ ଖାଁ ଏହି ଦୁଷ୍ଟ କାମ କରିବା ପାଇଁ ସାହସ କରିଥିଲା।

ସିଂହମାନେ ଦୂରେଇ ରହିଥିଲେ, କିନ୍ତୁ ସିଂହମାନଙ୍କୁ ଏହି ଖବର ମିଳିଗଲା। ସେତେବେଳେ ଯୋଜନା ପୂରା ହୋଇଥିଲା ଓ ତାହାର ଅଧୀନତ୍ୱ ବାବା ଦୀପ ସିଂହଜୀ ଥିଲେ, ସେ ଦମଦମେ, ଗୁରୁଙ୍କ କାଶୀ ମଠ ଠାରେ ରହୁଥିଲେ। ମହୋଦୟ ଦଶମେଶ ପିତାଙ୍କ ଠାରୁ ଅମୃତ ପାନ (ସେବନ) କରିଥିଲେ। ପୁଣି ଗୁରୁ ମହାରାଜଙ୍କ ଆଦେଶ ଅନୁଯାୟୀ ଗାଁରେ ରହୁଥିଲେ ଓ ଆନନ୍ଦପୁର ଠାରେ ରହି କୌଣସି ଲଢ଼େଇରେ ଯୋଗ ଦେଇ ନ ଥିଲେ। ଯେତେବେଳେ ସବୁ ଯୁଦ୍ଧ ସମାପ୍ତ କରି ଚୂଡ଼ାମଣୀ ଧାରୀ ଦଶମପିତା ଗୁରୁ ଗୋବିନ୍ଦ ସିଂହ ମହାରାଜ ଦମଦମା ସାହିବ ଠାରେ ପହଞ୍ଚିଥିଲେ ବାବାଜୀଙ୍କୁ ଗୁରୁ ମହାରାଜ ସେଠାରେ ରହି ସେବା କରିବା ପାଇଁ ଆଦେଶ ଦେଇଥିଲେ। ସେଠାରୁ ଗୁରୁ ମହାରାଜ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ ଦକ୍ଷିଣକୁ ଯାଇଥିଲେ ଓ ବାବାଜୀ ମହାରାଜଙ୍କ ଆଦେଶ ଅନୁଯାୟୀ ଦମଦମା ଠାରେ ରହୁଥିଲେ।

ବାବାଜୀ ଯେମିତି ଶୂରବୀର ଥିଲେ, ସେମିତି ବିଦ୍ୱାନ ମଧ୍ୟ ଥିଲେ। ସେ ସ୍ୱୟଂ ନିଜ ହାତରେ ଚାରିଗୋଟି ଶ୍ରୀ ଗୁରୁ ଗ୍ରନ୍ଥ ସାହେବର ପବିତ୍ରର ବୀଡ଼ ଲେଖିଥିଲେ, ଯାହାକି ପରେ ଚାରି ତଖତ୍‌ମାନଙ୍କୁ ପ୍ରକାଶ କରିବା ପାଇଁ ପଠାଯାଇଥିଲା। ବର୍ତ୍ତମାନ ସମୟରେ ଯେଉଁ ବୀଡ଼ ଗୁରୁପର୍ବର ପବିତ୍ର ଅବସରର ସମାରୋହ ଦିନରେ ହରିମନ୍ଦିର ସାହେବ ଅମୃତସରଠାରେ ପ୍ରକାଶିତ କରାଯାଇଛି, ତାହା ବାବାଜୀଙ୍କ ହସ୍ତଲିଖିତ ଅଟେ। ତାହାର ଖେଳରେ ସୁବର୍ଣ୍ଣ କଳାକୃତି କରାଯାଇଛି।

ଇତିହାସରେ ଉଲ୍ଲେଖ ଅଛି କି ଯେତେବେଳେ ବାବାଜୀ ଶ୍ରୀ ଗୁରୁ ଗ୍ରନ୍ଥ ସାହିବ ଲେଖିବା ଆରମ୍ଭ କରିଥିଲେ ଗୋଟିଏ କୋଠାରେ (ବଖରା) ପ୍ରଥମେ ସେ କଲମ ଭର୍ତ୍ତି କରିଦେଲେ। ପୁଣି ଲେଖିବା ପାଇଁ ବସିଲେ। ଯେତେବେଳେ ଲେଖୁ ଲେଖୁ କଲମ ଘଷି ହୋଇ ମୋଟା ହୋଇଯାଇଥିଲା, ସେ ସେହି କଲମକୁ

ସରୋବରରେ ଫୋପାଡ଼ି ଦେଉଥିଲେ ଓ ନୂଆ କଲମ ନେଉଥିଲେ। ଏହା ଦେଖି ନିକଟରେ ଜଣେ ସିଂହ କହିଲେ, 'ବାବାଜୀ।' କଲମ ଭଲ ଥିଲା, ତାହାକୁ ଆପଣ ଫୋପାଡ଼ି ଦେଉଛନ୍ତି, ଛୁରୀରେ ଅଛ ସଫା କରିଲେ ଠିକ୍ ହୁଅନ୍ତା ଓ ତାହା କେତେ ଆହୁରି ଲେଖି ହୁଅନ୍ତା।

'ସିଂହଜୀ'! ଆପଣ ମୋର ଭାବନାକୁ ବୁଝିପାରିଲେ ନାହିଁ। ବାବାଜୀ କହିଲେ, ଯେଉଁ କଲମ ମହାରାଜଙ୍କ ପବିତ୍ର ବାଣୀ ଲେଖୁଛି, କଣ ସେହି ବାଣୀର ପବିତ୍ର ତା'ରି ସହ ବୁଡ଼ି ରହିଥିବା ପବିତ୍ରତା କଲମର ମୁହଁକୁ ମୁଁ ଛୁରୀରେ ସଫା କରିବି ? ତାହାର ସମ୍ମାନ କରିବା ବଦଳରେ ତାହାର ଅପମାନ କରିବି ? ତାହା ମୁଁ କରିପାରିବି ନାହିଁ।

ପାଠକବୃନ୍ଦ! ସେ ଏହି ମସ୍ତକ ହାତରେ ରଖି ଲଢ଼ିବା ବାବାଙ୍କ ମହାନ୍ ଶ୍ରେଷ୍ଠତାର ଏକ ଉଜ୍ଜ୍ୱଳତା ଅଟେ। ଉଚ୍ଚ ମହାନ୍ ଶକ୍ତିଶାଳୀ ଶୂରବୀର ବାହାଦୁର ବାବାଜୀଙ୍କ ନିକଟରେ ଅହମଦ ଶାହର ଫୌଜମାନଙ୍କ ଦୁଷ୍ଟତା ଓ ହିଂସାତ୍ମକ କାର୍ଯ୍ୟକ୍ରମର ଖବର ପହଞ୍ଚିଲା। ତାହା ସ୍ୱୟଂଙ୍କ ମନରେ ତୀର ଭଳି ବିନ୍ଧି ହୋଇଗଲା। ହୃଦୟ ଖଣ୍ଡ ବିଖଣ୍ଡ ହୋଇଗଲା। ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କ ଦରବାର ହଜୁରୀ ମଧ୍ୟରେ ବସିଥିବା ନିଜ ସାଥି ସିଂହମାନଙ୍କୁ କହିଲେ, ବାସ୍ ଆଉ ବଞ୍ଚିବା ଆବଶ୍ୟକତା ନାହିଁ। ସେବା କରିବା ବହୁତ ସମୟ ବ୍ୟତୀତ ହେଲା, ବହୁତ ହୋଇଗଲା, ବର୍ତ୍ତମାନ ଏହି ଶରୀର ଏହି ସେବା ନିମନ୍ତେ ଲଗାଇବା ସମୟ ଆସିଗଲା। ଯଦି ବଞ୍ଚିବି ତାହେଲେ ଶ୍ରୀ ହରିମନ୍ଦିର ସାହେବଜୀଙ୍କ ସମ୍ମାନର ଦୃଢ଼ତା ରଖି ବଞ୍ଚିବି। ଶିଖଙ୍କ ଶିଖୀ କେମିତି ହେଉଛି ଯଦି ତାହାର ବଞ୍ଚିବା ଅବସ୍ଥାରେ ଧର୍ମ ସ୍ଥାନମାନଙ୍କରେ ଅପମାନ ଓ ଅଦିତି ହେଉଅଛି। ସେଥିଯୋଗୁଁ ଆସ, ଯେଉଁମାନେ ଶହୀଦ ପ୍ରାପ୍ତ କରିବ ସେମାନେ ମୋ ସାଥିରେ ପ୍ରସ୍ତୁତ ହୋଇ ଆସ।

ବାବାଜୀଙ୍କ ଏହି କଥା ଶୁଣି ଅନ୍ୟ ସିଂହ ସାଥିମାନେ ପ୍ରସ୍ତୁତ ହୋଇଗଲେ। ଅଖଣ୍ଡ ପାଠର ଭୋଗ ଲଗାଇ ନଗାଡ଼ା ଉପରେ ପ୍ରହାର କରି ବାବାଜୀ ବାହାରିଲେ। ଲକ୍ଷୀ ଜଙ୍ଗଲ (ମାଲବ) ଠାରୁ ଅନ୍ୟ ସିଂହମାନେ ଆସି ବାବାଜୀ ସହିତ ଚାଲିଲେ। ହରୀ କା ପତ୍ତନ ରାସ୍ତା ହୋଇ ଏହି ସିଂହମାନେ ଶ୍ରୀ ତରନତାରନଠାରେ ପହଞ୍ଚିଲେ। ସେଠାରେ ଆହୁରି କେତେକ ସିଂହ ଆସି ମିଶିଲେ ଓ ସବୁ ସିଂହ ମିଶି ପ୍ରାୟ ୧୦ ହଜାର ହୋଇଗଲେ। ସେଠାରେ ସିଂହମାନେ ସ୍ନାନ କରିଲେ। ମହାରାଜଙ୍କ ହଜୁର



ବାବା ଦୀପ୍ ସିଂହ ଜୀ



ବାବା ଦୀପ୍ ସିଂହ ଜୀଙ୍କ ମସ୍ତକ ବିହୀନ
ଶରୀର ଶତ୍ରୁଙ୍କ ସହିତ ଲଢ଼ିଲା



ବାବା ଦୀପ୍ ସିଂହ ଜୀ ନିଜର ମସ୍ତକକୁ
ସ୍ୱର୍ଣ୍ଣ ମନ୍ଦିରରେ ପରମାତ୍ମାଙ୍କୁ ସମର୍ପଣ କରୁଛନ୍ତି



ବାବା ଦୀପ୍ ସିଂହ ଜୀ



ବାବା ଦୀପ୍ ସିଂହ ଜୀଙ୍କ ମସ୍ତକ ବିହୀନ
ଶରୀର୍ ଶତ୍ରୁଙ୍କ ସହିତ ଲଢ଼ିଲା



ବାବା ଦୀପ୍ ସିଂହ ଜୀ ନିଜର୍ ମସ୍ତକକୁ
ସ୍ୱର୍ଣ୍ଣ ମନ୍ଦିରରେ ପରମାତ୍ମାଙ୍କୁ ସମର୍ପଣ କରୁଛନ୍ତି

ଅରଦାଶ କରିଲେ ଓ କଡ଼ା ପ୍ରସାଦର ଭୋଗ ଲଗାଇଲେ। କୁହାଯାଇଛି କି କେଶର ଛିଟା ଲଗାଇ ଶହୀଦ ବର ବେଶ ହୋଇ ସିଂହମାନେ ଘୋଡ଼ସବାର ହୋଇ ଜୟ ଜୟକାର ଛାଡ଼ି ଛାଡ଼ି ଅମୃତସର ଆଡ଼କୁ ଅଗ୍ରସର ହୋଇଥିଲେ।

ସିଂହମାନଙ୍କର ଆକ୍ରମଣର ଖବର ମୁସଲମାନମାନଙ୍କୁ ମିଳିଲା ଓ ସେମାନେ ଭାବୁଥିଲେ କି ଏହି ସିଂହମାନେ ଆମ ନିକଟରେ କଣ ଯେଉଁମାନେ ସାମନା ହୋଇ ଆମ ସହିତ କେବେ ଯୁଦ୍ଧ କରି ନାହାନ୍ତି, ଆମ୍ଭେ ତୁରନ୍ତ ଏମାନଙ୍କୁ ଦୂରେଇ ଦେବୁ, ନଚେତ୍ ମାରିଦେବୁ ସେମାନେ ମଧ୍ୟ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ। ସେଥିଯୋଗୁଁ ବଖ୍ଶୀ ଜହାଁନ ଖାଁ ନିଜର ସାତ ହଜାର ସୈନ୍ୟ ବଳ ସହ ସିଂହମାନଙ୍କୁ ଆଗରେ ରାସ୍ତା ଅବରୋଧ କରିବାପାଇଁ ଗୋହଲବଡଠାରେ ପହଞ୍ଚିଲେ ଓ ଲାହୋରଠାରୁ ସଶସ୍ତ୍ର ବାହିନୀ ମଗାଇଲା। ସିଂହମାନେ ମଧ୍ୟ ଗୋହଲବଡ଼ ପହଞ୍ଚିଗଲେ ଓ ତୁରନ୍ତ ପରସ୍ପର ମଧ୍ୟରେ ତୀର ଓ ଗୁଳି ଚାଲିବା ଆରମ୍ଭ ହୋଇଗଲା ଓ ଶୂରବୀର ତେଜସ୍ୱୀ ଖୁବ୍ ସାହସିକତା ଦେଖାଇଲେ। ସିଂହମାନେ ମରିବା ଓ ମାରିବା ଉଦ୍ଦେଶ୍ୟରେ ଆସିଥିଲେ ଓ ମନ ଧ୍ୟାନ ଦେଇ ଆକ୍ରମଣ କରିଦେଲେ।

କୁହାଯାଇଛି କି ଯେଉଁଠି ଜହାଁନ ଖାଁ ନାମକ ଜଣେ ଫୌଜୀ ମୁଖିଆ ହାତୀ ଉପରେ ସବାର ହୋଇ ସେମାନଙ୍କୁ ଲଢ଼ାଉଥିଲା। ସିଂହମାନେ ସୈନ୍ୟମାନଙ୍କ ଉପରେ ଆକ୍ରୋଶିତ ହୋଇ ଲଢ଼ିଲେ। ଜହାଁନ ଖାଁ ଉପରେ ବସି ତୀର ଚଳାଉଥିଲା। ଶହୀଦ ଦୟାଲ ସିଂହଜୀ ସେତେବେଳେ ଆଚମ୍ଭିତ କରିଦେଲେ। ଘୋଡ଼ା ନଚାଇ ଦୌଡ଼ାଇ ଜହାଁନ ଖାଁ ସାମନାରେ ପହଞ୍ଚିଗଲେ ଓ ଘୋଡ଼ା ଆଶ୍ଚର୍ଯ୍ୟ କରାଇଦେଲା। ସେ ଭାଇ ସାହେବଙ୍କ ଇସାରାକୁ ବୁଝିପାରି ଘୋଡ଼ା କମାଲ କରିଦେଲା ନିଜର ଗୋଡ଼କୁ ଉଚ୍ଚକୁ ଉଠାଇ ହାତୀର ମୁଣ୍ଡ ଉପରେ ଲାତ ମାରିଲା ଓ ଶହୀଦ ସିଂହଜୀ ବଡ଼ ଫୁର୍ତ୍ତି ସହ ବହୁତ ଜୋରରେ ଘୋଡ଼ା ଉପରେ ଚଢ଼ିବାବେଳେ ଯେଉଁ ଲୁହା ବ୍ୟବହାର ହୁଏ ପାଦ ରଖିବାପାଇଁ ତାହା ଉପରେ ଛିଡ଼ା ହୋଇ ଖଣ୍ଡା ଚଳାଇଲେ। ତାହା ଜହାଁନ ଖାଁର ମୁଣ୍ଡଟି କଖାରୁ ଭଳି ତଳେ ଆସି ପଡ଼ିଲା ଓ ହାତୀ ତାହାର ଶରୀର ସହ ପଛକୁ ଚାଲିଗଲା। ସବୁଠାରୁ ବଡ଼ ସେନାଧ୍ୟକ୍ଷ ଯେତେବେଳେ ସିଂହମାନଙ୍କ ସାହସିକତା ଯୋଗୁଁ ମୃତ୍ୟୁ ଦଣ୍ଡ ପାଇଲା, ସିଂହମାନଙ୍କ ସାହସ ଓ ମନୋବଳ ବଢ଼ିଗଲା ଓ ଅନ୍ୟ ସେନାପତିମାନେ କ୍ରୋଧାଗ୍ନି ସହ ଯୁଦ୍ଧ କରିଲେ। ଭୟାନକ ଯୁଦ୍ଧ ହୋଇଥିଲା। ସେତେବେଳେ ଲାହୋର ଠାରୁ ଅନ୍ୟ ସୈନ୍ୟ ଦଳ ଆସି ପହଞ୍ଚିଗଲେ। ପରନ୍ତୁ ସିଂହମାନେ ଆସିଥିଲେ ଶହୀଦ ପ୍ରାପ୍ତ କରିବା

ପାଇଁ, ସେଥିଯୋଗୁଁ ସୈନ୍ୟମାନଙ୍କୁ କଣ ଡର, ସିଂହମାନଙ୍କ ପାଦ ଆଗକୁ ବଢ଼ିଚାଲିଲା। ଶହୀଦ ପ୍ରାପ୍ତ କରିବା ସିଂହମାନେ ଖଣ୍ଡ ବିଖଣ୍ଡ ହୋଇ ପଡୁଥିଲେ। ଦୁଇ ଚାରି କ୍ଷତ ସିଂହମାନେ ଖାତିରେ କରୁ ନ ଥିଲେ ଓ ଏହି କାରଣ ଯୋଗୁଁ ଦଶ ଦଶ ଶତ୍ରୁଙ୍କୁ ମାରି ଜଣେ ଜଣେ ସିଂହ ଶହୀଦ ପ୍ରାପ୍ତ କରୁଥିଲେ।

## ବାବାଜୀଙ୍କ ଶରୀର ଲଢ଼ିଥିଲା (ମସ୍ତକ ଅଲଗା ଓ ଶରୀର ଅଲଗା)

ସିଂହମାନେ ମୁସଲମାନମାନଙ୍କ ସହିତ ଯୁଦ୍ଧ କରି ଅଢ଼େଇ ମାଇଲ ଯାଏଁ ଠେଲି ନେଇଥିଲେ, ପରନ୍ତୁ ଚବେୱେ ଠାରେ ଅନ୍ୟପଟରୁ ଜଣେ ମୁସଲମାନ ୫ହଜାର ସୈନ୍ୟଙ୍କ ଦଳପତି ସହ ବାବା ଦୀପ ସିଂହଜୀଙ୍କ ଦ୍ୱନ୍ଦ୍ୱ ଯୁଦ୍ଧ ହୋଇଗଲା। ଏକା ଏକା ଲଢ଼ିଲେ ଓ ଅନ୍ୟମାନେ ଛିଡ଼ା ହୋଇ ରହିଲେ। ସଂଯୋଗ ବଶତଃ ଦୁଇ ଶୂରବୀରଙ୍କ ମସ୍ତକ ଏକାଥରକେ ଅଲଗା ହୋଇଗଲା। ବାବାଜୀଙ୍କ ମସ୍ତକ ଶରୀରଠାରୁ ଅଲଗା ହୋଇଗଲା, ନିକଟରେ ଜଣେ ସିଂହ ଜୋର ସହ କହିଲେ, ବାବାଜୀ ଆପଣ ଶ୍ରୀ ଅମୃତସରରେ ପହଞ୍ଚିବା ପାଇଁ ପଣ କରି ଆସିଥିଲେ, ପରନ୍ତୁ ଅମୃତସରଠାରୁ ଦୁଇ ମାଇଲ ପୂର୍ବରୁ କାହିଁକି ରହିଗଲେ ?

ଆତ୍ମିକ ମଣ୍ଡଳ ଯାଏଁ ପହଞ୍ଚି ନଥିବା ଗୁରୁପ୍ରେମୀ ଏହି ପ୍ରସଙ୍ଗକୁ ଧର୍ମାନ୍ଧତା ନଜର (ବିଚାରରେ) ଦେଖିପାରନ୍ତି, ପରନ୍ତୁ ଯିଏ ବୁଝିପାରିବ କି ଗୁରୁପ୍ରେମୀ (ଭକ୍ତ)ଙ୍କ ଜୀବନର ଚତୁର୍ଥ ପାଦରେ ହୋଇଥାଏ।

ସେମାନେ ବିଶ୍ୱାସ କରନ୍ତି -

'ଚଉଥେ ପଦ ମହି ଜନକୀ ଜିନ୍ଦ।'

ସେଥିଯୋଗୁଁ କୁହାଯାଇଛି କି ସେହି ସିଂହଙ୍କ କଥା ଶୁଣିବା ସଙ୍ଗେ ସଙ୍ଗେ ବାବାଜୀଙ୍କ ଅର୍ଦ୍ଧଶରୀର (ମସ୍ତକବିହୀନ) ଛିଡ଼ା ହୋଇଗଲା। ଅର୍ଦ୍ଧ ଶରୀର ବାମ ହାତରେ ମସ୍ତକକୁ ରଖିଲେ ଓ ଡାହାଣ ହାତରେ ଖଣ୍ଡା ଧରି ପୁଣି ଶତ୍ରୁଙ୍କ ସହିତ ଆକ୍ରୋଶ ହୋଇ ଆକ୍ରମଣ କରିଦେଲା। ପୂର୍ବ ଭଳି ଶତ୍ରୁମାନଙ୍କୁ ଲଲକାରିତ କରି ମାରିବାକୁ ଲାଗିଲେ। ହାତରେ ରଖିଥିବା ମସ୍ତକ କହିଲା- ସିଂହମାନେ, ଧର ଏହି ପାପୀ ଅତ୍ୟାଚାରୀମାନଙ୍କୁ। ହରିମନ୍ଦିରର ଅପମାନ ଓ ଅନ୍ୟାୟ କରୁଥିବା ଦୁଷ୍ଟମାନଙ୍କର ପ୍ରତିଶୋଧ ନିଅ। ଏ ଦୁଷ୍ଟମାନେ ! ଆସ ମୋ ସହିତ, ଯୁଦ୍ଧ କର, ବର୍ତ୍ତମାନ ମୁଁ ତୁମମାନଙ୍କୁ ଜୀବିତ କାବୁଲ ଯିବା ପାଇଁ ଦେବି ନାହିଁ।

ଏହି ଅଲୌକିକ ଦୃଶ୍ୟ ମସ୍ତକବିହୀନ ଶରୀର ଲଢ଼ି ଲଢ଼ି ଜୀବିତଙ୍କୁ ମାରି ଚାଲିଲା, ଶତ୍ରୁ ମାନଙ୍କ ସକାଶେ ଏହି ଦୃଶ୍ୟ ବହୁତ ଭୟାନକ ହୋଇଥିଲା ଓ ବର୍ତ୍ତମାନ ଶତ୍ରୁମାନେ ବିଚଳିତ ହୋଇଥିଲେ। ପରନ୍ତୁ ସିଂହମାନେ ଏହା ଦେଖି ପୂର୍ବ ଅପେକ୍ଷା ଦୁଇ-ଚାରି ଗୁଣ ହୋଇ ଲଢ଼ିଚାଲିଲେ। ସେତେବେଳେ ଅନ୍ୟ ସିଂହମାନେ ବହୁତ ଉତ୍ସୁକତା ସହ ଲଢ଼ି ଚାଲିଲେ। ଶତ୍ରୁମାନଙ୍କ ସକାଶେ ଯୁଦ୍ଧ କଣ ସାମନାରେ ଛିଡ଼ା ହୋଇ ରହିବା ମଧ କଷ୍ଟସାଧ ହୋଇଗଲା। ସିଂହମାନେ ସେହି ଭୀରୁ ଶତ୍ରୁମାନଙ୍କୁ ଦୌଡ଼ାଇ ଦୌଡ଼ାଇ ଅମୃତସରଠାରେ ଆସି ପହଞ୍ଚିଗଲେ।

ସେଠାରେ ପହଞ୍ଚି ପୁଣି ଭୟାନକ ଯୁଦ୍ଧ ହୋଇଥିଲା। ବାବାଜୀ ସୁଧାସର କୂଳ ଯାଏଁ ପହଞ୍ଚି ନିଜର ବଚନ ପୂରା କରି ଗରୁପୁରୀକୁ ପ୍ରସ୍ଥାନ କରିଲେ; କିନ୍ତୁ ଶତ୍ରୁମାନଙ୍କର ଜଣେ ରାକ୍ଷସ ଭଳି ଶରୀରର ଜରନୈଲ ୨୦ ହଜାରଙ୍କ ଦଳପତି ସିଂହମାନଙ୍କ ସହ, ଯେଉଁଠି ଗୁରୁଙ୍କ ବାଗ ଅମୃତସର ଠାରେ ବର୍ତ୍ତମାନ ଶହୀଦଗଞ୍ଜ ହୋଇଛି, ସେଠାରେ ଭୟାନକ ଯୁଦ୍ଧ ହୋଇଥିଲା। ବହୁତ ସିଂହ ସେଠାରେ ଶହୀଦ ହୋଇଥିଲେ, ପରନ୍ତୁ ସେହି ରାକ୍ଷସ ଶରୀର ଜରନୈଲକୁ ମଧ ଯେତେବେଳେ ସିଂହମାନେ ମାରିଦେଲେ, ତୁରନ୍ତ ଅବଦାଲୀମାନେ ଅମୃତସର କ୍ଷେତ୍ର ଛାଡ଼ିଦେଲେ ଓ ଅଟାରୀ ନିକଟରେ ସେମାନେ ପୁଣି ଆକ୍ରମଣ ପ୍ରବନ୍ଧ ଆରମ୍ଭ କରିଦେଲେ।

## ବାବା ଗୁରୁବକ୍ସ ସିଂହ ଜୀଙ୍କ ଶହୀଦ ପ୍ରାପ୍ତ

ଜଣାଯାଉଛି କି ଯେତେବେଳେ ବାବା ଦୀପ ସିଂହଜୀ ଦମଦମା ସାହିବ ଠାରୁ ପ୍ରସ୍ଥାନ କରିଥିଲେ, ସେ ସମସ୍ତ ଅଞ୍ଚଳର ସିଂହମାନଙ୍କୁ ସନ୍ଦେଶ ପଠାଇଥିଲେ, ଆସ ଯିଏ ଯୁଦ୍ଧରେ ଯୋଗ ଦେବା ପାଇଁ ଇଚ୍ଛା କରୁଛ, ସେମାନେ ଆସି ଆମ ସହିତ ଯୋଗ ଦିଅ। ବାବା ଗୁରବକ୍ସ ସିଂହଜୀ ମଧ ଶହୀଦ ଦଳର ଅଧିନାୟକ ଥିଲେ ଓ ୪ ହଜାର ସିଂହମାନଙ୍କ ସହିତ ଶ୍ରୀ ଆନନ୍ଦପୁର ସାହିବଠାରେ ରହିଥିଲେ। ତାଙ୍କୁ ବାବା ଦୀପ ସିଂହଜୀଙ୍କ ସନ୍ଦେଶ ମିଳିଥିଲା। ସେ ମଧ ଆକ୍ରମଣର ଯୋଜନା କରିନେଲେ ଓ ଅମୃତସରଆଡ଼କୁ ଚାଲିଗଲେ। ରାସ୍ତା ଦୂର ଥିବା ଯୋଗୁଁ ବାବା ଦୀପ ସିଂହଜୀଙ୍କ ଦଳ ସହିତ ଯୋଗ ଦେଇପାରି ନ ଥିଲେ। ସ୍ୱୟଂ ବାବା ଦୀପ ସିଂହଜୀଙ୍କ ଶହୀଦ ପ୍ରାପ୍ତର ୪-୫ ଦିନ ପରେ ଅମୃତସର ଠାରେ ପହଞ୍ଚିଥିଲେ, ଯେଉଁଠି ସିଂହମାନେ ଶହୀଦ ହୋଇଥିଲେ, ଅବଶିଷ୍ଟାଂଶ ବର୍ତ୍ତମାନ ସଂସ୍କାର

କରିପାରିନଥିଲେ, ଅନ୍ୟମାନେ ହରିମନ୍ଦିରର ସେବା ଆହୁରି ବାକି ଥିଲା। ପବିତ୍ର ସରୋବର ମଧ୍ୟ ମାଟି ଭରି ରହିଥିଲା। ବାବା ପହଞ୍ଚିବା ପରେ ନୂଆରେ ପହଞ୍ଚିବା ସିଂହମାନେ ଅତି ଶୀଘ୍ର ସେବା ସମାପ୍ତ କରିଦେଲେ।

ଶତ୍ରୁମାନେ ଗିଲଜ ଓ ପଠାଣ ଅଟାରୀ ନିକଟରେ ପଛରୁ ଆସୁଥିବା ସୈନ୍ୟ ଦଳକୁ ପ୍ରତୀକ୍ଷା କରୁଥିଲେ, ସେମାନଙ୍କୁ ଆହୁରି ସିଂହମାନଙ୍କ ପହଞ୍ଚିବା ଖବର ମିଳିଲା। ବର୍ତ୍ତମାନ ଅଟାରୀ ପରିତ୍ୟାଗ କରି ଲାହୋର ଚାଲିଗଲେ।

ଅହମ୍ମଦ ଶାହକୁ ଏହି ଖବର ମିଳିଲା। ସେ ପୁଣି ସେମାନଙ୍କୁ ତାଡ଼ନା କରି ପଠାଇଲା। ୫୦-୬୦ ହଜାର ଫୌଜମାନଙ୍କ ସହ ତୁମେମାନେ ଅଞ୍ଚ ମୁଠା ଭରି ସିଂହମାନଙ୍କୁ ପରାସ୍ତ କରିପାରିଲ ନାହିଁ। କିନ୍ତୁ ବର୍ତ୍ତମାନ ବାହାରେ ଘୂରି ବୁଲୁଥିବାମାନଙ୍କୁ ମଧ୍ୟ ତୁମେମାନେ ସମ୍ଭାଳିପାରିଲ ନାହିଁ ? ଅତିଶୀଘ୍ର ଆକ୍ରମଣ କରି ସିଂହମାନଙ୍କୁ ଅମୃତସର ଠାରୁ ବାହାର କରିଦିଅ। ଏହି ନିର୍ଦ୍ଦେଶ ପାଇବା ସଙ୍ଗେ ସଙ୍ଗେ ୨୦ ହଜାର ବିଦେଶୀ ଫୌଜ ସେଠାରୁ ବହୁ ସଂଖ୍ୟାରେ ମୁସଲମାନ ଫୌଜ ସିଂହମାନଙ୍କୁ ମାରିବାପାଇଁ ଅମୃତସରଠାରେ ପହଞ୍ଚିଗଲେ।

ସେଠାରେ ଅମୃତସରଠାରେ ଏହି ଖବର ପହଞ୍ଚିଗଲା। ବାବା ଗୁରୁ ବକ୍ସ ସିଂହଜୀ ସେତେବେଳେ ସବୁ ସିଂହମାନଙ୍କୁ ଏକତ୍ରିତ କରାଇ କହିଲେ କି ଯିଏ ନିଜର ମସ୍ତକକୁ ବଳିଦାନ ଦେବାପାଇଁ ଇଚ୍ଛା କରୁଛ ସେମାନେ ଏଠାରେ ରୁହ ଓ ଯିଏ ରଣଭୂମିରୁ ପଳାୟନ କରିବା ଇଚ୍ଛା କରୁଛ ସେମାନେ ବର୍ତ୍ତମାନ ଏଠାରୁ ଚାଲିଯାଅ। ଏଥିରୁ ପ୍ରମାଣିତ ହୋଇଛି କି ସିଂହମାନେ ଯେତେବେଳେ ଶହୀଦ ପ୍ରାପ୍ତ ସକାଶେ ଲଢ଼ନ୍ତୁ ପୁଣି ସେମାନେ ରଣଭୂମି ତ୍ୟାଗ କରି ପଳାୟନ କରନ୍ତି ନାହିଁ। କେତେ ସିଂହନୀମାନେ ମଧ୍ୟ ଥିଲେ, ସେମାନେ ମଧ୍ୟ ବାବାଜୀଙ୍କୁ ପଠାଇଲେ। ସେଥିଯୋଗୁଁ ପଳାୟନ କରିବା ମାନେ ଓ ନକଲି ସିଂହ ପଳାୟନ କରିଲେ ଓ ପାଞ୍ଚହଜାର ସିଂହ ସେଠାରେ ରହିଲେ ଓ ମରିବା ଓ ମାରିବା ପାଇଁ ଦୃଢ଼ ହୋଇ ରହିଲେ।

ସିଂହମାନେ ମଧ୍ୟ ଦଳ ସଂଗଠନ କରିଲେ ଓ ଆସିଥିବା ଶତ୍ରୁମାନଙ୍କୁ ସମସ୍ତେ ଗୁଳି ଚଳାଇଲେ ଓ ଶତ୍ରୁମାନଙ୍କୁ ସତର୍କ କରାଇଲେ କି ଧ୍ୟାନପୂର୍ବକ ଆଗକୁ ବଢ଼।

ଏହିଥର ଭୟାନକ ଯୁଦ୍ଧ ହୋଇଥିଲା। ଖାଦ୍ୟସାମଗ୍ରୀ, ଟଙ୍କା, ଔଷଧ ଶେଷ ହେଉଥିବା ଦେଖି ସିଂହମାନେ ଦଳରୁ ବାହାରି ଶତ୍ରୁମାନଙ୍କୁ ଆକ୍ରମଣ କରିଦେଲେ।



ବାବା ଗୁରୁବକ୍ସ ସିଂହ ଜୀ

ଶତ୍ରୁ ବେଶି ଥିଲେ, ପରନ୍ତୁ ସିଂହମାନେ ଶହୀଦ ପ୍ରାପ୍ତ ପାଇଁ ଲଢୁଥିଲେ। ସେଥିଯୋଗୁଁ ଗୁଳି ବର୍ଷା, ତୀର ବର୍ଷା ସହ୍ୟ କରି ସିଂହମାନେ ଦଳ ମଧ୍ୟକୁ ଚାଲିଗଲେ ଓ ବଡ଼ ବଡ଼ ଦଳପତି ସେନାପତିମାନେ ସିଂହମାନଙ୍କ ତଲବାରର ପ୍ରସାଦ ହୋଇଗଲେ।

ଇତିହାସ ସାକ୍ଷୀ ରହିଛି କି - ବାବା ଗୁରୁବକ୍ସ ସିଂହଜୀ ମଧ୍ୟ ମସ୍ତକ କଟି ତଳେ ପଡିବା ପରେ ୪ ଘଡ଼ି (ଦେଢ଼ ଘଣ୍ଟା) ଲଢ଼ିଥିଲେ, ଶତ୍ରୁମାନେ ଜୀବିତ ଅବସ୍ଥାରେ ଲୁଚି ଲୁଚି ପ୍ରାଣ ବଞ୍ଚାଇ ଦୌଡ଼ିବାକୁ ଲାଗିଲେ, ସିଂହଙ୍କ ଅର୍ଦ୍ଧ ଶରୀର ସହିତ କିଏ ଲଢ଼ିପାରିବ ? ସେଥିଯୋଗୁଁ ମୁସଲମାନମାନେ ଏହି ଦୃଶ୍ୟ ଦେଖି ଡରି ଭାଗିବା ଆରମ୍ଭ କରିଦେଲେ ଓ ଧୀରେ ଧୀରେ ରଣଭୂମି ଛାଡ଼ି ଚାଲିଗଲେ। ତତ୍ ପଶ୍ଚାତ୍ କେବେ ମଧ୍ୟ ଶତ୍ରୁମାନେ ଅମୃତସରକୁ ନଜର ଉଠାଇ ଦେଖିବାପାଇଁ ସାହସ କରି ନ ଥିଲେ ଓ ଶହୀଦମାନଙ୍କ ଉଦ୍ଦେଶ୍ୟ ପ୍ରକୃତ ଶହୀଦ ପରି କର୍ତ୍ତୃତ୍ୱ କରି ସମଗ୍ର ବିଶ୍ୱକୁ ଜଣାଇଦେଲେ କି ଆମର ନାମ କେବଳ ଶହୀଦ ନୁହଁ ଆମ୍ଭେମାନେ ପ୍ରକୃତ ଓ ନିର୍ମଳ ହୃଦୟର ସହ ଶହୀଦ ଅଟୁ। ବାବାଜୀଙ୍କ ଶହୀଦ ସ୍ଥାନ ଶ୍ରୀ ଅକାଳ ତଖ୍ତ ସାହିବର ପଛପଟେ ଅବସ୍ଥିତ। ଯାହା ବର୍ତ୍ତମାନ ସୁଦ୍ଧା ଏହି ସ୍ଥାନରେ ଭାବନା ଭରପୂର ଅଟେ, ଯିଏ ଅନ୍ତର ଆତ୍ମାକୁ ଉନ୍ମୁକ୍ତ କରି ଗୁରୁବାଣୀ ସହ ସମ୍ପୂର୍ଣ୍ଣ ରୂପେ ଯୋଡ଼ି ହୁଏ ସେ କେତେ ଉଚ୍ଚ ସ୍ଥାନର ମାଲିକ ହୋଇଯାଏ।

ସେଥିଯୋଗୁଁ ଏହି ମସ୍ତକ ଶୂନ୍ୟ ବାହାଦୁରମାନଙ୍କ ଯୁଦ୍ଧ ପରେ ପନ୍ଥ ପୁଣି ସୁଧାସର କୂଳରେ ଏକତ୍ରିତ ହୋଇଥିଲା ଓ ବିଦେଶୀମାନେ ଲାହୋର ଚାଲିଗଲେ। ସେମାନଙ୍କ ମାଝ ଗ୍ରାମରେ ରହିବା ସ୍ୱପ୍ନ ମଧ୍ୟ ସିଂହମାନେ ସମାପ୍ତ କରିଦେଲେ। ଏହା ୧୮୧୭ମସିହା ଆରମ୍ଭ ସମୟର ଘଟଣା।

## ଖାଲସାମାନେ କପୁର ବିଜୟ କରିଥିଲେ

ବାବା ଦୀପ ସିଂହଜୀ ଓ ବାବା ଗୁରୁ ବକ୍ସ ସିଂହଙ୍କ ଯୁଦ୍ଧ ଯୋଗୁଁ ବିଦେଶୀ ପଠାଣମାନଙ୍କ ସାହସ ଧୂଳିସାତ୍ ହୋଇଥିଲା। ପୁଣି କୌଣସି ମୁସଲମାନ ସେନା ଅମୃତସରକୁ ନଜର ରଖୁନଥିଲା। ବର୍ତ୍ତମାନ ସିଂହମାନେ ଅଞ୍ଚଳକୁ ଅଧିକାର କରିବାକୁ ଲାଗିଲେ। କେତେକ ଗ୍ରାମ ଓ ବିଶେଷଭାବେ ଦୋଆବ ଅଞ୍ଚଳର ସିଂହମାନେ ବହୁତ ଗ୍ରାମ ଅଧିକାର କରିଲେ।

୧୮୧୮ ବୈଶାଖୀର ଶୁଭ ଅବସର ସମୟରେ ଯୋଜନାକାରୀ ପରାମର୍ଶଦାତା, ଦଳପତି ସମସ୍ତେ ଅମୃତସରଠାରେ ଏକତ୍ରିତ ହେବାପାଇଁ ନିଷ୍ପତ୍ତି କରିଲେ। ଦୂରଦୂରାନ୍ତରୁ ସିଂହମାନେ ଓ ଦଳପତିମାନେ ଏହି ସମୟରେ ଏକତ୍ରିତ ହେବାପାଇଁ ସନ୍ଦେଶ ପଠାଗଲା। ସେତେବେଳେ ଦେଶର ହାକିମମାନେ ମୁସଲମାନ ଥିଲେ। କିନ୍ତୁ ସେମାନଙ୍କର ଅଧିକାର ନ ଥିଲା। ଯାହା ସେମାନଙ୍କ ମନଇଚ୍ଛା ହୁକୁମ ଚଳାଇପାରିବେ। କିନ୍ତୁ ଦେଶର କେତେକ ଭାଗ ଏମିତି ଥିଲା, ଯେଉଁଠି ସେମାନଙ୍କ ମନମୁତାବକ କାମ ଚାଲୁଥିଲା।

ଯେତେବେଳେ ଦୋଆବ ଦେଶର ବହୁତ କ୍ଷେତ୍ର ସିଂହମାନେ ନିରୀହ ଜନତାଙ୍କ ବିନତି ଶୁଣି ଅତ୍ୟାଚାରୀମାନଙ୍କୁ ଦଣ୍ଡିତ କରିବା ପାଇଁ ଆକ୍ରମଣରେ ଲାଗି ପଡ଼ିଥିଲେ। ସେହି ସମୟରେ ଦୋଆବ ଅଞ୍ଚଳର କେତେକ ନବାବ, ଯୁବତୀ ହିନ୍ଦୁ କନ୍ୟାମାନଙ୍କୁ ବାଧ୍ୟତାପୂର୍ବକ ଟାଣି ନେବା ଅଭ୍ୟସ୍ତ ଥିଲେ; ସିଂହମାନେ ସେମାନଙ୍କୁ ଖୁବ୍ ମଜା ଚଖାଇଲେ, ଯାହା ଦ୍ୱାରା ପୁଣି ନିରୀହ ଜନତାଙ୍କ ପ୍ରତି ଯେଉଁ ଯନ୍ତ୍ରଣା ଯୁକ୍ତ ଅସନ୍ତୋଷ ଥିଲା ତାହାର ନିବାରଣ ହୋଇଥିଲା।

ସମୟ ଅନୁଯାୟୀ ଏହି ବୈଶାଖୀ ସମୟରେ ଖାଲସାମାନଙ୍କ ବହୁ ସଂଖ୍ୟାରେ ଖୁବ୍ ଜାକଜମକରେ ସମାରୋହ ହୋଇଥିଲା। ବିରୋଧ କରୁଥିବା, ନିନ୍ଦା କରୁଥିବା। ମୁସଲମାନମାନଙ୍କୁ ତୋଷାମଦ କରୁଥିବା, ଲାଞ୍ଚ ନେଉଥିବା ବ୍ୟକ୍ତି ଡରିଗଲେ କାରଣ ସେମାନଙ୍କ ଭେଦ ଖୋଲି ନ ଯାଉ। ଇତିହାସରେ ଉଲ୍ଲେଖିତ ହୋଇଛି କି ସେତେବେଳେ କସୁରର କେତେକ ଦୁଃଖୀ ବ୍ରାହ୍ମଣମାନେ, ଯେଉଁମାନେ ହିନ୍ଦୁରାଜା - ମହାରାଜା ଓ ବଡ଼ ବଡ଼ ନବାବ ଓ ବାଦଶାହମାନଙ୍କ ପାଖରେ ଯାଇ ପ୍ରାର୍ଥନା କରିଥିଲେ କିନ୍ତୁ ସେମାନଙ୍କର ପ୍ରାର୍ଥନା କେହି ଶୁଣି ନ ଥିଲେ, କେହି ସାହାଯ୍ୟ କରି ନ ଥିଲେ। ସେମାନେ ନିରାଶ ହୋଇ ଖାଲସାଜୀଙ୍କ ପାଖରେ ବିନତି କରିଥିଲେ ଓ କସୁରର ହାକିମମାନଙ୍କ ଅତ୍ୟାଚାର ଅନ୍ୟାୟ ବର୍ଣ୍ଣନା କରି କେମିତି ଝିଅବୋହୂମାନଙ୍କ ଇଜ୍ଜତ ଲୁଟିବା ଖୋଲାଖୋଲି ଭାବେ ଦିନରେ କରି ଚାଲନ୍ତି ତାହା କହିଲେ।

ବିନତୀ କରିବା ଜଣେ ବ୍ରାହ୍ମଣ ପଣ୍ଡିତ ଥଲା, ଯାହାର ନବବିବାହିତ ନବବଧୂକୁ କସୁରର ହାକିମ ଉସମାନ ଖାଁ ଶବାରି ମଧ୍ୟରୁ ଜବରଦସ୍ତି ଅଧିକାର କରିଥିଲା ଓ ବ୍ରାହ୍ମଣ ଚିତ୍କାର କରିବା ଯୋଗୁଁ ତାକୁ ମାରି ମାରି ସହରରୁ ବହିଷ୍କାର କରାଯାଇଥିଲା। ଏହି ଦୁଃଖୀ ବ୍ରାହ୍ମଣ ବହୁ ଯତ୍ନ ସହ ଯାତ୍ରା କରି ନିଜର ସଙ୍କଟ ପରିସ୍ଥିତିର କାହାଣୀ

ବଡ଼ ବଡ଼ ହିନ୍ଦୁ ରାଜପୁତ୍ ଓ ରାଠୋର ରାଜାମାନଙ୍କୁ ଶୁଣାଇଥିଲା। କିନ୍ତୁ କେହି ତା'ର ଦୁଃଖ ଶୁଣି ନ ଥିଲେ, ସେଥିଯୋଗୁଁ ସେମାନେ ଏହାକୁ ଭୁଲିଯିବା ଉପଦେଶ ସମସ୍ତ ସ୍ଥାନରୁ ମିଳିଥିଲା।

କସୁରୀ ପଠାଣମାନଙ୍କର ଗର୍ବ ଓ ଶକ୍ତି ସମଗ୍ର ଦେଶରେ ସଙ୍କଟଜନକ ପରିସ୍ଥିତି ହୋଇ ରହିଥିଲା। କସୁର ସହରର ଚାରିପଟେ ବଡ ବଡ଼ ଦୁର୍ଗ ଗାତ ମଧ୍ୟରେ ତୋପ, ବାରୁଦ ତଥା ଯୁଦ୍ଧସାମଗ୍ରୀ ବହୁତ ମାତ୍ରାରେ ଥିଲା, ତାହା ଅଗଣିତ ଥିଲା । ସେଠାରେ ସେ ସବୁ ପଠାଣ ବାବର ସମୟ ଠାରୁ ସଞ୍ଚିତ ହୋଇ ରହିଥିଲା ଓ ୭୦ଲକ୍ଷ ଜମିଦାରର ବିରାଟ ଅଞ୍ଚଳ ସେମାନଙ୍କୁ ବାବର ଦେଇଥିଲା। ସେହି ଅଞ୍ଚଳର ପ୍ରଜା ବିଶେଷ ଭାବେ ହିନ୍ଦୁମାନଙ୍କୁ ନବାବମାନଙ୍କ ତରଫରୁ ଜିଜିଆ କର ଓ ମୌଲବୀଙ୍କ ଅନ୍ୟାୟ, ଅତ୍ୟାଚାରତା ସବୁ ସମୟରେ ସଚେତ ରହୁଥିଲା। ଏହି କାରଣ ଯୋଗୁଁ କସୁରୀ ପଠାଣମାନଙ୍କ ଶକ୍ତିଶାଳୀ ପ୍ରଭାବ ଯୋଗୁଁ ନବାବ ଓ ମହାରାଜାମାନେ ଡରି ନଜର ରଖୁନଥିଲେ। ମୁସଲମାନ ଧର୍ମର ଛତ୍ରଛାୟା ସେମାନଙ୍କୁ ଲଗାମଛଡ଼ା କରିଥିଲା। ଏହି ପଠାଣ ଶାସକୀୟମାନେ ଏତେ ଅଭଦ୍ର ଓ ପାପୀ ହୋଇ ଚାଞ୍ଚଲ୍ୟ ସୃଷ୍ଟି କରି ଖୋଲାଖୋଲି ଦିନରାତି ବିଚାର ନ କରି ଅନ୍ୟର ତୋଫାନ ସହ ଝିଅବୋହୂମାନଙ୍କ ସହ ବ୍ୟଭିଚାର ସହ ଇଜ୍ଜତ ଲୁଟି ଚାଲିଥିଲେ। କୌଣସି ଶକ୍ତିମାନଙ୍କୁ ପ୍ରତିରୋଧ କରିପାରୁ ନ ଥିଲା।

( ଚରିତ୍ରର ପବିତ୍ରତା ମନୁଷ୍ୟର ସର୍ବଶ୍ରେଷ୍ଠ ସମ୍ପତ୍ତି ଓ ଶକ୍ତି ଅଟେ। ପରନ୍ତୁ ରାଜ୍ୟ ଲାଳସାରେ ଲାଳାୟିତ ହୋଇ ମନୁଷ୍ୟ ତାହାର ମନୁଷ୍ୟତାର ଶିଖର ଓ ସତ୍ୟତାର ଆଦର୍ଶର ପାହାଡ଼ ଉପରୁ ଧରାଶାୟୀ ହୋଇଥାଏ। ସମୟ କହିବ କି - ମୁସଲମାନ ହାକିମ ଏହି ଅନର୍ଥତା ସହ ବହୁତ ଅଗ୍ରଗାମୀ ହୋଇସାରିଥିଲେ। ଆକବରର ଶାସନ ସମୟରେ ଏହା ଅତି ସାଧାରଣ ହୋଇଥିଲା, ଜାହାଙ୍ଗୀର ରାଜାମାନଙ୍କ ସିଂହର ଗର୍ଭରୁ ଜନ୍ମ ହୋଇଥିଲା।

ପ୍ରକୃତରେ ମୁସଲମାନ ଧର୍ମରେ କୌଣସି ସ୍ତ୍ରୀ କିମ୍ବା ପୁରୁଷ ବାଧ୍ୟତାପୂର୍ବକ ନିଜ ଧର୍ମରେ ସଂପୃକ୍ତ କରାଇବା ଉଚିତ ମାନନ୍ତି। କିନ୍ତୁ ଶିଖ ଧର୍ମ ଏହାକୁ ପାପ ଓ ଅତ୍ୟାଚାର କୁହେ।)

ଠିକ୍ ସେହି ସମୟରେ ରାଜା, ମହାରାଜା ଓ ଦେବ-ଦେବୀମାନଙ୍କ ଠାରୁ ନିରାଶ ହୋଇ ବ୍ରାହ୍ମଣଙ୍କୁ କାହାର ପରାମର୍ଶ ମିଳିଲା, ତୁମେ ଖାଲସାମାନଙ୍କ ପାଖକୁ

ଯାଇ ଅମୃତସରଠାରେ ନିଜ ଉପରେ ଆସିଥିବା ସଙ୍କଟ ଜଣାଇଦିଅ । ସେହି ମରିବା, ମାରିବାର ପଣ କରିବା ମାନେ ତୁମର ସାହାଯ୍ୟ କରିପାରିବେ ଓ ଅନ୍ୟ କାହାର ଆଶା ନିରାଶଯୋଗ୍ୟ ଅଟେ । ବ୍ରାହ୍ମଣଙ୍କୁ ସେତେବେଳେ ଶ୍ରୀ ଗୁରୁ ତେଗ ବାହାଦୁରଜୀଙ୍କ ସହାୟତାର କରାମତି ମନେପଡ଼ିଲା । ସେ ଖାଲସାମାନଙ୍କ ପାଖରେ ପହଞ୍ଚିବା ଚେଷ୍ଟା ଆରମ୍ଭ କରିଲା। ସେ ନିଜର କେତେଜଣ ସାଥି ବ୍ରାହ୍ମଣମାନଙ୍କୁ ସାଥିରେ ନେଇ ଅମୃତସରଠାରେ ପହଞ୍ଚିଲା । ଆଗରେ ଶ୍ରୀ ଅକାଳ ତଖତ ସାହିବଙ୍କ ହଜୁରୀ ଠାରେ ଖୁବ ବଡ଼ ଦିବାନ (ଶ୍ରୀ ଗୁରୁଗ୍ରନ୍ଥ ସାହିବଙ୍କ ପାଲିଙ୍କି ଓ କୀର୍ତ୍ତନ ସହ ବହୁ ସଙ୍ଗତ) ଲାଗିଥିଲା । ସେମାନେ ଦିବାନ ନିକଟରେ ପହଞ୍ଚି ବହୁତ ଜୋର ଜୋରରେ କାନ୍ଦିଲେ ଓ ବିଳାପ କରି କହିଲେ ହେ, ଗୁରୁଙ୍କ ସିଂହମାନେ ! ଆମ୍ଭେମାନେ ଲୁଟି ହୋଇଗଲୁ । ଆସ, ଆମର ସାହାଯ୍ୟ କର ।

ଜଣେ ସିଂହ ନିକଟକୁ ଆସି ସେମାନଙ୍କୁ କହିଲା- ବ୍ରାହ୍ମଣମାନେ ! ଧୈର୍ଯ୍ୟ ଧର, ଆରାମରେ ଆମ୍ଭକୁ କୁହ, ତୁମ୍ଭମାନଙ୍କୁ କିଏ ଦୁଃଖ ଦେଇଛି, ଲୁଟିଛି ନା ମାରିଛି ?

ଏହା ଶୁଣି ସ୍ତ୍ରୀ ବିଚ୍ଛେଦୀ ବ୍ରାହ୍ମଣ ଜଣକ ଆଗକୁ ଆସି କାନ୍ଦି କାନ୍ଦି ନିଜର ଦୁଃଖ ଶୁଣାଇଲା ଓ କହିଲା- ହେ ଗୁରୁ ତେଗ୍ ବାହାଦୁର ଓ ଗୁରୁ ଗୋବିନ୍ଦ ସିଂହଜୀଙ୍କ ଚରଣ ଆଶ୍ରିତ ପରୋପକାରୀ ଖାଲସା ଜୀ ! ମୋତେ ସାହାଯ୍ୟ କର, ମୋତେ ଏହି ଅତ୍ୟାଚାରୀମାନଙ୍କ ଅତ୍ୟାଚାରରୁ ବଞ୍ଚାଇଦିଅ ।

ତାହାପରେ ବଡ଼ ଦଳପତି ତାଙ୍କୁ ସାହସ ଦେଇ ଗୋଟିଏ ଜାଗାରେ ବସାଇଲେ । ସେହି ସମୟରେ ଦୀବାନ ମଧ୍ୟରେ ଏହାର ବିଚାର ହେଲା ତାହାଙ୍କୁ କିପରି ସାହାଯ୍ୟ କରାଯିବ । କିନ୍ତୁ ବିଚାରର ଶେଷ ନିଷ୍ପତ୍ତିରେ ପହଞ୍ଚିବା ପୂର୍ବରୁ ଶ୍ରୀ ହରି ସିଂହ ଭଙ୍ଗିୟାଁ ଯୋଜନା ଅଧିପତିଙ୍କ ମନରେ କେଜାଣି କଣ ବିଚାର ଆସିଲା କି ସେ ନିଜେ ଯାଇ ନିକଟରେ ପହଞ୍ଚିବା ବ୍ରାହ୍ମଣଙ୍କୁ କହିଲେ ଖାଲସା ପନ୍ଥ ତୁମକୁ ସାହାଯ୍ୟ କରିବେ ଓ ଦୁଷ୍ଟମାନଙ୍କ ଅକ୍ତିଆରରୁ ବ୍ରାହ୍ମଣୀଙ୍କୁ ନିଶ୍ଚିତ ଭାବେ ଖଲାସ କରିବେ ।

ଅନ୍ୟ ପରାମର୍ଶଦାତା ଦଳପତି ସଭ୍ୟମାନେ ଏହା ଶୁଣି କହିଲେ କି ସ.ହରି ସିଂହଜୀ ଆପଣ ଭାବନା ଚିନ୍ତା ନ କରି କାହିଁକି କହିଲ ? ଜାଣିଛ ସେଠାରେ କେତେ ଶକ୍ତି ଅଛି ? କେତେ ଦୁର୍ଗ ଅଛି ? କେତେ ସୈନ୍ୟ ଓ ତୋପ ଅଛି ? ଚିନ୍ତା କରି କହିବା ଉଚିତ ।

ସର୍ଦ୍ଦାର ହରି ସିଂହଜୀ କହିଲେ- ମୁଁ ଏହା ଜାଣି ନାହିଁକି ଭଲ ଠିକ୍ ପରନ୍ତୁ ଗୁରୁ ପନ୍ଥର ଆଦେଶ ଏମିତି କରିବାପାଇଁ କୁହାଯାଇଛି। ଦେଖନ୍ତୁ ନିଃସହାୟଙ୍କୁ ସାହାଯ୍ୟ କରିବା, ଏହା ମୋର ପନ୍ଥର ଆଦେଶ। ଶେଷରେ ସେଠାରେ ଦୁର୍ଗ କେତେ ବଡ଼, ତୋପ ବାରୁଦ, ସୈନ୍ୟ ସଂଖ୍ୟା, ଏହାର ବିଚାର ଖାଲସାଙ୍କ ମନରେ ଆସିବା ଅନୁଚିତ। ପନ୍ଥ ଅନୁଗାମିନୀମାନେ ନିଜ କାମ ସ୍ୱୟଂ କରନ୍ତି। ଯଦି ଆପଣମାନେ ଯିବେ ନାହିଁ, ତାହେଲେ ହରି ସିଂହ ଏକା ଯିବ। ଦୁଷ୍ଟମାନଙ୍କୁ ପରାସ୍ତ କରି ବିଜୟ ପ୍ରାପ୍ତ କରିବ ନଚେତ୍ ଶହୀଦ୍ ପ୍ରାପ୍ତ କରିବ। ଏଥିରୁ ମୁଁ ପଛକୁ ହଟିବି ନାହିଁ।

ସ.ହରି ସିଂହ ଏହା କହି ପଛକୁ ଯିବାବେଳେ ସ.ଚଢତ ସିଂହଜୀ ଛିଡ଼ା ହୋଇ କହିଲେ - ଖାଲସା ଜୀ, ସିଂହଙ୍କ ବଚନ ବଦ୍ଧ ହୋଇଗଲା, ସେଥିଯୋଗୁଁ ଆକ୍ରମଣ ନିଶ୍ଚିତ ଭାବେ କରିବା ଉଚିତ। ଯଦି କୌଣସି ପ୍ରକାର ଶଙ୍କା ଥାଏ ତାହେଲେ ଚାଲ ବର୍ତ୍ତମାନ ହରିମନ୍ଦିର ସାହିବ ଠାରୁ ଗୁରୁ ମହାରାଜଙ୍କ ଚରଣରେ ସମର୍ପିତ ହୋଇ ଅରଦାଶ (ପ୍ରାର୍ଥନା) କରିବା ଓ ପୁଣି ଯେଉଁ ପ୍ରକାର ନିର୍ଦ୍ଦେଶ ଆସିବ, ସେହି ଭାବେ କରିବା।

ଏହି ପ୍ରସ୍ତାବ ସମସ୍ତଙ୍କୁ ଠିକ୍ ଲାଗିଲା। ସେହି ସମୟରେଡ଼ା ପ୍ରସାଦର ଦେଗ୍ ପ୍ରସ୍ତୁତ କରାଗଲା। ପୁଣି ପ୍ରେମ ସହ ଅରଦାଶ କରାଗଲା। ତାହାପରେ ସିଂହ ସାହିବ ଗ୍ରନ୍ଥି ସିଂହଜୀ ସୁଖହ ଅଟଳର... ଦୋହରା ପଢ଼ି ହୁକୁମନାମାର ବାକ୍ୟ ଉଚ୍ଚାରଣ କରିଲେ ତାହା-

**ସଲୋକୁ**

"ଫାହେ କାଟେ ମିଟେ ଗବନ ଫତହି ଭଇ ମନି ଜିତ"।

ଏହି ବଚନ ଶୁଣି ଅତୁଟ ଭରସା ରଖିବା ସିଂହମାନେ ଜୟ ଜୟକାରର ଘନଘୋର ଲଗାଇଦେଲେ। କହିବାକୁ ଲାଗିଲେ - କସୁରର ବିଜୟ ହୋଇ ରହିଅଛି। ଏହି ବିଜୟ ଆମ୍ଭେମାନେ ମହାରାଜଙ୍କୁ ଦେବାକୁ ପଡ଼ିବ, ସେଥିଯୋଗୁଁ ବିଳମ୍ବ ଓ ଆଳସ୍ୟ ଅନୁଚିତ ଓ ନଗାଡା ଦୁନ୍ଦୁଭିକୁ ଚୋଟ ବର୍ତ୍ତମାନ ଲଗାଇବା ଉଚିତ। ସେଥିଯୋଗୁଁ ଏହିପରି ନିଷ୍ପତ୍ତି ନିଆଗଲା ଓ କସୁର୍ ଆକ୍ରମଣ କରିଦେଲେ।

ସିଂହମାନେ ଅମୃତସରଠାରୁ ବାହାରି ପ୍ରଥମ ବିଶ୍ରାମ ପିପଲି ସାହିବ ଠାରେ କରିଲେ ଓ ଦ୍ୱିତୀୟ ଅଟାରୀ ରାଜାର ପୋଖରୀ ପାଖରେ କରିଥିଲେ। ସେଠାରୁ

ଗୁପ୍ତଚର ପଠାଇ ଖବର ସଂଗ୍ରହ କରିଲେ। କସୁର୍‌ର ସମ୍ମାନନୀୟ ପଠାଣମାନଙ୍କୁ ତିଳେ ମାତ୍ର ସନ୍ଦେହ ନ ଥିଲା କି ସେତେବେଳେ ଏହିପରି ଭାବେ କିଏ ଆକ୍ରମଣ କରିବ। ସେମାନେ ନିଶ୍ଚିନ୍ତ ଥିଲେ କାରଣ ଏହି ରାଜମାର୍ଗର ଅଳ୍ପ ଦୂରରେ ଥିଲା ଓ ଦୁର୍ଗ ବନ୍ଦୀ ଦୃଢ଼ ଥିବା ଯୋଗୁଁ କେହି ବିଦେଶୀ ଆକ୍ରମଣକାରୀମାନେ ସେପଟକୁ ନଜର ଉଠାଇ ଦେଖୁନଥିଲେ। ନାଦିର ଥରେ ଆସିଥିଲା, ପରନ୍ତୁ ଅହମ୍ମଦ ଶାହ ବହୁତ ଥର ଆସିଥିଲା। ସେଥିଯୋଗୁଁ କସୁର୍‌ର ଜନସଂଖ୍ୟା ବଢୁଥିଲା ଓ ଲୋକମାନେ ସୁରକ୍ଷିତ ସ୍ଥାନ ବିଚାର କରି ସେଠାରେ ଜନବସତି କରୁଥିଲେ।

ଯେତେବେଳେ ସିଂହମାନଙ୍କ ଆକ୍ରମଣର ଖବର ଲୋକଙ୍କୁ ମିଳିଲା, ସେମାନେ ସିଂହମାନଙ୍କ ଆକ୍ରମଣ ଯୋଗୁଁ ଆଚମ୍ବିତ ହୋଇଗଲେ। କେତେଜଣ ସିଂହମାନଙ୍କୁ ଯୁଦ୍ଧ ବନ୍ଦ କରିବା ପାଇଁ ପରାମର୍ଶ ଦେଲେ। ପରନ୍ତୁ ଗୁରୁ ଓ ଗୁରୁଙ୍କ ନିର୍ଦ୍ଦେଶ ସହ ଅଗାଢ଼ ଭରସା ରଖିବା ଖାଲସା କେମିତି ଏହି କଥାକୁ ମନା କରିବେ ? ସିଦକୀ ସିଂହମାନେ ପ୍ରଥମେ କହିଲେ ଦୁନିଆର କୌଣସି ଜିନିଷ ଉପରେ ଅବିଶ୍ୱାସ ଓ ଭ୍ରମ ହୋଇପାରେ, ପରନ୍ତୁ ଗୁରୁ ମହାରାଜଙ୍କ ବଚନ ଉପରେ ଭରସା ନ କରିଲେ ତାହା ମସ୍ତବଡ଼ ଭୁଲ ହୋଇଯିବ। ପରନ୍ତୁ ଗୁରୁ ମହାରାଜଙ୍କ ବଚନ ଉପରେ ଭରସା ନକରିଲେ ବିରାଟ ଭୁଲ ହୋଇଯିବ। ଗୁରୁ ମହାରାଜଙ୍କ ବଚନ ସତ୍ୟ ଅଟେ, ଅଟଳ ଅଟେ ଓ ଅଟଳ ରହିବ।

ଯେବେ ଦ୍ୱିତୀୟ ବିଶ୍ରାମ ପରେ ସିଂହମାନେ ଅଗ୍ରସର ହେବାକୁ ଲାଗିଲେ, ଗୁପ୍ତଚର ମଧ୍ୟ ପହଞ୍ଚିଗଲା। ସେ ଖବର ଦେଲା କି ପଠାଣମାନେ ଖୁବ୍ ନିଶ୍ଚିନ୍ତ ହୋଇ ଶାନ୍ତିରେ ଶୋଇ ରହିଛନ୍ତି। ସେମାନେ ଅହମ୍ମଦ ଶାହର ଆକ୍ରମଣ ବ୍ୟତୀତ ଅନ୍ୟ କାହାକୁ ଡରନ୍ତି ନାହିଁ। ସେମାନେ ଗରମରୁ ଉଦ୍ଧାର ପାଇବା ପାଇଁ ଶୀତଳ କୋଠରିର ଦିନ ବେଳେ ବାହାରକୁ ବାହାରନ୍ତି ନାହିଁ। ତାହା ସହିତ ଗୁପ୍ତଚର ପରାମର୍ଶ ଦେଲା କି ଖାଲସାଙ୍କୁ ଦୁଇ ପହର ସମୟରେ ଆକ୍ରମଣ କରିବା ଉଚିତ।

ଏହି ଖବର ଶୁଣି ଖାଲସାମାନେ ଗତି ତୀବ୍ର କରିଦେଲେ ଓ ସିଂହ ରାତି ସାରା ଚାଲିଲେ ଓ ପ୍ରାତଃକାଳ ସୁଦ୍ଧା କସୁର୍ ପୂର୍ବରୁ ୧୦ ମାଇଲ ସତଲୁଜ କୂଳରେ ତମ୍ବୁ ଲଗାଇଦେଲେ। କିଛି ସମୟ ବିଶ୍ରାମ କରିଲେ ଓ ସକାଳ ୫ବାଣୀ ପାଠ, ସନ୍ଧ୍ୟା ସମୟରେ ଶ୍ରୀ ରହରାସ ସାହିବର ପାଠ ଓ ରାତ୍ରିରେ ଶ୍ରୀ ସୋହିଲା ସାହିବର ପାଠ କରିଲେ। ସକାଳ ହେବା ପରେ ଖାଦ୍ୟପାନୀୟ କରି ଗରମ ବଢ଼ିବା ଯାଏଁ

୧୦ଟା ସମୟ ସୁଦ୍ଧା ସିଂହମାନେ ଅଗ୍ରସର ହୋଇଗଲେ। ସତଲୁଜ କୂଳେ କୂଳେ ଗଲେ ଓ ଠିକ୍ ମଧ୍ୟାହ୍ନ ବେଳେ କସୁର ଠାରେ ପହଞ୍ଚିଗଲେ। ଅତ୍ୟଧିକ ଗରମ ଯୋଗୁଁ ଶୀତଳ କୋଠରି ମଧ୍ୟରେ ପଶି ଥଣ୍ଡାର ଆନନ୍ଦ ନେଉଥିଲେ। ଦୁର୍ଗର ପ୍ରହରୀମାନେ ଗରମ ଯୋଗୁଁ କୋଣେ କୋଣେ ରହି ଗପ କରୁଥିଲେ। ସେଥିଯୋଗୁଁ ସିଂହମାନେ ଚୁପ୍‌ଚାପ୍ ଖୋଲା କବାଟ ରାସ୍ତାରେ ପହଞ୍ଚିଗଲେ। ଇଚ୍ଛା ଅନୁଯାୟୀ ସମସ୍ତେ ଦୁର୍ଗ ମଧ୍ୟରେ ପ୍ରବେଶ କରିଲେ ଓ ତଲବାର ଚଳାଇବା ଆରମ୍ଭ କରିଦେଲେ। ସିଂହମାନେ ବହୁତ କୁଶଳତା ସହ ଆକ୍ରୋଶ ଥିଲେ। ସେମାନେ ସମ୍ମୁଖୀନ ହୋଇପାରିଲେ ନାହିଁ। କିଏ ଶୋଇଥିଲା, କିଏ ବସିଥିଲା, ସିଂହମାନେ ଯାହାକୁ ଯେମିତି ଅବସ୍ଥାରେ ଦେଖିଲେ ସେହି ଅବସ୍ଥା କାମ କରିଦେଲେ। ବିଶେଷଭାବେ ଉସମାନ୍ ଖାଁର ଦୁର୍ଗ ମଧ୍ୟରେ ଜଣେ ହେଲେ ପଠାଣ ସିପାହୀ ମଧ୍ୟ ବଞ୍ଚିପାରି ନ ଥିଲା। ଶୀତଳ କୋଠରି ମଜା ନେଉଥିବା ଉସମାନ ଖାଁ କୁ ସିଂହମାନେ ଧରିଲେ ଓ ତାକୁ ବହୁତ ଦଣ୍ଡ ଦେଇଥିଲେ। ନିରୀହ ବ୍ରାହ୍ମଣୀକୁ ବ୍ରାହ୍ମଣ ଦାୟିତ୍ୱରେ ଦେଲେ। ଏହିପରି ସିଂହମାନେ ଅଳ୍ପ କେତେ ଘଣ୍ଟା ମଧ୍ୟରେ ପୂରା ରାଜବାଟୀ ଉପରେ ଅଧିକାର କରିନେଲେ। ସିଂହମାନେ ସେହି ଦିନରେ ଦୋଷୀମାନଙ୍କୁ, ଦୁଷ୍ଟମାନଙ୍କୁ ଦଣ୍ଡ ବିଧାନ ଦେଇ ସଂଧ୍ୟା ସମୟକୁ ଫେରି ଆସିଲେ। ପରନ୍ତୁ କୁହାଯାଇଛି, ତତ୍ ପଶ୍ଚାତ୍ ତିନି ଦିନ ଯାଏଁ ଚୋର - ଡାକୁମାନେ ସେଠାରେ ସାଧାରଣ ଭାବେ ଲୁଟ୍‌ତରାଜ ଚଳାଇ ରଖିଲେ ଓ ପଠାଣମାନଙ୍କ ଶବ କସୁରର ଗଳି ରାସ୍ତା ବଜାର ମଧ୍ୟରେ ଭରି ଯାଇଥିଲା।

କସୁରର ବିଜୟ ବହୁତ ବଡ ବିଜୟ ଥିଲା। ସିଂହମାନଙ୍କୁ ଏହି ବିଜୟ ଯୋଗୁଁ ଯଶ ଓ ଧନ ବହୁତ ମିଳିଥିଲା ଓ ଘୋଡ଼ା, ଗୁଳି, ବାରୁଦ, ଟଙ୍କା, ହତିଆର ଇତ୍ୟାଦି ଯୋଗୁଁ ସିଂହମାନଙ୍କର ଦଳ ଓ ଯୋଜନାର ଅବସ୍ଥା ଦୃଢ଼ ହୋଇଗଲା। ଅର୍ଥାନଟନ କଟିଗଲା।

## ସିଂହମାନଙ୍କ ବିଜୟ, ସେମାନଙ୍କ ଅନ୍ୟ ଅଞ୍ଚଳ ଅଧିକାର

ସିଂହମାନେ କସୁର୍ ଠାରୁ ଫେରିବା ସମୟରେ ଗୁରୁଦାସପୁର, ବଟାଲା ଓ ପଠାଣକୋଟର ମଧ୍ୟବର୍ତ୍ତୀ ସ୍ଥାନର ସମଗ୍ର ଅଞ୍ଚଳ ଅଧିକାର କରିଦେଲେ। ଏହା ଦେଖି ଜାଲନ୍ଧର ପସରୁର୍ ଓ କଲାନୌରର ମୁସଲମାନ ହାକିମମାନେ ବିଚଳିତ ହୋଇଗଲେ। ସେମାନେ ନିଜର ସୈନ୍ୟବଳ ସଂଗ୍ରହ କରି ଏକତ୍ରିତ କରିଲେ ଓ

ସିଂହମାନଙ୍କ ବିରୋଧରେ ପ୍ରତିରୋଧ ପୂର୍ବକ ଯୁଦ୍ଧ କରିଲେ। ସେଠାରେ ଭୟାନକ ଯୁଦ୍ଧ ହୋଇଥିଲା, କାରଣ ଶତ୍ରୁମାନଙ୍କ ସଂଖ୍ୟା ଅଧିକ ଥିଲା। ସିଂହମାନେ ଭାବିଲେ ଯଦି ଏମାନଙ୍କ ପାଖରେ ଆମ୍ଭେ ହାରିଯିବା, ତାହେଲେ ପଞ୍ଜାବ ଆମ ଅଧିକାର ହେବା କଠିନ ହୋଇଯିବ। ସେଥିଯୋଗୁଁ ସିଂହମାନେ ଅରଦାଶ କରିଲେ ଓ ଜୟ ଜୟକାର ଧ୍ୱନୀ ଦେଲେ ଓ କରିବା ମରିବା ଭଳି ଯୁଦ୍ଧ କରିଲେ। କଲାନୌର ଓ ପସରୁର୍ ହାକିମମାନେ ମରିଗଲେ। ପରନ୍ତୁ ଜଳନ୍ଧର ହାକିମ ପଳାୟନ କରିଲା ଓ ଏହିଭଳି ଭାବେ ବିଜୟ ସିଂହମାନଙ୍କୁ ମିଳିଗଲା।

ଏହି ବିଜୟ ସିଂହମାନଙ୍କ ମନୋବଳ ଆହୁରି ବଢ଼ାଇଦେଲା। ଏହାପରେ ସିଂହମାନେ ଦୋଆବ ଓ ମାଝେର ବହୁତ ସ୍ଥାନ ଅଧିକାର କରିଦେଲେ। ବର୍ତ୍ତମାନ ଅନ୍ୟ ମୁସଲମାନ ହାକିମମାନେ ଚିନ୍ତାଗ୍ରସ୍ତ ହୋଇଗଲେ, ସିଂହମାନେ ଆମ ସ୍ଥାନକୁ ଆକ୍ରମଣ ନ କରନ୍ତୁ। ପରନ୍ତୁ ସିଂହ ବର୍ତ୍ତମାନ ଲାହୋରକୁ ଅଧିକାର କରିବା ବିଚାର କରୁଥିଲେ।

ଲାହୋରର ସବୁ ସର୍ଦ୍ଦାରଙ୍କୁ ମାରିବାକୁ ଇଚ୍ଛା କରୁଥିଲେ, ପରନ୍ତୁ ଏହା ଲଗାଇବା ଇଚ୍ଛା କରୁଥିଲେ, ଯିଏ ସେଠାରେ ଅଧିକାର ରଖିବା ସେଥିଯୋଗୁଁ ଶେଷରେ ଏହାର ସମାଧାନ ସକାଶେ ସ. ଜସ୍ସା ସିଂହ ରାମଗଡ଼ ବାସୀଙ୍କ ଅଧୀନତ୍ୱକୁ ସ୍ୱୀକାର କରାଗଲା ଓ ସର୍ଦ୍ଦାରମାନଙ୍କର ସାହାଯ୍ୟ ନିଆଗଲା। ସ. ହରି ସିଂହ ଭଙ୍ଗୀ ମିସଲ ବାସି ମଧ ସାଥିରେ ରହିଲେ। ଏହିପରି ଭାବେ ସିଂହମାନେ ଲାହୋରକୁ ଅଗ୍ରସର ହୋଇଗଲେ।

ସିଂହମାନେ ଲାହୋର ଆକ୍ରମଣ କରିବା ପରିବର୍ତ୍ତେ ପ୍ରଥମେ ଲାହୌର ନିକଟବର୍ତ୍ତୀ ଅଞ୍ଚଳ ଆକ୍ରମଣ କରି ମୁସଲମାନ ଜନବସତିକୁ ଲୁଟି ମାରି ହଟାଇଦେଲେ। ଲାହୋରର ସୁବା ଏହା ଦେଖି ଦୂର୍ଗ ବନ୍ଦ କରି ରହିଲା। ତାହା ନିକଟରେ ଏତେ ଶକ୍ତି ନ ଥିଲା କି ଖୋଲା ରଣଭୂମିରେ ଯୁଦ୍ଧ କରିପାରିବ। ଏମିତି ପରିସ୍ଥିତି ହେଲା କି ନିରୀହ ସହରବାସୀ ନିରାଶ ହୋଇ ରହିଲେ। ସିଂହମାନେ କୌଣସି ଜିନିଷ ବାହାରୁ ଆସିବାକୁ ଦେଉନଥିଲେ। ଏହା ଦେଖି ସହରବାସୀ ସ.ଜସ୍ସା ସିଂହ ସହ ପରାମର୍ଶ କରିଲେ। ଲୁଟ ମାର କରୁଥିବା ସହରକୁ ଚୁପଚାପ ସିଂହମାନଙ୍କ ଅଧିକାରରେ ଦେଇଦେଲେ। ଏହାପରେ ଲୋକମାନେ ସୁଖରେ ନିଃଶ୍ୱାସ ନେଲେ, କିନ୍ତୁ ସୁବା ଦୁର୍ଗ ମଧ୍ୟରେ ବନ୍ଦୀ ହୋଇ ରହିଲା। ଏହି ଘଟଣା ୧୮୧୮ ବେଳର ଅଟେ।

ଏମିତି ଏହି ଘଟଣା ହୋଇଥିବା ପରେ ସ. ଦୟାଲ ସିଂହ ବରାଡ ସରହନ୍ଦର ନିକଟସ୍ଥ ଅଞ୍ଚଳରେ ଅଚାନକ ଆକ୍ରମଣ କରି ସେହି ଧୋକାବାଜ, ଅତ୍ୟାଚାରୀ ଜୈନ ଖାଁ ସୁବା ସରହନ୍ଦର ଜନତାଙ୍କ ସହ ଗଣ୍ଡଗୋଳ କରିଲା। ସେ ପଙ୍ଗୀ ଠାରେ ସିଂହନୀମାନଙ୍କୁ ଅତ୍ୟାଚାର କରିଥିଲା। ମୁସଲମାନମାନେ ହାକିମ ଅହମ୍ମଦ ଶାହକୁ ମନେ ପକାଇଲେ। ସନ୍ଦେଶ ପଠାଇ ତୁରନ୍ତ ଆସିବା ପାଇଁ ଅନୁରୋଧ କରିଲେ।

## ଅହମ୍ମଦ ଶାହର ଅଷ୍ଟମ ଆକ୍ରମଣ

ଯେବେ ସିଂହମାନେ ଲାହୋରକୁ ଅଧିକାର କରିଦେଲେ, ଅହମ୍ମଦ ଶାହର ସୁବା ପାଖରେ କେବଳ ଦୁର୍ଗ ରହିଥିଲା ଓ ସେ ବହୁତ ଦୁଃଖୀ ହୋଇଥିଲା। ସେ ଭିତରେ ଭିତରେ ଅହମଦ ଶାହକୁ ଖବର ପଠାଇଥିଲା କି ଆପଣ ଆସି ମତେ ବଞ୍ଚାନ୍ତୁ। ସିଂହମାନେ ଗୁରୁଙ୍କ ଜଣ୍ଡିୟାଲକୁ ଯାଇ ଆକ୍ରମଣ କରିଥିଲେ, କାରଣ ସେଠାରେ ହରି ଭଗତ ନିରଞ୍ଜନିଆ ସିଂହମାନଙ୍କ ବଡ଼ ଅପରାଧୀ ଓ ସେମାନଙ୍କ ବିରୋଧରେ ସବୁବେଳେ ଚୁଗୁଲି କରୁଥିଲା। ସେ ବହୁତ ବଡ଼ ବଡ଼ ସିଂହମାନଙ୍କୁ ମରାଇଥିଲା ଓ ଧରାଇଥିଲା। ସିଂହନୀମାନଙ୍କୁ ଧରାଇବା ସେ ମୁଖ୍ୟ କାରଣ ଥିଲା। ସେଥିଯୋଗୁଁ ତାହାକୁ ଲାହୋରର ସୁବା ତାହାକୁ ବହୁତ ଜମିଦାରୀ ପୁରସ୍କାର ସ୍ୱରୂପ ଦେଇଥିଲା। ତାହାର ବଡ଼ଭାଇ ଗୁରୁଘରର ବହୁତ ସେବା କରୁଥିବା ଯୋଗୁଁ ଗୁରୁ ଘର ତରଫରୁ ସିଂହମାନେ ବହୁତ ସମ୍ମାନ ସ୍ଥାନ ଦେଇଥିଲେ କିନ୍ତୁ ତାହାର ସନ୍ତାନ ସିଂହମାନଙ୍କ ବଡ଼ ଶତ୍ରୁତା କରିଥିଲା।

ଏହି ନିନ୍ଦୁକମାନେ ନକଲି ଜନ୍ମ ସାକ୍ଷୀ (ଇତିହାସ) ପ୍ରସ୍ତୁତ କରି ବହୁତ ମିଥ୍ୟା ଓ ନିନ୍ଦୁକ ଘଟଣା କାହାଣୀ ମଧ ଗୁରୁଜୀଙ୍କ ସମ୍ମାନ ଓ ପ୍ରତିଷ୍ଠା ବିରୋଧରେ ଲେଖିଥିଲା। ସେଥିଯୋଗୁଁ ଶିଖମାନେ ସେହି ସମୟ ଠାରୁ ପ୍ରତିଶୋଧର ଅଗ୍ନିରେ ଜଳି ଜଳି ଥିଲେ। ଯେତେବେଳେ ପଞ୍ଜାବର ସମସ୍ତ ଦୋଷୀ ହାକିମମାନଙ୍କୁ ସିଂହମାନେ ଏକାଥରକେ ଶେଷ କରିଦେଲେ ଓ ଅଧିକାର କରିଦେଲେ। ପୁଣି ସେଠାରୁ ଯାଇ ସିଂହମାନଙ୍କର ବଡ଼ ଶତ୍ରୁ ନିରଞ୍ଜନକୁ ଶୋଧନ କରିବା ପାଇଁ ଗୁରୁଙ୍କ ଜଁଡ଼ିୟାଲକୁ ଘେରାଉ କରିଦେଲେ। ଅହମ୍ମଦ ଶାହ ଅବଦାଲୀ ବହୁତ ହିଂସାତ୍ମକ ହୋଇଥିଲା। ଯେତେବେଳେ ନିରଞ୍ଜନ ନିଜକୁ ନିଜେ ସିଂହମାନଙ୍କ ଘେର ମଧ୍ୟରେ ଦେଖିଲା ସେ ନିଜର ଛୋଟ ମହଲ ଭିତରେ ପଶି ନିଜର ଅଳ୍ପ ଲୋକମାନଙ୍କ

ସହିତ ଲଢ଼େଇ ଆରମ୍ଭ କରିଦେଲା। କାହା ସହିତ ସେ କେତେ ଲକ୍ଷ ଟଙ୍କା ଦେବା ପାଇଁ ବଚନ ଦେଇ ଅହମ୍ମଦ ଶାହ ପାଖକୁ ନିଜର ଲୋକମାନଙ୍କୁ ପଠାଇଲା, କେମିତି ସେ ଚୋରି ହୋଇଯାଉ।

ଯେତେବେଳେ ଅହମ୍ମଦ ଶାହକୁ ହରି ଭଗତ ନିରଞ୍ଜନର ଏହି ନିବେଦନ ସାହାଯ୍ୟ ପାଇଁ ସନ୍ଦେଶ ପତ୍ର ମିଳିଲା, ଯାହା ମୁଁ କେତେ ଲକ୍ଷ ଦେବା ପାଇଁ ପ୍ରତିଶୃତି ଦେଇଥିଲି, ତାହା ସେ ପ୍ରସ୍ତୁତ ହେବା ପୂର୍ବରୁ କରିଥିଲି, ସେ ତୁରନ୍ତ ଦେଢ଼ ଲକ୍ଷ ସୈନ୍ୟବାହିନୀ ସହ ଅଷ୍ଟମ ଥର ପାଇଁ ହିନ୍ଦୁସ୍ତାନକୁ ଆକ୍ରମଣ କରିଦେଲା। ଏହିଥର ସେ ସିଂହମାନଙ୍କ ବିରୋଧରେ ଅଭିଯୋଗ ମିଳିଥିଲା ଓ ବିଶେଷ ଭାବେ ସିଂହମାନଙ୍କୁ ଉଚିତ ଶିକ୍ଷା ଦେବା ଉଦ୍ଦେଶ୍ୟ ଥିଲା। ସିଂହମାନେ ତାହାର ସୁବାମାନଙ୍କୁ ତଥା ଅନ୍ୟ ହାକିମମାନଙ୍କୁ ପଞ୍ଜାବରେ ରହିବା କଷ୍ଟ କରିଦେଇଥିଲେ ଓ ତାହା ସେମାନଙ୍କୁ ବହୁତ କଷ୍ଟ ହେଉଥିଲା। ଯାହାକି ହିନ୍ଦୁସ୍ତାନର ରାଜପୁତ୍ ଓ ମରାଠୀମାନେ ତାହାକୁ କିଛି କହିପାରୁ ନ ଥିଲେ।

ତାହାକୁ ଡରି, ପୁରସ୍କାର, ଭେଟ ଦେଇ ଦେଇ ତାହାର ଆଜ୍ଞାକାରୀ କରି ମୁଣ୍ଡପୋତି ସହୁଥିଲେ। ଏହି ମୁଠାକ ସିଂହ ତାହାର ରାସ୍ତାର କଣ୍ଟା ହୋଇ ରହିବେ କାହିଁକି ? ସେଥିଯୋଗୁଁ ସେ ସିଂହମାନଙ୍କ ପ୍ରତି ବଡ଼ କ୍ରୋଧାନ୍ୱିତ ହୋଇ ରହିଥିଲା। ଏହି ବିଚାର ଯୋଗୁଁ ସେ ବର୍ତ୍ତମାନ ସୁଦ୍ଧା ଯୁଦ୍ଧ କରିବା ପାଇଁ ଆସିଲା। ଏହାର ଖବର ସିଂହମାନଙ୍କୁ ମିଳିଗଲା।

## ଦ୍ୱିତୀୟ ବଡ଼ ଯୁଦ୍ଧ

ଯେତେବେଳେ ସିଂହମାନଙ୍କୁ ଖବର ମିଳିଲା ଅହମଦ ଶାହ ପୁଣି ଆକ୍ରମଣ ସକାଶେ ଆସିଛି, ସେମାନେ ନିଜ ଅଞ୍ଚଳର ଅଧିକାର କରିବା ଛାଡ଼ି ଅମୃତସରଠାରେ ଏକତ୍ରିତ ହେଲେ। କାରଣ ସିଂହମାନଙ୍କୁ ସନ୍ତାନସନ୍ତତି ପରିବାର ସହ ଶତ୍ରୁମାନେ ବହୁତ କଷ୍ଟ ଦେଇଥିଲେ। ଏହିଥର ସିଂହମାନେ ନିଜର ସନ୍ତାନସନ୍ତତିଙ୍କୁ ପୂର୍ବରୁ ଅତି ଜାଗ୍ରତ ସହ ସାଥିରେ ରଖିଲେ। କୁହାଯାଇଛି କି – ସେତେବେଳେ ୩୦ହଜାର ଯୋଦ୍ଧା ସିଂହ ଏକତ୍ରିତ ହୋଇଗଲେ। ଗୁରୁମତକୁ ସ୍ମରଣ ଓ ଗ୍ରହଣ କରି ପରିବାରବର୍ଗଙ୍କୁ କେତେଜଣ ସିଂହମାନଙ୍କ ସହ ମାଳବ ପଟକୁ ପଠାଇ ଦେଇଥିଲେ। ଅହମଦ ଶାହ ନିଜ ଆଗରେ ସୈନ୍ୟମାନଙ୍କୁ ସରଦାରମାନଙ୍କ ସହ ପଠାଇଲା କି

ତୁମେମାନେ ଆଗରେ ପହଞ୍ଚି ସିଂହମାନଙ୍କ ରାସ୍ତା ଅବରୋଧ କର; କିନ୍ତୁ ସିଂହମାନେ ସୈନ୍ୟ ପହଞ୍ଚିବା ପୂର୍ବରୁ ଜଙ୍ଗଲ ମଧ୍ୟରେ ଲୁଚିଗଲେ ଓ ନିଜର କୂଟନୀତି ପ୍ରୟୋଗ କରିଲେ। ସିଂହମାନଙ୍କ ଶକ୍ତି ପୂର୍ବ ଅପେକ୍ଷା ବଢ଼ି ଯାଇଥିଲା ଓ କେତେଦିନ ଯାଏଁ ଖୁବ୍ ମନ ଲଗାଇ ଲଢ଼ି ପାରୁଥିଲେ, ପରନ୍ତୁ ଆଞ୍ଚଳିକ ମୁସଲମାନ ମଧ୍ୟ ସିଂହମାନଙ୍କ ଶତ୍ରୁ ଥଲେ ଓ ସେମାନେ ସିଂହମାନଙ୍କୁ ଈର୍ଷା କରୁଥିଲେ। ସେଥିଯୋଗୁଁ ଜଙ୍ଗଲ ସିଂହମାନଙ୍କର ପ୍ରକୃତ ସହାୟକ ଥିଲା।

ଯେତେବେଳେ ସିଂହମାନେ ଜଙ୍ଗଲରୁ ବାହାରି ଆଗରେ ଆଗରେ ଅଚାନକ ଆକ୍ରମଣ କରୁଥଲେ, ତାହା କିଏ ସହ୍ୟ କରିପାରିବ ? ଯେଉଁ ପଟରୁ ସିଂହମାନେ ଆକ୍ରମଣ କରୁଥଲେ, ସେତେବେଳେ ଶତ୍ରୁମାନେ ସେହି ପଟକୁ ସାହସ କରୁଥିଲେ, ସେହି ସମୟ ପୂର୍ବରୁ ସିଂହମାନେ ୧୦ ମାଇଲ ଦୂର ଓ ଅନ୍ୟ ପଟରୁ ଯାଇ ଆକ୍ରମଣ କରୁଥିଲେ, ମାରା-ମାରି, ଲୁଣ୍ଠନ କରି ଯାଉଥିଲେ। ବହୁତ ଦିନ ଯାଏଁ ଅହମ୍ମଦ ଶାହର ରାଜ ସୈନ୍ୟବାହିନୀ ସିଂହମାନଙ୍କୁ ମାରିବା ପାଇଁ ବହୁତ ଉଦ୍ୟମ କରିଥିଲେ ପରନ୍ତୁ ସଫଳ ହୋଇ ନ ଥିଲେ, ଏହା ଦେଖି ପୁଣି ଅହମ୍ମଦ ଶାହକୁ ରୁହତାସ ପାଖରେ ଖବର ଦିଆଗଲା କି ସିଂହମାନେ ଆମର ବଶୀଭୂତ ହୋଇପାରୁ ନାହାନ୍ତି। ଏହା ଶୁଣି ଅହମଦ ଶାହ ନିଜର ସେନାବାହିନୀ ସହ ଲାହୋର ଠାରେ ପହଞ୍ଚିଲା। ସେଠାରେ ତାହାର ବଡ଼ ସେନାପତି କହିଲା କି ସିଂହମାନଙ୍କ ସହିତ ଲଢ଼ିବା ପାଇଁ ଆମ ପାଖରେ କୌଣସି ଉପାୟ ନାହିଁ। ସିଂହମାନେ ଘଞ୍ଚ ଜଙ୍ଗଲ ଭିତରେ ଅଛନ୍ତି, ଯେଉଁଠି କି ହାତେ ହାତେ ଲମ୍ବା କଣ୍ଟା ଓ ଶୂଳି ଭଳି ଘାସ ବୁଦା, ଯେଉଁଠି କି ଆମ୍ଭେମାନେ ଏକ ପାଦ ଚାଲିବା କଷ୍ଟ ହୁଏ ସେଠି ସିଂହମାନେ ଏମିତି ହରିଣ ଭଳି ଦୌଡି ଆଖି ପିଛୁଳାକେ ଲୁଚି ଯାଆନ୍ତି ଯେମିତି କି ସେଠାରେ କଣ୍ଟା ନାହିଁ ଓ ସିଂହମାନେ ଅଚାନକ ଆକ୍ରମଣ ଯୋଗୁଁ ଆମର ଜୀବନ କଷ୍ଟକର ହେଉଛି ଓ ସେଥିପାଇଁ ଆମେ ଫେରି ଆସିଲୁ।(ଏହି ସରକଣ୍ଡା ମୁଁ ନିଜେ ଦେଖି ଆସିଛି।)

ଏହା ଶୁଣି ଅହମ୍ମଦ ଶାହ ଆହୁରି ଈର୍ଷାଳୁ ହୋଇଗଲା ଓ ଚମକି ପଡ଼ିଲା। ବର୍ତ୍ତମାନ ସେ ନିଜେ ସୈନ୍ୟମାନଙ୍କର ଦାୟିତ୍ୱ ଗ୍ରହଣ କରିଲା। ସମସ୍ତ ଦେଶୀ ହାକିମମାନଙ୍କୁ ଡକାଇଲା ଓ ସିଂହମାନଙ୍କୁ ଆକ୍ରମଣ କରିଦେଲା। ଏମିତି ଲାଗିଥିଲା କି ପୂରା ବ୍ରହ୍ମାଣ୍ଡ ସିଂହମାନଙ୍କୁ ମାରିବା ପାଇଁ ଆଗେଇ ଆସିଥିଲା। ଦୃଢ଼ତାପୂର୍ଣ୍ଣ ଗୁରୁପ୍ରେମୀ ଅଟଳ ବିଶ୍ୱାସୀ ପରମାତ୍ମାଙ୍କ ସଚ୍ଚା ସେବକ ନିର୍ଭୀକ, ପରୋପକାରୀ,

ଦୟାଳୁ, ଶ୍ରଦ୍ଧାଳୁ ପ୍ରେମୀ ଶିଖମାନେ ନିର୍ଭୀକ ଓ ଦୃଢ଼ ହୋଇ ଶତ୍ରୁଙ୍କ ସହ ଲଢ଼ିବାକୁ ଲାଗିଥିଲେ। ଅଚାନକ ଯୁଦ୍ଧ କରିବା ସମୟରେ ଶତ୍ରୁଙ୍କ ଦୁଷ୍ଟ ବଳ ଯୋଗୁଁ କେତେକ ସିଂହ କେତେକ ସ୍ଥାନରେ ଶହୀଦ ପ୍ରାପ୍ତ କରିଥିଲେ। କିନ୍ତୁ ଶତ୍ରୁଙ୍କୁ ଶାନ୍ତିରେ ନିଃଶ୍ୱାସ ମାରିବା ପାଇଁ ଦେଉନଥିଲେ। ଏହି ପରିସ୍ଥିତି ଦେଖି ଅହମ୍ମଦ ଶାହ ଜଙ୍ଗଲ ମଧ୍ୟରେ ନିଆଁ ଲଗାଇଦେଇଥିଲା। ସିଂହମାନେ ଏହି ଖେଳ ପହୁଡ଼ ପୂର୍ବରୁ ବହୁତ ଥର ଦେଖିଥିଲେ। ସେଥିଯୋଗୁଁ ବହୁତ ଚତୁରତା ସହ ଜଙ୍ଗଲ ଛାଡ଼ି ଅନ୍ୟ ଜଙ୍ଗଲରେ ପଶି ଯାଇଥିଲେ। ଅହମ୍ମଦ ଶାହର ସୈନ୍ୟମାନେ ଆଶ୍ଚର୍ଯ୍ୟ ହୋଇ ରହିଥିଲେ। ଯେଉଁ ଜଙ୍ଗଲରେ ସିଂହମାନେ ପଶୁଥିଲେ ସେହି ଜଙ୍ଗଲକୁ ଅହମଦ ଶାହ ନିଆଁ ଲଗାଇ ଦେଉଥିଲା। ଏମିତି ଭାବେ ଅହମଦ ଶାହ ଦୁଇ ମାସ ଯାଏଁ ସିଂହମାନଙ୍କୁ ହଇରାଣ କରିଥିଲା। ସିଂହମାନେ ମଧ୍ୟ ଏହି ସମୟରେ ବହୁତ କଷ୍ଟ ଭୋଗିଥିଲେ। ପରନ୍ତୁ ବାଧ୍ୟତାପୂର୍ବକ ଅବଦାଲୀମାନେ ସିଂହମାନଙ୍କର କିଛି ଅନିଷ୍ଟ କରି ପାରିନଥିଲେ, ଶେଷରେ ଅହମ୍ମଦ ଶାହ ଜଳନ୍ଧର ଠାରେ କ୍ଳାନ୍ତି ଅନୁଭବ କରିଥିଲା ଓ ବିଶ୍ରାମ ସକାଶେ ଲାହୋର ଚାଲିଗଲା। ସିଂହମାନେ ସତଲୁଜ ପାର କରି ଆଗକୁ ବଢ଼ିଯାଇଥିଲେ।

ସିଂହମାନେ ସେଠାରେ ପହଞ୍ଚି ମାଲେକୋଟଲା, ରାୟକୋଟ, ସରହନ୍ଦ ତଥା ଅନ୍ୟ ମୁସଲମାନ ହାକିମାମାନଙ୍କ ପାଖାପାଖି ଅଞ୍ଚଳରେ ଚାଞ୍ଚଲ୍ୟ ସୃଷ୍ଟି କରିଦେଲେ ଓ ସେମାନଙ୍କ ଦଳ ସେମାନଙ୍କୁ ଅସ୍ତବ୍ୟସ୍ତ କରି ରଖିଦେଲେ। ସେମାନେ ଦୁଃଖୀ ହୋଇ ଅହମ୍ମଦ ଶାହକୁ ଖବର ପଠାଇଲେ। ଏହା ଶୁଣି ଅହମ୍ମଦ ଶାହ ସୈନ୍ୟବାହିନୀ ସହ ପଙ୍ଗୀ ଠାରେ ପହଞ୍ଚିଲା ଓ ନୂତନ ଯୋଜନା ବିଚାର କରିଲା, କେମିତି ସିଂହମାନଙ୍କୁ ବଶୀଭୂତ କରି ରଖିବା ଏତିକିବେଳେ ମଲେରିଆର ନବାବ, ସରହନ୍ଦର ନବାବ ସୁବା ଓ ଅନ୍ୟ ମୁସଲମାନ ହାକିମମାନେ ଅହମ୍ମଦ ଶାହ ପାଖରେ ପହଞ୍ଚି ସହାୟତାର ଭିକ୍ଷା ମାଗିଲେ। ଆମ୍ଭେମାନେ ବରବାଦ ହୋଇଗଲୁ, ଆମ୍ଭେମାନେ ଲୁଟି ହୋଇଗଲୁ। ସିଂହମାନେ ଆମ୍ଭମାନଙ୍କୁ ବରବାଦ କରିଦେଲେ, ଅହମ୍ମଦ ଶାହ କ୍ରୋଧିତ ହୋଇଗଲା। ଦାନ୍ତ ରଗଡ଼ି ଭାବିଲା ଏହି ମୁଠାକ ସିଂହ ଆମକୁ ଏତେ ହଇରାଣ କରିଦେଲେଣି। ଆମ ବଶରେ ଆସୁ ନାହାନ୍ତି, ମୋଗଲମାନେ ମାରି ମାରି ସେମାନେ ନିଜେ ମରିଗଲେ ପରନ୍ତୁ ଜୀବିତ ହୋଇ ଏମାନେ ଚାଞ୍ଚଲ୍ୟ ସୃଷ୍ଟି କରୁଛନ୍ତି। ମୁଁ ବହୁ ବଳ ପ୍ରୟୋଗ କରିଲି। ମୋର ବହୁତ ସେନାପତି ସେମାନଙ୍କ ହାତରେ ମୃତ୍ୟୁ ପାଇଲେ। ସେନା,

ସିପାହୀଙ୍କ ହିସାବ ନାହିଁ କେତେ ମରିଛନ୍ତି। କିନ୍ତୁ ଶୁଣିବାକୁ ମିଳିଛି କି ଏମାନେ କେତେ ହଜାରର ଗଣତିରେ ଅଛନ୍ତି, ପୁଣି ସେଇ ହଜାର ହଜାରଙ୍କ ଗଣତି ମଧ୍ୟରେ ସ୍ଥିର ରହିଛନ୍ତି।

ଏମିତି ମନରେ ବିଷାଦ ଭରି ଚିନ୍ତିତ ହୋଇ ଅହମଦ ଶାହ ହାକିମମାନଙ୍କୁ କହିଲା କି ତୁମେମାନେ ଯାଇ ନିଜ ଅଞ୍ଚଳରେ ଆକ୍ରମଣାତ୍ମକ ଲଢ଼େଇ ଆରମ୍ଭ କରି ସିଂହମାନଙ୍କୁ ବ୍ୟସ୍ତ ରଖ ଓ ଯୁଦ୍ଧ ଚାଲୁ ରଖ ଓ ଚେଷ୍ଟା କର କି ମୋର ସାହାଯ୍ୟ ତୁମମାନଙ୍କ ସହ ଅଛି ଓ ମୋର ପହଞ୍ଚିବା ଖବର ସେମାନଙ୍କୁ ନ ଲାଗିବ। ମୁଁ ତୃତୀୟ ଦିନ ସକାଳ ଲାଲ କିରଣ ସମୟରେ ଅଚାନକ ସିଂହମାନଙ୍କୁ ମୁକ୍ତ ରଣଭୂମିରେ ଘେରାଉ କରିବି, ଯାହାଦ୍ୱାରା ସେମାନେ ପ୍ରାଣ ବଞ୍ଚାଇ ଯାଇପାରିବେ ନାହିଁ ଓ ସେହି ଦିନ ସଙ୍କଟ କଟିଯିବ।

ସରହିଁଦର ସୁବା ଜୈନ ଖାଁ, ମଲେରିଆ ହାକିମ ଓ ରାୟକୋଟିଆ ନବାବ ନିଜ ନିଜର ଫୌଜ ସଂଗ୍ରହ କରି ସିଂହମାନଙ୍କ ସହ ଯୁଦ୍ଧ କରିଲେ। ଏମାନଙ୍କ ଯୋଜନା ସିଂହମାନେ ଜାଣିପାରିଲେ ନାହିଁ। ସେଥିପାଇଁ ସେମାନେ ନିଶ୍ଚିନ୍ତ ହୋଇ ରହିଲେ ଓ ଏହି ସାଧାରଣ ସେନାବଳ ସହ ହାକିମମାନେ ଆମର କଣ ନଷ୍ଟ କରିପାରିବେ। ସେତେବେଳେ ସିଂହମାନଙ୍କ ସନ୍ତାନସନ୍ତତି ମଧ୍ୟ ସାଥିରେ ଥିଲେ। ସେମାନେ କିଛି ଦିନ ପୂର୍ବରୁ ମାଳବ ପଟରୁ ଫେରିଥିଲେ। ଏହି ଦଳ ପ୍ରାୟ ୧୦ ହଜାର ଥିଲେ।

## ଅହମ୍ମଦ ଶାହ ସିଂହମାନଙ୍କୁ ଘେରାଉ କରିଦେଲା ଓ ସିଂହମାନଙ୍କ ମସ୍ତକର ଇନାମ ଲଗାଇ ଲଢ଼ିଲା

ନିର୍ଦ୍ଧାରିତ ଯୋଜନା ଅନୁଯାୟୀ ଅହମ୍ମଦ ଶାହ ପହଞ୍ଚିଗଲା। ସୂର୍ଯ୍ୟଙ୍କ ଉଦୟ ସମୟରେ ରକ୍ତିମା ସୂର୍ଯ୍ୟ କିରଣ ସହ ପ୍ରାୟ ୩ଲକ୍ଷ ମୁସଲମାନ ପ୍ରାୟ ୩୦ ହଜାର ସିଂହମାନଙ୍କୁ ଆକ୍ରମଣ କରିଲେ। ସିଂହମାନେ ଏହା ଦେଖି ପ୍ରସ୍ତୁତ ହୋଇଗଲେ ଓ ବୁଝିପାରିଲେ ବର୍ତ୍ତମାନ ସମୟ "ଜବ ଆବ କୀ ଅଉଧ ନିଧାନ ବନୈ" ର ସମୟ ଆସିଗଲା। ତୁରନ୍ତ ସିଂହମାନେ ଆକ୍ରମଣର ଉତ୍ତର ଦେଲେ ଓ ଅଳ୍ପ ସମୟର ବନ୍ୟାକୁ ପ୍ରତିରୋଧ କରିଲେ। କିନ୍ତୁ ଏହି ବନ୍ୟାକୁ ଅବରୋଧ କରିବା ଅସମ୍ଭବକୁ ବେଶି ସମୟ ଯାଏଁ ସମ୍ମୁଖୀନ କରିବା କଷ୍ଟସାଧ ବୁଝିପାରି ମୁଖିଆ ସିଂହମାନେ ତୁରନ୍ତ

ଲଢ଼ିବା ଯୋଜନାର ବିଚାର ଦଳ ଦଳ ଭାଗ କରି ପ୍ରାଣପଣେ ଲଢ଼ିବାପାଇଁ ପ୍ରସ୍ତୁତ ହୋଇଗଲେ। ସେଥିଯୋଗୁଁ ୧୦-୧୫ ମିନିଟ ମଧ୍ୟରେ ସିଂହମାନେ ଲଢ଼ିବା ଢଙ୍ଗ ପ୍ରସ୍ତୁତ କରିଲେ। ତାହା ସହିତ ସିଂହ ଲଢ଼ି ରହିଲେ ଓ ଆଗକୁ ବଢ଼ି ଚାଲିଲେ। ବିଦେଶୀ ଯୁଦ୍ଧ କରିଲେ ଓ ଯେଉଁଠି ଏମାନଙ୍କୁ ସୁଯୋଗ ମିଳିଲା , ସିଂହମାନେ ମଧ୍ୟ ଅକାଳ-ଅକାଳ କରି ସେହି ତରଫ ବଢ଼ିଲେ ଓ ମୁଣ୍ଡ ଗଣ୍ଡି ଅଲଗା କରି ଶତ୍ରୁଙ୍କ ପଛକୁ ହଟାଇ ନିଃଶ୍ୱାସ ନେଲେ।

ଏହିପରି ଲଢ଼ି ଲଢ଼ି ଦୁଇ ମାଇଲ ଆଗକୁ ବଢ଼ିଗଲେ। ଏହା ଦେଖି ଅହମଦ ଶାହ ସେହି ଦୋଷୀ ମୁସଲମାନମାନଙ୍କୁ ମଲେରିୟା ଇତ୍ୟାଦିଙ୍କୁ ବିରକ୍ତ ହେଲା ଓ କହିଲା ତୁମେମାନେ ମୋର ଲୋକମାନଙ୍କୁ ମରାଇଦେଉଛ ଓ ତୁମେମାନେ କାହିଁକି ଆଗକୁ ଯାଉ ନାହଁ? ଏହା କହି ପୁଣି ଥରେ ସିଂହମାନଙ୍କୁ ବହୁତ ସିପାହୀ ସୈନ୍ୟମାନଙ୍କ ସହ ଯୁଦ୍ଧ କରାଇଲା। କୁହାଯାଇଛି କି ଏହି ସମୟରେ ସିଂହମାନେ ପ୍ରାୟ ମାଇଲ ଯାଏଁ ଖେଳେଇ ହୋଇ ଯୁଦ୍ଧ ଲଡଢ଼ିଥିଲେ। ଏହି ଯୁଦ୍ଧରେ ଶତ୍ରୁମାନେ ସିଂହମାନେ ଖେଳେଇ ହୋଇ ଯୁଦ୍ଧରେ ସମ୍ପୃକ୍ତ ହୋଇଗଲେ। ଏହା ଦେଖି ଦଳପତି ନବାବ କପୂର ସିଂହ, ସ. ଜସ୍ସା ସିଂହଜୀ ରାମଗଢର ତଥା ମିସଲର ସରଦାରମାନେ ପରାମର୍ଶ କରି ଖେଳେଇ ହୋଇ ରହିଥିବାକୁ ତୁରନ୍ତ ସଂଖ୍ୟା କମ୍ କରିଦେଲେ ଓ ସେମାନେ ସିଂହମାନଙ୍କୁ ଗୋଲ ଭାବେପୁରା 'ବହୀରକୁ ମଝିରେ ରଖିଦେଲେ' (ବହୀର - ସନ୍ତାନସନ୍ତତି ଓ ପରିବାର)। ପଛରେ ରାମଗଢ ର ସରଦାର, ଆଗରେ ଆହଲୁବାଆୟା, ଡାହାଣ ପଟେ ସେ ଚଢ଼ତ ସିଂହ ଓ ବାମ ପଟେ ଶହୀଦଙ୍କ ମିସଲମାନେ ହୋଇଗଲେ। ମୁଣ୍ଡଗଣ୍ଡିର ବାଜି ଲଗାଇ ଲଢ଼ିଲେ। ଅନ୍ୟ ମିସଲମାନେ ସଞ୍ଚିତ ହୋଇ ଛିଡ଼ା ହୋଇ ରହିଲେ। ଯେମିତି ଆବଶ୍ୟକ ପଡ଼ିବ ତୁରନ୍ତ ସେମାନେ ଝପଟି ପଡ଼ିବେ। ସେଥିଯୋଗୁଁ ଯେଉଁ ପଟରୁ ସିଂହମାନଙ୍କ ଘେର ଭାଙ୍ଗିବା ନଜର ଆସୁଥିଲା, ସେହିପଟରେ ସଞ୍ଚିତ ହୋଇ ରହିଥିବା ସିଂହମାନେ ତୁରନ୍ତ ଭାଙ୍ଗିଥିବା ଦଳ ସହ ମିଶି କାମ ପୂରା କରୁଥିଲେ। ଏହିପରି ଭାବେ ଶତ୍ରୁମାନଙ୍କ ପ୍ରତି ଆକ୍ରମିତ ହୋଇ ସେମାନଙ୍କୁ ପଛକୁ ପଛକୁ ଠେଲି ଠେଲି ଚାଲିଲେ। ସେହି ସୈନ୍ୟ ଦଳ ମଧ୍ୟରେ ପଶି ମରିବା - ମାରିବା ପଣ କରି ସିଂହମାନେ ଲଢ଼ି ଚାଲିଲେ। ସେତେବେଳେ ସିଂହମାନେ ଏହା କହି କହି ଲଢୁଥିଲେ - 'ଖାଲସା ଜୀ ! ଶିଖଙ୍କୁ ଲାଜ ରଖନ୍ତି ଆପଣମାନେ ଗୋଡ଼ ପଛକୁ କରନ୍ତୁ ନାହିଁ। ପୁଣି ଅମୃତ ପାନ କରିଥିବା

ଶିଖଙ୍କ ଲାଜ ସ୍ୱୟଂ ଗୁରୁ ରଖିବେ । ସିଂହମାନେ, ଆମ୍ଭେମାନେ ସେହି ଗୁରୁ ଗୋବିନ୍ଦ ସିଂହଜୀଙ୍କ ସିଂହ, ଯିଏକି କେବଳ ୪୦ଜଣ ସିଂହମାନଙ୍କ ସହ ୧୦ଲକ୍ଷଙ୍କ ସହିତ ମୁକାବିଲା କରିଥିଲେ, ଆମ୍ଭେମାନେ ପୁଣି ୩୦ହଜାର। ବହାଦୁର ହୁଅ, ସାହସ ଓ ଧୈର୍ଯ୍ୟ ରଖ। ଶତ୍ରୁଙ୍କ ନାଶ କରି ଶହୀଦ ପ୍ରାପ୍ତ କର, କିନ୍ତୁ ମନେରଖ ଗୋଡ଼ ପଛକୁ ରଖିବ ନାହିଁ। ସିଂହମାନେ ! ଏହି ଦୃଢ଼ତା ଓ ଧ୍ୟାନ ରଖ କି ଚୂଡ଼ାମଣୀ ଧାରୀ ଆମ ଅଙ୍ଗସଙ୍ଗରେ ଅଛନ୍ତି ଓ ତାହାର ପନ୍ଥାକୁ କେହି ମାରିପାରିବ ନାହିଁ। ପୂର୍ବରୁ ମଧ ବହୁ ସଙ୍କଟ ମଧ୍ୟରୁ ପନ୍ଥ ଉଦ୍ଧାର ପାଇଛନ୍ତି ଓ ବର୍ତ୍ତମାନ ମଧ ବଞ୍ଚିବେ।'

ସେଥିଯୋଗୁଁ ସିଂହମାନେ ଏହିପରି ଭାବେ ଲଢ଼ି ଲଢ଼ାଇ ସନ୍ତାନସନ୍ତତିଙ୍କୁ ସୁରକ୍ଷା ଦେଇ ଆଗକୁ ବଢ଼ି ଚାଲିଲେ। ସିଂହମାନଙ୍କ ଏହି ଗୋଳ ହୋଇ ରହିଥିବା ଦଳରଦୁର୍ଗ ସମୁଦ୍ରକୁ (ଦୃଢ଼ ଦଳ) କେହି ପଠାଣ କିମ୍ବା ଆଫଗାନର ସୈନ୍ୟମାନେ କୌଣସି ଉପାୟରେ ବର୍ତ୍ତିପାରି ନ ଥିଲେ। ଏହିପରି ତିନି ଚାରିଘଣ୍ଟା ବିତିଗଲା। ସିଂହମାନେ ବୀର ରସରେ ନିଶାଗ୍ରସ୍ତ (ବୀରତ୍ୱ) ହୋଇ ନିଜ ଶରୀରକୁ ଭୁଲି ଯୁଦ୍ଧ କରି ଚାଲିଲେ। ସ. ଚଢତ ସିଂହଙ୍କୁ ସେତେବେଳେ ୧୬ ଜାଗାରେ କ୍ଷତ ହୋଇଥିଲା। ସେହି ଅବସ୍ଥାରେ ଓ ଅନ୍ୟ କେତେ ସରଦାର ଯେଉଁମାନେ ଘୋଡ଼ା ଦୌଡ଼ାଇ ଦୌଡ଼ାଇ କେବେ ଆଗରେ କେବେ ପଛରେ, ଯେଉଁଠି ଶତ୍ରୁ ଅଧିକ ହୋଇ ଆଗକୁ ଆସିବାବେଳେ ସିଂହମାନଙ୍କୁ ଆଗକୁ ବଢ଼ାଇ ଲଢ଼ାଇ ଓ ଚିତ୍କାର ଧିକ୍କାର କରି ସେମାନଙ୍କୁ ଫେରାଇ ଦେଉଥିଲେ। ଜଣେ ସିଂହ ସେତେବେଳେ ସ. ଚଢତ ସିଂହଙ୍କୁ କହିଦେଲା, 'ସରଦାରଜୀ, ଆପଣ କହୁଥିଲେ କି ଯଦି ଅହମଦ ଶାହ ସାମନାକୁ ଆସନ୍ତା, ତା'ହେଲେ ଏକାଥରକେ ତାହାକୁ ଖଣ୍ଡାର ମଜା ଚଖାନ୍ତି ଓ ବର୍ତ୍ତମାନ ଅହମ୍ମଦ ଶାହର ମସ୍ତକ ଉପରେ ଚଢ଼ାଉ କରନ୍ତୁ। ବଳଶାଳୀ, ପରାକ୍ରମୀ ଶୀଘ୍ର ସାମନା କରନ୍ତୁ।' ଏହି ବଚନ, ସ. ଚଢ଼ତ ସିଂହଜୀଙ୍କୁ ଗୁଳି ଚୋଟ ଭଳି ଲାଗିଲା। ବାସ୍ ! ଏହି ବଚନ ବାଣକୁ ସହ୍ୟ କରି ନ ପାରି ଓ ତୁରନ୍ତ ଘେର ମଧ୍ୟରୁ ବାହାରି ବିଦେଶୀ ଶତ୍ରୁ ଦଳ ପଶିଗଲେ। ତାଙ୍କ ସହ ଅନ୍ୟ ସିଂହମାନେ ମିଶିଗଲେ ଓ ଚିତ୍କାର କରିଲେ। ଏ ଅହମ୍ମଦ ଶାହ ବାହାଦୁର ହୋଇ ଆମ ସହିତ ଯୁଦ୍ଧ କର, ନିରୀହ ସୈନ୍ୟଙ୍କୁ କାହିଁକି ମାରୁ ଅଛ ? ପରନ୍ତୁ ଅହମ୍ମଦ ଶାହ ସୈନ୍ୟଦଳ ପଛରେ ଥିଲେ ଓ ସରଦାର ଚଢ଼ତ ସିଂହଙ୍କ ତୋଫାନକୁ ଦେଖି ଓ ଅନ୍ୟ ସରଦାରମାନଙ୍କ ଦଳ ବିଦେଶୀ ସୈନ୍ୟଦଳ ମଧ୍ୟ ପଶି ପଶି ମାରକାଟ କରୁଥିଲେ। ସିଂହମାନେ ଆଗକୁ

ବଢ଼ି ବଢ଼ି ଅହମ୍ମଦ ଶାହକୁ ଉତ୍ସାହିତ କରିଥିଲେ। ଯେତେବେଳେ ସିଂହମାନେ ଏମିତି କରୁଥିଲେ ତାହା ଅହମ୍ମଦ ଶାହକୁ ଖବର ମିଳିଗଲା। ସେ ନିଜେ କ'ଣ ଲଢ଼ନ୍ତା, କିନ୍ତୁ ସେ ସେହି ହାକିମ ଜୈନ ଖାଁ ମଲେରିଯାଙ୍କୁ ତାଡ଼ନା କରି କହିଲା, 'ଏ ତୁମେମାନେ କାହିଁକି ନିଜର ପ୍ରାଣ ବଞ୍ଚାଇ ଲୁଚି ରହୁଛ ? ମୋର ସୈନ୍ୟମାନଙ୍କୁ କେମିତି ସିଂହମାନେ ମାରୁଛନ୍ତି ତୁମେମାନେ ଦେଖି ପାରୁ ନାହଁ ? ଯାଅ, ଆଗକୁ ଯାଇ ସିଂହମାନଙ୍କୁ ଅବରୋଧ କର, ନଚେତ୍ ପୁଣି ସିଂହମାନଙ୍କୁ ଛାଡ଼ି ତୁମମାନଙ୍କ ସହ ହାତ ଉଠାଇବାକୁ ପଡ଼ିବ। '

ଅହମ୍ମଦ ଶାହର ଏହିପରି ଧମକ ଶୁଣି ସେମାନେ ବିଚଳିତ ହୋଇଗଲେ। ସେହି ସମୟରେ ନିଜର ସୈନ୍ୟମାନଙ୍କ ଘୋଡ଼ା ଦୌଡ଼ାଇ ଦୌଡ଼ାଇ ସିଂହମାନଙ୍କୁ ଆକ୍ରମଣ କରିବା ଓ ଧିକ୍କାରିବାକୁ ଲାଗିଲେ। ସିଂହମାନଙ୍କ ବହୀରର ଅନ୍ୟପଟକୁ ଥିଲେ ଓ ସେମାନଙ୍କ ସହିତ ଅଳ୍ପ ସିଂହ ଥିଲେ,ସମସ୍ତେ ଏକତ୍ରିତ ହୋଇ ପୂରା ଜୋରଲଗାଇ ଲଢ଼ି ଚାଲିଲେ। ଏହି ଖବର ଯେତେବେଳେ ପଛରେ ଥିବା ସିଂହମାନଙ୍କୁ ମିଳିଲା ସର୍ଦ୍ଦାର ଜସ୍ସା ସିଂହ ରାମଗଢ଼ିଆ ତୁରନ୍ତ ନିଜର ମିସଲର ସିଂହମାନଙ୍କ ସହ ସେମାନଙ୍କ ସାହାଯ୍ୟ ପାଇଁ ପହଞ୍ଚିଗଲେ। ସେପଟେ ଅହମଦ ଶାହର ଜରନୈଲ ବୁଲନ୍ଦ ଖାଁ ଓ ଜହାନ ଖାଁ ଆଗକୁ ଆସି ସିଂହମାନଙ୍କୁ ଆକ୍ରମଣ କରିଦେଲେ ଓ ସିଂହମାନେ କ'ଣ କମ୍ ଥିଲେ ? ବିଜୟ ନଚେତ୍ ଶହୀଦ ଏହି ଦୁଇଟି ଶବ୍ଦକୁ ହୃଦୟରେ ଦୃଢ଼ତା ସହ ବାନ୍ଧି ଲଢୁଥିବା ସିଂହମାନେ ଆଗରେ ଆସୁଥିବା ଶତ୍ରୁଙ୍କୁ ଘୋଡା ଦୌଡ଼ାଇ ଦୌଡ଼ାଇ ଆଗକୁ ଯାଉଥିଲେ। ବଡ଼ ଭୟାନକ ଦୃଶ୍ୟ ଓ ବାସ୍ତବତା ସମୟ ଥିଲା। ସେହି ସମୟ ଘୋଡ଼ାମାନଙ୍କୁ ପାଦର ଧୂଳି ଓ ବାରୁଦର ଧୂଆଁ ଆକାଶକୁ ଚମକାଇ ସୂର୍ଯ୍ୟ କିରଣକୁ ହାତରେ ନେଉଥିଲା। ଏହି ସଙ୍କଟ ପରିସ୍ଥିତି ସମୟରେ ସିଂହ ସରଦାରମାନେ ସିଂହମାନଙ୍କୁ ଏହିପରି ଭାବେ ପ୍ରୋତ୍ସାହିତ କରିଥିଲେ।

'ହେ ସିଂହମାନେ ! ଏହି ସଙ୍କଟ ସମୟ ଆମ୍ଭମାନଙ୍କ ପାଇଁ ପରୀକ୍ଷାର ସମୟ, ଦେଖ ବିଫଳ ହୁଅ ନାହିଁ, ଏହି ଜୀବନ ଚୂଡ଼ାମଣୀ ଧାରୀ ପାତଶାହଙ୍କୁ ସମର୍ପିତ କରି ବୈରିମାନଙ୍କୁ ମାରି ମାରି ଅଙ୍ଗ ଅଙ୍ଗ ଖଣ୍ଡ କରି ଚାଲିଲା।'

ସେତେବେଳେ ସର୍ଦ୍ଦାର ଚଢ଼ତ ସିଂହ ବୁଲନ୍ଦ ଖାଁ ପାଖକୁ ଗଲେ ଓ ସ. ଜସ୍ସା ସିଂହ ଆହଲୁବାଲିୟା ଜହାଁଦ ଖାଁ ପାଖକୁ କ୍ଷଣକ ମଧ୍ୟରେ ଶୂରବୀରମାନେ ଲହୁ ଲୁହାଣ ହୋଇଗଲେ। ଧରିତ୍ରୀ ରକ୍ତ ନଦୀ ହୋଇଗଲା ଓ ଧୂଳି ରକ୍ତରେ ବୁଡିଗଲା।

ଭୟାନକ ଯୁଦ୍ଧରେ ସିଂହମାନଙ୍କ ଦ୍ୱାରା ବୁଲନ୍ଦ ଖାଁ ଓ ଜହାନ ଖାଁ ଦୁହେଁ ମରିଗଲେ। କ୍ଷତାହତ ଜୈନ ଖାଁ ପଛକୁ ହଟିଗଲା। ପରନ୍ତୁ ଫୌଜମାନଙ୍କୁ ପଠାଇ ସରଦାରମାନଙ୍କ ସହ ଲଢ଼ାଇଲା। ଏହି ସମୟରେ ଐତିହାସିକମାନେ କହିଛନ୍ତି - ୧୦-୧୦, ୨୦-୨୦ ଓ ୩୦-୩୦ ଯାଏଁ ମାରି ମାରି ସିଂହମାନେ ଶହୀଦ ପ୍ରାପ୍ତ କରିଛନ୍ତି। କିଛି ସମୟ ଏମିତି ଭୟାନକ ଯୁଦ୍ଧ ଚାଲିଲା ଓ ମାଇଲ ଦେଢ଼ମାଇଲ ଯାଏଁ ରକ୍ତର ସ୍ରୋତ ଛୁଟିଥିଲା।

ସିଂହମାନଙ୍କ ଯୋଜନା ଥିଲା କି ବହୀର (ସନ୍ତାନସନ୍ତତି ଓ ପରିବାର) ଯାଏଁ ଶତ୍ରୁଙ୍କୁ ପହଞ୍ଚିବାକୁ ନିଆ ନ ଯାଉ। ସେଥିଯୋଗୁଁ ସିଂହମାନେ ଏହି ରଣ ଭୂମିରେ ପତଙ୍ଗଙ୍କୁ ମଧ୍ୟ କ୍ଷମା ଦେଇ ନ ଥିଲେ। ସିଂହମାନଙ୍କ ଏହି ନିର୍ଭୀକତା ଓ ସାହସିକତା ଯୁଦ୍ଧ ଦେଖି ସରଦାରମାନେ ଜୋର ଜୋର କହିଲେ, ଧନ୍ୟ ଖାଲସା, ଧନ୍ୟ ଶିଖ, ସାବାସ୍ ଖାଲସାଜୀ ! ଥରେ ଏମିତି ଭାବେ ଖଣ୍ଡା ପରିଚାଳନା କର ଯାହା ଦ୍ୱାରା ଏହି ଅତ୍ୟାଚାରୀ ବିଦେଶୀ ଦୁଷ୍ଟ ପାପୀମାନଙ୍କର ଅହଂକାରକୁ ବିନାଶ କରିଦିଅ, ଯଦି ଏହି ଥର ଆମ୍ଭେମାନେ ଜିତି ଯିବା ତା'ହେଲେ ଦ୍ୱିତୀୟ ଏହି ଗିଲଜ ଏହି ଧରିତ୍ରୀରେ ରହିବା ଫେରି ଗୋଡ଼ ରଖିପାରିବେ ନାହିଁ। ସତରେ ଏହି ଥର ସିଂହମାନେ ଯୋଜନା ବଦ୍ଧ ପ୍ରଣାଳୀ ସହ ଲଢ଼ାଇ ଲଢ଼ି ଗିଲଜମାନଙ୍କର ଅହଙ୍କାର ଭାଙ୍ଗି ନଷ୍ଟ କରିଥିଲେ। ସିଂହମାନଙ୍କ ଏହି ନୀତି କେଉଁ ସ୍ଥାନରେ ଭୁଲ ହୋଇନଥିଲା। ନିଜେ ଲଢୁଥିଲେ, ପରନ୍ତୁ ବହୀରଙ୍କୁ ଆଗକୁ ବଢ଼ାଉଥିଲେ। ସେମାନେ ଦୁଇ ମାଇଲ ଯାଏଁ ଆଗକୁ ଅନ୍ଧ ସିଂହମାନଙ୍କ ସହ ସୁରକ୍ଷିତ ହୋଇ ରହିଥିଲେ। ଅହମ୍ମଦ ଶାହକୁ ଏହାର ଖବର ମିଳିଲା। ସେ ସେହି ରଣଭୂମିର ପଛପଟୁ ସୈନ୍ୟ ଡକାଇ ସେହି ବହୀରମାନଙ୍କୁ ଆକ୍ରମଣ କରାଇଦେଲା ଓ କେତେ ଛୋଟ ପିଲା, ବୁଢ଼ାବୁଢ଼ୀ ଓ ସିଂହନୀମାନଙ୍କୁ ହତ୍ୟା କରାଇଲା।

ସକାଳ ସମୟରେ ଯୁଦ୍ଧ ଚାଲିଥିଲା ଓ ଏମିତି ଯୁଦ୍ଧ ସମୟରେ ସିଂହମାନଙ୍କୁ ଖାଇବା ପିଇବା କଣ ଜୀବନ ସହିତ ଲଢୁଥିଲେ। ସିଂହମାନଙ୍କୁ ଯେବେ ବହୀରଙ୍କୁ ଆକ୍ରମଣର ଖବର ମିଳିଲା ଓ ୫-୭ ହଜାର ସିଂହ ଘୋଡ଼ାରେ ଦୌଡ଼ି ବହୀରଙ୍କୁ ସମ୍ଭାଳିଲେ ବହୀରର ବାଳକ, ସ୍ତ୍ରୀ ଓ ବୃଦ୍ଧଙ୍କୁ ହତ୍ୟା କରୁଥିବା ଅହମ୍ମଦ ଶାହର ରାସ୍ତା ବଦଳାଇଦେଲେ। ସେ ଧୀରେ ଧୀରେ ଲଢ଼ି ଲଢ଼ି ସିଂହମାନଙ୍କ ନଜରରୁ ଆଗକୁ ଚାଲିଗଲା। ସିଂହମାନଙ୍କ ନେତ୍ର ସେତେବେଳେ ଲାଲ ହୋଇ ରହିଥିଲା ଓ ଅହମ୍ମଦ ଶାହ ପୂରା ଶକ୍ତି ପ୍ରୟୋଗ କରି ମଧ୍ୟ ସିଂହମାନଙ୍କୁ ଅଟକାଇପାରି ନ ଥିଲା।

## ସିଂହମାନେ ଅହମ୍ମଦ ଶାହର ଘେର ମଧ୍ୟରୁ ବାହାରି ଚାଲିଗଲେ

ରୁଟି ଓ କଣ ସକାଳୁ କିଏ ପାଣି ପିଇ ନ ଥିଲେ। ଦୁଇ ଦଳ ତୃଷାର୍ତ୍ତ ଥିଲେ। ସିଂହମାନଙ୍କୁ ସେଠାର ଗୋଟିଏ ପାଣିର ସ୍ଥାନ ଜଣାଥିଲା, ସେଥିପାଇଁ ସେମାନେ ସେହି ସ୍ଥାନକୁ ଅଧିକାର କରି ରଖିଲେ। ସେହି ପୋଖରୀକୁ ଅବରୋଧ କରି ସବୁ ସିଂହମାନେ ପାଣି ପିଇଲେ ଓ ଘୋଡ଼ାମାନଙ୍କୁ ମଧ୍ୟ ପିଆଇଲେ। ବିଦେଶୀମାନଙ୍କୁ ଏହାର ଖବର ମିଳିଲା, ସେମାନେ ବଡ଼ ବ୍ୟାକୁଳ ଥିଲେ। ପୁଣି ସେଠାରେ ଭୟାନକ ଯୁଦ୍ଧ ହେଲା। ବିଦେଶୀମାନେ ବହୁତ ଆକ୍ରମଣ କରିଲେ, କିନ୍ତୁ ସିଂହମାନଙ୍କୁ ଜଣାଥିଲା କି ଯଦି ସେମାନେ ପାଣି ପିଇ ଦିଅନ୍ତି ତାହେଲେ ରାତି ଯାଏଁ ଆମର ଶାନ୍ତି ହଜାଇ ଦେବେ। ସେଥିଯୋଗୁଁ ସିଂହମାନେ ବଡ଼ ସାହସ ସହ ଲଢ଼ିଲେ ଓ ଏମିତି ଦୃଢ଼ତା ସହ ଲଢ଼ିଲେ କି ଶତ୍ରୁମାନଙ୍କ ଅହଙ୍କାରକୁ ମଧ୍ୟ ହତ୍ୟା କରିଦେଲେ। ପରାଜୟ ହୋଇ ଶତ୍ରୁ ପଛକୁ ହଟିଲେ ଓ ଶୋଷ ସେମାନଙ୍କୁ ଏମିତି ବ୍ୟତିବ୍ୟସ୍ତ କରିଦେଲା ଯେ ସେମାନେ ଶୁଷ୍କ ହୋଇଗଲେ। ରାତି ସୁଦ୍ଧା କଷ୍ଟରେ କୌଣସି ଏକ ପାଣି ସ୍ଥାନରେ ପହଞ୍ଚିଲେ। ସିଂହ ରାତିରେ ଜଙ୍ଗଲ ରାସ୍ତାରେ ମାଳବଠାରେ ଯାଇ ପହଞ୍ଚିଲେ। ସେଠାରେ ପହଞ୍ଚି ଆରାମ କରିଲେ। ସେହି ଅଞ୍ଚଳର ସିଂହମାନେ ସେହି ସମୟରେ ଖାଲସାମାନଙ୍କର ଖୁବ୍ ସେବା କରିଥିଲେ।

## ସିଂହମାନେ ଅହମ୍ମଦ ଶାହର ଘେର ମଧ୍ୟରୁ ବାହାରି ଯିବା

କଣ ଖାଦ୍ୟ? ସକାଳଯାଏଁ କେହି ପାଣି ମଧ୍ୟ ପିଇ ନ ଥିଲେ। ଦୁଇଦଳ ପାଣି ପାଇଁ ବିକଳ ହୋଇଥିଲେ। ସିଂହମାନେ ଗୋଟିଏ ପୋଖରୀ ବିଷୟରେ ଜାଣିଥିଲେ, ସେମାନେ ସେହି ପୋକରୀକୁ ଅକ୍ତିଆର କରିନେଲେ। କଠରଠାରେ ଥିବା ଚୁଆର ପାଣି (ବଡ଼ ଚୁଆର ପାଣି ସିଂହମାନେ ମନଭରି ପିଇଲେ ଓ ଘୋଡ଼ାମାନଙ୍କୁ ମଧ୍ୟ ମନଭରି ପିଆଇଲେ। ଅନ୍ୟପଟେ ଦୁରାନୀମାନେ ପାଣି ଖବର ପାଇଲେ ଓ ସେମାନେ ବହୁତ ତୃଷାର୍ତ୍ତ ଥିଲେ। ପାଣି ପାଇଁ ପୁଣି ସେଠାରେ ଭୟାନକ ଯୁଦ୍ଧ ହେଲା। ଦୁରାନୀମାନେ ବହୁତ ସଂଘର୍ଷ କରିଲେ। ପରନ୍ତୁ ସିଂହମାନଙ୍କ ବିଶ୍ୱାସ ଥିଲା କିଯଦି ସେମାନେ ପାଣି ପିଇବେ ତାହେଲେ ରାତିଯାଏଁ ଆମକୁ ହଇରାଣ କରିବେ। ସେଥିପାଇଁ ସିଂହମାନେ ମଧ୍ୟ ସାହସର ସହିତ ଲଢ଼ିଲେ ଓ ଏମିତି ଭାବେ ଦୃଢ଼ ହୋଇ ଯୁଦ୍ଧ କରିଲେ, ଯାହାଦ୍ୱାରା ଶତ୍ରୁଙ୍କ ଗର୍ବ ଭାଙ୍ଗିଦେଲେ। ଦୁରାନୀମାନେ

ଯୁଦ୍ଧରେ ପରାସ୍ତ ହୋଇ ପଛକୁ ହଟିଲେ, ସେମାନଙ୍କୁ ଶୋଷ ଦାଉ ସାଧୁଥିଲା। ଯାହାଦ୍ୱାରା ସେମାନେ ପୂରା ଶୁଖିଗଲେ। ବହୁତ କଷ୍ଟରେ ପାଣିର ସନ୍ଧାନ ପାଇଲେ। ସିଂହମାନେ ରାତିରେ ଜଙ୍ଗଲ ପଥରେ ଚାଲି ଚାଲି ମାଲବରେ ପହଞ୍ଚି ସେଠାରେ ଆରାମ କରିଲେ। ସେହି ଅଞ୍ଚଳର ଖାଲସାମାନେ ସିଂହମାନଙ୍କର ବହୁତ ସେବା କରିଲେ।

## ଅହମ୍ମଦ ଶାହ କ୍ରୋଧିତ ହୋଇ ହରିମନ୍ଦିର ସାହିବକୁ ବାରୁଦରେ ଉଡ଼ାଇଲା

ରାତି ବ୍ୟତୀତ କରି ବିଦେଶୀମାନେ ପ୍ରାତଃକାଳକୁ ଫେରିଗଲେ। ସିଂହମାନଙ୍କର କଟା ଯାଇଥିବା ମସ୍ତକ ସାଥିରେ ନେଲେ। କିନ୍ତୁ ପୁଣି ଅହମ୍ମଦ ଶାହ ଦୁଃଖୀ ଓ ଚିନ୍ତିତ ଥିଲା। ଏହି ଯୁଦ୍ଧରେ ବହୁତ କ୍ଷତି ସହ୍ୟ କରି ଫେରୁଛି। ୨୫-୩୦ ହଜାର ନିଜର ଫୌଜଙ୍କୁ ମରାଇ ବଡ଼ କଷ୍ଟରେ ୧୦-୧୨ ହଜାର ସିଂହ ମାରିପାରିଲି ଓ ଏମିତି ଭୟାନକ ଯୁଦ୍ଧ କରି ମଧ୍ୟ ସିଂହମାନେ ବିଜୟ ପ୍ରାପ୍ତ କରିଲେ। ଏହି ଚିନ୍ତାରେ ଭାବି ଭାବି ସେ ଅମୃତସରଠାରେ ପହଞ୍ଚିଲା। ସେଠାରେ ତାହାକୁ ତୋଷାମଦିଆମାନେ କାନ ଫୋପାଡ଼ିଦେଲେ ଓ ମସ୍ତବଡ଼ ଭୁଲ କରାଇଦେଲେ। ତାହାର ମନରେ ହରିମନ୍ଦିର ସାହିବକୁ ଭାଙ୍ଗିବା ବିଚାର କରାଇଦେଲେ। ସେଥିଯୋଗୁଁ ଏହି ପାବନ ସ୍ଥାନର ଚାରିପଟେ ବାରୁଦ କୂପ ରଖି ନିଆଁ ଲଗାଇଦେଲା। ମୂଳଦୁଆ ରହିଗଲା ଓ ଉପରର ହରିମନ୍ଦିର ସାହିବର ପୂରା ମନ୍ଦିର ନଷ୍ଟ ହୋଇଗଲା। ବାରୁଦ ଯୋଗୁଁ ଇଟା ବହୁତ ଦୂର ଦୂର ଯାଏଁ ଉଡ଼ିଲା। ଗୋଟିଏ ଇଟା, ଅକାଳ ତଖତ ନିକଟରେ ଛିଡ଼ା ହୋଇ ଦେଖୁଥିବା ଅହମ୍ମଦ ଶାହର ନାକରେ ବାଜିଲା। ଇଟା ଯୋଗୁଁ ସେ ଆଘାତ ହୋଇଗଲା, ନାକ ଚାଲିଗଲା। ସେଠାରୁ ଲାହୋର ଯାଇ ବହୁତ ଦିନ ଯାଏଁ ଚିକିତ୍ସା କରାଇଲା। ଠିକ୍ ହେବା ପରେ କାବୁଲ ଫେରିଗଲା। ତାହାପରେ ପ୍ରାୟ ୫-୬ ବର୍ଷ ବଞ୍ଚିଗଲା। ପରନ୍ତୁ ଏହି ନାକ ଯୋଗୁଁ ବହୁତ ଦୁଃଖ କଷ୍ଟ ସହି ଶେଷରେ ଦୁଃଖୀ ହୋଇ ମରିଥିଲା।

ଏହି ଭୟାନକ ଯୁଦ୍ଧ ବୈଶାଖ ମାସ ୧୮୧୯ ସମୟରେ ହୋଇଥିଲା। ସେଥିରେ ପ୍ରାୟ ୩୦ ହଜାର ବିଦେଶୀ ମରିଥିଲେ ଓ ପ୍ରାୟ ୧୩ ହଜାର ସିଂହ ଶହୀଦ ଓ କ୍ଷତାହତ ହୋଇ ପ୍ରାୟ କେହି ବଞ୍ଚିପାରି ନ ଥିଲେ।

## ଶ୍ରୀ ହରିମନ୍ଦିର ସାହିବ ଅମୃତସର

ଖାଲସା ପନ୍ଥର ଏହା ମହାନ ତୀର୍ଥ ସ୍ଥାନ ଅଟେ। ଯାହାକୁ ଶିଖଙ୍କ ସ୍ରୋତ ମନେକରି ଶତ୍ରୁମାନେ ଏହାକୁ ସଫା-ଇ-ହସ୍ତୀ, 'ବିଧ୍ୱସ୍ତ କରିବାପାଇଁ ପୂରା ବୁଦ୍ଧି ଓ ବଳ ପ୍ରୟୋଗ କରିଲେ ଓ ସିଂହମାନେ ଏଥିଯୋଗୁଁ ନିଜର ଜୀବନ ଉତ୍ସର୍ଗିତ କରିଲେ। ଏହି ପବିତ୍ର ସ୍ଥାନର ଧୂଳି କଣ କଣରେ ଶିଖମାନଙ୍କର ଶହୀଦମାନଙ୍କ ରକ୍ତ ମିଶି ରହିଛି। ଲକ୍ଷ ଲକ୍ଷ ଶିଖ ମହାପୁରୁଷ, ଶୂରବୀର, ନିରୀହ ନିଜ ଜୀବନର ବଳିଦାନ ଉତ୍ସର୍ଗ କରି ଏହି ଶିଖ ସ୍ରୋତକୁ ସଜୀବ ରଖିଛନ୍ତି ଓ ଗୁରୁଙ୍କ ମହାନ୍ ଶକ୍ତି ଓ ପ୍ରେମମୟ ଆଶୀର୍ବାଦ ପ୍ରାପ୍ତ କରିଲେ। ସେଥିଯୋଗୁଁ ଏହି ପବିତ୍ର ସ୍ଥାନରେ ଚୁମ୍ବକୀୟ-ଆକର୍ଷଣ ଅଛି, ଯାହାକି ଆଜି ଦୂରଦୂରାନ୍ତରୁ ଶିଖମାନେ ଏହି ପବିତ୍ର ଦର୍ଶନ ସକାଶେ ଅପେକ୍ଷାରତ ଓ ପ୍ରାର୍ଥନା କରନ୍ତି। ଶ୍ରୀ ଗୁରୁ ଅର୍ଜୁନ ଦେବଜୀ ଲେଖିଛନ୍ତି-

ଡିଠେ ସବୈ ଥାବ ନହୀ ତୁଧୁ ଜେହିୟା।
ବଧୋହୁ ପୁରଖି ବିଧାତୈ ତାଁ ତୁ ସୋହିୟା।।
ବସଦୀ ସଘନ ଅପାର ଅନୂପ ରାମଦାସ ପୁର।।
ହରିହାଁ ନାନକ କସମଲ ଜାହି ନାଇଐ ରାମଦାସ ସର ।୧୦।

## ଶ୍ରୀ ହରିମନ୍ଦିର ସାହିବର ପୁନଃନିର୍ମାଣ

ସିଂହମାନେ ଯୁଦ୍ଧ ପରେ ମାଲବଠାରେ ଯାଇ ରହିଲେ ଓ କ୍ଷତବିକ୍ଷତ ସିଂହମାନେ ଧୀରେ ଧୀରେ ସୁସ୍ଥ ଆରୋଗ୍ୟ ହୋଇ ସାରିବାପରେ ଦଳପତମାନେ ବସି ପୂର୍ବ ଘଟିତ ଘଟଣାର ବିଚାର ବିମର୍ଶ କରିଲେ। ଯେତିକି ଖାଲସା କମ ହୋଇଥିଲେ ସେତିକି ପୁଣି ଅମୃତ ସେବନ କରି ନୂଆ ସିଂହ ସାଜିଗଲେ। ଅହମ୍ମଦ ଶାହ ଦ୍ୱାରା ଘଟିଥିବା ଶ୍ରୀ ହରିମନ୍ଦିର ସାହିବର ଦୁର୍ଘଟଣା ଅପମାନ ଓ ଧ୍ୱଂସବିଧ୍ୱଂସର ଖବର ସିଂହମାନଙ୍କୁ ମିଳିଥିଲା। ଦୁଇଟିଯାକ ଛାତ ଓ ସରୋବରର ପୋଲ ଉଡ଼ିଯାଇଥିଲା। ଅହମଦ ଏକ ମାସ ଯାଏଁ ଲାହୋରରେ ରହି ଦେଖୁଥିଲା ସିଂହମାନେ କଣ କରୁଛନ୍ତି। ପରନ୍ତୁ ସିଂହମାନେ ପ୍ରାୟ ୫ ମାସ ବିଶ୍ରାମ କରିଲେ। ଅହମଦ ଶାହ ଭାବିଲା ମୋର କବଳରୁ ବହୁତ ଯୁବକ ସିଂହ ମୁକ୍ତି ପାଇଁ ଯାଇଛନ୍ତି। ସେମାନେ ଚୁପ୍‌ଚାପ୍ ରହିବେ ନାହିଁ, ସେମାନେ ଅମୃତସର ନିଶ୍ଚୟ ଆସିବେ। ତାହାର ବିଚାର

ଥିଲା କି ସିଂହମାନେ ଅମୃତସର ଯଦି ଆସିବେ ନାହିଁ , ତାହେଲେ ସେମାନେ ମୋ ସହିତ ଯୁଦ୍ଧ କରିବାପାଇଁ ଫେରିଆସିବେ ନାହିଁ।

ସିଂହମାନଙ୍କର ଶକ୍ତି ଫେରିଆସିଲା। ସେମାନେ ପୂର୍ବ ବିଚାର ଓ କୂଟନୀତି ସହ ଆସିଲେ। ପ୍ରଥମେ ଅହମଦ ଶାହକୁ ସାହାଯ୍ୟ କରିଥିବା ମାନଙ୍କୁ କର୍ମଫଳ ଦେବା ଆରମ୍ଭ କରିଦେଲେ। ଶ୍ରୀ ହରିମନ୍ଦିର ସାହିବଜୀଙ୍କ ଅପମାନ ଓ ଅବ୍ୟବସ୍ଥାର ଖବର ସିଂହମାନଙ୍କୁ କ୍ରୋଧାଗ୍ନିର ଅଗ୍ନିରେ ଜାଳି ଦେଉଥିଲା। ସେଥିଯୋଗୁଁ ସେମାନେ ପ୍ରଥମେ ମାଲେରକୋଟଲାକୁ ଘେରାଉ କରିଲେ। ସେଠାରେ ମାରକାଟ କରି ରାୟକୋଟ ଓ ମୋରିଣ୍ଡାକୁ ଧ୍ୱଂସ କରିଲେ। ସେଠାରୁ କୁରାଳୀ ସରହଁଦ ମଧ୍ୟଭାଗରେ ଏମିତି ବରବାଦ କରିଲେ ଜୈନ ଖାଁର ମସ୍ତିଷ୍କ ବୁଦ୍ଧିହୀନ ହୋଇଗଲା। କିପରି ସିଂହମାନଙ୍କ ନିକଟରେ ପହଞ୍ଚିବେ ତାହାର ବୁଦ୍ଧି ହଜିଗଲା। ସେ ଭୟଭୀତ ହୋଇ ଦୁର୍ଗ ବାହାରକୁ ବାହାରି ନ ଥିଲା।

ସିଂହମାନଙ୍କୁ ଅମୃତସରଠାରେ ଶୀଘ୍ର ପହଞ୍ଚିବାର ଥିଲା ଓ ମନ୍ଦିର ସହିତ ହୋଇ ଅତ୍ୟାଚାରର ବ୍ୟାକୁଳତା ସେମାନଙ୍କୁ ବିଚଳିତ କରିଥିଲା। ସେଥିଯୋଗୁଁ ଧୀରେ ଧୀରେ ସିଂହମାନେ ଖଣ୍ଡାର ଖେଳ ସହ ନିଜର ପ୍ରତିଶୋଧ ନେଇ ସତଲୁଜ ଓ ବ୍ୟାସ ପାର କରି ଅମୃତସର ଠାରେ ପହଞ୍ଚିଲେ। ସେଠାରେ ପହଞ୍ଚି ଶ୍ରୀ ହରିମନ୍ଦିରର ଦୁର୍ଦ୍ଦଶା ସିଂହମାନଙ୍କ ମନରେ ଯେଉଁ ଦୁଃଖ ହୋଇଥିଲା, ତାହା ଅବର୍ଣ୍ଣନୀୟ। କିଏ ଜୋର ଜୋର କାନ୍ଦି ପକାଇଥିଲେ। ସିଂହମାନଙ୍କ ମନରେ ଏହି ସମୟରେ ଅହମ୍ମଦ ଶାହ ବିରୋଧରେ ବହୁତ ଅଶାନ୍ତି ଓ ରାଗ ଭରି ଉଠିଥିଲା। ନିଷ୍ପତ୍ତି ନେଲେ ତୁରନ୍ତ ସଇତାନ, ଦୁର୍ଦ୍ଦାନ୍ତ ଅତ୍ୟାଚାରୀ ନିଷ୍ଠୁର ପାପୀକୁ ଖୁବ୍ ଦଣ୍ଡ ଦେଇ ପ୍ରତିଶୋଧ ନେବାପାଇଁ ସ୍ଥିର କରିଲେ। ପ୍ରଥମେ ସିଂହମାନେ ସରୋବର ମଧ୍ୟରୁ ମାଟି ବାହାର କରିବା ସେବା କରିଲେ ଓ ପୁଣି ହରି ମନ୍ଦିର ସେବା ପାଇଁ ଅରଦାଶ ପ୍ରାର୍ଥନା କରିଲେ ଓ ନିଜର ଉପାୟଶୂନ୍ୟର କ୍ଷମା ଓ ସେବା କରିବା ପାଇଁ ସମର୍ଥର ବରଦାନ ସତ୍‌ଗୁରଜୀଙ୍କୁ ଭିକ୍ଷା ମାଗିଲେ। ସମସ୍ତ ମୁଖ୍ୟ ସିଂହ ଏହି କାର୍ଯ୍ୟ ସକାଶେ ଜରୁରୀ ଅତ୍ୟାବଶ୍ୟକୀୟ ସାମଗ୍ରୀ ଏକତ୍ରିତ କରିବା ପାଇଁ ଚେଷ୍ଟା ଚଳାଇଲେ।

୧୮୧୯ର ଦୀପାବଳୀ ଅବସର ସମୟରେ ସିଂହମାନଙ୍କୁ ଶ୍ରୀ ଅମୃତସରଠାରେ ଭାରି ସମାଗମ ହୋଇଥିଲା। ଏହି ଶୁଭ ଅବସର ବେଳେ ଶ୍ରୀ ହରି ମନ୍ଦିରର ସେବା ଆରମ୍ଭ ଯୋଜନା ପ୍ରସ୍ତୁତ କରାଗଲା। ସବୁ ସିଂହମାନେ ଏହି

କାର୍ଯ୍ୟ ସକାଶେ ସାମର୍ଥ୍ୟଠାରୁ ଅଧିକ ଭାଗ ପାଇଲେ ଓ ଏହିପରି ଭାବେ ୪ଲକ୍ଷ ଟଙ୍କା ଓ ସାମଗ୍ରୀ ଏକତ୍ରିତ ହୋଇଗଲା । ଖାଲସାମାନଙ୍କ ସକାଶେ ସେଠାରେ ରହିବା ପାଇଁ ସୁଯୋଗ ନ ଥିଲା । ସେଥିଯୋଗୁଁ ଏହି ସେବା ଭାଇ ଦେଶ ରାଜାଜୀଙ୍କୁ ଦାୟିତ୍ୱ ଦିଆଗଲା । କେତେଜଣ ସିଂହ ସାହାଯ୍ୟ ସକାଶେ ରହିଲେ । ଅବଶିଷ୍ଟ ନିଜର ରାଜକୀୟ ପ୍ରବନ୍ଧର ଦାୟିତ୍ୱ ବହନ କରିବା ସକାଶେ ଅଗ୍ରସର ହୋଇଥିଲେ ।

## ସିଂହମାନେ ପୁଣି କେତେ ଅଞ୍ଚଳ ଅଧିକାର କରିଲେ

ସିଂହମାନେ ଯେତେବେଳେ ଆକ୍ରମଣ ଆରମ୍ଭ କରିଲେ କେତେକ ସ୍ଥାନରେ ବିନା ଯୁଦ୍ଧରେ ସେମାନଙ୍କୁ ଅଧିକାର ମିଳିଗଲା । ଅନ୍ୟ ସ୍ଥାନମାନଙ୍କରେ ତଲବାର ବଳରେ ଅଧିକାର ପ୍ରାପ୍ତ କରିଲେ । ଅହମ୍ମଦ ଶାହକୁ ସିଂହମାନେ ପୁଣି ପ୍ରତାରିତ କରିଲେ । ଅହମ୍ମଦ ଶାହ ଏମିତି ଆଶା କରି ନ ଥିଲା, ପରନ୍ତୁ କାବୁଲ୍ ଠାରେ ତାକୁ ଏହି ଖବର ମିଳିଲା । ସେ ଗଭୀର ଚିନ୍ତାରେ ବୁଡ଼ିଗଲା । ସେ ତା'ର ପୁତ୍ର ତୈମୁରକୁ ସୈନ୍ୟଦଳ ସହ ସିଂହମାନଙ୍କ ସହ ଲଢ଼ିବା ପାଇଁ ପଠାଇଲା, ପରନ୍ତୁ ସେ ଏଠି ଲଢ଼ି ପରାଜୟ ହୋଇଗଲା ଓ ସିଂହମାନଙ୍କର କୌଣସି କ୍ଷତି କରିପାରି ନ ଥିଲା । କେବଳ ଲାହୋର ଅଧିକାର କରି ସେ ଲାହୋରର ଦୁର୍ଗ ଭିତରେ ଲୁଚି ରହିଲା । ବାହାରକୁ ବାହାରି ଲଢ଼ିବା ପାଇଁ ତା'ପାଖରେ ଶକ୍ତି ନ ଥିଲା । ଲାହୋରର କୌଣସି ଜିନିଷ ଉପରେ ଅଧିକାର କରିବା ପାଇଁ ସିଂହମାନେ ଅଧିକାର ଦେଉନଥିଲେ । ଅହମଦ ଶାହକୁ ଏହି ଖବର ମିଳିଲା ଓ ସେ ଅନ୍ୟ ସୈନ୍ୟ ସହ ହମିଦ୍ ଖାଁ ଓ ଅବଦୁଲ୍ ଖାଁକୁ ତୈମୁରର ସାହାଯ୍ୟ ପାଇଁ ପଠାଇଲା ।

ସେତେବେଳେ ସିଂହମାନେ ବହୁତ ଦଳରେ ବିଭକ୍ତ ହୋଇ ପୂରା ପଞ୍ଜାବରେ ଦୂର ଦୂରକୁ ବିସ୍ତାରିତ ହୋଇ ଯାଇଥିଲେ । ପରନ୍ତୁ ସର୍ଦ୍ଦାର ଚଢ଼ତ ସିଂହଜୀ ଗୁଜରା ନିକଟରେ ଯେଉଁ ଖାଲସା ଦୁର୍ଗ ତିଆରି କରିଥିଲେ, ସେଠାରେ ରହିଥିଲେ ଓ ବହୁତ ଦୂର ଦୂର ଯାଏଁ ତାହାଙ୍କ ଅଧୀନରେ ଥିଲା । ସେହି ଦୁର୍ଗକୁ ଅହମଦ ଶାହର ସୈନ୍ୟମାନେ ଘେରାଉ କରିଦେଲେ । ସିଂହମାନେ ଶତ୍ରୁଙ୍କୁ କଠୋର ଶାସ୍ତି ଦେଇ ଯୁଦ୍ଧ ସାମଗ୍ରୀ ନିଜ ଅଧିନକୁ ନେଇଗଲେ ଯାହାକି ଦୁର୍ଗ ମଧ୍ୟରେ ରଖା ଯାଇଥିଲା । ବର୍ତ୍ତମାନ ଅହମଦ ଶାହା ତୈମୁରର ସାହାଯ୍ୟ ସକାଶେ ପଠାଇଥିବା ସୈନ୍ୟ ପୁଣି ସେହି ଦୁର୍ଗକୁ ଘେରାଉ କରିଦେଲେ । ଭିତରେ ସିଂହ କମ୍ ଥିଲେ ଓ ଚଢ଼ତ ସିଂହଜୀ

ବଡ଼ ସାହସ ସହିତ ଯୁଦ୍ଧ କରିଲେ। ପରନ୍ତୁ ଖାଦ୍ୟ ସାମଗ୍ରୀ ସମାପ୍ତ ଯୋଗୁଁ ଭିତରୁ ସିଂହମାନେ ଦୁର୍ବଳ ହୋଇଗଲେ। ଶେଷରେ ସେମାନେ ବାହାରକୁ ବାହାରି କର ବା ମର ନୀତି ଅନୁସରଣ କରିବା ପାଇଁ ଯୋଜନା କରିଲେ। ଦୂରରେ ରହିଥିବା ସିଂହମାନଙ୍କୁ ଏହି ଖବର ମିଳିଲା। ଏହି ଘଡ଼ିସନ୍ଧି ସମୟରେ ବାହାର ସିଂହମାନେ ସେହି ଅବଦାଲୀ ସୈନ୍ୟମାନଙ୍କ ସହ ଯୁଦ୍ଧ କରିଲେ। ଭିତରେ ସିଂହମାନେ ବାହାରକୁ ବାହାରି ସେମାନଙ୍କ ସହ ଯୋଗ ଦେଇ ଶତ୍ରୁଙ୍କ ସହିତ ଜୋରସୋର ଲଢ଼ିଲେ। ବର୍ତ୍ତମାନ ଅବଦାଲୀ ସୈନ୍ୟମାନେ ପ୍ରାଣ ବଞ୍ଚାଇ ଲାହୋର ଆଡ଼କୁ ଦୌଡ଼ିବାକୁ ଆରମ୍ଭ କରିଲେ। କିନ୍ତୁ ଦୌଡ଼ୁଥିବା ଶତ୍ରୁଙ୍କୁ ୧୦ମାଇଲ୍ ଯାଏଁ ସିଂହମାନେ ପିଛା କରିଲେ ଓ କାଟି ପକାଇଲେ। ସିଂହମାନଙ୍କୁ ପୁଣି ଶତ୍ରୁଙ୍କ ନିକଟରୁ ଯୁଦ୍ଧ ସାମଗ୍ରୀ ମିଳିଗଲା, ଯାହା ପୁଣି ସେହି ଦୁର୍ଗ ମଧ୍ୟରେ ରଖି ସର୍ଦ୍ଦାର ଚଢତ ସିଂହଜୀଙ୍କ ଦାୟିତ୍ୱରେ ଦେଲେ।

ସିଂହମାନେ ନିଜ ନିଜ ଅଞ୍ଚଳକୁ ଫେରିଗଲେ। ତାହାପରେ ସର୍ଦ୍ଦାର ଚଢତ ସିଂହ ଚଢ଼ାଉ କରି ଝେଲମ ଚିନାବର ବହୁତ ତଳୁଆ ଅଞ୍ଚଳକୁ ଅଧିକାର କରିଦେଲେ। ପୁଣି ଝେଲମରୁ ବାହାରି ଅବଦଲମାନଙ୍କୁ ବଡ଼ ଆଡ୍ଡାକୁ ଆକ୍ରମଣ କରିଦେଲେ। ସେଠାରେ ହାକିମ ଅହମଦ ଶାହର କକା ଥିଲା, ତାହାକୁ ସର୍ଦ୍ଦାର ଚଢ଼ତ ସିଂହ ଜୀବିତ ଅବସ୍ଥାରେ ଧରିନେଲେ, ପରନ୍ତୁ କେତେ ଦିନ ବନ୍ଦୀ ଭାବେ ରଖି ଛାଡ଼ିଦେଲେ ଓ କହିଲେ କାବୁଲ ଚାଲିଯାଅ।

ସେ କାବୁଲଠାରେ ପହଞ୍ଚି ସିଂହମାନଙ୍କର ସାହାସ ଓ ନିର୍ଭୀକତା ବାହାଦୁରୀର ବହୁତ ପ୍ରଶଂସା କରିଥିଲା। ଅହମଦ ଶାହ ସର୍ଦ୍ଦାର ଚଢ଼ତ ସିଂହକୁ ଗୋଟିଏ ଚିଠି ପଠାଇଲା, ଲେଖିଥିଲା 'ସର୍ଦ୍ଦାର ଜୀ ' ଆପଣ ମୋ ସହିତ ସିଂହମାନଙ୍କୁ ମିଶାଇ ଦିଅ। ସିଂହମାନେ ମୋତେ କିଛି ଦେବାପାଇଁ ମାନିଯାଆନ୍ତୁ ଓ ପଞ୍ଜାବ ଅଧିକୃତ କରନ୍ତୁ, ମୁଁ କେବେ ମଧ୍ୟ ତାହାଙ୍କୁ ଆକ୍ରମଣ କରିବି ନାହିଁ।

ସର୍ଦ୍ଦାର ଚଢତ ସିଂହ ସେହି ଚିଠି ଅମୃତସର ସିଂହମାନଙ୍କ ପାଖକୁ ପଠାଇଲେ। ପରନ୍ତୁ ଖାଲସାମାନେ ବହୁତ ସୁନ୍ଦର ଭାବେ ଉତ୍ତର ଦେଲେ। ଲେଖିଥିଲେ – 'ଅହମ୍ମଦ ଶାହ' ଖାଲସା ତୋର ଦେବା କିଛି ନେବେ ନାହିଁ, ସିଂହ କେବଳ ଗୁରୁଙ୍କ ବକ୍‌ସିସ୍ ଖଣ୍ଡା (ତେଗ୍) ବଳରେ ରାଜ୍ୟ ପ୍ରାପ୍ତ କରିବେ। ତୋର ଭୟରେ ଆମ୍ଭେ ଭୟଭୀତ ନୁହେଁ, କାଲି ଆସିବା, ଆଜି ପହଞ୍ଚିଯାଆ। ସ୍ୱୟଂ ଗୁରୁ ମହାରାଜଙ୍କ

ବରଦାନ ଦେଇଥିବା (ତେଗ୍) ତଲବାର(ଖଣ୍ଡା) ଏହାର ନିଷ୍ପତ୍ତି ଦେବ କି ପଞ୍ଜାବ ତୁମର କି ଆମ୍ଭମାନଙ୍କର।

ଅହମ୍ମଦ ଶାହ ସିଂହମାନଙ୍କର ଏହି ଉତ୍ତର ପାଇ ଦିନକ ଯାଏଁ ଚୁପ୍ ହୋଇଗଲା।

## ସିଂହମାନେ ସରହନ୍ଦ ବିଜୟ କରିବା

ଏହି ସମୟରେ ପଞ୍ଜାବ ଠାରେ ଖାଲସା ମାନଙ୍କ ମନମାନି ଚାଲିଥିଲା ଓ ତୁର୍କି ହାକିମମାନେ ଦୁର୍ବଳ ହେଉଥିଲେ। ଅମୃତସର ଠାରେ ରହିଥିବା ଖାଲସାଙ୍କ ମନରେ ବିଚାର ଆସିଲା କି ଖାଲସାଙ୍କ ଗୁରୁ-ମାରୀ ସରହନ୍ଦକୁ ମାରିବା ପାଇଁ ଚେଷ୍ଟା କରିବା ଉଚିତ। ଗୁରୁ ମହାରାଜଙ୍କ ବଚନ ହେଉଅଛି କି - 'ମେରା ଖାଲସା ସରହନ୍ଦର କୀ ନୀବେଁ' ଉଖାଡ଼ କର ସତଲୁଜ ମେ ଫେଁକ ଦେଗା।' - ଭାବାର୍ଥ- ମୋର ଖାଲସାମାନେ ସରହନ୍ଦର ମଳଦୁଆ ଉପାଡ଼ି ସତଲୁଜ ଠାରେ ଫୋପାଡ଼ି ଦେବେ। ବଚନ ହେଇଥିଲା ୫୦-୬୦ ବର୍ଷର ପୁରୁଣା, ପରନ୍ତୁ ସରହନ୍ଦ ବର୍ତ୍ତମାନ ଯେମିତି ସେମିତି ସ୍ଥିର ଅଛି, ଖାଲସା ପନ୍ଥ, ଆମ ଗୁରୁ ବଚନ ପୂରଣ କରିବା ବ୍ୟତୀତ ଜୀବନର ଆବଶ୍ୟକତା ରହିଛି କଣ? ଯେଉଁ ସୁବା ବଜୀଦ ଖାଁ ସାହିବଜାଦାମାନଙ୍କୁ ଶହୀଦ କରାଇଥିଲା। ପରନ୍ତୁ ବର୍ତ୍ତମାନର ସୁବା ଜୈନ ଖାଁ ଆମର ଶହ ଶହ ବାଳକଙ୍କୁ ହତ୍ୟା କରାଇଅଛି। କଣ ଏମିତି ଅତ୍ୟାଚାରୀ ସରହନ୍ଦ ଭଳି ଗୁରୁ-ମାରୀ ନଗରୀକୁ ଆହୁରି ତିଷ୍ଠି ରହିବା ଦେବା ଉଚିତ? ଜାଗ୍ରତ ହୁଅ ଖାଲସା ଜୀ, ବିଳମ୍ବ କାହିଁକି? ପାପୀ ଜୈନ ଖାଁକୁ ମଧ୍ଯ ମାର ଓ ଗୁରୁଙ୍କ ବଚନ ପୂରା କର।

ସିଂହମାନେ ସରହନ୍ଦ ପ୍ରତି କୋପ ଦୃଷ୍ଟିରେ ଦେଖୁଥିଲେ। ପରନ୍ତୁ ସୁଯୋଗ ମିଳୁ ନ ଥିଲା। ପ୍ରଥମେ ଯେତେବେଳେ ବନ୍ଦା ସିଂହ ବାହାଦୁର ୧୭୬୭ ସମୟରେ ସରହନ୍ଦ ଆକ୍ରମଣ କରି ବିଜୟ ପ୍ରାପ୍ତ କରିଥିଲେ ଓ ସେତେବେଳେ ଦୁଷ୍ଟ ମନ୍ତ୍ରୀମାନେ ପାପୀ ସୁଚ୍ଚା ନନ୍ଦକୁ କର୍ମଫଳ ଦେଇଥିଲେ। ପରନ୍ତୁ ସରହନ୍ଦକୁ ବରବାଦ ଓ ବିନା ଜଳାଇବା ଛାଡ଼ିଦେଲେ। ସେଥିଯୋଗୁଁ ସେହି ଦୁର୍ଗକୁ ଶିଖ ରାଜ୍ୟର ସାହାଯ୍ୟ ସକାଶେ ପ୍ରୟୋଗ କରାଯାଇପାରିବ। କାରଣ ଏହି ଦୁର୍ଗ ବହୁତ ପ୍ରସିଦ୍ଧ ଓ ହିନ୍ଦର ଶିର କୁହାଯାଉଥିଲା। ଏହି ବିଚାର ଯୋଗୁଁ ସରହନ୍ଦକୁ ସୁରକ୍ଷିତ ରଖି ଛାଡ଼ିଦେଲେ।

ପରନ୍ତୁ ଏହି ପାପୀ ନଗରୀ କେବଳ ପାପ ସଂଗ୍ରହ କରି ସଞ୍ଚିତ କରି ଚାଲିଲା। ଯେତେଦିନ ଯାଏଁ ଏହା ତିଷ୍ଠି ରହିବ ପାପ ବଢ଼ି ଚାଲିବ। ସରହନ୍ଦର ଦୁର୍ଗ (କିଲା) ଦିଲ୍ଲୀର ଲାଲକିଲା ଠାରୁ ମଧ୍ୟ ମଜବୁତ ଓ ଯୁଦ୍ଧ ସମୟରେ ଅଧିକ ସୁରକ୍ଷା ପ୍ରଦାନ କରୁଥିଲା। ଏହାର କାନ୍ଥ ଏତେ ଚଉଡ଼ା ଥିଲା ଯେ ତାହା ଉପରେ ତୋପ ଏକତ୍ରିତ କରି ଏପଟେ ସେପଟେ ଯିବାଆସିବା କରିହେଉଥିଲା; ତଥା ତୋପ, ଯୁଦ୍ଧ ସାମଗ୍ରୀ ଓ ଅସ୍ତ୍ରଶସ୍ତ୍ର ଏହି ଦୁର୍ଗ ମଧ୍ୟ ବହୁତ ବଡ଼ ଖଜଣା ଥିଲା, ଯାହାକି ପ୍ରକୃତରେ ସରହନ୍ଦ ହିନ୍ଦର ଶିର ଥିଲା। ସେଥିଯୋଗୁଁ ଦୁର୍ଗର ଏମିତି ଅବସ୍ଥା ଦେଖି ବାବା ବନ୍ଦା ସିଂହଜୀ ସ୍ୱୟଂ ଏହି ଦୁର୍ଗକୁ ଅଧିକାର କରିନେବା ପାଇଁ ବିଚାର କରିଥିଲେ। ବୋଧହୁଏ ସାଧାରଣ ଜନତା ଏହାର ବିପରୀତ ଥିଲେ ଓ ସତ୍‌ଗୁରୁଜୀଙ୍କ ବଚନ ସ୍ମରଣ କରି ସରହନ୍ଦର ମୂଳଦୁଆ ସମାପ୍ତ କରି ଫୋପାଡ଼ି ଦେବା ଉଚିତ ଥିଲା, ପରନ୍ତୁ ସେତେବେଳେ ବାବା ବନ୍ଦା ସିଂହଜୀଙ୍କ ହୁକୁମ ନିକଟରେ ସମସ୍ତେ ନତମସ୍ତକ କରୁଥିଲେ।

୧୭୬୭ ପରେ ଆଠ-ଦଶ ବର୍ଷ ସିଂହମାନଙ୍କ ଦ୍ୱାରା ମୁସଲମାନ ରାଜ୍ୟର ମୂଳଦୁଆ ଭସ୍ମ ହୋଇଯାଇଥିଲା। ପରନ୍ତୁ ବାବା ବନ୍ଦା ସିଂହଜୀଙ୍କ ମତିଭ୍ରମ ଯୋଗୁଁ ସମସ୍ତ ଯୋଜନା ନଷ୍ଟ ହୋଇଥିଲା। ସେତେବେଳେ ତତଖାଲସା ଓ ବନ୍ଦଇ ଖାଲସା ଦୁଇ ଭାଗରେ ବିଭକ୍ତ ହୋଇଥିବା ଯୋଗୁଁ ମୁସଲମାନ ସାମ୍ରାଜ୍ୟର ସ୍ତମ୍ଭ ହୋଇ ରହିଥିଲା।

ପୁଣି ୧୮୨୦ ଯାଏଁ ସିଂହମାନଙ୍କ ମନ ଏଥିପ୍ରତି ଦୃଢ଼ତା ଥିଲା କି, ଏହି ସରହନ୍ଦକୁ ବରବାଦ ଓ ନଷ୍ଟ କରିବା ଉଚିତ। ପରନ୍ତୁ ସିଂହମାନେ ଏହି କାର୍ଯ୍ୟରେ ଅସଫଳ ରହିଥିଲେ। ଏହି ସମୟରେ ସିଂହମାନଙ୍କ ଉପରେ ଅବର୍ଣ୍ଣନୀୟ ସଙ୍କଟ ଆସିଥିଲା ଓ ବହୁତଥର ଘୋଷଣା ହୋଇଥିଲା କି ସିଂହ ସମାପ୍ତ ହୋଇଗଲେ, ପରନ୍ତୁ ଘୋର ସଙ୍କଟ ଭୋଗ କରି ମଧ୍ୟ ସିଂହମାନେ ନିଜର ଲକ୍ଷ୍ୟ ପ୍ରତି ଦୃଢ଼ ରହିଥିଲେ।

ଶେଷରେ ୧୮୨୧ ସମୟରେ ଏହି ଗୁରୁଙ୍କ ବଚନ ସାମନାକୁ ଆସିଥିଲା, ସତଗୁରୁଙ୍କ ବଚନ, "ମୋର ଖାଲସା ଏହି ସରହନ୍ଦର ମୂଳଦୁଆକୁ ଓପାଡ଼ି ସତ୍‌ଲୁଜରେ ଫୋପାଡ଼ିଦେବେ ଓ ଅତ୍ୟାଚାରୀ ପାପୀମାନଙ୍କୁ କର୍ମଫଳ ନିଶ୍ଚିତ ଭାବେ ଦେବେ। ମଜା ଚଖାଇବେ", ତାହାକୁ ବର୍ତ୍ତମାନ ପୂରା କରାଯାଉ।

ଏହି ସମୟରେ ଯୋଦ୍ଧା ଖାଲସାଙ୍କ ସଂଖ୍ୟା ପ୍ରାୟ ୩୦ ହଜାର ଥିଲା। ସମସ୍ତେ ଅରଦାଶ ସହ ସମର୍ପିତ ହୋଇ ସରହନ୍ଦ ଆଡ଼କୁ ଅଗ୍ରସର ହୋଇଗଲେ। ଯିବାବେଳେ ଖାଲସାମାନଙ୍କୁ ଖବର ମିଳିଲା କି ଜୈନ ଖାଁ ସୁବା ସେହି ସମୟରେ ସରହନ୍ଦ ଦୁର୍ଗ ଠାରୁ ବାହାରି ସହାରାନପୁର କିଛି କାର୍ଯ୍ୟ ଯୋଗୁଁ ଯାଇଛି। ଏହି ଖବର ସିଂହମାନଙ୍କୁ ପ୍ରସନ୍ନିତ କରାଇଲା ଓ ବିଚାର କରାଗଲା କି ଏହି ଅତ୍ୟାଚାରୀକୁ ଦୁର୍ଗ ମଧ୍ୟରେ ଭର୍ତ୍ତି ହେବାପାଇଁ ଦିଆ ନ ଯାଉ।

ଯୁଦ୍ଧ ଯୋଗୁଁ ଲାଭ ଉଠାଇବା ଚୋର-ଡାକୁ ମଧ୍ୟ ଖାଲସାମାନଙ୍କ ଆକ୍ରମଣର ଖବର ଶୁଣି ସରହନ୍ଦ ପାଖାପାଖି ଏକାଠି ହୋଇଗଲେ। କିଛି ଦିନ ମଧ୍ୟରେ ସିଂହମାନେ ସରହନ୍ଦକୁ ଘେରାଉ କରି ଲଢ଼ିବା ଆରମ୍ଭ କରିଦେଲେ। ସରହନ୍ଦଠାରୁ ବହୁତ ଦୂରକୁ ଯାଇଥିବା ଜୈନ ଖାଁକୁ ଏହି ଖବର ମିଳିଲା। ସେ ତାହାର କାମ ଛାଡ଼ି ସରହନ୍ଦ ପହଞ୍ଚିଲା।

ସିଂହମାନଙ୍କୁ ଖବର ମିଳିଲା କି ଜୈନ ଖାଁ ଫେରିଆସୁଛି। ସେମାନେ ତୁରନ୍ତ ନୂଆ ପ୍ରବନ୍ଧ କରିଲେ କି ତାହାକୁ ରାସ୍ତାରେ ଘେରାଉ କରି ଲଢ଼ିବା ଉଚିତ, ଦୁର୍ଗ ଯାଏଁ ପହଞ୍ଚିବା ପାଇଁ ଅବରୋଧ କରାଯାଉ। ଏହି ବିଚାର କରି ୫ହଜାର ସିଂହ ଦୁର୍ଗ ଚାରିପାଖରେ ଅଟକିବା ପାଇଁ ରହିଗଲେ ଓ ଅନ୍ୟମାନେ ଜୈନ ଖାଁ ପାଖକୁ ଚାଲିଗଲେ। ଆଠ-ନଅ ମାଇଲ ଦୂରରେ ପହଞ୍ଚି ସିଂହମାନେ ଦଳ ଦଳ ହୋଇ ଜୈନ ଖାଁକୁ ଅଟକାଇ ଦେଲେ। ଶୀଘ୍ର ଶୀଘ୍ର ଆସୁଥିବା ଜୈନ ଖାଁ ରାସ୍ତା ବଦଳାଇବା ପାଇଁ ବିଚାରିଲା। ଭାବିଲା ବର୍ତ୍ତମାନ ଯୁଦ୍ଧ ବ୍ୟତୀତ ଉପାୟ ନାହିଁ। ଦୁର୍ଗ ମଧ୍ୟରେ ଭର୍ତ୍ତି ହୋଇଯିବା ପାଇଁ ତାହାର ମନରେ ବହୁତ ଅଭିଳାଷ ଥିଲା, ପରନ୍ତୁ ସିଂହମାନଙ୍କର ଯୋଜନା ଦେଖି ବୁଝିପାରିଲା କି, ବର୍ତ୍ତମାନ ସିଂହମାନେ ମୋତେ ଦୁର୍ଗ ମଧ୍ୟରେ ପ୍ରବେଶ କରିବାପାଇଁ ଦେବେ ନାହିଁ।

ଜୈନ ଖାଁ ପଛରେ ରହି ନିଜର ସାହାଯ୍ୟ ସକାଶେ ଓ ସେହି ଅଞ୍ଚଳରେ ସବୁ ମୁସଲମାନ ହାକିମମାନଙ୍କୁ ଖବର ପଠାଇ ଡକାଇଲା ଓ ଏହିପରି ଭାବେ ସେ ଶକ୍ତିଶାଳୀ ତୁର୍କୀ ଦଳ ଗଠନ କରିଲା, ଯାହାକି ସିଂହ ସଂଖ୍ୟାଠାରୁ ବହୁତ ଗୁଣରେ ଅଧିକ ଥିଲା, ପରନ୍ତୁ ସିଂହ ନିଜର ଦୁଇ-ତିନି ଗୁଣଙ୍କୁ ମଧ୍ୟ ପରାସ୍ତ କରିବା ଶକ୍ତି ଥିଲା ଓ ସତ୍‌ଗୁରୁଙ୍କ ଆଶ୍ରା ସହ ଏମିତି ଜୋର ଜୋରରେ ତଲବାର ଚଳାଉଥିଲେ କି ଶତ୍ରୁ ଅଧିକ ହୋଇ ମଧ୍ୟ ଛିନ୍ନଛତ୍ର ହୋଇ ଦୌଡ଼ି ଚାଲିଯାଉଥିଲା ଓ ଏମିତି

ମୁହାଁମୁହିଁ ଥରେ ନୁହଁ ଶହ ଶହ ଥର ହୋଇସାରିଛି । ସେଥିଯୋଗୁଁ ସିଂହମାନଙ୍କୁ ବହୁ ସଂଖ୍ୟାର ଶତ୍ରୁ ସୈନ୍ୟଙ୍କୁ ଦେଖି ବିଚଳିତ ଲାଗୁ ନ ଥିଲା । ଏମିତି କାହିଁକି ହୁଅନ୍ତା ? ଏହାର ବଡ଼ କାରଣର ବିଶେଷତା ଥିଲା କି ସିଂହମାନେ ସବୁବେଳେ ମୃତ୍ୟୁର ଭୟ ତ୍ୟାଗ କରି ଲଢୁଥିଲେ, ବାସ୍ ଏହି ଦୃଢ଼ତା ଓ ମନୋବଳ ଥିଲା ସିଂହମାନଙ୍କ ବିଜୟପ୍ରାପ୍ତ । ଏହା ସିଂହମାନଙ୍କର ବାହାଦୁରି ଓ ସମର୍ପଣ ବଳିଦାନ ଦେଇ ଯୁଦ୍ଧ ସମୟରେ ପୂରାପୂରି ଭାବେ ଉତ୍ସର୍ଗିତ ହୋଇ ମୃତ୍ୟୁ ଭୟ ତ୍ୟାଗ କରି ଯୁଦ୍ଧ କରୁଥିଲେ । ପ୍ରାଣର ବାଜି ଲଗାଇଦେଉଥିଲେ ।

ବର୍ତ୍ତମାନ ସେହି ସମୟ ଆସିଲା । ଯେତେବେଳେ ଜୈନ ଖାଁ ନିଜର ସେନା ସମୁଦ୍ର ସହ ଅଗ୍ରସର ହୋଇ ସିଂହମାନଙ୍କ ଉପରେ ଆକ୍ରମିତ ହୋଇଗଲା ଓ ଭୟାନକ ହଲଚଲ ହୋଇଗଲା । ଜୈନ ଖାଁର ସାହାଯ୍ୟ ସକାଶେ ଆସିଥିବା ଅନ୍ୟ ମୁସଲମାନମାନେ ସିଂହମାନଙ୍କ ଦାଉ ଦୁଇଘଡ଼ି ମଧ୍ୟ ସମ୍ଭାଳିପାରିଲେ ନାହିଁ ।

ଜୈନ ଖାଁକୁ ସାହାଯ୍ୟ କରୁଥିବା ହଜାର ହଜାର ସିଂହମାନଙ୍କ ତଲବାରର ଶିକାର ହୋଇଗଲେ । ଏହା ଦେଖି ଜୈନ ଖାଁ ନିଜର ସଞ୍ଚିତ ବିଦେଶୀ ସୈନ୍ୟଙ୍କ ଦ୍ୱାରା ସିଂହମାନଙ୍କ ସହିତ ଲଢ଼ାଇଲା । ଏହି ଲଢ଼ାଇ ମଧ୍ୟ କେତେ ମାଇଲ ଯାଏଁ ବିଛେଇ ହୋଇ ଚାଲିଥିଲା । ଜୈନ ଖାଁର ବଳପ୍ରୟୋଗ କରି ସିଂହମାନଙ୍କ କବଳରୁ ମୁକ୍ତ ହୋଇ ଦୁର୍ଗକୁ ଯିବାକୁ ଇଚ୍ଛା କରୁଥିଲା ଓ ଦୁର୍ଗ ମଧ୍ୟରେ ଆଶ୍ରିତ ହୋଇ ପ୍ରାଣ ବଞ୍ଚାଇବାକୁ ଚାହୁଁଥିଲା । କୁହାଯାଇଛି କି, ସେ ଏକାଗ୍ରତା ସହ ସିଂହମାନଙ୍କୁ କାଟି ମାରି ଆଗକୁ ଯିବାକୁ ଚାହୁଁଥିଲା, ଯେତେବେଳେ ସେ ଏକା ଘୋଡ଼ା ଦୌଡ଼ାଇ ସରହନ୍ଦକୁ ଯିବାକୁ ବାହାରିଲା, ତୁରନ୍ତ ସର୍ଦ୍ଦାର ଜସ୍ସା ସିଂହ ଆହଲୁବାଲିୟା ତାହା ପଛରେ ଘୋଡ଼ା ଦୌଡ଼ାଇ ଧିକ୍କାର କରି କହିଲେ, ଏ ଜୈନ ଖାଁ, ଠକ କାପୁରୁଷ ଡରୁଆ ହୋଇ ଚାଲିଯାଉଛ ? ସିଂହମାନଙ୍କ କବଳରୁ ତୁ ବଞ୍ଚିପାରିବୁ ନାହିଁ । ଆ, ସିଂହ ଭଳି ମରିବୁ, ସାମନାକୁ ଲଢ଼ି ଶହୀଦ ହେବୁ, ନିଜ ନାମରେ କଳଙ୍କ କାହିଁକି ଲଗାଉଅଛ ?

ଜୈନ ଖାଁ ଦେଖିଲା କି ସିଂହମାନେ ଦୂର ଦୂର ଯାଏଁ ବିସ୍ତୃତ ହୋଇ ତାହାକୁ ତଦନ୍ତ କରୁଛନ୍ତି । ସେ ଭାବିଲା, ସତରେ ମୁଁ ଲୁଚି, ଦୌଡ଼ି ବଞ୍ଚିପାରିବି ନାହିଁ, ସେ ତୁରନ୍ତ ଘୋଡ଼ାକୁ ପଛକୁ ମୋଡ଼ିଲା ଓ ନିଜ ସୈନ୍ୟ ଦଳରେ ମିଶିଗଲା ଓ ସିଂହମାନଙ୍କ ସହ ଲଢ଼ିଲା । ସେ ଲୁହା ସାଞ୍ଜୁ ପିନ୍ଧିଥିଲା, ସେଥିଯୋଗୁଁ ସିଂହମାନଙ୍କ ଚୋଟ ତାହାର କ୍ଷତି ହେଉ ନ ଥିଲା ଓ ତାହାର ଗୁଳି ଓ ତୀର ସିଂହମାନଙ୍କୁ ଲାଗୁଥିଲା । ଏହା ଦେଖି

ସ.ଜସ୍ୱା ସିଂହ ନିଜର ଦୁଇ ନଳୀ ମଧ୍ୟରେ ଦୁଇଗୁଣ ବାରୁଦ ଭର୍ତ୍ତି କରି ଓ ଗୋଟିଏ ଗୁଳି ସ୍ଥାନରେ ଦୁଇଟି ଗୁଳି ରଖି ସତ୍‌ଗୁରୁଙ୍କୁ ଧ୍ୟାନ କରି ଲକ୍ଷ୍ୟ ଲଗାଇ ଜୈନ ଖାଁକୁ ନିକ୍ଷେପ କରିଲେ। ଏହି ବନ୍ଧୁକର ଲକ୍ଷ୍ୟ ଠିକ୍ ସ୍ଥାନରେ ଜୈନ ଖାଁର ସାଞ୍ଜୁକୁ ଚିରି ଛାତିରେ ଭେଦିଗଲା ଓ ଜୈନ ଖାଁ ଧଡ଼ାସ ହୋଇ ପାହାଡ଼ ଭଳି ଘୋଡ଼ା ଉପରୁ ଧରାଶାୟୀ ହୋଇଗଲା। ତାହାପରେ ସୈଦ ଖାଁ, ମହମ୍ମଦ ଖାଁ ତଥା ଅନ୍ୟ ପ୍ରମୁଖ ଜରନୈଲଙ୍କୁ ସିଂହମାନେ ଶୀଘ୍ର ଶୀଘ୍ର ମାରିଦେଲେ ଓ ମୁସଲମାନମାନଙ୍କ ଗୋଡ଼ ତଳୁ ମାଟି ଖସି ପଡ଼ିଲା। ବଜ୍ରପାତ କରିଦେଲେ। ଏହା ଦେଖି ସିଂହମାନେ ଜୟ ଜୟକାର ସହ ଦୌଡ଼ାଇ ଶତ୍ରୁମାନଙ୍କୁ ମାରିବାକୁ ଲାଗିଲେ।

## ଜୈନ ଖାଁର ମୃତ୍ୟୁ ଓ ସରହନ୍ଦର ବରବାଦ

ଲଢ଼ାଇ, ଝଗଡ଼ା ସମାପ୍ତ କରି ସିଂହମାନେ ସରହନ୍ଦ ସହରର ଗଳି ବଜାର ମଧ୍ୟରେ ପଶିଗଲେ ଓ ଧନାଢ୍ୟ ବ୍ୟକ୍ତିମାନଙ୍କୁ ଲୁଟି ଚାଲିଲେ, ଯେଉଁମାନେ ନିଜର ଧନ ଓ ଅଧିକାରର ନିଶାରେ ଏତେ ବ୍ୟସ୍ତତା ସହ ଅହଙ୍କାର ସମୁଦ୍ର ମଧ୍ୟରେ ବୁଡ଼ି ରହି ଗରିବ ଦୁଃଖୀଙ୍କୁ ମଣିଷ ଭାବେ ଦେଖୁନଥିଲେ। ଅଳ୍ପ ସମୟ ମଧ୍ୟରେ ସରହନ୍ଦର ଗଳି କନ୍ଦି ବଜାର ମଧ୍ୟରେ ରକ୍ତ ନଦୀ ବୋହିଗଲା। ସହର ମଧ୍ୟରେ ପୂରାପୂରି ହଲଚଲ ହୋଇଗଲା। ଡାକୁ ଓ ଲୁଟିବାମାନଙ୍କୁ ଖୁବ୍ ଖଜଣା ମିଳିଲା, ସେମାନଙ୍କୁ ଅଟକିବା ପାଇଁ କେହି ନ ଥିଲେ। ଅଚାନକ ଆସିଥିବା ସଙ୍କଟକୁ କିଏ ଉଦ୍ଧାର କରିବ, କରିଥିବା ପାପ କର୍ମର ଫଳ ଅହଙ୍କାରୀମାନଙ୍କ ସକାଶେ କାଳ ହୋଇଗଲା। ମାଆମାନେ ପୁତ୍ରଙ୍କୁ ସମ୍ଭାଳିପାରିଲେ ନାହିଁ। ଯେଉଁଆଡ଼କୁ ସୁବିଧା ମିଳିଲା, ସେହି ଆଡ଼କୁ ଦୌଡ଼ି ଦୌଡ଼ି ପ୍ରାଣ ବଞ୍ଚାଇବାକୁ ଲାଗିଲେ। ଏମିତି ଦୌଡ଼ା ଦୌଡ଼ି ହୋଇଥିଲା କି ଯାହା ଅଳ୍ପ ଘଣ୍ଟା ମଧ୍ୟରେ ସୁନ୍ଦର ସହର ନିସ୍ତବ୍ଧ ହୋଇଯାଇଥିଲା। ବଡ଼ ବଡ଼ ଅଟ୍ଟାଳିକା ଖାଲି ହୋଇଗଲା। ଚୋର, ଡାକୁମାନେ ବହୁତ ଦିନ ଯାଏଁ ମନଧ୍ୟାନ ଦେଇ ଧନ ଏକତ୍ରିତ କରିଲେ । ସେମାନେ ଧନ ସଂଗ୍ରହ କରିବାପାଇଁ ଘର ଗୁଡ଼ାକୁ ଖୋଳା ଖୋଳି କରି ମୂଳଦୁଆ ଉପାଡ଼ି ରଖିଦେଲେ। ବଡ଼ ବଡ଼ ଘରଗୁଡ଼ାକୁ ଭାଙ୍ଗି ରୁଜି ରଖିଲେ। ପରନ୍ତୁ ଛୋଟ ଘରଗୁଡ଼ାକୁ ମଧ୍ୟ ଛାଡ଼ି ନ ଥିଲେ।

ଏହା ଥିଲା ସହରର ପରିସ୍ଥିତି, ପରନ୍ତୁ ଦୁର୍ଗ ସାଧାରଣ ଜିନିଷ ନ ଥିଲା, ତାହା ସାଧାରଣ ଜିନିଷ ଦ୍ୱାରା ବରବାଦ ନଷ୍ଟ କରାଯାଇ ପାରି ନ ଥାନ୍ତା। ସେଥିଯୋଗୁଁ

ଯୋଜନା ପ୍ରସ୍ତୁତ କରି ଏହି ଦୁର୍ଗକୁ ନଷ୍ଟ ଧ୍ୱଂସ କରିବାପାଇଁ ବାରୁଦ ପ୍ରୟୋଗ କରାଗଲା। ଚାରିପଟୁ ନିଆଁ ଜଳାଇ ବଡ଼ କାନ୍ଥଗୁଡ଼ାକୁ ଧ୍ୱଂସ କରାଗଲା। ହିସାବ ଅନୁଯାୟୀ ସବୁ ସିଂହମାନଙ୍କ ଭାଗରେ ଏକ ଏକ ହାତ ଜାଗା ହେଉଥିଲା, ସେଥିଯୋଗୁଁ ସେତେବେଳେ ସବୁ ସିଂହମାନେ ତାକୁ ଖୋଳିବାକୁ ଲାଗିଲେ। ସର୍ଦ୍ଦାର ଆରମ୍ଭ କରିଲେ ଓ ଅନ୍ୟ ସିଂହମାନେ ପୁଣି ଏତେ ବ୍ୟଗ୍ରତା ଓ ଶୀଘ୍ରତା ସହ କିଛି ଘଣ୍ଟାକ ମଧ୍ୟରେ ସେହି ଦୃଢ଼ ମଜବୁତ ଦୁର୍ଗକୁ ଇଟା ପଥରର ଗୁଣ୍ଡ କରି ଧରାଶାୟୀ କରିଦେଲେ। ଏହି ସହରକୁ ଚୋର ଡାକୁମାନେ ମରୁଭୂମି କରିଦେଲେ ଓ ବହୁତ ଦିନରୁ ପ୍ରତିଶୋଧର ଅଗ୍ନିକୁ ସରହନ୍ଦର ଦୁର୍ଗକୁ ସିଂହମାନେ ସମାପ୍ତ କରି ସିଦ୍ଧ କରିଦେଲେ-

"ପାପୀ କେ ମାରନେ କୋ, ପାପ ମହାବଳୀ ହୈ"।

ତାହାପରେ ସିଂହମାନେ ସାହିବଜାଦାମାନଙ୍କୁ ଯେଉଁଠାରେ ଇଟା, ସିମେଣ୍ଟର କାନ୍ଥ ଭିତରେ ପୋତି ଦେଇଥିଲେ ସେହି ସ୍ଥାନକୁ ଖୋଜିଥିଲେ। ସେଠାରେ ଶହୀଦ ସ୍ମରଣ ଭାବେ ଗୁରୁଜୀ ଫତେହ ଗଡ଼ ସାହିବ ତିଆରି କରାଗଲା। ପୁଣି ପାଠ କରାଗଲା ଓ ଅରଦାଶ ସମର୍ପଣ କରିଲେ। ପୁଣି ସେହି ସ୍ଥାନର ଅଞ୍ଚଳ ପ୍ରବନ୍ଧ ପଟିଆଲା ସିଂହମାନଙ୍କୁ ଦିଆଯାଇଥିଲା।

## ଖାଲସାମାନେ ପ୍ରସିଦ୍ଧ ହେଲେ

ସରହନ୍ଦ ବିଜୟ ପ୍ରାପ୍ତ ପରେ ସମଗ୍ର ଦେଶରେ ଖାଲସାମାନେ ପ୍ରସିଦ୍ଧ ହୋଇଗଲେ। ସରହନ୍ଦ ଭଳି ମୁସଲମାନ ବହୁତ ଶକ୍ତିଶାଳୀମାନଙ୍କୁ ସିଂହମାନେ ସମାପ୍ତ କରିଦେଲେ। ତାହାପରେ ବର୍ତ୍ତମାନ ସିଂହମାନଙ୍କ ପାଖରେ କିଏ ଟିକ୍ଷି ପାରିବ ? ବନ୍ଦା ସିଂହ ବାହାଦୁର ସମୟରେ ମଧ୍ୟ ଥରେ ଏମିତି ହୋଇଥିଲା। ପରନ୍ତୁ ତାହାର ଶହୀଦ ପ୍ରାପ୍ତ ହେବା ୫୦ ବର୍ଷ ପରେ ସିଂହମାନଙ୍କୁ ବହୁତ ସଙ୍କଟ ଆସିଥିଲା। ପରନ୍ତୁ ସିଂହମାନେ ନିଜର ଲକ୍ଷ୍ୟ ପ୍ରତି ଅଗ୍ରସର ରହିଥିଲେ। ସେତେବେଳେ ସିଂହମାନେ ଭାଗ ବାଣ୍ଟି ପୂରା ଦେଶକୁ ଅଧିକାର କରିଲେ ଓ ତୁର୍କୀଙ୍କ ଦୁଷ୍ଟତାକୁ ବିନାଶ କରିଦେଲେ।

ସିଂହମାନେ ଏମିତି ଦେଶରେ ଅଧିକାର କରିବାକୁ ଲାଗିଲେ। ତୁର୍କିମାନଙ୍କ କିଛି ସାହସ ନ ଥିଲା କି ମଝିରେ ଟାଣି ନିଆଁ ଝାସରେ ପଶିବା ପାଇଁ। ଯଦି କେହି

ମୁସଲମାନ ନବାବ କିମ୍ବା ହାକିମମାନଙ୍କ ବିରୁଦ୍ଧ ଶିଖମାନଙ୍କୁ ଅଭିଯୋଗ ମିଳୁଥିଲା, ସିଂହମାନେ ତୁରନ୍ତ ଏକତ୍ରିତ ହୋଇ ଆକ୍ରମଣ କରିଦେଉଥିଲେ ଓ ଅତ୍ୟାଚାରୀର ସହରକୁ ଘେରାଉ କରୁଥିଲେ। ଅତ୍ୟାଚାରୀମାନଙ୍କୁ ଉଚିତ ଦଣ୍ଡ ଦେଇ ରହୁଥିଲେ। ଏହିପରି ଭାବେ ସିଂହମାନେ ପୂରା ପଞ୍ଜାବରେ ବିସ୍ତୃତ ହୋଇ ରହିଥିଲେ। କେବଳ ଲାହୋର ସହର ବିଦେଶୀମାନଙ୍କ ହାତରେ ରହିଥିଲା। ତାହା କେବଳ ବନ୍ଦୀ ଗୃହ ହୋଇ ରହିଥିଲା। ବିଦେଶୀମାନଙ୍କ ପାଇଁ ଟଙ୍କା ପଇସା ଲାହୋର ଠାରେ ସିଂହମାନେ ପହଞ୍ଚିବାପାଇଁ ଦେଉନଥିଲେ, ହାକିମମାନେ ଏହିପରି ସ୍ୱୟଂ ଅଗ୍ରହ ଦେଖାଇଲେ। କିଛିଦିନ ତୈମୁର ଲାହୋର ଠାରେ ରହି କାବୁଲ ଫେରିଗଲା। ସେ ଅହମଦ ଶାହକୁ ପୂରା କାହାଣୀ ଶୁଣାଇଲା। ସିଂହମାନେ ପୂରା ଦେଶକୁ ନିଜ ଅଧୀନରେ ଅଧିକାର କରିଲେ ଓ ଜୈନ ଖାଁ ଭଳି ବିଦେଶୀମାନଙ୍କୁ ସେମାନେ ମାରିଦେଲେ।

## ଅହମ୍ମଦ ଶାହର ନବମ ଥର ଆକ୍ରମଣ

ଦିଲ୍ଲୀ ଅବ୍ୟବସ୍ଥା ହୋଇଗଲା। ଅହମ୍ମଦ ଶାହ ନଜୀବ ଖାଁକୁ ସେଠାରେ ହାକିମ ପଦ ଦେଇଥିଲା, ପରନ୍ତୁ ତାହାକୁ ଭରତପୁର ଜାଠ ମାନଙ୍କ ସହ ଶତ୍ରୁତା ହୋଇଗଲା। ସେ ଭରତପୁର ରାଜାର ପିତାକୁ ମାରିଥିଲା ଓ ରାଜାର ଅପମାନ କରିଥିଲା। ସେଥିଯୋଗୁଁ ଭରତପୁରର ପ୍ରଭାବ ପଡ଼ିଲା ଓ ସେମାନେ ନିଜର ସୈନ୍ୟ ଏକତ୍ରିତ କରି ଦିଲ୍ଲୀ ଘେରାଉ କରିଲେ ସେଥିଯୋଗୁଁ ନଜୀବ ଖାଁ ସମସ୍ତ ବିଷୟ ଲେଖି ଅହମ୍ମଦ ଶାହକୁ ଜଣାଇଲା, କି ଶୀଘ୍ର ଆସି ମୋର ସାହାଯ୍ୟ କର।ଏହି ପରିସ୍ଥିତି ଦେଖି ଅହମଦ ଶାହ ପୁଣି ନବମ ଥର ପାଇଁ ହିନ୍ଦୁସ୍ତାନ ଆକ୍ରମଣ କରିଥିଲା।

## ହିନ୍ଦୁମାନଙ୍କ ବିନତି ଯୋଗୁଁ ସିଂହମାନେ ପୁଣି ଜଲ୍ଲାବାଦ ଲୁହାରୀ ବିଜୟ କରିଥିଲେ

ଅହମ୍ମଦ ଶାହ ସେଠାରୁ ବାହାରିବା ଗୁପ୍ତ ଖବର ସିଂହମାନଙ୍କୁ ମଧ୍ୟ ମିଳିଲା। ସେମାନେ ତୁରନ୍ତ ସବୁ ଅଞ୍ଚଳ ଛାଡ଼ି ଶ୍ରୀ ଅମୃତସର ଠାରେ ଏକତ୍ରିତ ହୋଇଗଲେ ଓ ବିଚାର ବିମର୍ଶ କରି ନିଷ୍ପତ୍ତି ନେଲେ କି ଅହମ୍ମଦ ଶାହ ସହିତ ଯୁଦ୍ଧ କରିବା ଆବଶ୍ୟକ ନାହିଁ। ଚାରି ଦିନ ଆଗ ପଛ ହୋଇଯାଉ ଓ ଏହି ଲକ୍ଷ ଲକ୍ଷଙ୍କ ସୈନ୍ୟବାହିନୀ ପୁଣି ଫେରିଗଲା ପରେ ପୁଣି ଆମ୍ଭେମାନେ ତଲବାର ବଳରେ ନିଜ

ନିଜ ଅଞ୍ଚଳ ଅଧିକାର କରିନେବା। ତାହା ସହିତ ଲଢ଼ି ଆମର ଶକ୍ତି ବେକାର ବରବାଦ କରିବା ଅନୁଚିତ।

ଏହି ବିଚାର ବିମର୍ଶ କରୁଥିବାବେଳେ ଜଲ୍ଲାବାଦ ଲୁହାରୀଠାରୁ କେତେଜଣ ବ୍ରାହ୍ମଣ ଓ ହିନ୍ଦୁ ଶ୍ରୀ ଅମୃତସରଠାରେ ପହଞ୍ଚିଲେ। ସେମାନେ ଖାଲସାମାନଙ୍କ ପାଖରେ ପହଞ୍ଚି ବିନମ୍ର ପ୍ରାର୍ଥନା କରି କହିଲେ, ଆମ୍ଭେମାନେ ବହୁତ ଦୁଃଖୀ ହୋଇ ଆପଣମାନଙ୍କ ଶରଣରେ ଆସିଛୁ। ଜଲ୍ଲାବାଦ ଲୁହାରୀ (ଲେହାରୁ ଶାସନ) ଉତ୍ତରପ୍ରଦେଶଠାରେ ଥିଲା। ଅମୃତସରଠାରୁ ବହୁତ ଦୂରରେ ଥିଲା। ସେହି ଦୁଃଖୀ ଲୋକମାନେ କହିଲେ କି ଆମ୍ଭେମାନେ ହିନ୍ଦୁସ୍ତାନର ବହୁତ ରାଜାମାନଙ୍କୁ ବିନମ୍ର ପ୍ରାର୍ଥନା କରିସାରିଛୁ। ପରନ୍ତୁ ଆମ୍ଭମାନଙ୍କ ପ୍ରାର୍ଥନା କେହି ଶୁଣିନାହାନ୍ତି। ଆମର ଜୀବନ ନାହିଁ। ଆମର ଝିଅ, ଭଉଣୀ ଓ ସ୍ତ୍ରୀମାନଙ୍କୁ ଅତ୍ୟାଚାରୀମାନେ ବାଧ୍ୟତାପୂର୍ବକ ଟାଣି ନିଅନ୍ତି  ଓ ଗାଈ, ବଳଦ ଆଣି ପ୍ରତିଦିନ ଆମ ଘରେ ହତ୍ୟା କରନ୍ତି, ଆମ୍ଭେ ବହୁତ କଷ୍ଟରେ ଜୀବନ ବିତାଉଛୁ। ଆମ୍ଭେମାନେ ଶକ୍ତିହୀନ। ଆମର ଶକ୍ତି କାମ ଦେଉ ନାହିଁ, ଆମ୍ଭେମାନେ ବହୁତ ଦୁଃଖିତ ହୋଇ ଆପଣଙ୍କ ଶରଣରେ ଆସିଅଛୁ।

ସିଂହମାନେ ବିଚାର କରିଲେ ଓ ନିଷ୍ପତ୍ତି କରିଲେ କି ଏମାନଙ୍କୁ ନିଶ୍ଚିତ ରୂପେ ସାହାଯ୍ୟ କରିବା ଉଚିତ। ସେତେବେଳେ ଅହମ୍ମଦ ଶାହ ମଧ୍ୟ ଆସି ପହଞ୍ଚିଯାଇଥିଲା। ତାହା ପୂର୍ବରୁ ଆମ୍ଭେ ତାହାର ପୂର୍ବରୁ ପହଞ୍ଚିଯିବା। ତାହା ସହିତ ଅହମ୍ମଦ ଶାହ ଅନ୍ଧାରୁଆ ହୋଇ ଫେରିଯିବ ଓ ଆମ୍ଭେମାନେ ଗରିବ ଦୁଃଖୀମାନଙ୍କ ଦୁଃଖ ନିବାରଣ କରି ଅତ୍ୟାଚାରୀ ପାପୀମାନଙ୍କୁ ବିନାଶ କରି ଫେରିବା। ଏହା ବିଚାର କରି ଖାଲସା ଦଳ ପୂର୍ବ ଦିଗ (ୟୁ.ପି.) ପଟକୁ କୁଦି ପଡ଼ିଲେ। ଯାତ୍ରା ବହୁତ ଲମ୍ବା ଥିଲା, ସେଥିଯୋଗୁଁ ରାସ୍ତାରେ ଖାଲସାମାନେ ଶିକାର ଖେଳି ଖେଳି ଓ ଅହଙ୍କାରୀ ତୁର୍କୀମାନଙ୍କୁ ରାସ୍ତାରେ କେଉଁଠି ମଝି ମଝିରେ ମିଳୁଥିଲେ ସେମାନଙ୍କୁ ଶକ୍ତି ବଳ ଦେଖାଇ, ଜଲ୍ଲାବାବ ଲୁହାରୀ ନିକଟରେ ପହଞ୍ଚିଲେ।

ସେଠାର ଅହଙ୍କାରୀ ଓ ଅତ୍ୟାଚାରୀ ହାକିମମାନଙ୍କ ମନରେ ତିଳେ ମାତ୍ର ସନ୍ଦେହ ନ ଥିଲା କି ଗୁରୁଙ୍କ ସିଂହମାନେ ଏତେ ଦୂରକୁ ଆସି ଧମକ ଦେଇପାରିବେ। ପରନ୍ତୁ ସେମାନଙ୍କୁ ଯେତେବେଳେ ଖବର ମିଳିଲା, ସେମାନେ ବିଚଳିତ ହୋଇପଡ଼ିଲେ, ବର୍ତ୍ତମାନ କଣ ହେବ ?

ଯାହାହେଉ ସେମାନେ ନିଜର ତୋପ, ବନ୍ଧୁକ ଓ ଭାରୀ ଯୁଦ୍ଧସାମଗ୍ରୀ ବଳରେ ସିଂହମାନଙ୍କ ସହ ଲଢ଼ିବାପାଇଁ ମନୋବଳ ସହ ପରାମର୍ଶ କରିଲେ। ବହୁତ ଶୀଘ୍ର ସିଂହମାନେ ପହଞ୍ଚିବା ପୂର୍ବରୁ ଭାରୀ ଯୁଦ୍ଧ ସାମଗ୍ରୀ ବହୁ ମାତ୍ରାରେ ଦୁର୍ଗ ମଧ୍ୟରୁ ବାହାରକୁ ଆଣିଲେ ଓ ସହରଠାରୁ କିଛି ଦୂରରେ ଦଳ ବାନ୍ଧି ସିଂହମାନଙ୍କୁ ଅବରୋଧ କରିଲେ। ସେଠାର ନବାବ ସେହି ଅଞ୍ଚଳର ସବୁ ମୁସଲମାନମାନଙ୍କୁ ନିଜର ସାହାଯ୍ୟ ସକାଶେ ଡକାଇ ଆଣିଲା ଓ ଏମିତି ଭାବେ ବହୁତ ପ୍ରସ୍ତୁତ ହୋଇ ସିଂହମାନଙ୍କୁ ପ୍ରତୀକ୍ଷା କରିଲା।

ସିଂହ ଦଳ ଆଗକୁ ବଢ଼ି ଚାଲିଥିଲେ ଓ ସେମାନଙ୍କ ଆଗରେ ପଛରେ ଲୁଟେରାମାନଙ୍କ ବଡ଼ ବଡ଼ ଦଳ ସାଥିରେ ଅଗ୍ରସର ହେଉଥିଲେ। ସେଥିଯୋଗୁଁ ଏହି ଦଳ ମଧ୍ୟ ପହଞ୍ଚିଗଲା। ଯୁଦ୍ଧ ପ୍ରବୀଣ ସିଂହ ଯୋଦ୍ଧାଙ୍କୁ ହରିଆବଲ ଦଳମାନେ ବୁଝିପାରିଲେ କି ସାମନାରେ ବହୁତ ବଡ଼ ଯୋଜନା ହୋଇଅଛି। ତଥାପି ସେମାନେ ଅଚାନକ ପହଞ୍ଚି ଆକ୍ରମଣ କରି ନିକଟସ୍ଥ ଦଳକୁ ଅଧିକାର କରିଦେଲେ ଓ ସିଂହମାନେ ମଧ୍ୟ ଦଳବଦ୍ଧ ହୋଇ ଲଢ଼ି ଚାଲିଲେ। ଭୟାନକ ଯୁଦ୍ଧ ଚାଲିଲା। ତୃତୀୟ ପ୍ରହର ଯାଏଁ ଏହି ଯୁଦ୍ଧ ବରାବର ଚାଲି ରହିଲା। ଦୁଇ ପକ୍ଷର ଶୂରବୀର, ଯୋଦ୍ଧାମାନେ ଧରାଶାୟୀ ହେଉଥିଲେ, ମୃତ ଶରୀରର ପାହାଡ଼ ହୋଇଗଲା। ସିଂହମାନଙ୍କ ସର୍ଦ୍ଦାର ଦେଖିଲେ କି ଏମିତି ଭାବେ ଯୁଦ୍ଧ ହେଲେ କେବେ ସମାପ୍ତ ହେବ କିଏ ଜାଣିଛି। ସେଥିଯୋଗୁଁ ସେ ଏକାଥରକେ ଆକ୍ରମଣ କରିବା ପାଇଁ ସିଂହମାନଙ୍କୁ ଆହ୍ୱାନ କରିଲେ। ନିଜର ସର୍ଦ୍ଦାରଙ୍କ ଆହ୍ୱାନ ଶୁଣି ଓ ସେମାନଙ୍କୁ ଅଗ୍ରସିତ ହେବା ଦେଖି ଅନ୍ୟ ସିଂହମାନେ ମଧ୍ୟ ଏକାଥରକେ ତଲବାରକୁ ରଗଡ଼େଇ ଆକ୍ରମିତ ହୋଇଗଲେ ଓ ମାରକାଟ କରିଚାଲିଲେ।

ଏହା ଦେଖି ଜଲ୍ଲାବାଦର ନବାବ ସ୍ୱୟଂ ଆଗକୁ ଆସିଲା ଓ ପୂରା ବଳ ପ୍ରୟୋଗ କରି ଆଗକୁ ବଢ଼ି ଚାଲିଲା, ସିଂହମାନଙ୍କୁ ଅଟକିବା ପାଇଁ ଚେଷ୍ଟା କରିଲା। କିନ୍ତୁ ହାତୀ ଉପରେ ଆସନ ଜମାଇ ବସି ଏହି ନବାବ ଶୀଘ୍ର ଜଣେ ସିଂହର ବନ୍ଧୁକ ଲକ୍ଷ୍ୟରେ ପହଞ୍ଚିଲା। ଅନ୍ୟ ଜଣକ ତାହାର ସାଥି ବନ୍ଧୁକ ମାରିଲା, କିନ୍ତୁ ସରିଲା ନାହିଁ, କ୍ଷତବିକ୍ଷତ ହୋଇ ପଛକୁ ଚାଲିଗଲା। ଏହା ଦେଖି ଅନ୍ୟ ସୈନ୍ୟବଳ ହତାଶ ହୋଇଗଲେ ଓ ସିଂହମାନେ ଶୀଘ୍ର ଶୀଘ୍ର ସେମାନଙ୍କୁ ଲକ୍ଷ୍ୟ ରଖି ମାରି ଚାଲିଲେ। କଣ ହେଲା, ଶତ୍ରୁମାନଙ୍କ ମଧ୍ୟରେ ବିଚଳିତ ଖେଳିଗଲା। ସିଂହମାନଙ୍କ ଚିନ୍ତା ଥିଲା

କି ଅତ୍ୟାଚାରୀ ଆଗକୁ ହାକିମ ଦୌଡ଼ି ନ ଆସୁ। ବାହାର ସୈନ୍ୟ ଦୁର୍ଗ ମଧ୍ୟରେ ପଶି ପୁଣି ବଳୁଆ ହୋଇ ଲଢ଼ିବାପାଇଁ ନ ଆସନ୍ତୁ। ସେଥିଯୋଗୁଁ ସିଂହମାନେ ସାହସିକତା ସହ ସହରର ମୁଖ୍ୟ ଦ୍ୱାର ଆଡ଼କୁ ଚାଲିଲେ। ଝଲସି ଉଠୁଥିବା ତଲବାର ଦ୍ୱାରା ତୁରନ୍ତ ମୃତ ଶରୀରର ସଂଖ୍ୟା ବଢ଼ାଇ ଚାଲିଲେ। ଯିଏ ଦ୍ୱାର ପଟକୁ ଆସୁଥିଲା କିମ୍ବା ଯାଉଥିଲା, ସମସ୍ତେ ସିଂହମାନଙ୍କ ଖଣ୍ଡା ଧାର ଖାଇ ମରିଲେ। କିଛି ସମୟ ମଧ୍ୟରେ ସିଂହମାନେ ସହର ମଧ୍ୟରେ ପ୍ରବେଶ କରିଲେ ଓ କ୍ଷଣକ ମଧ୍ୟରେ ନବାବକୁ ମୁଖ୍ୟ ସ୍ଥାନରେ ଯାଇ ଘେରାଉ କରିଲେ।

ଖାଲସାମାନେ ଅତ୍ୟାଚାରୀମାନଙ୍କ ପ୍ରତି ଖଣ୍ଡା ବଳର ତୋଫାନ ବର୍ଷି ଦେଲେ। ଯେତେ ବଡ଼ ଅତ୍ୟାଚାରୀ, ସେତିକି ବଡ଼ ଦଣ୍ଡ ଦେଲେ। ବର୍ତ୍ତମାନ ବ୍ରାହ୍ମଣ ଓ ଅନ୍ୟ ହିନ୍ଦୁମାନେ କହି କହି ଖୋଜି ଖୋଜି ଅତ୍ୟାଚାରୀମାନଙ୍କୁ ଦେଖାଉଥିଲେ ଓ ଯୁବତୀ ହିନ୍ଦୁ କନ୍ୟାମାନଙ୍କୁ ବାଧ୍ୟତାପୂର୍ବକ ନିଜ ଘରେ ରଖିଥିଲେ। ସମସ୍ତଙ୍କୁ ଯାହାକୁ ଯେମିତି ଦରକାର ସେମିତି ଭାବେ ସିଂହମାନେ ଦଣ୍ଡ ବର୍ଷି ହେଲେ। ଏହି ସଂସ୍କାର କାର୍ଯ୍ୟ କରିବା ପରେ ସିଂହମାନେ ହିନ୍ଦୁ କନ୍ୟାମାନଙ୍କୁ ଏକତ୍ରିତ କରାଇ ସେମାନଙ୍କୁ ଅମୃତ ପାନ କରାଇ ସେମାନଙ୍କୁ ଶୁଦ୍ଧ କରାଇଲେ ଓ ସେମାନଙ୍କ ପରିବାରବର୍ଗଙ୍କୁ ସେମାନଙ୍କ ହାତରେ ଲଙ୍ଗର ପ୍ରସ୍ତୁତ କରାଇ ନିଜେ ଖାଇଲେ ଓ ଖୁଆଇଲେ ଓ ତାହାପରେ ପୁଣି କେବେ କିଏ ଛୁଇଁ ନ ପାରିବ। ଭ୍ରମ-କୁସଂସ୍କାର ମଧ୍ୟରେ ରହିଥିବା ବ୍ରାହ୍ମଣମାନଙ୍କୁ ଜ୍ଞାନ ଦେଇ କହିଲେ- ଯିଏ ଯାହାର ଝିଅ ବୋହୂ ସେମାନଙ୍କୁ ଘରକୁ ନେଇଯାଅ। ଖାଲସାମାନେ ସବୁ ବେଗମମାନଙ୍କଠାରୁ ଗହଣା ବାହାର କରାଇ ସେହି କନ୍ୟାମାନଙ୍କୁ ଦେଲେ। ଏହିପରି ଭାବେ ଜଲ୍ଲାବାଦ ଠାରେ ପରୋପକାର କରିଥିଲେ।

## ସିଂହମାନେ ଭରତପୁରବାସୀଙ୍କୁ ସାହାଯ୍ୟ କରିଥିଲେ

ପାଠକବୃନ୍ଦ ପୂର୍ବରୁ ପଢ଼ିଥିଲେ କି ଅହମ୍ମଦ ଶାହ ଦିଲ୍ଲୀର ନଜୀବଙ୍କର ସାହାଯ୍ୟ ସକାଶେ ଏହିଥର ହିନ୍ଦୁସ୍ତାନକୁ ଆକ୍ରମଣ କରିଥିଲା, ପରନ୍ତୁ ସତ୍‌ଲୁଜ ପାର କରିବାପରେ ତାହାର ସୈନ୍ୟମାନଙ୍କ ମଧ୍ୟରେ ବେମାର ଖେଳିଥିଲା ଓ ଔଷଧ ଚିକିତ୍ସା କରିବା ବଦଳରେ ତାହାର ଶହ ଶହ ସିପାହୀ ଓ ସୈନ୍ୟ ମରୁଥିଲେ। ଦିଲ୍ଲୀ ଠାରୁ ପ୍ରାୟ ୧୦୦ ମାଇଲ ଦୂରରେ ରହି ସେ ନିଜର ସୈନ୍ୟବାହିନୀଙ୍କୁ ଠିକ୍ କରିବାପାଇଁ ଚାହୁଁଥିଲା। ତାପରେ ସେ ଆଗକୁ ବଢ଼ିବାପାଇଁ ଚାହୁଁଥିଲା। ଭରତପୁର ସୈନ୍ୟମାନେ

ଦିଲ୍ଲୀକୁ ଘେରାଉ କରି ରହିଥିଲେ। ସେମାନଙ୍କୁ ଅହମ୍ମଦ ଶାହ ପହଞ୍ଚିବା ଚିନ୍ତା ମଧ୍ୟ ଲାଗିରହିଥିଲା। ସେମାନେ ଅନ୍ୟ ହିନ୍ଦୁ ରାଜାମାନଙ୍କର ସାହାଯ୍ୟ ଇଚ୍ଛା କରୁଥିଲେ। କିନ୍ତୁ କେହି ରାଜି ହୋଇ ନ ଥିଲେ ଓ ମରାଠୀମାନେ ଖୋଲାଖୋଲି କହିଦେଲେ କି ତୁମେମାନେ ଆମର ସାହାଯ୍ୟ କରି ନ ଥିଲ, ସେଥିପାଇଁ ଆମ୍ଭେମାନେ ତୁମମାନଙ୍କ ସାହାଯ୍ୟ କାହିଁକି କରିବୁ ? ଭରତପୁର ରାଜା ନିରାଶ ହୋଇପଡ଼ିଲା। ତାହାକୁ କିଏ ଜଣେ କହିଲା ସିଂହମାନଙ୍କ ସାହାଯ୍ୟ ମାଗ।

ସିଂହମାନେ ସେତେବେଳେ ଦିଲ୍ଲୀ ନିକଟବର୍ତ୍ତୀ ଜଲ୍ଲାବାଦ ଲୁହାରୀ ଠାରେ ରହିଥିଲେ। ଭରତପୁର ରାଜାକୁ ଏହି ପ୍ରସ୍ତାବ ଖୁବ୍ ପସନ୍ଦ ହେଲା ଓ ସେ ସନ୍ଦେଶ ପଠାଇ ସିଂହମାନଙ୍କୁ ଡକାଇଲା। ତାହାପୂର୍ବରୁ ସିଂହମାନେ ତାହାର ସାହଯ୍ୟ ସକାଶେ ସେଠାରେ ପହଞ୍ଚିଥିଲେ।

ଅହମ୍ମଦ ଶାହର ସୈନ୍ୟ ଦଳ ରୋଗଗ୍ରସ୍ତ ହୋଇଥିଲେ। ସେଥିପାଇଁ ସେମାନେ ଥାନେସର ଯାଏଁ ପହଞ୍ଚି ଅଟକିଥିଲେ। ଯେତେବେଳେ ତାହାକୁ ଏହି ଖବର ମିଳିଲା କି ସିଂହମାନେ ଭରତପୁରକୁ ସାହାଯ୍ୟ ପାଇଁ ପହଞ୍ଚିଗଲେ, ସେ ନଜୀବ ଖାଁକୁ ଖବର ପଠାଇଲା କି ତୁମର ସାହଯ୍ୟ ସକାଶେ ମୁଁ ଆସିବି ନାହିଁ, ଯେମିତି ହେଉଛି ହେଉ ତୁ ସମ୍ଭାଳିବୁ। ନଜୀବ ଖାଁ ବଡ଼ ସଙ୍କଟରେ ପଡ଼ିଲା ଓ ଭରତପୁର ରାଜା ପାଖରେ ନତମସ୍ତକ ହୋଇଗଲା। ଲକ୍ଷ ଲକ୍ଷ ଟଙ୍କା କ୍ଷତିପୂରଣ ଭରତପୁର ରାଜାକୁ ଦେଲା।

ଅହମ୍ମଦ ଶାହ ଥାନେସରଠାରୁ ଫେରିଗଲା ଓ ବହୁତ କଷ୍ଟ ଓ ଅସୁବିଧାରେ ଲାହୋର ପହଞ୍ଚିଲା। ସିଂହମାନେ କ୍ରୋଧିତ ହୋଇ ପୁଣି ଅହମ୍ମଦ ଶାହ ସହିତ ସାମନା କରି ତାକୁ ହଇରାଣ କରିଥିଲେ। ପୂର୍ବରୁ ତାହାର ସୈନ୍ୟମାନେ ଅସୁସ୍ଥ ଥିଲେ। ସେଥିଯୋଗୁଁ ଏହିଥର ସେ  ବହୁତ କ୍ଷତି ସହ୍ୟ କରି ଫେରିଥିଲା।

୧୮୨୨ ସମ୍ବତ ବିକ୍ରମୀ ସମୟର ଘଟଣା ଥିଲା, ଯେତେବେଳେ ସିଂହମାନେ ଦୂର ଦୂର ଯାଏଁ ଅଧିକାର କରିଥିଲେ। ଲାହୋର ଓ ସୁଲତାନ ସିଂହମାନେ ଅଧିକାର କରିଲେ। ରୁହତାସ ମଧ୍ୟ ସିଂହମାନଙ୍କ ଅଧୀନରେ ଆସିଗଲା ଓ ଅଟକ ଯାଏଁ ସିଂହଙ୍କ ଶାସନ ଥିଲା।

## ନଜୀବ ଖାଁର ପଞ୍ଜାବ ଆକ୍ରମଣ

ଯେତେବେଳେ ସିଂହମାନେ ପଞ୍ଜାବଠାରେ ସମ୍ପୂର୍ଣ୍ଣ ଭାବେ ସ୍ୱତନ୍ତ୍ର ହୋଇଗଲେ ଶାସନ କରିଲେ, ଦିଲ୍ଲୀର ନଜୀବ ଖାଁ ସିଂହମାନଙ୍କ ସହିତ ବୈରତା ଥିଲା ଯେ ସେମାନେ ଭରତପୁର ରାଜାକୁ ସାହାଯ୍ୟ କରି ମତେ ଅପମାନ କରିଛନ୍ତି। ସେ ପ୍ରସ୍ତୁତ ହୋଇ ୧୮୨୪ ମସିହାରେ ପଞ୍ଜାବ ଆକ୍ରମଣ କରିଥିଲା। କାରଣ ସିଂହମାନେ ଯମୁନା ପାଖାପାଖି ପୂରା ଅଞ୍ଚଳ ଅଧିକାର କରିଥିଲେ। ସେଥିଯୋଗୁଁ ଦିଲ୍ଲୀର ଆକ୍ରମଣ ଯୋଗୁଁ ସିଂହମାନେ ନିଜେ ନିଜେ ଅନ୍ୟ ଅଞ୍ଚଳ ଖାଲି କରିଦେଲେ ଓ ସରହନ୍ଦ ପାଖରେ ଏକତ୍ରିତ ହୋଇ ଶତ୍ରୁଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ।

## ଅହମ୍ମଦ ଶାହର ଦଶମ ଆକ୍ରମଣ

ଅହମ୍ମଦ ଶାହ ସିଂହମାନଙ୍କ ଉପରେ କ୍ରୋଧିତ ହୋଇ ରହିଥିଲା। ସେଥିଯୋଗୁଁ ସେ ମଧ୍ୟ ଦିଲ୍ଲୀ ନବାବ ପାଖକୁ ସାହାଯ୍ୟ କରିବାପାଇଁ ଏକ ଲକ୍ଷ ସିପାହୀ ଓ ପଠାଣ ସୈନ୍ୟବାହିନୀ ବାହନ ସହ ହିନ୍ଦୁସ୍ତାନ ପ୍ରତି ଆକ୍ରମଣ ସକାଶେ ଆସିଗଲେ। ସିଂହମାନଙ୍କୁ ଏହି ଖବର ମିଳିବା ସଙ୍ଗେ ସଙ୍ଗେ ସେମାନେ ଅଞ୍ଚଳ ଛାଡ଼ି ଜଙ୍ଗଲ ଓ ପାହାଡ଼ରେ ଯାଇ ରହିଲେ। ସେମାନେ ସେତେବେଳ ଯାଏଁ ଏହି ନୀତି ଧାରଣ କରିଥିଲେ ସେମାନେ ବଞ୍ଚି ରହିଲେ। ଅହମ୍ମଦ ଶାହର ଏହା ଦଶମ ଥର ଆକ୍ରମଣ ଥିଲା। ସେ ଲାହୋର ଠାରେ ରହି ନିଜ ସୈନ୍ୟମାନଙ୍କୁ ପଠାଉଥିଲା କି ସିଂହମାନଙ୍କୁ ଖୋଜି ଖୋଜି ମାର, ପରନ୍ତୁ ସିଂହମାନେ ନିଘଞ୍ଚ ଜଙ୍ଗଲରେ ରହିଥିଲେ। ସେଥିଯୋଗୁଁ ସେମାନେ କେହି ମଧ୍ୟ ଅହମ୍ମଦ ଶାହର ସୈନ୍ୟବଳ ହାତରେ ଧରା ପଡ଼ୁ ନ ଥିଲେ।

ପଞ୍ଜାବଠାରେ ଅହମ୍ମଦ ଶାହ କିଛି ଦିନ ରହି ନିଜ ତରଫରୁ ପୁଣି ଲାହୋର ଠାରେ ସୁଲତାନର ସୁବାକୁ ଦାୟିତ୍ୱ ଦେଇ ଫେରିଗଲା। ପରନ୍ତୁ କାବୁଲ ପହଞ୍ଚିବା ପରେ ଶୀଘ୍ର ଖବର ପାଇଲା କି ସିଂହମାନେ ଦାୟିତ୍ୱ ଦେଇଥିବା ସୁବାକୁ ନିଜ ଦେଶରୁ ପୁଣି ବାହାର କରିଦେଲେ। ବର୍ତ୍ତମାନ ଏତେ ଶୀଘ୍ର କଣ ଫେରି ଆସିବ। ସିଂହମାନଙ୍କ ବିଜୟ ଖବର ପ୍ରତିଦିନ ମିଳୁଥିଲା। ସିଂହମାନେ ପୁଣି ଦେଢବର୍ଷ ଭଲ ଭାବେ କଟାଇଦେଲେ।

## ଅହମ୍ମଦ ଶାହର ଅନ୍ତିମ ଆକ୍ରମଣ

୧୮୨୬ ମସିହାରେ ଅହମ୍ମଦ ଶାହ ଶେଷ ଥର ଏହା ଭାବିଲାକି ଏହିଥର ନିଶ୍ଚିତରୂପେ ସିଂହମାନଙ୍କ କବଳରୁ ପଞ୍ଜାବ ଅଧିକାର କରିବା ହେବ। ତେଣୁ ଏକାଦଶ ଥର ଆକ୍ରମଣ କରିଲା। ଏହା ତାହାର ଅନ୍ତିମ ଆକ୍ରମଣ ଥିଲା। ଏହିଥର ସେ ଦେଢ଼ଲକ୍ଷ ସିପାହୀ ଓ ବିଦେଶୀ ସୈନ୍ୟବାହିନୀ ବାହନ ସହ ପହଞ୍ଚିଲେ। ସିଂହମାନଙ୍କୁ ଏହି ଖବର ମିଳିଲା। ସେମାନେ ଜଙ୍ଗଲ ଓ ପାହାଡ଼ରେ ଯାଇ ରହିଲେ। ସେମାନେ ଭାବୁଥିଲେ କି ତାହା ସହିତ ଯୁଦ୍ଧ କରି ଆମର ବଳ ନଷ୍ଟ କରିବା ବ୍ୟର୍ଥ କହିବା ଅନୁଚିତ। ଅହମ୍ମଦ ଶାହ ପୁଣି ଖୋଲାଖୋଲି ଭାବେ ଲାହୋର ଅଧିକାର କରିଲା। ଅହମ୍ମଦ ଶାହର ବିଚାର ଥିଲା କି ସିଂହମାନେ କୁଆଡ଼େ ଦିନରାତି ଆକ୍ରମଣ ନ କରନ୍ତୁ। ସେଥିଯୋଗୁଁ ସେ ଲାହୋର ଠାରେ ରହି ଏହାର ପ୍ରତୀକ୍ଷା କରିଲା। ପରନ୍ତୁ ସିଂହମାନେ ଆକ୍ରମଣ କରି ନ ଥିଲେ। ଅହମ୍ମଦ ଶାହ ଲାହୋରର ବନ୍ଦୋବସ୍ତ କରାଇ ଦିଲ୍ଲୀ ଯାତ୍ରା କରିଲା। ଦିଲ୍ଲୀଠାରେ ପହଞ୍ଚି ଏହିଥର ବହୁତ ଅତ୍ୟାଚାର କରିଥିଲା। ନିଜର ସୈନ୍ୟମାନଙ୍କୁ ଆଦେଶ ଦେଲା କି, ଯେମିତି ମନ ଇଚ୍ଛା ଲୁଟିବା ମାରିବା କର। କୌଣସି ପ୍ରତିବନ୍ଧ ନ ଥିବା ଯୋଗୁଁ ଅତ୍ୟାଚାର ଓ ପାପ ସୀମା ଲଘଂନ କରି ବହୁତ ଧନ-ମାନ-ଯୌବନ ସବୁ କିଛି ବରବାଦ କରିଲେ।

## ମହାରାଜା ଅମର ସିଂହ ବନ୍ଦୀମାନଙ୍କୁ ମୁକ୍ତ କରାଇଥିଲେ

ବହୁତ ଲୁଟି ୨୫-୩୦ ହଜାର ଯୁବକ-ଯୁବତୀଙ୍କୁ ଗିଲଜମାନେ (ଗିଲଜର ସିପାହୀ) ବନ୍ଦୀ କରିଲେ। ପୁଣି ନିର୍ଦ୍ଦୟତା ମହାନିର୍ମମ କଷ୍ଟ ସହ କ୍ରନ୍ଦନ ଅବସ୍ଥାରେ ପୂରା ଜୀବନ ଦାସ ଭାବେ ରଖିବା ପାଇଁ ଦିଲ୍ଲୀଠାରୁ ଫେରିଲେ।

ସରହିଁନ୍ଦ ଠାରେ ଅହମ୍ମଦ ଶାହ ବିଶ୍ରାମ କରିଲା, ସେତେବେଳେ ମହାରାଜା ଅମର ସିଂହ ସେ ବାବା ଅଲ୍ଲା ସିଂହଙ୍କ ପୁତ୍ର ଓ ପଟିୟାଲାର ସେତେବେଳେ ମହାରାଜା ଥିଲେ, ସେ ଅହମ୍ମଦ ଶାହ ସହିତ ମିଶିଲେ। ବାଦଶାହ ବହୁତ ଉଦାରତା ସହ ରାଜା ଅମର ସିଂହଙ୍କ ସହିତ ମିଶିଲା। ରାଜା ଅମର ସିଂହଙ୍କୁ ବିଳାପ କରୁଥିବା ଅବଳାଙ୍କ କରୁଣ ଧ୍ୱନି ଶୁଣି ସେ ବହୁତ ବ୍ୟସ୍ତ ହୋଇପଡ଼ିଲେ। ତାଙ୍କର ବିଜ୍ଞତା ଥିଲା କି ସେ ନିଜେ ଲଢ଼ି ଜଣଙ୍କୁ ମଧ୍ୟ ମୁକ୍ତି ଦେଇପାରିବେ ନାହିଁ। ପରନ୍ତୁ ଏମାନଙ୍କୁ ମୁକ୍ତ କରାଇବା ଅତି ଆବଶ୍ୟକ ଥିଲା। ସେଥିଯୋଗୁଁ ମହାରାଜା ଦୁଇଲକ୍ଷ ଟଙ୍କା ଦେଇ

ବନ୍ଦୀମାନଙ୍କୁ ମୁକ୍ତ କରାଇବା ଯୁକ୍ତି ମନରେ ଆସିଲା। ଅହମଦ ଶାହ ଆହୁରି ଦୁଇଲକ୍ଷ ଦାବି କରିଲା। ତାହା ରାଜା ଅମର ସିଂହଜୀ ସେତେବେଳେ ଦେଲେ ଓ ସେହି କପାଳ ମନ୍ଦ ଭାଗ୍ୟକୁ ଦୋଷ ଦେଇ କାନ୍ଦୁଥିବା ସମସ୍ତଙ୍କୁ ବିଦେଶୀ ପାପୀ ଦୁଷ୍ଟଙ୍କ କବଳରୁ ମୁକ୍ତ କରାଇ ନିଜ ଖର୍ଚ୍ଚ ବହନ ସହ୍ୟ କରି ସମସ୍ତଙ୍କୁ ନିଜ ନିଜ ଘରକୁ ପଠାଇଲେ। ସେଥିଯୋଗୁଁ ସେତେବେଳେ ମହାରାଜା ଅମର ସିଂହଙ୍କ ନାମ ହିନ୍ଦୁସ୍ତାନରେ ବନ୍ଦୀ-ଛୋଡ଼ ନାମରେ ପ୍ରସିଦ୍ଧ ଓ ଲୋକପ୍ରିୟ ହୋଇଗଲେ।

ଅହମ୍ମଦ ଶାହ ଲାହୋର ଫେରିଲା। ସିଂହମାନେ ପଛେ ପଛେ ଯାଇ ସେହି ସୈନ୍ୟବାହିନୀଙ୍କୁ ସତ୍‌ଲୁଜ ଓ ବ୍ୟାସ ନିକଟସ୍ଥ ଅଞ୍ଚଳରେ ଭୟାନକ ଯୁଦ୍ଧ ଆରମ୍ଭ କରିଦେଲେ। ବିଦେଶୀ ଦୁଷ୍ଟମାନେ ଶାନ୍ତିରେ ରାତି ନା ଦିନରେ ରହି ପାରିଲେ। ସେଥିଯୋଗୁଁ ବହୁତ କଷ୍ଟରେ ସେହି ବିଦେଶୀ ଶତ୍ରୁମାନେ ବ୍ୟାସ ନଦୀ ପାର ହୋଇଗଲେ, ସିଂହମାନେ ଆହୁରି ଅଧିକ ସଂଖ୍ୟାରେ ଆସି ଆକ୍ରମଣ କରିଦେଲେ। ସିଂହମାନେ ଏହି ପ୍ରସଙ୍ଗରେ ଜିଦ୍ କରି ରହିଲେ କି ନିଜ ଦେଶର ଧନ ଓ ସନ୍ତାନମାନଙ୍କୁ ଏହି ଦୁଷ୍ଟ, ଅତ୍ୟାଚାରୀ ପାପୀ ନିର୍ଦ୍ଦୟୀ ଡାକୁମାନଙ୍କୁ ଏଠାରୁ ପାର ହେବାକୁ ଦେବା ଅନୁଚିତ ଓ ଏଥିଯୋଗୁଁ ଯେତେ କଷ୍ଟ ଉଠାଇବାକୁ ପଡ଼ିବ ସେଥିରେ କୌଣସି ଚିନ୍ତା ଓ ଭୟ ନାହିଁ।

## ଅହମ୍ମଦ ଶାହ ସିଂହମାନଙ୍କ ଉପରେ କ୍ରୋଧିତ ହୋଇ ପୁଣି ପଞ୍ଜାବୀ ଯୁବକ-ଯୁବତୀମାନଙ୍କୁ ବନ୍ଦୀ କରିଲା

ସିଂହମାନେ ଯେଉଁ ପ୍ରକାର ଲୁଟି ଛଡ଼ାଇ, ଝପଟି କରି ଆକ୍ରମଣ କରିବା ଦ୍ୱାରା ଅହମ୍ମଦ ଶାହ ବହୁତ ହଇରାଣ ହୋଇଯାଇଥିଲା। ସେ ବିରକ୍ତ ହୋଇ ପୁଣି ସିଂହମାନଙ୍କ ପଛରେ ପଡ଼ିଲା, କେତେ ସ୍ଥାନରେ ମୁହାଁମୁହିଁ ହୋଇ ଲଢ଼ିଲେ। ବଟାଲେ ପାଖରେ ଭୟାନକ ଯୁଦ୍ଧ ହୋଇଥିଲା ଓ ହଜାର ହଜାର ବିଦେଶୀ ସୈନ୍ୟ ଓ ସିଂହ ସେଠାରେ ମରିଥିଲେ। ସେଠାରେ ବିଦେଶୀମାନେ ଦୁର୍ବଳ ହୋଇ ଭାଗି ଯାଇଥିଲେ। ପରନ୍ତୁ ସେହି ସମୟରେ ଅହମ୍ମଦ ଶାହ ଆହୁରି ସୈନ୍ୟଦଳ ଅଣାଇଲା। କାଶ୍ମୀର ଓ ପେଶବାର ଯାଏଁ ହାକିମ ମାନେ ସେଠାରେ ପହଞ୍ଚିଗଲେ। ସିଂହମାନେ ବଳ ଓ ବୁଦ୍ଧି ନଷ୍ଟ କରିବା ଇଚ୍ଛା ନ କରି ତୁରନ୍ତ ଜଙ୍ଗଲ ମଧ୍ୟରେ ଲୁଚିଗଲେ।

ଅହମ୍ମଦ ଶାହ ସେହି ସମୟରେ ନିଜ ସୈନ୍ୟବଳ ସମୁଦ୍ର ସହିତ ରାବୀ ନଦୀ ପାର କରି ସିୟାଲକୋଟ ଅଞ୍ଚଳରେ ଆସି ପହଞ୍ଚିଗଲା। ସେଠାରେ ବହୁତ ଲୁଟମାର ଅତ୍ୟାଚାର କରିଲା, ନିରୀହ ଓ ନିର୍ଦ୍ଦୋଷୀମାନେ ମରାଯାଉଥିଲେ। ହଜାର ହଜାର ଯୁବକ ଯୁବତୀମାନଙ୍କୁ ଏହି ଅତ୍ୟାଚାରୀମାନେ ପୁଣି ବନ୍ଦୀ କରିଲେ। ତିନିଦିନ ଯାଏଁ ସେହି ପାପୀ ନିଷ୍ଠୁର ନିର୍ଦ୍ଦୟୀ ଦୁଷ୍ଟ ବିଦେଶୀ ସୈନ୍ୟମାନେ ବହୁତ ଲୁଟିଲେ। ସେମାନେ ବିଳାପ କରୁଥିବା ଯୁବକ ଯୁବତୀମାନଙ୍କୁ ବାନ୍ଧି ଗଧ ଉପରେ ବସାଇଲା ଓ ସୈନ୍ୟ ସିପାହୀମାନଙ୍କ ସହ ଶୀଘ୍ର ଶୀଘ୍ର ସେମାନଙ୍କୁ ଆଗକୁ ପଠାଇ କହିଲା ଏମାନଙ୍କୁ ସିଂହମାନଙ୍କ କବଳରୁ ବଞ୍ଚାଇ ଶୀଘ୍ର କାବୁଲଠାରେ ପହଞ୍ଚାଇଦିଅ। କିନ୍ତୁ ସିଂହମାନେ ମଧ ସେତେବେଳେ ନିଷ୍ପତ୍ତି କରିଥିଲେ କି ବନ୍ଦୀମାନଙ୍କୁ ନିଶ୍ଚିତରୂପେ ମୁକ୍ତ କରାଇବ, ଯେତେ ସିଂହ ଶହୀଦ ହୁଅନ୍ତୁ ସେଥିରେ ଚିନ୍ତା ନାହିଁ।

ସିଂହମାନେ ସେତେବେଳେ ସଡ଼କଠାରୁ ବେଶି ଦୂରରେ ନ ଥିଲେ କି ସଡ଼କ ନିକଟ ଗୁପ୍ତଚର ସିଂହମାନଙ୍କୁ ଅତ୍ୟାଚାରୀମାନଙ୍କ କତ୍ତୃତ୍ୱର ଖବର ଦେଲା। ଦୌଡ଼ିଯାଇ ସେ ଶୀଘ୍ର ଖାଲସାମାନଙ୍କୁ ଏହି ଖବର ଶୁଣାଇଲା କି ଆପଣମାନେ ତ ହିନ୍ଦୁସ୍ତାନର ଯୁବକ ଯୁବତୀମାନଙ୍କୁ ଏହି ନିଷ୍ଠୁରଙ୍କ ସହିତ ଯିବା ପାଇଁ ଦେଇ ନ ଥିଲେ କିନ୍ତୁ ବର୍ତ୍ତମାନ ଏ ଦୁଷ୍ଟ ଆମର ପଞ୍ଜାବର ଯୁବକ ଯୁବତୀମାନଙ୍କୁ ନିର୍ମମତା ସହ ନେଇ ଯାଉଛି। ଶୀଘ୍ର କର, ଯଦି ସେମାନେ ଝେଲମ ପାର କରିବେ ତା'ହେଲେ ଆମ ବନ୍ଦୀମାନଙ୍କୁ ମୁକ୍ତି ଦେଇପାରିବା ନାହିଁ।

## ସିଂହମାନେ ବନ୍ଦୀମାନଙ୍କୁ ମୁକ୍ତି ଦେବାପାଇଁ ଭୟାନକ ଯୁଦ୍ଧ କରିଥିଲେ

ନିକଟସ୍ଥ ସିଂହମାନେ ଶୀଘ୍ର ଏକତ୍ରିତ ହୋଇଗଲେ। ନିଷ୍ପତ୍ତି କରାଗଲା କି ଅନ୍ୟ ସିଂହମାନଙ୍କ ପହଞ୍ଚିବା ସକାଶେ ସନ୍ଦେଶ ପଠାଇ, ଯେତେ ଶୀଘ୍ର ହେବ ତୁରନ୍ତ ଆକ୍ରମଣ କରିଦିଅ ଓ ଅହମ୍ମଦ ଶାହର ରାସ୍ତା ଅବରୋଧ କର। ଏଥିଯୋଗୁଁ ସିଂହମାନେ ଅଗ୍ରସର ହୋଇଗଲେ।

ଏହି ସମୟରେ ଅହମ୍ମଦ ଶାହ ପରିବାର ସହିତ ଚିନାବ ନଦୀକୂଳର ଶୀଘ୍ର ପାର ହୋଇଯିବାପାଇଁ ଭାବିଥିଲା। ସେହି ସମୟରେ ତାହାର ସୈନ୍ୟ ଅଳ୍ପ କେତେଜଣ ପାର ହୋଇଥିବେ। ତୁରନ୍ତ ସିଂହମାନେ ଚିନାବ ନଦୀକୂଳରେ ପହଞ୍ଚିଗଲେ। ସବୁ ଯୋଡ଼ାଯୋଡ଼ି ହୋଇ ୧୫-୨୦ ହଜାର ସିଂହଙ୍କ ଦଳ ଯୁଦ୍ଧ କ୍ଷେତ୍ର ପଟକୁ ଅଗ୍ରସର

ହୋଇଗଲେ। ଯୁବକ ଯୁବତୀଙ୍କ କ୍ରନ୍ଦନ ଧ୍ୱନି ଯୋଗୁଁ ସିଂହମାନଙ୍କୁ ବୁଝା ପଡ଼ିଲା ଓ ସେତେବେଳେ ତାହାର ପରିବାର ମଧ୍ୟ ସେହି ପାଖାପାଖି ଥିଲେ। ସିଂହମାନେ ତୁରନ୍ତ ଅରଦାଶ ପ୍ରାର୍ଥନା ସମର୍ପଣ କରି ଅହମ୍ମଦ ଶାହର ପରିବାରର ସୁରକ୍ଷା କର୍ମୀମାନଙ୍କୁ ଆକ୍ରମଣ କରିଦେଲେ। ଅହମ୍ମଦ ଶାହ ଅଧା ଫୌଜଙ୍କ ସହ ପାର ହୋଇଯାଉଥିଲା, ସିଂହମାନଙ୍କ ଆକ୍ରମଣର ଖବର ମିଳିଗଲା। ସେ ତୁରନ୍ତ ସେପଟକୁ ଆସିଲା। ସେ ଭାବିଥିଲା କି, ଅଳ୍ପ ସଂଖ୍ୟକ ସୈନ୍ୟ ବଳ ସହ ସିଂହମାନଙ୍କୁ ଶେଷ କରିଦେବି। କିନ୍ତୁ ବାହାଦୁର, ସାହସୀ, ନିର୍ଭୀକ, ଯୋଦ୍ଧା ସିଂହଙ୍କ ଖଣ୍ଡା ସେତେବେଳେ ଏତେ ଜୋର ଓ ଭୟାନକ ଭାବେ ଚାଲୁଥିଲା କି ପଠାଣ ଓ ଆଫଗାନୀମାନଙ୍କ କହିବା ବାହାରି ଯାଉଥିଲା। ବିଦେଶୀ ଫୌଜମାନଙ୍କ ସେତେବେଳେ ସିଂହମାନଙ୍କ ବାହାଦୁରି ଏମିତି ବର୍ଷା ହୋଇଥିଲା, ଯାହାକୁ ଅଳ୍ପ କେତେ ସିଂହ ପଡ଼ିଥିଲେ କିନ୍ତୁ ବିଦେଶୀମାନଙ୍କ ଶବ ପାହାଡ଼ ହୋଇଗଲା।

ଅହମ୍ମଦ ଶାହ ଅଗ୍ରସର ହେବାପାଇଁ ସାହସ କରିପାରି ନ ଥିଲା। ସେ ଅନ୍ୟପଟକୁ ସବୁ ଫୌଜଙ୍କୁ ଏକ ପଟକୁ ଆସିବାପାଇଁ କହିଲା କିନ୍ତୁ ସିଂହମାନେ ତାହାର ଅବଶିଷ୍ଟାଂଶକୁ ଆସିବାଯାଏଁ ଏତେ ବିଜୁଳି ଭଳି ଖଣ୍ଡା ଚଳାଇ ଯୁଦ୍ଧର ଢଙ୍ଗ ବଦଳାଇଦେଲେ ଓ ପରିବାରଙ୍କୁ ଏହିଥର ଅବଦାଲି ସୈନ୍ୟ କବଳରୁ ମୁକ୍ତ କରାଇଦେଲେ। ସିଂହମାନେ ଏହି କାର୍ଯ୍ୟ ବଡ଼ କୁଶଳତା ସହ କରିଲେ। ଅବଦାଲୀର ଅନ୍ୟ ଫୌଜ ଆସିବା ବେଳକୁ ସିଂହମାନେ ସବୁ ଗଧର ମୁହଁ ପଛକୁ କରି ଚଳାଇଦେଲେ। ଯାଉ ଯାଉ ସବୁ ବନ୍ଦୀମାନଙ୍କ ଶିକୁଳି ଖୋଲିଦେଲେ। ଏହା କେତେଜଣ୍ଡ ସିଂହଙ୍କୁ ନିଯୁକ୍ତ କରାଇଦେଲେ। ପୁଣି ଅବଦାଲୀଙ୍କ ସହିତ ଯୁଦ୍ଧ ସକାଶେ ପ୍ରସ୍ତୁତ ହୋଇଗଲେ। କିନ୍ତୁ ଅହମ୍ମଦ ଶାହକୁ ପରିବାର ସକାଶେ ସିଂହମାନଙ୍କ ସହ ଲଢ଼ିବାପାଇଁ ସାହସ ହୋଇ ନ ଥିଲା ଓ ସୈନ୍ୟମାନଙ୍କୁ ଅନ୍ୟ ପଟକୁ ଫେରାଇବା ପାଇଁ ବାଧ ହୋଇଥିଲା।

## ସିଂହମାନଙ୍କ ପ୍ରସାଦ ଓ କୃପାଣ ଭେଟ କରାଇବା

ସିଂହମାନେ ଦୁଇ ପହରରୁ ଲଢୁଥିଲେ, ସେମାନେ କିଛି ଖାଇ ନ ଥିଲେ। ସେମାନେ ରୁଟି ଖାଇବା ପାଇଁ ସମୟପାଇ ନ ଥିଲେ ସେତିକିବେଳେ ଯଦି ଦୁଷ୍ଟମାନେ ଦୂରକୁ ଚାଲିଯିବେ। ବର୍ତ୍ତମାନ ରୁଟି ପାଣିର ପ୍ରବନ୍ଧ ସକାଶେ ଭାବୁଥିଲେ।

ଏତିକିବେଳେ ଜଣେ ସିଂହ ଆସି ଖବର ଦେଲା ପ୍ରାୟ ଚାରି ମାଇଲ ଦୂରରେ ବିଦେଶୀମାନେ ବହୁତ ଖାଦ୍ୟ ପ୍ରସ୍ତୁତ କରିଛନ୍ତି। ଖାଲସାମାନେ ସେମାନଙ୍କ ଠାରୁ ଅଧିକାର କରିନେବା ଉଚିତ ମନେ କରିଲେ। ତାହା ଖାଲସାମାନଙ୍କ ସକାଶେ ବହୁତ ଥିଲା। ସମସ୍ତେ ଏହି ବିଚାର ସ୍ୱୀକାର କରିଲେ ଓ ଖାଲସାମାନଙ୍କ ଘୋଡ଼ା ସେହି ପଟକୁ ଅଗ୍ରସର ହେଲା। ସେଠାରେ ପଚାଶ ଜଣ ରୋଷେୟା ଓ ଫୌଜୀମାନେ ଥିଲେ। ସନ୍ଧ୍ୟା ସମୟ ଥିଲା ଓ ଅନ୍ଧାର ହୋଇ ଆସୁଥିଲା। ସେହି ଖାଦ୍ୟର ଦାୟିତ୍ୱ ନେବା ସେନାଙ୍କ ପୂରା ପାଖରେ ସିଂହମାନେ ପହଞ୍ଚିଗଲେ। ପୁଣି ଯିଏ ପ୍ରତିରୋଧ କରିଲା ସେଠି ସେମାନଙ୍କୁ ଠିକ୍ କରାଗଲା, ଅନ୍ୟମାନେ ପ୍ରାଣ ବଞ୍ଚାଇ ଚାଲିଗଲେ।

ଏହି ଖାଦ୍ୟ ମିଠା ଓ ଲୁଣି ସ୍ୱାଦିଷ୍ଟ ପଲାଉ ହୋଇଥିଲା। ସେତେବେଳେ ଅରଦାଶ କରି ପ୍ରସାଦ ସମର୍ପଣ କରି କୃପାଣ ଦ୍ୱାରା ସମର୍ପିତ କରାଇ ଦଳପତି ପ୍ରଥମେ ସମସ୍ତ ସିଂହମାନଙ୍କୁ ଖୁଆଇଲେ ଓ ପୁଣି ସେ ସେବନ କରିଲେ। ଅବଶିଷ୍ଟାଂଶ ଗରିବ ଦୁଃଖୀଙ୍କୁ ମଧ ଖୁଆଇଲେ। ଯେଉଁମାନଙ୍କୁ ବିଦେଶୀମାନେ ବାନ୍ଧି ନେଇଯାଉଥିଲେ ସେମାନଙ୍କୁ ମଧ ଖୁଆଇଲେ।

ଏତିକିବେଳେ ବିଦେଶୀ ଦୁଷ୍ଟମାନେ ପାର ହୋଇ ଚାଲିଗଲେ। ସିଂହମାନେ କିଛି ଦୂରକୁ ପହଞ୍ଚି ଡେରା ବାନ୍ଧିଲେ। ପ୍ରାତଃକାଳ ସିଂହମାନେ ପ୍ରଥମେ ଯୁବକ ଯୁବତୀମାନଙ୍କୁ ନିଜ ନିଜ ସ୍ଥାନକୁ ପହଞ୍ଚାଇଲେ। ତାହାପରେ ସିଂହମାନେ ନିଜ ନିଜ ଅଞ୍ଚଳକୁ ଅଧିକାର କରିଲେ।

ଝେଲମ ଓ ଗୁହତାସର ଦୁର୍ଗ ମଧରେ ଅହମ୍ମଦ ଶାହ ୧୦ ହଜାର ସୈନ୍ୟ ଛାଡ଼ିଯାଇଥିଲା, ଯେମିତିକି ସିଂହମାନେ ଏହି ଅଞ୍ଚଳଠାରୁ ଆଗକୁ ବଢ଼ି ନ ପାରିବେ। ପରନ୍ତୁ ଦୁଇ ତିନି ମାସ ପରେ ସେହି ସୈନ୍ୟମାନଙ୍କୁ ମଧ ଉଚିତ ଦଣ୍ଡ ଦେଇ ଦୁର୍ଗକୁ ଅଧିକାର କରିଥିଲେ।

## ଅହମ୍ମଦ ଶାହର ମୃତ୍ୟୁ

ପୂର୍ବରୁ ଯେତେବେଳେ ଅହମ୍ମଦ ଶାହ ବିଜୟ କରିଥିଲା ତାହା ସିଂହମାନଙ୍କ ତେଜ ପ୍ରତାପ ଯୋଗୁଁ ବ୍ୟର୍ଥ ହୋଇଥିଲା। ଏହି ଚିନ୍ତା ବାରମ୍ବାର ତାକୁ ଗ୍ରାସ କରିଦେଲା। ସେ କାବୁଲ ଠାରେ ରୋଗଗ୍ରସ୍ତ ହୋଇ ରହିଲା ଓ ତାହାର ରୋଗ ଦିନକୁ ଦିନ ବଢ଼ିଚାଲିଲା। ତାହାର ନାକର ସାଧାରଣ କ୍ଷତ ଏତେ ବଢ଼ିଗଲା।

ଶେଷରେ ତାହାର ସ୍ୱର ବାହାରୁ ନ ଥିଲା । ୧୮୨୭ ବିକ୍ରମୀ ସମୟ ଅହମ୍ମଦ ଶାହ ଶେଷ ନିଃଶ୍ୱାସ ତ୍ୟାଗ କରିଲା ଓ ତୈମୁର ଶାହ ତାହାର ସ୍ଥାନରେ କାବୁଲର ବାଦଶାହ ହୋଇଥିଲା ।

## ଅହମ୍ମଦ ଶାହର ପୁତ୍ର ତୈମୁର ଶାହର ଆକ୍ରମଣ

ଅହମ୍ମଦ ଶାହର ୧୧ ଜଣ ପୁତ୍ର ମଧ୍ୟରୁ ତୈମୁର ଅହମ୍ମଦ ଶାହର ଜ୍ୟେଷ୍ଠ ପୁତ୍ର । ଅହମ୍ମଦ ଶାହର ମୃତ୍ୟୁ ପରେ ରାଜଗାଦି ସକାଶେ ଭୟାନକ ଯୁଦ୍ଧ ହୋଇଥିଲା । ତୈମୁରର ରାଜ୍ୟ ପ୍ରବନ୍ଧ ବିଷୟରେ ଜ୍ଞାନ ଅଧିକ ଥିଲା । ସେଥିଯୋଗୁଁ ସେ ୭-୮ ଭାଇମାନଙ୍କୁ ମାରିବାପରେ ରାଜଗାଦୀ ପ୍ରାପ୍ତ କରିପାରିଲା । ସେ ତାହାର ପିତାର ଯୁଦ୍ଧ ସମୟରେ ବହୁତ ଥର ସାଥିରେ ରହିଥିଲା ଓ ଲାହୋରର ସୁବା ପଦ ମଧ ପାଇଥିଲା । ସେଥିଯୋଗୁଁ ଅତି କମ୍‌ରେ ପଞ୍ଜାବକୁ ନିଜର ଅଧିକାର କରିବା ଇଚ୍ଛା ଥିଲା; ପରନ୍ତୁ ଶିଖମାନଙ୍କୁ ନିଜ ରାସ୍ତାର କଣ୍ଟା ମନେ କରୁଥିଲା । ସେଥିଯୋଗୁଁ ରାଜ୍ୟ ପ୍ରବନ୍ଧର ଦାୟିତ୍ୱ ନେବା ପରେ ବହୁତ ଦିନ ଯାଏଁ ସେ ପ୍ରସ୍ତୁତ କରି ଚାଲିଲା ।

ବହୁ ଆଡ଼ମ୍ବର ଯୋଗାଡ କରି ୧୮୨୯ ସମ୍ବତ ସମୟରେ ତୈମୁର ପଞ୍ଜାବକୁ ଆକ୍ରମଣ କରିଦେଲା । ୭୦ ହଜାର ଅଶ୍ୱାରୋହୀ ସିପାହୀ ଓ ବହୁତ ତୋପ, ଗୋଳାବାରୁଦ ବନ୍ଧୁକ ସହ ଅଟକ ଠାରୁ ବାହାରି ପଞ୍ଜାବ ସୀମା ଠାରେ ପହଞ୍ଚିଗଲା । ସେତେବେଳେ ସିଂହମାନେ ପୂରା ପଞ୍ଜାବଠାରେ ରାଜ୍ୟ ଶାସନ କରୁଥିଲେ । ଝେଲମ, ଗୁଜରାତ, ସିୟାଲକୋଟ, ଲାହୋର, ମୁଲତାନ ଓ ଅନ୍ୟପଟରେ ସତଲୁଜ ନିକଟବର୍ତ୍ତୀ ଯମୁନା କୂଳ ଯାଏଁ ଶିଖ ସର୍ଦ୍ଦାରଙ୍କ ଅଧୀନତ୍ୱ ଚାଲିଥିଲା । ଯେତେବେଳେ ଶିଖ ଦଳର ସର୍ଦ୍ଦାରଙ୍କୁ ତୈମୁରର ଆଗମନ ଖବର ମିଳିଲା ସେମାନେ ନିଜର ରୀତିମିତ ପ୍ରଣାଳୀ ଅନୁଯାୟୀ ସବୁ ଅଞ୍ଚଳକୁ ଖୋଲାଖୋଲି ଛାଡ଼ିଦେଲେ । ଏହିପରି ଭାବେ ଆସୁଥିବା ସଙ୍କଟରୁ ପ୍ରଥମେ ତ ସାଧାରଣ ଲୋକ ବଞ୍ଚାଇ ଦେଉଥିଲେ ଓ ଦ୍ୱିତୀୟରେ ନିଜେ ମଧ ଏହି ଆକସ୍ମିକ ବିପଦଠାରୁ ଉଦ୍ଧାର ପାଉଥିଲେ ।

ତୈମୁର ଖୋଲା ଦରବାଜ ଲାହୋର ଓ ମୁଲତାନ ଠାରେ ପହଞ୍ଚିଗଲା । ତୈମୁର ପଞ୍ଜାବ ସ୍ଥିରତା ଅଧିକାର କରି ରଖିବା ନିଜର ପିତାର ପଦଚିହ୍ନକୁ ଅନୁସରଣ କରିବା ଇଚ୍ଛାକରୁ ନ ଥିଲା । ଏହିଥର ସେ ଲାହେର ଠାରେ ରହି ନିଜର ସୈନ୍ୟ ଦଳଙ୍କୁ ମଜବୁତ ସଂଗଠନ କରିବାପାଇଁ ବହୁତ ଦୁର୍ଗ ତିଆରି କରାଇଲା ଓ ୫-୧୦

ମାଇଲ ଦୂର ଦୂରରେ ସୈନ୍ୟ ଦଳ ରଖାଇଲା । ଏହି ଯୋଜନା ଦୃଢ଼ କରିଲା । ଆଠ ମାସ ଯାଏଁ ଏହି ଯୋଜନା କରି ପୁଣି ସେ ଲାହୋର ଠାରୁ କାବୁଲ ଫେରିଗଲା ।

ଏହା ଶୁଣିବା ପରେ ସିଂହମାନେ ମଧ୍ୟ ଜଙ୍ଗଲ ଭିତରୁ ବାହାରକୁ ଆସିଲେ । ଏହିଥର ଲାହୋର ଓ ମୁଲତାନ ସକାଶେ ସିଂହମାନଙ୍କୁ ବହୁତ ଯତ୍ନ କରିବାକୁ ପଡ଼ିଥିଲା । ଯେତେବେଳେ ସବୁ ସିଂହ ଦଳ ମିଶି ଆକ୍ରମଣ କରିଲେ ତା'ପରେ ଏହି ସ୍ଥାନ ବିଜୟ କରିଥିଲେ । ତୈମୁରର ପ୍ରବନ୍ଧ ଯୋଗୁଁ ସିଂହମାନେ ଏହି ସ୍ଥାନକୁ ବହୁତ କଷ୍ଟ ଉଠାଇ ପ୍ରାପ୍ତ କରିଥିଲେ ଓ ଏହାକୁ ପ୍ରାପ୍ତ କରିବା ସକାଶେ ୬ ମାସ ସମୟ ଲାଗିଥିଲା ।

## ଦିଲ୍ଲୀ ଦ୍ୱାରା ପୁଣି ପଞ୍ଜାବ ଆକ୍ରମଣ

୧୮୩୦ରେ ଶେଷ ସମୟ ହେଉଥିବା ବେଳେ ଦିଲ୍ଲୀର ନଜୀବ ଖାଁ ସୁଯୋଗ ପାଇ ପଞ୍ଜାବ ଆକ୍ରମଣ କରିଦେଲା । ସେ ତୈମୁରର ସେନାବାହିନୀଙ୍କୁ ସାହାଯ୍ୟ ଦେବା ଓ ନେବା ଚାହୁଁଥିଲା; କିନ୍ତୁ ସିଂହମାନେ ଏହି ସମୟରେ ସଫଳତା ପାଇସାରିଥିଲେ । ସେ ଯମୁନା ପାର କରି ସିଂହମାନଙ୍କର ବହୁତ ଅଞ୍ଚଳ ଅଧିକାର କରିନେଲା । ଏହା ଦେଖି ସିଂହମାନେ ମୁହାଁମୁହିଁ ହେବାପାଇଁ ଥାନେସର ଠାରେ ମିଶିଲେ । ପଟିଆଲା, ନାଭା, ଜୀନ୍ଦ ଇତ୍ୟାଦି ଫୁଲକୀୟା ସିଂହର ଦଳ ଓ ସତ୍‌ଲୁଜ ଅନ୍ୟପଟ ଦୋଆବ ଓ ମାଝେଠାରେ ସିଂହମାନେ ଏକତ୍ରିତ ହୋଇଗଲେ । ସେଠାରେ ନଜୀବ ଖାଁର ସୈନ୍ୟମାନଙ୍କ ସହ ସିଂହମାନଙ୍କର ଖୁବ୍ ସଂଘର୍ଷ ହୋଇଥିଲା । ପରନ୍ତୁ ସେତେବେଳର ସିଂହମାନଙ୍କର ଶକ୍ତି ସାମର୍ଥ୍ୟ ନିକଟରେ ଛିଡ଼ା ହେବା ବିଚାରା ନଜୀବ ଖାଁ ପାଖରେ ଶକ୍ତି କେଉଁଠି ଥିଲା ? କେବଳ ଦୁଇଘଣ୍ଟାର ସଂଘର୍ଷ ଦିଲ୍ଲୀ ସୈନ୍ୟମାନଙ୍କ ଗୋଡ଼ ଘୋଷାରି ଦେଲା ଓ ସିଂହମାନଙ୍କର ବିଜୟ ହୋଇଥିଲା ।

## ଦିଲ୍ଲୀକୁ ଅଧିକାର କରିବା ଓ ସିଂହମାନଙ୍କର ମତଭେଦ

ଦିଲ୍ଲୀ ସୈନ୍ୟବଳଙ୍କୁ ତଡ଼ି ସିଂହମାନେ ସେଠାରେ ରହି ନ ଥିଲେ, ଆହୁରି ସେମାନଙ୍କ ପିଛା କରିଲେ । ତା' ସହିତ ସେମାନଙ୍କୁ ତଡ଼ି ଚାଲିଲେ ଓ ଅନ୍ୟାନ୍ୟ ଅଞ୍ଚଳ ଅଧିକାର କରି ଚାଲିଲେ । ଆଗରେ ଖୁରଜା, ମେରଠ ତଥା ଅନ୍ୟ ବହୁତ ସ୍ଥାନ ସିଂହମାନେ ଅଧୀନସ୍ଥ କରିଲେ ଓ ପୁଣି କୌଣସି ପ୍ରକାର ବାଧା ବ୍ୟତୀତ

ସାଧାରଣ ଝଗଡ଼ା ଲଢ଼େଇ ସହ ଦିଲ୍ଲୀଠାରେ ପହଞ୍ଚିଗଲେ। ପରନ୍ତୁ ଦୁଃଖର ବିଷୟ ପରସ୍ପର ମତଭେଦ ଯୋଗୁଁ ଦିଲ୍ଲୀ ସିଂହମାନଙ୍କ ଅଧୀନରେ ରହି ନ ଥିଲା।

ଇତିହାସରେ କୁହାଯାଇଛି କି, କେତେକ ଶିଖ ଦଳର ସରଦାରମାନେ ସ.ଜସ୍ସା ସିଂହ ଆହଲୁବାଲିଆଙ୍କୁ ଦିଲ୍ଲୀର ରାଜଗାଦିରେ ବସାଇଦେଲେ। ତାହା ଦେଖି ନବାବ କପୂର ସିଂହଜୀ ନିଜ ଅଞ୍ଚଳର ପନ୍ଥର ଦଳପତି ଭାବେ ସ୍ୱୀକାର କରାଇଲେ। ପରନ୍ତୁ ଏହି ବିଷୟ ସ.ଜସ୍ସା ସିଂହ ରାମଗଢ଼ ପକ୍ଷର ସିଂହମାନଙ୍କୁ ଖରାପ ଲାଗିଲା ଓ ସେମାନେ ରାମଗଡ଼ର ସରଦାରଙ୍କୁ ରାଜଗାଦିରେ ବିରାଜମାନ କରାଇବାକୁ ଚାହୁଁଥିଲେ।

ମତଭେଦ ବଢ଼ିଗଲା ଓ ପରିଣାମ ଏପରି ହେଲା, ଯାହାକି ଦୁଇପକ୍ଷ ମରିବା ପାଇଁ ପ୍ରସ୍ତୁତ ହୋଇଗଲେ। ଏହା ସେଖି ସ.ଜସ୍ସା ସିଂହ ଆହଲୁବାଲିଆ ଘୋଷଣା କରିଦେଲେ କି ମୁଁ ଏହି ଭାଇ-ନାଶକ ଗାଦିର ଉତ୍ତରାଧିକାରୀ ହେବା ପାଇଁ ପ୍ରସ୍ତୁତ ନୁହଁ। ଏହାପରେ ରାମଗଡ଼ର ସର୍ଦ୍ଦାର ମନା କରିଦେଲେ ଓ ବିନା ଯୁଦ୍ଧ ଲଢ଼ାଇ ସହ ପ୍ରାପ୍ତ କରିଥିବା ଦିଲ୍ଲୀ ଖାଲି ଛାଡ଼ି ସିଂହମାନେ ପୁଣି ନିଜ ନିଜ ସ୍ଥାନକୁ ଚାଲିଗଲେ।

## ତୈମୁରର ଦ୍ୱିତୀୟ ଆକ୍ରମଣ

ତୈମୁର ପ୍ରାୟ ଆଠମାସ ଲାହୋର ଠାରେ ରହି ଭବିଷ୍ୟତରେ ସମ୍ପୂର୍ଣ୍ଣ ଭାବେ ପଞ୍ଜାବ ଅଧିକାର ରଖିବା ପାଇଁ ବହୁତ ଶିବିର ଓ ଦୁର୍ଗ ସ୍ଥାପନା କରିଥିଲା, ପରନ୍ତୁ ସିଂହମାନେ ମଧ୍ୟ ବହୁତ କଷ୍ଟ ଓ ପରିଶ୍ରମ ହୋଇ ମଧ୍ୟ ତାହାର ସମସ୍ତ ଶକ୍ତି ଖଣ୍ଡନ କରିଦେଲେ ଓ ଏହି ଖବର ଶୁଣି ତାହାର କ୍ରୋଧ ବଢ଼ିଗଲା। ସେଥିଯୋଗୁଁ ସେ ନିଜକୁ ଠିକ୍ ଭାବେ ସଜାଡ଼ି ୨ବର୍ଷ ପରେ ୧୮୩୧ ସମୟରେ ପଞ୍ଜାବକୁ ପୁଣି ଆକ୍ରମଣ କରିଥିଲା। ସିଂହମାନେ ପୁଣି ଦୂରେଇ ଗଲେ ଓ ଲାହୌର୍ ମୁଲତାନ ପୁଣି ଖୁଲ ଦରବାଜା ଅଧିକାର କରିଲେ।

## ଶହୀଦମାନଙ୍କ ଦଳ ଯୁଦ୍ଧ କରିଥିଲେ

ଏହିଥର ଅନ୍ୟ ଦଳ ସମସ୍ତେ ପଛକୁ ହଟିଗଲେ। ପରନ୍ତୁ ବହୁତ ସିୟାଲକୋଟ ଅଞ୍ଚଳକୁ କାବିଜ ଶହୀଦ ଦଳର ସଭ୍ୟମାନେ ନିଷ୍ପତ୍ତି ନେଲେ କି ଆମ୍ଭେ କେତେଦିନ ଯାଏଁ ଲୁଚି ଛପି ନିଜର ଅଞ୍ଚଳ ଛାଡ଼ି ଜଙ୍ଗଲରେ ରହିବା ? ଏହିଥର ଲଢ଼ିବାପାଇଁ

ବିଚାର କରିଲେ। ଏହି ଦଳର ୮ ହଜାର ସିଂହ ଥିଲେ। ସେମାନେ ସବୁ ସିଂହମାନଙ୍କୁ କହିଦେଲେ। ଯାହାର ଯିବାପାଇଁ ଇଛା ସେ ଚାଲିଯାଉ ଓ ଯାହାର ଇଛା ସେ ରହୁ। ଯିଏ ଆମ୍ଭମାନଙ୍କ ସହିତ ଶହୀଦ ପ୍ରାପ୍ତ କରିବାପାଇଁ ଚାହୁଁଛ ସେମାନେ ଆମ ସହିତ ରୁହ। ପରନ୍ତୁ କେହି ଫେରିଲେ ନାହିଁ। ୮କୁ ୮ ହଜାର ସିଂହ ଶହୀଦ ନଚେତ୍ ବିଜୟପ୍ରାପ୍ତି ସକାଶେ ଅରଦାଶ ସମର୍ପି ଦେଲେ। ନିଜକୁ ସମର୍ପଣ କରିଦେଲେ।

ତୈମୁର ଲାହୋରଠାରେ ରହିଥିବା ବେଳେ ତାକୁ ଖବର ମିଳିଲା କି, ତୁମର ଅଞ୍ଚଳ ସିୟାଲକୋଟ ସିଂହମାନେ ଅଧିକାର କରି ଉପଭୋଗ କରୁଛନ୍ତି, ସେମାନେ ତୁମକୁ ଡରି ଯାଇ ନାହାନ୍ତି। ତାହା ଶୁଣି ସେ ୨୦ ହଜାର ସୈନ୍ୟଙ୍କୁ ସିୟାଲକୋଟ ତରଫକୁ ଆକ୍ରମଣ କରିବା ପାଇଁ ହୁକୁମ ଦେଲା।

ଜଙ୍ଗଲ ପାଖାପାଖି ଘୂରି ବୁଲୁଥିବା ସିଂହମାନଙ୍କୁ ଶହୀଦ ଦଳଙ୍କ ଏହି ନିଷ୍ପତ୍ତି ବିଷୟରେ ଖବର ମିଳିଲା। ସେମାନେ ମଧ୍ୟ ସେହି ସିଂହମାନଙ୍କ ସହିତ ମିଶିଲେ। ତା'ପରେ ସିଂହମାନଙ୍କ ସଂଖ୍ୟା ପ୍ରାୟ ଦଶହଜାର ହୋଇଗଲା ଓ ଆସୁଥିବା ଫୌଜଙ୍କ ଆକ୍ରମଣ ସକାଶେ ଶହୀଦ ଦଳ ସିଂହମାନେ ସିୟାଲକୋଟ ଠାରୁ ୪ ମାଇଲ ପାଖରେ ଆସୁଥିବା ସୈନ୍ୟଙ୍କ ରାସ୍ତା ଅବରୋଧ ପାଇଁ ଦଳବଦ୍ଧ ହୋଇ ରାସ୍ତା ବନ୍ଦୀ କରାଇଲେ ଓ ସେଠାରେ ରହିଲେ।

ଆସୁଥିବା ସମୟରେ ଏହି ଖବର ବିଦେଶୀ ସୈନ୍ୟମାନଙ୍କୁ ଦୂରରୁ ମିଳିଗଲା। ସେମାନେ ୪ ହଜାର ସୈନ୍ୟଙ୍କୁ ଆଗରେ ପଠାଇଦେଲେ କି ତୁରନ୍ତ ଯାଇ ସେମାନଙ୍କ ଦଳ ଭାଙ୍ଗି ନଷ୍ଟ କର। ସିଂହମାନେ ନିଜ ଅଞ୍ଚଳ ଖାଲି କରି ଚାଲିଯାଉଥିବା କାରଣ ଯୋଗୁଁ ସାଧାରଣ ଭାବେ ପ୍ରତୀତ ହେଉଥିଲା କି ସିଂହମାନେ ଆସି ଆମ ସହିତ ଲଢ଼ି ପାରୁ ନାହାନ୍ତି।

## ଭୟାନକ ଯୁଦ୍ଧରେ ବିଦେଶୀମାନଙ୍କ ପରାଜୟ

ଲୁଟ, ମାର ଇତ୍ୟାଦି ବହୁତ ହୋଇଥିବା ସତ୍ତ୍ୱେ ଏହି ଦୁରାନୀ ସୈନ୍ୟ ଚାହୁଁଥିଲେ କି ଆମେ ପ୍ରଥମେ ପହଞ୍ଚି ସିଂହମାନଙ୍କୁ ମାରି ସିୟାଲକୋଟ ଲୁଟି ନେବା। ଲୁଟ ମାର କରିବା, ସେତେବେଳର ସୈନ୍ୟମାନଙ୍କୁ ବହୁତ ଲାଳସା ଥିଲା ଓ ସେହି ଦୈତ୍ୟ ଆକାରର ଦୁରାନୀ ସୈନ୍ୟମାନଙ୍କୁ ଲୁଟପାଟ କରିବା ଜନ୍ମଗତ ଅଭ୍ୟାସ

ଥିଲା । ସେମାନେ ବହୁତ ନିର୍ଦ୍ଦୟୀ ଓ ଅତ୍ୟାଚାରୀ ଥିଲେ । ଯେତେବେଳେ ଏହି ୪ ହଜାର ସୈନ୍ୟ ପହଞ୍ଚିଗଲେ, ସେତେବେଳେ ସିଂହଙ୍କ ସଂଖ୍ୟା ଅଧିକ ଥିଲା। ସେଥିପାଇଁ ସେମାନେ ଅଧିକ ଜୋର ଦେଇ ସେମାନଙ୍କ ଉପରେ ଚଢ଼ାଉ କରିଲେ। ଫେରିବାବେଳେ ଅଟକିଗଲେ। ଯୁଦ୍ଧ ଭୟାନକ ହୋଇଥିଲା ଓ ସିଂହ ଶୂରବୀର ଯୋଦ୍ଧାମାନେ ଜୀବନ ମୂର୍ଚ୍ଛି ଦେଇ ଯୁଦ୍ଧ କରିଚାଲିଲେ।

ସେତେବେଳେ ବାବା ନଥା ସିଂହଜୀ ଓ ୫ ହଜାର ତୁର୍କୀ ସର୍ଦ୍ଦାର ସହିତ ପ୍ରାଣ ମୂର୍ଚ୍ଛା କରି ଯୁଦ୍ଧ କରିଥିଲେ ଓ ବାବାଜୀଙ୍କ ଦ୍ୱାରା ସେ ମରିଗଲା। ପୁଣି ଦୁଇଦଳ ମଧ୍ୟରେ ଖୁବ୍ ଯୁଦ୍ଧ ହୋଇଥିଲା। ଏହି ସମୟରେ ତୈମୁର ପଠାଇଥିବା ୧ ୨ ହଜାର ସୈନ୍ୟ ସାହାଯ୍ୟ ପାଇଁ ପହଞ୍ଚିଗଲେ। ସେହି ଫୌଜର ସର୍ଦ୍ଦାର ଅତ୍ତାଉଲ୍ଲା ନାମକ ଜଣେ ଜରନୈଲ ଥିଲା। ତାହାର ଫୌଜ ଏକ ପଟକୁ ରହି ସିଂହଙ୍କ ବିରୋଧରେ ଭୟାନକ ଯୁଦ୍ଧ କରିଥିଲା। ଏହି ଆକ୍ରମଣ ସିଂହମାନଙ୍କୁ ନିରାଶ କରାଇଦେଲା ଓ ବହୁତ ସିଂହ ଶହୀଦ ହୋଇଗଲେ। ଏହା ଦେଖି ବାବା ଦୟାଲ ସିଂହଜୀ କେତେଜଣ ସିଂହଙ୍କ ସହିତ ତୁରନ୍ତ ତାହାର ନିକଟରେ ପହଞ୍ଚିଗଲେ ଓ ସେହି ସର୍ଦ୍ଦାର ଅର୍ତ୍ତାଉଲ୍ଲାକୁ ଲଲକାର କରି କହିଲେ ଆ' ମୋ ସହିତ ଲଢ଼ିବୁ। ସେହି ୧ ୨ ହଜାରର ସର୍ଦ୍ଦାର ଥିଲା ଓ ସେ ଲୁହା ସାଞ୍ଜୁ ସହିତ ତୁବି ରହିଥିଲା।

ଅନ୍ୟ ଯୋଦ୍ଧାମାନଙ୍କୁ ଦୂରେଇ ଦୁଇ ଶୂରବୀର ଧର୍ମଯୁଦ୍ଧ କରିଥିଲେ। ଗୋଟା ଖାସି (ଛେଳି) ଖାଇଯିବା ଯୁବକ ଦୁରାନୀକୁ ନିଜର ନୂଆ ଯୌବନର ଶକ୍ତି ବୃଦ୍ଧି ବିଜୟ ପ୍ରାପ୍ତିର ଖୁବ୍ ଅଭିମାନ ଥିଲା ଓ ସେହି ବିଚାର ରଖି ସେ ଭାବୁଥିଲା କି ଏହି ବୁଢ଼ା ଶିଖକୁ ମୁଁ ବହୁତ ଶୀଘ୍ର ମାରିଦେବି, ପରନ୍ତୁ ବାବା ଦୟାଲ ସିଂହଜୀ ଜୀବନ ସାରା ଯୁଦ୍ଧ ଓ ଲଢ଼ାଇ ସହିତ ସମୟ କଟାଇଦେଇଛନ୍ତି। ସେ ଧନୁଶର ବିଦ୍ୟା ପ୍ରବୀଣ ଥିଲେ ଓ ସୃଷ୍ଟି ଯୁଦ୍ଧ ତଥା ମଲ୍ଲ ଯୁଦ୍ଧରେ ଯୋଦ୍ଧା ଥିଲେ। ସେଥିଯୋଗୁଁ ପଠାଣମାନଙ୍କୁ ଅତିଶୀଘ୍ର ବୁଝାପଡ଼ିଲା କି ସେମାନଙ୍କ ହିସାବ ଜଣେ କୁଶଳ ଗୁରୁ ସହିତ ହୋଇଗଲା।

ବହୁତ ସମୟ ଯୁଦ୍ଧ ଚାଲିଲା। ପରନ୍ତୁ କେହି ପରାସ୍ତ ହୋଇପାରୁ ନ ଥିଲେ। ଜଣେ ଅନ୍ୟର ତୀର ଅଟକାଇ ଆହ୍ୱାନ କରାଇ ଲଢ଼ି ଚାଲିଥିଲେ। ଏହା ଦେଖି ବାବା ଦୟାଲ ସିଂହ ଜୀ ରାମ ଜଂଗେ (ବନ୍ଧୁକ)ରେ ଠିକ୍‌ଠାକ୍ ବାରୁଦ ଭରିଲେ। ସୁଯୋଗ ପାଇ ସିଂହ ଜୀ ଦୁଗାଡ଼ା ଖାଁର ଘୋଡ଼ାପଟକୁ ଛାଡ଼ିଦେଲେ। ପବନ ଭଳି

ଦୌଡୁଥିବା ଘୋଡ଼ାର ମୁଣ୍ଡରେ ଲାଗିଲା ଓ ଘୋଡ଼ା କଚାଡ଼ି ହୋଇଗଲା ଓ ସେ ତଳେ ପଡ଼ିଗଲା ।

ଘୋଡ଼ା ପଡ଼ିଯିବା ପରେ ବିଚରା ଖାଁ ମଧ୍ୟ କଚାଡ଼ି ହୋଇଗଲା ଓ ତାହାର ଗୋଡ଼ ତଳେ ଖାଁ ଦବିଗଲା । ଖାଁ ବାହାରିବାପାଇଁ ଚେଷ୍ଟା କରୁଥିଲା, ତୁରନ୍ତ ବାବା ଦୟାଲ ସିଂହ ଘୋଡ଼ାରୁ ଓହ୍ଲାଇ ତାହାର ମସ୍ତକ ନିକଟରେ ପହଞ୍ଚି ଆଖି ପିଛୁଳାକେ ଖାଁର ମୁଣ୍ଡକୁ କଖାରୁ କାଟିଲା ଭଳି ଅଲଗା କରିଦେଲେ ।

ଘଣ୍ଟେ ଦେଢ଼ଘଣ୍ଟା ଲଢ଼ାଇ ସମୟରେ ସିଂହମାନଙ୍କର ନିଃଶ୍ୱାସ ଆସିଯାଇଥିଲା, ଯେତେବେଳେ ବାବାଜୀଙ୍କ ବିଜୟ ହୋଇଗଲା ସିଂହମାନେ ଉତ୍ସାହିତ ହୋଇଗଲେ । ସେହି ଯୁଦ୍ଧ ସାଧାରଣ ଯୁଦ୍ଧ ନ ଥିଲା ଯଦି ସର୍ଦ୍ଦାର ମରିଯାଏ ନଚେତ୍ ଭାଗିଯାଏ, ତାହେଲେ ସୈନ୍ୟମାନେ ରଣଭୂମି ତ୍ୟାଗ କରି ଚାଲିଯାଆନ୍ତି । ଜରନୈଲର ସାହସ ଓ ବାହାଦୁରି ବୁଦ୍ଧିମତା ଉପରେ ବିଜୟ ନିର୍ଭର ହୋଇଥାଏ । ଶାହ ମହମ୍ମଦକୁ ମଧ୍ୟ ଏହି କାରଣ ଯୋଗୁଁ ଶିଖ ଫୌଜଙ୍କ ହାରିଯିବା ନଜର ଆସିଥିଲା । ସେ ଲେଖିଥିଲା-

ଶାହ ମୁହମ୍ମଦା ଇକ ସରକାର ବାଝେଁ,
ଫୌଜେଁ ଜିତ କେ ଅଂତ ନୁ ହାରିଆଁ ନେ ।

ସେଥିଯୋଗୁଁ ଏହି ଅବସ୍ଥା ବିଦେଶୀ ଜରନୈଲ ଅତାଉଲ୍ଲା ମାରିବା ପରେ ହୋଇଥିଲା । ସେ ମରିବା ପରେ ଏକାଥରକେ କ୍ରୋଧିତ ହୋଇ ବିଦେଶୀ ସିଂହମାନଙ୍କ ଉପରେ ଆକ୍ରୋଶିତ ହୋଇପଡ଼ିଲା କିନ୍ତୁ ଏହି କାର୍ଯ୍ୟରେ ସିଂହମାନେ କେବେ ଆଳସ୍ୟ ଦେଖାଇ ନ ଥିଲେ । ସେମାନେ ଦେଖାଯାଉଥିବା ବିଜୟ ଉଲ୍ଲାସ ଯୋଗୁଁ ଦୁଇ ଚାରିଗୁଣ ଉତ୍ସାହିତ ହୋଇଥିଲେ ଓ ତୁରନ୍ତ ଦୁରାନୀ ପଠାଣମାନଙ୍କର ମନୋବଳ ଭାଙ୍ଗିଲା, ସାହାସ ହରାଇଦେଲେ ଓ ଏମିତି ଅବସ୍ଥାରେ ସିଂହମାନେ କେବେ କାହାକୁ ଛାଡନ୍ତି ? ଜୟ ଜୟକାରର ଆକାଶ କମ୍ପନ କରାଇ 'ୟାହ ଅଲ୍ଲୀ' ସ୍ୱରକୁ ଦବାଇ ଦେଲେ ଓ ଭାଗି ଯାଉଥିବାଙ୍କୁ ଅଟକାଇ ଖୁବ୍ ଶାସ୍ତି ଦେଲେ, ଯେଉଁ ସଂଖ୍ୟା ବଞ୍ଚିଥିଲେ, ଯୁଦ୍ଧ ସମୟରେ ମରିନଥିଲେ, ଭାଗିବା ସମୟରେ ମରିଗଲେ । ଏହି ଯୁଦ୍ଧ ସମୟରେ ଶହୀଦୀ ଦଳର ବାବା ଦୟାଲ ସିଂହଜୀ ତଥା ଅନେକ ସିଂହ ମଧ୍ୟ ଶହୀଦ ହୋଇଥିଲେ, କିନ୍ତୁ ଏକାଥରକେ ପଠାଣମାନଙ୍କ ଗର୍ବ ଅହଙ୍କାର ଚୂର ଚୂର କରି ନଷ୍ଟ କରିଥିଲେ ।

## ସିଂହମାନଙ୍କର ସବୁଠାରୁ ବଡ଼ ଯୁଦ୍ଧ: ଜମାନ ଶାହର ଆକ୍ରମଣ

ଯେତେବେଳେ ତୈମୁରର ସୈନ୍ୟ ବଳ ସିୟାଲକୋଟ ଯୁଦ୍ଧରେ ପରାସ୍ତ ହୋଇଗଲେ, ସେମାନଙ୍କ ମନୋବଳ ଭାଙ୍ଗିଗଲା। ୩୨ ହଜାର ଯାଇଥିବା ସୈନ୍ୟବଳ ୧୦ ହଜାର ମଧ୍ୟ ଫେରିନଥିଲେ। ତାହା ଦେଖି ତାହାର ହୃଦୟ କେମିତି ସାନ୍ତ୍ୱନା ଦେଇଥାନ୍ତା। ପୁଣି ପ୍ରସିଦ୍ଧ ଜରନୈଲ ଯାହା ଉପରେ ଏତେ ଦୃଢ ବିଶ୍ୱାସ ଥିଲା, ସେମାନେ ସମସ୍ତେ ଏହି ଯୁଦ୍ଧରେ ମରିଗଲେ ଓ ଶହୀଦୀ ଦଳର କର୍ତ୍ତୃତ୍ୱ ଯୋଗୁଁ ଅନ୍ୟ ସିଂହମାନଙ୍କ ମନୋବଳ ଏତେ ବଢ଼ାଇଦେଲା , ସେମାନେ ସ୍ଥାନ ସ୍ଥାନରେ ତୈମୁରର ସୈନ୍ୟମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବା ଆରମ୍ଭ କରିଦେଲେ। ଏହି ପରିସ୍ଥିତି ଦେଖି ତୈମୁର କାବୁଲ ଫେରିଗଲା। ସେଠାରେ ପହଞ୍ଚି ଦୁଇ ମାସ ପରେ ସେ ଯମପୁରକୁ ଚାଲିଗଲା। ତାହା ପରେ ତାହାର ପୁତ୍ର  ଜମାନ ଶାହ କାବୁଲର ରାଜସିଂହାସନ ଗ୍ରହଣ କରିଲା। ଲୁଟିବା ଧନରେ ପାଳନ ପୋଷଣ ହୋଇଥିବା ମାନେ ଲୁଟିବା କେମିତି ଛାଡ଼ିପାରିବେ । ସେଥିଯୋଗୁଁ ସେ ସିଂହାସନ ଗ୍ରହଣ କରିବା ପରେ ତୁରନ୍ତ ତାହାର ନଜର ପଞ୍ଜାବ ଓ ହିନ୍ଦୁସ୍ତାନ ପ୍ରତି ଲାଳାୟିତ ହୋଇଥିଲା। ପରନ୍ତୁ ପଞ୍ଜାବଠାରେ ସ୍ଥିର ହୋଇ ରହିଥିବା ଓ ତାହାର ପିତା, ଜେଜେଙ୍କ ହଜାର ଚେଷ୍ଟା ସତ୍ତ୍ୱେ ଅଧୀନସ୍ଥ ହୋଇନଥିବା ସିଂହ ଯେତେବେଳେ ତାହାର ଧ୍ୟାନରେ ଆସନ୍ତି, ସେ ଚିନ୍ତିତ ହୋଇ ପଡ଼େ ଭାବେ, ଏମାନେ ରହିଥିବାବେଳେ ନା ମୁଁ ପଞ୍ଜାବ ଅଧିକାର କରିପାରିବି ନା ମୁଁ ଆଗକୁ ବଢ଼ିପାରିବି। ତଥାପି ସେ ପଞ୍ଜାବ ଆକ୍ରମଣ କରିବା ଯୋଗୁଁ ପ୍ରସ୍ତୁତ ଆରମ୍ଭ କରିଦେଲା।

## ଜମାନ ଶାହର ଆକ୍ରମଣ

ଜମାନ ଶାହ ବହୁତ ପ୍ରବନ୍ଧ କରି ଦେଢ଼ ଲକ୍ଷ ଗିଲଜ ସୈନ୍ୟଙ୍କ ସହ ସମ୍ଵତ ୧୮୩୨ ସମୟରେ ପଞ୍ଜାବକୁ ଆକ୍ରମଣ କରିଥିଲା। ପୃଥିବୀ କମ୍ପିଗଲା, ଧୂଳି ଆକାଶକୁ ଘୋଡ଼ାଇ ଦେଲା। ଯାହାର ଧନ୍ଦା ଲୁଟିବା-ମାରିବା ଓ ଫୌଜ ବଳ ବେଳେ ଲୁଟିବା ମାରିବା ହୋଇଥାଏ, ତାହାଠାରୁ ଦୟା ଓ ସତ୍କର୍ମର ଆଶା କ'ଣ କରାଯାଏ ? ସେଥିଯୋଗୁଁ ଜମାନ ଶାହର ସୈନ୍ୟ ବାହିନୀ ଗାଁ ଗାଁରେ ପଶି ଘରଦ୍ୱାର ଜାଳିପୋଡ଼ି ଲୁଟିବା ଆରମ୍ଭ କରିଦେଲେ। ଦେଶରେ ହା ହା କାର ହୋଇଗଲା। ସିଂହମାନେ

ନିଜ ଅଞ୍ଚଳ ଛାଡ଼ିଦେଲେ ଓ ଜମାନ ଶାହ ମାର କାଟ ଲୁଟି କରି ଖୁଲେ ଦରବାଜ ଲାହୋର ଠାରେ ପହଞ୍ଚିଲା।

ଏକ ବର୍ଷ ପାର ହୋଇଗଲା, ଜମାନ ଶାହ ଫେରିବା ନାଁ ନେଉନଥାଏ। ଗିଲଜ ଓ ଆଫଗାନୀ ଦୁରାନୀ ସୈନ୍ୟମାନେ ଦେଶବାସୀଙ୍କୁ ନାକରେ ପାଣି ପିଆଇ ଦେଲେଣି।

ଯାହାକୁ ଇଚ୍ଛା ତାକୁ ମାରିଦେଉଥିଲେ। ଯାହାକୁ ଇଚ୍ଛା ତାହାକୁ ଲୁଟି ଦେଉଥିଲେ। ଅଞ୍ଚଳକୁ ଅଧିକାର କରିବା ବିଚାର ଜମାନ ଶାହର ଫୌଜମାନଙ୍କୁ ଖୋଲା ସୁଯୋଗ ମିଳିଥିଲା। ଏହିପରି ଭାବେ ଜମାନ ଶାହର ଇଚ୍ଛା ପୂରା ହେଉ ନ ଥିଲା। ଗଜନୀ ଅଞ୍ଚଳରେ ତାହାର ବିରୋଧରେ ଆନ୍ଦୋଳନ ହୋଇଗଲା। ସେଥିଯୋଗୁଁ ସେ ସେଠାର ପ୍ରବନ୍ଧ କରିବା ପାଇଁ ଚାଲିଗଲା, କିନ୍ତୁ ତାହାର ପୁତ୍ର କୁରାନ ଶାହର ଦାୟିତ୍ୱରେ ପ୍ରାୟ ଲକ୍ଷେ ସୈନ୍ୟଙ୍କୁ ଦେଇଗଲା।

ସିଂହମାନେ ଯେତେବେଳେ ଦେଖିଲେ କି ବିଦେଶୀ ଫୌଜ ସେଠାରୁ ଫେରିବା ନାମ ନେଉ ନାହାନ୍ତି। ସେମାନେ ଏକାଠି ହୋଇ ବିଚାର କରିଲେ ବର୍ତ୍ତମାନ କ'ଣ କରାଯିବ। ପୁଣି ସେମାନେ ଜଙ୍ଗଲ ବାହାରକୁ ଆସି ଦେଖିଲେ, ପରିସ୍ଥିତି ବଡ଼ ଦୁଃଖଦାୟୀ ନଜର ଆସିଲା। ସିଂହମାନଙ୍କ ଶକ୍ତି ଓ ଦୃଢ ବିଶ୍ୱାସ ଯୋଗୁଁ ହିନ୍ଦୁମାନେ ମୁଣ୍ଡ ଉଠାଇ ଚାଲୁଥିଲେ ଓ ସୁଖରେ ଜୀବନଯାପନ କରୁଥିଲେ, ପରନ୍ତୁ ପୁଣି ବହୁତ ଦୁଃଖ ଓ ନିର୍ଯାତିତ ହେଉଛନ୍ତି ଓ ମୁସଲମାନ ହାକିମମାନେ ଯେଉଁ ମାନଙ୍କୁ ସିଂହମାନେ ଦବାଇ ରଖିଥିଲେ, ସେମାନେ ପୁଣି ଅସୁର ଶକ୍ତି ଦେଖାଇ ଚାଲିଲେ। ଏହି ପରିସ୍ଥିତି ଦେଖି ସିଂହମାନେ ଦେଶର ସଙ୍କଟ ପରିସ୍ଥିତି ସହ୍ୟ କରିପାରିଲେ ନାହିଁ ଓ ସେହି ଅତ୍ୟାଚାରକୁ ଦୂର କରିବା ପାଇଁ ଅମୃତସରଠାରେ ଏକତ୍ରିତ ହେବା ପାଇଁ ଯୋଜନା କରିଲେ।

## ଖାଲସାଙ୍କ ଏକତ୍ରିତ ଓ ଯୁଦ୍ଧ ଲଢ଼ିବା ପ୍ରସ୍ତାବ

ଗିଲଜମାନଙ୍କ ଏକତ୍ରିତ ହେବା ସ୍ଥାନ ସେତେବେଳେ ଲାହୋର ପାଖାପାଖି ଥିଲା। ସେଥିଯୋଗୁଁ ସିଂହମାନେ ଧୀରେ ଧୀରେ ଅମୃତସର ଠାରେ ଏକତ୍ରିତ ହେଲେ। ଦେଶର ଦୁର୍ଦ୍ଦଶା ଘଟଣା ପ୍ରତି ବିଚାର ବିମର୍ଶ ହେଲା, ଯୁଦ୍ଧ କରିବା ବିଷୟରେ ସମସ୍ତଙ୍କ ମତ ଏକ ନ ଥିଲା। ଅଧିକାଂଶଙ୍କ ବିଚାର ଥିଲା କି ଆକସ୍ମିକ ଯୁଦ୍ଧ

ଆମ୍ଭମାନଙ୍କ ସକାଶେ ଲାଭଜନକ, ପରନ୍ତୁ କେତେକଙ୍କ ବିଚାର ଥିଲା, ଯଦି ଆମ୍ଭେ ଏହି ରାଜ୍ୟର ଅଧୀନତ୍ୱ କରି ଶାସନ କରିବା, ତାହେଲେ ଆମ୍ଭେ ରଣକ୍ଷେତ୍ର ଠାରେ ଶତ୍ରୁ ମାନଙ୍କ ସହିତ ସମ୍ମୁଖୀନ ହୋଇ ଉଚିତ ଦଣ୍ଡ ଦେଇ ଅଧିକାର ଆଣିବା। କ'ଣ ଆମ୍ଭେମାନେ ସେତେବେଳେ ଶତ୍ରୁ ମୁକ୍ତ ହୋଇଯିବା ? ଯଦି ଶତ୍ରୁ ନିଜର ନୀତି ବଦଳାଇ ଦିଅନ୍ତି ତା'ହେଲେ ଆମ୍ଭେମାନେ ଆମ ପୁରୁଣା ନୀତି ଛାଡ଼ିବାକୁ ପଡ଼ିବ। ଯେତେବେଳେ ଏହିପରି ଭାବେ ସମସ୍ତ ଦଳପତିଙ୍କ ଥଣ୍ଡା-ଗରମ ଯୁକ୍ତି ଚାଲିଥିଲା, ନିଷ୍ପତ୍ତି ନ ଥିଲା, ସେତେବେଳେ ସରଦାର ଜସ୍ସା ସିଂହ ଆହଲୁବାଲିୟା, ସମସ୍ତ ସିଂହଙ୍କୁ ସମ୍ବୋଧନ କରି କହିଲେ, - ଖାଲସାଜୀ, ପରସ୍ପର ମଧ୍ୟରେ ଲଢ଼ିବା ଠିକ୍ ନୁହଁ, ଆସ ମହାରାଜଙ୍କ ହୁକୁମ ନିଅ। ଯଦି ହୁକୁମର ଇସାରା ଲଢ଼ାଇ ପ୍ରତି ଅଛି, ତାହେଲେ ସମସ୍ତେ ଲଢ଼ାଇ ପାଇଁ ପ୍ରସ୍ତୁତ ହୋଇଯିବା ଉଚିତ। ମୁହାଁମୁହିଁ ଯୁଦ୍ଧ କରିବା, ଯଦି ନାହିଁ ତା'ହେଲେ ପୁଣି ଓ୍ୱାହେଗୁରୁ କହି ଆକସ୍ମିକ ଯୁଦ୍ଧ କରିବା।

ସମସ୍ତଙ୍କୁ ଏହି ପ୍ରସ୍ତାବ ବହୁତ ପସନ୍ଦ ଲାଗିଲା। ସତ୍‌ଗୁରୁଙ୍କ ପ୍ରତି ସମ୍ପୂର୍ଣ୍ଣ ଓ ଦୃଢ଼ ଭରସା ବିଶ୍ୱାସ ରଖିବା ସିଂହମାନେ ସେତେବେଳେ ଜୟକାର ଧ୍ୱନି ଛାଡ଼ିବା ଆରମ୍ଭ କରିଦେଲେ, ତାହା ଜଗତ-ଜ୍ୟୋତି, ଗୁରୁବାଣୀ ସ୍ୱରୂପ ସତ୍‌ଗୁରୁ, ଶ୍ରୀ ଗୁରୁ ଗ୍ରନ୍ଥ ସାହିବଙ୍କ ହଜୁର, ହରିମନ୍ଦିର ସାହିବ ଠାରେ ସମସ୍ତ ସିଂହ ପହଞ୍ଚି ଏକତ୍ରିତ ହୋଇଗଲେ। ବଡ଼ ପ୍ରସନ୍ନତା ସହ କଡା ପ୍ରସାଦର ଭୋଗ ପାଇଁ ସମସ୍ତ ସରଦାରଙ୍କ ତରଫରୁ ପହଞ୍ଚିଲା। ତା'ପରେ ସିଂହ ସାହିବ ଭାଇ ଚଞ୍ଚଳ ସିଂହଜୀ ମହାରାଜଙ୍କ ହୁକୁମ ନେଲେ -

"ଥିରୁ ଘରି ବୈସହୁ ହରି ଜନ ପ୍ୟାରେ ।।
ସତ୍‌ଗୁରି ତୁମରେ କାଜ ସବାରେ।।
ଦୁଷ୍ଟ ଦୂତ ପ୍ରମେସରି ମାରେ।।
ଜନ କୀ ପୈଜ ରଖି କର ତାରୈ।।"

ପଞ୍ଚମ ଗୁରୁ ମହାରାଜଜୀ ଶ୍ରୀ ଗୁରୁ ଅର୍ଜୁନ ଦେବଜୀଙ୍କ ଏହି ଦୂତ ଦୁଷ୍ଟଙ୍କୁ ନିବାରଣ କରିବା ହୁକୁମ ବାଣୀ ଶୁଣି ସିଂହମାନଙ୍କ ଉତ୍ସାହ ବଢ଼ିଗଲା। ତା'ପରେ ସମୂହ ନିଷ୍ପତ୍ତି ନିଆଗଲା କି ଆକ୍ରମଣ ଶୀଘ୍ର କରାଯାଉ, ଡେରି କିମ୍ବା ଆଳସ୍ୟ ଅନୁଚିତ।

ଏତିକି ବେଳଯାଏଁ ସିଂହଙ୍କ ସଂଖ୍ୟା ୪ଲକ୍ଷ ଠାରୁ ଅଧିକ ଥିଲେ, ପରନ୍ତୁ ଯୋଦ୍ଧା, ତନ-ମନ ସହ ପ୍ରସ୍ତୁତ ୬୦-୭୦ ହଜାର ପାଖାପାଖି ଥଲେ। ସବୁ ଦଳର ସରଦାର - ନିଜ ନିଜ ସୈନ୍ୟ ବଳ ସହ ଚାଲିଗଲେ।

କୁରାନ ଶାହକୁ ଲାହୋର ଠାରେ ଏହି ଖବର ପହଞ୍ଚିଲା। ସେ ତୁରନ୍ତ କାବୁଲ ସନ୍ଦେଶ ପଠାଇଲା, ସେଠାରେ ସୈନ୍ୟମାନଙ୍କୁ ଏକତ୍ରିତ କରାଇଲା, ସିଂହମାନେ ଲାହୋର ଠାରେ ପହଞ୍ଚି ନ ଯାଆନ୍ତି।

ସିଂହମାନେ ଗୋଟିଏ ଯୋଜନା ପ୍ରସ୍ତୁତ କରାଇଲେ, କି ଲାହୋରକୁ ଏକତରଫା ଛାଡ଼ି ପ୍ରଥମେ ଗୁଜରା ବାଲେ ପଟକୁ ଚାଲିଗଲେ ଓ କାବୁଲଠାରେ ଆସୁଥିବା ବିଦେଶୀ ସୈନ୍ୟବଳଙ୍କୁ ରାସ୍ତାରେ ଅଟକାଇ ଦେବା। ଲାହୋରର ଦୁରାନୀ ପଠାଣଙ୍କ ସୈନ୍ୟବାହିନୀଙ୍କ ସହିତ ମିଶିବା ପାଇଁ ଦେବା ନାହିଁ, ଏମାନଙ୍କ ବଳ ପୁଣି ପରେ ଦେଖିବା।

ଜମାନ ଶାହ ବିଶେଷ ସନ୍ଦେଶ ପାଇବା ଯୋଗୁଁ କାବୁଲ ଅନିଚ୍ଛା ସତ୍ତ୍ୱେ ଚାଲିଗଲା, କିନ୍ତୁ ସେ ବହୁତ ସଂଖ୍ୟାର ଫୌଜଙ୍କୁ ଯିବା ବେଳେ ରୁହତାସର ଦୁର୍ଗଠାରେ ଛାଡ଼ି ଯାଇଥିଲା ଓ ସେମାନଙ୍କ ଦାୟିତ୍ୱ ମୀର ସାଂହଚୀକୁ ଦେଇଥିଲା। ସେ ତାହାର ସୈନ୍ୟବଳର ମୁଖ୍ୟ ଜରନୈଲ୍ ଥିଲା। ସେ ତୋପ ଭଣ୍ଡାରର ଅଧିନାୟକ ଥିଲା ଓ ପ୍ରସିଦ୍ଧ ନାମ ଯୋଗୁଁ ତାହାକୁ 'ମୀରିଆତିଶ'ର ଉପାଧି ଅହମ୍ମଦ ଶାହ ପ୍ରଦାନ କରିଥିଲା। କାବୁଲଠାରେ ଯେତେବେଳେ ସନ୍ଦେଶ ପହଞ୍ଚିଲା, ଜମାନ ଶାହ ଆହୁରି କେତେଜଣ ସୈନ୍ୟଙ୍କୁ ପଠାଇଲା ଓ ମୀର ସାଂହଚୀକୁ ନିଜର ସୈନ୍ୟବାହିନୀ ସହ ଆଗୁଆ ଚାଲି ଯିବା ପାଇଁ ହୁକୁମ ପଠାଇଲା।

ଏହି ସମୟରେ ସିଂହମାନେ ଚିନାବ ପାରି ହୋଇ ଗୁଜରାତ ପାଖରେ ଦଳବଦ୍ଧ ହୋଇ ଏକତ୍ରିତ ହୋଇଗଲେ। ସେପଟରୁ ସାଂହଚୀ ଅଗଣିତ, ଔଷଧ, ଖାଦ୍ୟସାମଗ୍ରୀ, ଯୁଦ୍ଧସାମଗ୍ରୀ, ତୋପ ବନ୍ଧୁକ ଅସ୍ତ୍ରଶସ୍ତ୍ର ସହିତ ଲକ୍ଷ ପାଖାପାଖି ଫୌଜ ଏକାଠି କରି ଝେଲମ କୂଳରେ ପହଞ୍ଚିଗଲା।

## ମୀର ସାଂହଚୀ ସହିତ ଭୀଷଣ ଯୁଦ୍ଧ

ଏହା ପ୍ରଥମ ଯୁଦ୍ଧ ଥିଲା, ସୁନିଶ୍ଚିତ ଭାବେ ଓ ମରିବା ପଣ କରି ସାରିଥିଲା। ମୀର ସାଂହଚୀ ୨୦ହଜାର ଫୌଜଙ୍କୁ ପ୍ରଥମେ ହରିୟାବଳ ଦଳ ଅଭିମୁଖେ

ସିଂହମାନଙ୍କ ପଟକୁ ପଠାଇଲା । ସିଂହମାନଙ୍କ ସହ ସେମାନେ ଗୁଜରାତଠାରେ ସଂଘର୍ଷ କରିଥିଲେ, ପରନ୍ତୁ ଏହି ସୈନ୍ୟବଳ ଯୁଦ୍ଧ ମନୋଭାବ ନ ରଖି ପ୍ରାଣ ବଞ୍ଚାଇ ଦୌଡ଼ିବା ଆରମ୍ଭ କରୁଥିଲେ । ସେତେବେଳେ ପଛରୁ ସାଂହଟୀ ନିଜର ପୂରା ସୈନ୍ୟ ବଳ ସହ ସେଠାରେ ପହଞ୍ଚିଲା ଓ ଭୟାନକ ଯୁଦ୍ଧ ଚାଲିଲା ।

ସିଂହମାନେ ବାହାଦୁରି ସହ ଲଢ଼ିଲେ, ମରିଲେ ମଧ ବହୁତଙ୍କୁ ମାରିଲେ, ପରନ୍ତୁ ଅଳ୍ପ ସଂଖ୍ୟା ହେବା ଯୋଗୁଁ ଓ ଯୁଦ୍ଧ ସାମଗ୍ରୀ କମ୍ ଥିବା ଯୋଗୁଁ ବହୁ ସଂଖ୍ୟାରେ ମରିଗଲେ, ସେଥିଯୋଗୁଁ ସିଂହମାନେ ପଛକୁ ହଟିଥିଲେ, ପଠାଣମାନେ ହଜାର ହଜାର ତୋପ, ବନ୍ଧୁକ, ଯୁଦ୍ଧ ସାମଗ୍ରୀ ଓଟ ଉପରେ ଲଦିଥିଲେ । ଯାହାର ଗୁଳି ଓ ବନ୍ଧୁକ ସିଂହମାନଙ୍କୁ ନିରାଶ ଓ ନିରସ୍ତ୍ର କରାଇ ଦେଲା । ବର୍ତ୍ତମାନ ପଠାଣ ସର୍ଦ୍ଦାର କିଳିକିଳା ରାବ ଛାଡୁଥିଲେ ଓ ସିଂହମାନେ ସର୍ଦ୍ଦାରମାନେ ଲଲକାର ସହ ରଣଭୂମିରେ ରହୁଥିଲେ । ଏହି ପରିସ୍ଥିତି ଦେଖି ସିଂହମାନେ ଛନ୍ନଛତ୍ର ହୋଇଗଲେ । ବହୁତ ସର୍ଦ୍ଦାର ଦୁଃଖୀ ହୋଇଗଲେ କି, ଆମର କଥା କେହି ଶୁଣିଲେ ନାହିଁ । ରଣଭୂମିରେ ଅସ୍ତ୍ରଶସ୍ତ୍ର ବ୍ୟତୀତ ତୋପ, ବନ୍ଧୁକ ହୀନ ହୋଇ ବିଜୟ ପ୍ରାପ୍ତ ବାବା ବେଦୀ ରାମ ସିଂହଜୀ ଶହୀଦମାନଙ୍କ ଦଳର ସିଂହମାନଙ୍କ ଏହିପରି ଦୁଇପଟର ବିଚାର ଦେଖି ସେ କ୍ରୋଧିତ ହୋଇଗଲେ । ସେ କହିଲେ ଖାଲସାଜୀ ଦେଖିନିଅ, ଏହି ସମୟ ଯୁଦ୍ଧକ୍ଷେତ୍ରର ହରଣ ହୋଇଯିବା ବିଚାର ଆଣିବ ନାହିଁ । ମନେରଖ ! ଏହି ଲକ୍ଷ ଲକ୍ଷ ସଂଖ୍ୟାର ପଠାଣ ସୈନ୍ୟମାନେ ତୁମମାନଙ୍କୁ ଭାଗିବା ଅବସ୍ଥାରେ ଛାଡିବେ ନାହିଁ ଓ ଏହି ଆଦରଣୀୟ ପଞ୍ଜାବରେ ପୁଣି ତୁମକୁ କେହି ପଶିବା ପାଇଁ ଦେବେ ନାହିଁ । ହେ ଖାଲସାମାନେ ! ଗୁରୁ ମହାରାଜଙ୍କ ନିକଟରେ ଅରଦାଶ (ପ୍ରାର୍ଥନା) ମନେ ପକାଅ । ଆସ ମନୋବଳ ବଢ଼ାଅ, ଆସ ମୁଁ ଆଗରେ ଯାଉଛି ଓ ତୁମେମାନେ ମୋର ପଛେ ପଛେ ଆସ । ପଠାଣ ଦଳ ମଧ୍ୟରେ ପଶି ସେମାନଙ୍କୁ ଧ୍ୱଂସ କର ଓ ତୋପ ମଝିରେ ପଶି ଯୁଦ୍ଧ କର ।

ଏହା କହି ବାବା ବେଦୀ ରାମ ସିଂହଜୀ ପ୍ରାର୍ଥନା (ଅରଦାଶ) କରିଲେ ଓ ସଜାଇ ରଖିଥିବା ଘୋଡ଼ାକୁ ପବନ ଭଳି ଦୌଡ଼ାଇଲେ । ପଛରେ ଅନ୍ୟ ସିଂହମାନେ ଅକାଳ ଅକାଳ କରି ଦୌଡ଼ିଲେ । ମାଇଲ ଯାଏଁ ସ୍ଥାନରେ ପଠାଣମାନଙ୍କ ତୋପର ମୁଣ୍ଡ ତଳକୁ ଥିଲା । ତାହାକୁ ସିଂହମାନେ ଏକ ଦୁଇ ମିନିଟ ମଧ୍ୟରେ ଘୋଡ଼ା ପାର କରାଇଦେଲେ । କଣ ଥିଲା, ଓଟ ଉପରେ ରଖାଯାଇଥିବା ଅସ୍ତ୍ରଶସ୍ତ୍ର ଓ ତୋପର

ଅବଶିଷ୍ଟାଂଶଙ୍କୁ ବର୍ଚ୍ଛା ସହ ଶିକାର କରିଦେଲେ ଓ (ଲମ୍ବା ବାଡ଼ିର ମୁହଁରେ ମୁନିଆ ଅସ୍ତ୍ର) ଓ ପୁଣି ତଲବାର ଚଳାଇ ବାକିମାନଙ୍କୁ ବିନାଶ କରି ଚାଲିଲେ। ସେତେବେଳର ପଠାଣ ସୈନ୍ୟମାନଙ୍କ ଶକ୍ତି, ବଳ ଓ ବହୁ ସଂଖ୍ୟାର ଥିଲା। ଏକା-ଏକା, ଦୁଇ-ଦୁଇ, ଓ ଚାରି-ଚାରି ହୋଇ କେତେକ ସ୍ଥାନରେ ଲଢ଼ିବା ଆରମ୍ଭ ହୋଇଗଲା, କିନ୍ତୁ ଗୋଡ଼-ହାତର ଯୁଦ୍ଧରେ ଅଳ୍ପ ସମୟ ମଧ୍ୟରେ ସିଂହମାନେ ଆଗକୁ ବଢ଼ି ଚାଲିଲେ। ଆଗକୁ ଯାଇ ଲଢୁଥିବା ବିଦେଶୀ ପଠାଣ ଶୀଘ୍ର ଶୀଘ୍ର ସିଂହମାନଙ୍କ ତଲବାରର ଶିକାର ହୋଇଗଲେ। ଏହିଥର ଏହିପରି ଭାବେ ସିଂହମାନେ ବିଦେଶୀ ପଠାଣମାନଙ୍କୁ ନିରାଶ କରାଇଥିଲେ।

## ବାବା ରାମ ସିଂହଜୀଙ୍କ ଶହୀଦ ପ୍ରାପ୍ତ

ନିଜ ଫୌଜ ବଳଙ୍କ ଦୁର୍ବଳତା ଓ ନିରାଶତା ଦେଖି ମୀର ସାହଟୀ ପଛରୁ ନିଜେ ନୂଆ ବଳର ଫୌଜଙ୍କ ସହ ଆଗକୁ ବଢିଲା। ସେ ନିଜେ ଯୁଦ୍ଧର ଦାୟିତ୍ୱ ନେଲା। ସମୁଦ୍ର ଭଳି ଆଗକୁ ବଢ଼ି ଚାଲିଥିବା ବିଦେଶୀ ପଠାଣ ସୈନ୍ୟ ବଳ ସହ ବାବା ରାମ ସିଂହଜୀଙ୍କ ଖୁବ୍ ସଂଘର୍ଷ ହୋଇଥିଲା। କାରଣ ସେ ସ୍ୱୟଂ ସବୁ ସିଂହମାନଙ୍କ ନେତୃତ୍ୱ କରୁଥିଲେ। ବାବା ରାମ ସିଂହଜୀ ବହୁତ ଲଢିଥିଲେ। ବହୁତ ବିଦେଶୀ ପଠାଣଙ୍କୁ ମାରିଲେ ଓ ଆଗକୁ ଆଗକୁ ବଢ଼ିଚାଲିଲେ। କିନ୍ତୁ ଶେଷରେ ଶତ୍ରୁଙ୍କ ବନ୍ଧୁକର ଗୁଳି ଓ ତୀର ଦ୍ୱାରା ଛେଦି ହୋଇଗଲେ। ଖଣ୍ଡ ଖଣ୍ଡ ଅବସ୍ଥାରେ ରଣଭୂମିରେ ଶହୀଦମାନେ ମିଳିଲେ। ଅନ୍ୟ ସିଂହମାନେ ମଧ୍ୟ ବହୁତ ସଂଘର୍ଷ କରିଥିଲେ। ହଜାର ହଜାର ସିଂହ ଏହି ସମୟରେ ଶହୀଦ ପ୍ରାପ୍ତ କରିଥିଲେ।

ବର୍ତ୍ତମାନ ସାଧାରଣ ସିଂହମାନେ ପୁଣି ରଣଭୂମି ତ୍ୟାଗ କରି ହରଣ ହୋଇଯିବା ଯୋଜନା କରିଲେ। ପରନ୍ତୁ ସେତେବେଳର ଦଳପତି ସିଂହମାନଙ୍କୁ ତ୍ୟାଗ କରିବାପାଇଁ ଚାହିଁନଥିଲେ। ଦଳପତି ବାବା ରାମ ସିଂହଜୀଙ୍କ ଶହୀଦକୁ ଅନ୍ୟଥା ହେବାକୁ ଚାହୁଁନଥିଲେ ଓ ସେହି ବାକ୍ୟ ବାଣରୁ ବଞ୍ଚିବାକୁ ଚାହୁଁଥିଲେ କି ବାବାଜୀଙ୍କୁ ମରାଇ ଦଳପତି ଆପଣ ରାଗି ଚାଲିଗଲେ। ସେଥିଯୋଗୁଁ ଦଳ ଭାଙ୍ଗି ହୋଇଯାଉଥିବା ସିଂହମାନଙ୍କୁ ଘୋଡ଼ାକୁ ଦୌଡ଼ାଇ ଭଗାଇ ଦଳପତି କହିବାକୁ ଲାଗିଲେ-

"ହେ ଖାଲସାମାନେ! ଦେଖିନିଅ, ସିଂହମାନଙ୍କ ଲାଜ ରଖ। ମହାରାଜଙ୍କ ବାକ୍ୟକୁ ମନେ ପକାଅ, ସେ ଏହି ଦୁଷ୍ଟଙ୍କୁ ମାରିବା ପାଇଁ ଅବଶ୍ୟ ଆମର ସାହାଯ୍ୟ

କରିବେ। ଆସ ସମସ୍ତେ ମିଶି ଏକତ୍ରିତ ହୋଇ ଏହିଥର ଆକ୍ରମଣ କରି ଶତ୍ରୁଙ୍କୁ ମାରିଚାଲିବା।

ଏହାପରେ ଦଳପତି କେତେକ ସିଂହମାନଙ୍କ ସହ ଲଢ଼ାଇବା ବ୍ୟସ୍ତ କରାଇଦେଲେ ଓ ନିଜେ ଗୋଟିଏ ପଟକୁ ଯାଇ ୫ଜଣ ପ୍ୟାରୋଙ୍କୁ ବାଛି ଅରଦାଶ କରାଇଲେ - ଦୁଷ୍ଟ ଦମନ ଚୂଡ଼ାମଣୀ ଧାରୀ ପାତଶାହ! ଏହି ସଙ୍କଟ ସମୟରେ ପନ୍ଥର ନେତୃତ୍ୱ ଓ ସହାୟତା କର। ସେଥିଯୋଗୁଁ କୃପା କର। ଆପଣଙ୍କ ହୁକୁମ ଅନୁସାରେ ଓ ଆଦର୍ଶ ଅନୁସାରେ ଏହି ସମୟ ଖାଲସା ପନ୍ଥ ଅତ୍ୟାଚାରୀ ଓ ଅନ୍ୟର ଅଧିକାର ଛଡ଼ାଇ ନେଉଥିବାମାନଙ୍କ ସହିତ ଯୁଦ୍ଧ କରିବାପାଇଁ, ଏହାର ବିଜୟ ପ୍ରାପ୍ତ ବରଦାନ ଦିଅ ଓ ଅଙ୍ଗସଙ୍ଗ ହୋଇ ସହାୟତା କର।

ଅରଦାଶର ବିଳମ୍ବ ଥିଲା, ଖାଲସା ଦଳଙ୍କ ମଧ୍ୟରେ ଆପେ ଆପେ ଉତ୍ସାହିତ ହୋଇ ଅଗ୍ରସର ହେଲେ।

ଖାଲସା ଜୀ! ଅଳସ ହୁଅ ନାହିଁ, ବର୍ତ୍ତମାନ ବିଜୟ ତୁମ ହାତରେ, ଏହିଥର ଆକ୍ରୋଶିତ ହୋଇ ଶତ୍ରୁଙ୍କ ଉପରେ ଚଢ଼ାଉ କର।

ନିର୍ମଳ ମନର ଅରଦାଶ କେବେ ଖାଲି ଯାଏ ନାହିଁ। ଏହି ଗୁଞ୍ଜରିତ ସିଂହମାନଙ୍କ ଆତ୍ମାରେ ଗୁଞ୍ଜିରିତ ହୋଇ ଚାଲିଲା। ପଡ଼ିଉଠି ଯାଉଥିବା ମନରେ ଉଲ୍ଲାସ ଖେଳି ଚମତ୍କାର ହୋଇଗଲା।

## ସାଂହଚୀର ମୃତ୍ୟୁ

ବର୍ତ୍ତମାନ ସିଂହ ସର୍ଦ୍ଦାର ବହୁତ ଚମତ୍କାର ଓ ଫୂର୍ତ୍ତି ଥିଲେ। ବହୁତ ଶୀଘ୍ର ସିଂହମାନଙ୍କୁ ଉତ୍ସାହିତ କରାଇ, ଅଚାନକ ତଲବାର ଶୁଆଇ ଶତ୍ରୁଦଳ ମଧ୍ୟରେ ପଶିଗଲେ ଓ ସେମାନେ ବିଜୟ ଆଶା ସହ ଆଗକୁ ବଢି ବଢି କିଳିକିଳାରାବ ମାରି ଚାଲିଥିବା ଗିଲଜ ପଠାଣଙ୍କ ହାତ ମୋଡ଼ି ପକାଇଲେ। ସକାଳୁ ଏହି ଯୁଦ୍ଧ ଚାଲିଥିଲା ଓ ସନ୍ଧ୍ୟା ସମୟ ହେବାକୁ ଯାଉଥିଲା। ଏତିକି ସମୟରେ ଅଗଣିତ ସିଂହ ଓ ପଠାଣ ମରି ଚାଲିଥିଲେ ଓ ବିଶେଷ ଭାବେ ଦୁରାନୀମାନଙ୍କ ସବୁ ସର୍ଦ୍ଦାର ମୀର ସାଂହଚୀ ବ୍ୟତୀତ ସିଂହମାନେ ଜଣ ଜଣଙ୍କୁ ଗୋଟିଏ ଗୋଟିଏ କରି ସମାପ୍ତ କରିସାରିଥିଲେ। ପରନ୍ତୁ ମୀର ସାଂହଚୀ, ଫୌଜଙ୍କ ସବୁଠାରୁ ବଡ଼ ସେନାପତି (ଜରନୈଲ) ବର୍ତ୍ତମାନ ସୁଦ୍ଧା ହାତୀ ଉପରେ ସବାର ହୋଇ ଫୌଜଙ୍କୁ ଲଢ଼ାଉଥିଲା। ସେଥିଯୋଗୁଁ ଗିଲଜ

ଦୁରାନୀମାନେ ଉତ୍ସାହିତ ହୋଇ ଲଢୁଥିଲେ। ଏହା ଦେଖି ଭାଇ ଥରାଜ ସିଂହଜୀ ନିଜର ରାମ-ଜଂଗେ (ବନ୍ଧୁକ)କୁ ଉଠାଇଲେ ଓ ଦୁଇଟି ଗୁଳି ଭର୍ତ୍ତି କରି ବର୍ଚ୍ଛାକୁ ଖୁବ୍ ଠିକ୍ କରାଇଲେ। ଭାଇ ଥରରାଜ ସିଂହଜୀ ଘୋଡାକୁ ଉତ୍ତେଜିତ କରାଇ ବର୍ଚ୍ଛା ମୁନରେ ଶତ୍ରୁଙ୍କ ମଧ୍ୟରେ ପଶି ସାଂହଟୀ ନିକଟରେ ପହଞ୍ଚିଗଲେ। ସ୍ୱୟଂ ଶିଖ ପନ୍ଥ ଅନୁସରଣ ଓ ସମ୍ମାନ କରୁଥିଲେ। ସେ ଯେତେବେଳେ ସାଂହଟୀ ପାଖରେ ପହଞ୍ଚିଗଲେ ନିକଟରେ ପହଞ୍ଚି ଲକ୍ଷ୍ୟ ସ୍ଥିର କରାଇ ବାରୁଦକୁ ଭାଙ୍ଗି ଦେଲେ। ସେହି ବାରୁଦକୁ ନିଆଁ ଲାଗୁଥିଲା କି ଗୁଳି ଆରାମରେ ବାହାରିଲା ଓ ସାଂହଟୀର ସାଞ୍ଜୁକୁ ଚିରି ତାହାର ଶରୀର ମଧ୍ୟରେ ପଶିଗଲା। ସେ ଗଛରୁ ଫଳ ଖସିଲା ଭଳି ଧଡ଼ାସ ହୋଇ ଜମିରେ ପଡ଼ିଲା।

## ସିଂହମାନଙ୍କ ବିଜୟ ପ୍ରାପ୍ତ

ମୀର ସାଂହଟୀର ମରିବା ବିଳମ୍ବ ଥିଲା କି ଦୁରାନୀ ପଠାଣମାନଙ୍କ ମଧ୍ୟରେ ଅସ୍ତବ୍ୟସ୍ତ ଖେଳିଗଲା। ହୃଦୟ ଛାଡ଼ି ଦୁରାନୀମାନଙ୍କ ମନୋବଳ ଭାଙ୍ଗିବା ବିଳମ୍ବ ଥିଲା କି ସିଂହମାନେ ଆହୁରି ତେଜ ହୋଇଗଲେ। ପୂରାଦିନର ଯୁଦ୍ଧର ପ୍ରତିଶୋଧ ନେବା ବାକି ଥିଲା। ପ୍ରାଣ ବଞ୍ଚାଇ ଦୌଡୁଥିବା ଅବସ୍ଥାରେ ଯେଉଁମାନେ ଝେଲମ ପାର ହୋଇଗଲେ ସେମାନେ ବଞ୍ଚିଗଲେ ଓ ଅବଶିଷ୍ଟାଂଶ ସବୁ ସିଂହମାନଙ୍କ ତଲବାରର ଶିକାର ହୋଇଗଲେ। ଗୁଜରାତଠାରୁ ଆରମ୍ଭ କରି ଝେଲମ ଯାଏଁ ରକ୍ତ ନଦୀ ଓ ମୃତ ଶରୀରର ପାହାଡ଼ ହୋଇଯାଇଥିଲା।

ଏହି ଯୁଦ୍ଧ ସାଧାରଣ ଯୁଦ୍ଧ ନ ଥିଲା। ସିଂହମାନଙ୍କ ସକାଶେ ଜୀବନ ମୃତ୍ୟୁର ଯୁଦ୍ଧ ଥିଲା। ଇତିହାସ ସାକ୍ଷୀ ଅଛି କି ଏହି ଯୁଦ୍ଧ ସମୟରେ ୧୦ ହଜାରଠାରୁ ଅଧିକ ସିଂହ ଶହୀଦ ପ୍ରାପ୍ତ କରିଥିଲେ। ପ୍ରାୟ ୩୦ ହଜାର ବିଦେଶୀ ପଠାଣ ମରିଥିଲେ ଓ ସେମିତି କ୍ଷତ ହୋଇଥିଲେ। କେତେଜଣ କାବୁଲଠାରେ ମରିଥିଲେ। ଏହି ଭୟାନକ ଯୁଦ୍ଧ ସମ୍ଭତ ୧୮୩୬ ସମୟରେ ହୋଇଥିଲା ଓ ତାହାପରେ ପଞ୍ଜାବ ସମ୍ପୂର୍ଣ୍ଣ ଭାବେ ସିଂହମାନେ ଅଧିକୃତ କରିଥିଲେ। ଏହି ପରାଜୟ ପରେ ପଠାଣମାନେ ଓ ଗିଲଜମାନଙ୍କ ମନୋବଳ ଏତେ ତଳକୁ ଚାଲିଯାଇଥିଲା ଓ ଏହି ପରାଜୟର କ୍ଷତି ଯୋଗୁଁ ସେମାନେ ହୃଦୟ ମଧ୍ୟରୁ କମ୍ପି ଉଠୁଥିଲେ ଓ ଭୟଭୀତ କରାଇ ଦେଇଥିଲା, ଯାହାକି ଦ୍ୱିତୀୟ ଯୁଦ୍ଧ ହେଲେ ସେମାନେ ବଞ୍ଚିବେ ନାହିଁ।

## ବିଭିନ୍ନ ଦଳର ରାଜ୍ୟ

ପୂରା ପଞ୍ଜାବଠାରୁ ପ୍ରାୟ ସରହନ୍ଦ ବିଜୟ ପରେ ସିଂହମାନେ ଦଳ ଦଳ ହୋଇ ଅଧିକାର କରିଥିଲେ। ଯେତେବେଳେ ଶତ୍ରୁ ଆସିଥିଲେ ସବୁ ସିଂହମାନେ ନିଜ ନିଜ ଅଞ୍ଚଳ ତ୍ୟାଗ କରି ଜଙ୍ଗଲଠାରେ ଲୁଚି ରହୁଥିଲେ ଓ ଯେତେବେଳେ ଶତ୍ରୁମାନଙ୍କ ସୈନ୍ୟ ସମୁଦ୍ର ଫେରୁଥିଲେ ସିଂହମାନେ ଜଙ୍ଗଲ ମଧ୍ୟରୁ ଫେରି ଆସୁଥିଲେ ଓ ଅବଶିଷ୍ଟ ଶତ୍ରୁମାନଙ୍କୁ ମାରି ଉଡ଼ାଇ ଦେଉଥିଲେ ଓ ନିଜ ଅଞ୍ଚଳର ଦାୟିତ୍ୱ ସମ୍ଭାଳୁଥିଲେ କିନ୍ତୁ ଯେତେବେଳେ ଜମାନ ଶାହର ସୈନ୍ୟବାହିନୀର ସ୍ଥାୟୀ ଭାବେ ପଞ୍ଜାବ ଠାରେ ରହିଥିଲେ। ୪ ବର୍ଷର ଦ୍ୱନ୍ଦ୍ୱ ଓ ସଂଘର୍ଷ ସହିତ ସିଂହମାନେ ଏକତ୍ରିତ ହୋଇ ପୁଣି ସମ୍ବତ ୧୮୩୬ ସମୟରେ ଯୁଦ୍ଧ କରି ନିଜର ସ୍ଥାନମାନଙ୍କୁ ଅଧିକାର କରିଥିଲେ।

ଭଙ୍ଗୀ ଦଳଙ୍କ ପାଖରେ ଲାହୋର, ସୁଲତାନର ବହୁତ ସ୍ଥାନ ଥିଲା ଓ ୧୫-୨୦ ହଜାର ପାଖାପାଖି ଏହି ଦଳର ସିଂହଙ୍କ ସଂଖ୍ୟା ଥିଲା କିନ୍ତୁ ଅନ୍ୟ ଦଳରେ ୮ ହଜାର ଠାରୁ ଅଧିକ ନ ଥିଲେ। ଲାହୋର ଠାରୁ ଦୂର ଫରିଦାବାଦ ଓ ଚୂନିଆଁ ଅଞ୍ଚଳର ନକଇୟଙ୍କ ଦଳ ପାଖରେ ସିୟାଲକୋଟର ଅଞ୍ଚଳ ଶହୀଦଙ୍କ ଦଳ ପାଖରେ ଥିଲା ଓ ଏହାଠାରୁ ଦୂରରେ ଗୁଜଙ୍ଗଙ୍କ ଦଳ ପାଖରେ ରୁହତାସର ଅଞ୍ଚଳ ଯାଏଁ ଶୁକ୍ରଚକିଆ ଦଳର ରାଜ୍ୟ ଥିଲା। ବଟାଲା ଓ ଗୁରଦାସପୁର ଅଞ୍ଚଳର ଦଳଙ୍କ ପାଖରେ ଘନଇଆଁ ନିକଟରେ ଥିଲା ଓ ଶ୍ରୀ ହରିଗୋବିନ୍ଦ ପୂରା ଠାରୁ ବ୍ୟାସ ଯାଏଁ ରାମଗଡ଼ ଦଳଙ୍କ ପାଖରେ ଥିଲା। ସତଲୁଜ ଓ ବ୍ୟାସ ମଝିରେ ଓ ଡଲ୍ଲେ ଅଞ୍ଚଳ ଆହୁଲବାଲିୟାଙ୍କ ଦଳ ପାଖରେ ଥିଲା। ତାହାଠାରୁ ଆଗରେ ଅମ୍ବାଲା ନିଶାନା ଦଳଙ୍କ ଶହୀଦ ଦଳଙ୍କ ପାଖରେ ଆନନ୍ଦପୁରର କ୍ଷେତ୍ର ଅଧିକାରରେ ଥିଲା। ଏହାପରେ କରୋଡିୟାଁ ଦଳ ତଥା କେତେକ ଅନ୍ୟ ସିଂହ ସର୍ଦ୍ଦାର ଯମୁନା କୂଳ ଯାଏଁ କ୍ଷେତ୍ର ଅଧିକୃତ ହୋଇଯାଇଥିଲା।

ଆରମ୍ଭରେ ସବୁଠାରୁ ଶକ୍ତିଶାଳୀ ଭଙ୍ଗୀ ଦଳ ଥିଲେ। ପରନ୍ତୁ ଯେମିତି ରାଜ୍ୟ ଭାର ବଢ଼ିଚାଲିଲା, ସେମିତି ଅନ୍ୟ ଦଳ ମଧ୍ୟ ଦୃଢ଼ ଓ ଶକ୍ତିଶାଳୀ ହୋଇଗଲେ, ରାଜ୍ୟ ଭୋଗ ପାଇ ସେମାନେ ନିଜ ନିଜ ମଧ୍ୟରେ କଠୋର ବିରୋଧତା ବଢ଼ିଚାଲିଲା। କାରଣ ପ୍ରଭୁଙ୍କ ମାୟାର କର୍ତ୍ତୃତ୍ୱର ଶକ୍ତି ବଳବାନ୍ ହୋଇ ଚାଲିଲା ଓ ତାହାର ଶକ୍ତି ପ୍ରୟୋଗ ହୋଇ ଚାଲିଲା। ଏହାର ଅକ୍ତିଆର ହୋଇ ଅଛ କିଏ ବଞ୍ଚିପାରିଛନ୍ତି।

## ସିଂହ ଦଳମାନଙ୍କ ମଧ୍ୟରେ ପରସ୍ପର ମତଭେଦ

ବର୍ତ୍ତମାନ ସାଂହଚୀ ସହ ଯୁଦ୍ଧ ସାରି ଅଳ୍ପ କେତେଦିନ କଟିଥିଲା। ସେତିକିବେଳେ ରାମଗଡ଼ ଓ ଘନଇୟାଁଙ୍କ ମତଭେଦ ହୋଇଗଲା। ଘନଇୟାଁମାନେ ଜମ୍ମୁର ରାଜା ସଂସାର ଚନ୍ଦର ସାହାଯ୍ୟ ପାଇ ରାମଗଡମାନଙ୍କର ରାଜ୍ୟ ଶାସନ ଛଡ଼ାଇନେଲେ। ସର୍ଦ୍ଦାର ଜସ୍ସା ସିଂହଜୀ ସେତେବେଳେ ମାଳବର ମହାରାଜ ପଟିଆଲାଠାରେ ରହିଥିଲେ। ସର୍ଦ୍ଦାର ଗୁରୁବଖ ସିଂହଜୀ ଘନଇୟାଁ ଦଳଙ୍କୁ ଜୋର ଦେଇ ଓ କେତେକ କ୍ଷେତ୍ର ଅଧିକାର କରିଲେ। ଶୁକ୍ରଚକିୟା ଦଳର ଦଳପତି ସେତେବେଳେ ସର୍ଦ୍ଦାର ମହାସିଂହଜୀ ଥିଲେ ମଧ୍ୟ ତାଙ୍କ ସହିତ ମତଭେଦ ବଢ଼ିଗଲା ଓ ସଂଘର୍ଷ ହୋଇଗଲା। ସର୍ଦ୍ଦାର ମହାସିଂହଜୀ ବର୍ତ୍ତମାନ ଜମ୍ମୁର ରାଜାଙ୍କୁ ହାତରେ ରଖି, ଜସ୍ସା ସିଂହଜୀ ରାମଗଡ଼ ପଟିୟାଲା ସନ୍ଦେଶ ପଠାଇଲେ ଓ ଆସ ମିଶି ଯୁଦ୍ଧ କରିବା ଓ ବିଜୟ ପରେ ତୁମେ ତୁମର କ୍ଷେତ୍ରର ଦାୟିତ୍ୱ ନିଅ। ସେଥିଯୋଗୁଁ ସର୍ଦ୍ଦାର ଜସ୍ସା ସିଂହଜୀ ନିଜର ୫-୬ ହଜାର ସାଥିମାନଙ୍କ ସହ ବଟାଲାଠାରେ ପହଞ୍ଚିଲେ। ସିଂହମାନଙ୍କ ପରସ୍ପର ମଧ୍ୟରେ ସବୁଠାରୁ ବଡ଼ ଯୁଦ୍ଧ ହୋଇଥିଲା। ଘନଇୟାଁ ଦଳର ସର୍ଦ୍ଦାର ଗୁରୁବଖ ସିଂହଜୀ ସେହି ଯୁଦ୍ଧରେ ମରିଥିଲେ। ତାହାଙ୍କ ଘରେ ସରଦାରନୀ ସଦା କୌର ସେତେବେଳେ ସମାଧାନ କରାଇଲେ ଓ ନିଜର କନ୍ୟାଙ୍କୁ ବିବାହ ପ୍ରସ୍ତାବ ଦେଇ ତାହା ସମାଧାନ କରାଇଥିଲେ। ଏହା ୧୮୩୮ ସମ୍ବତ ସମୟର ଘଟଣା। ରାମଗଢର ସର୍ଦ୍ଦାରମାନେ ନିଜର କ୍ଷେତ୍ରର ଦାୟିତ୍ୱ ନେଲେ କିନ୍ତୁ ଶେଷରେ ସଦା କୌରଙ୍କ ସାହାଯ୍ୟ ହୋଇଥିବା ଯୋଗୁଁ ଶୁକ୍ରଚକିୟା ସହ ସେମାନଙ୍କର ଖୁବ୍ ବିରୋଧ ହୋଇଥିଲା।

ସମ୍ବତ ୧୮୩୬ ସମୟର ସବୁଠାରୁ ବଡ଼ ଲଢ଼ାଇ ପୂର୍ବରୁ କେତେକ ଦଳ ପଟିୟାଲାକୁ ଆକ୍ରମଣ କରିଥିଲେ କି ସେମାନେ ଅହମ୍ମଦ ଶାହ ସହ ମିଶିଲେ କାହିଁକି ଓ ସେମାନେ ଖାଲସା ଆଦର୍ଶର ବିପରୀତ ତାହାକୁ କେତେ ଲକ୍ଷ ଟଙ୍କା କାହିଁକି ଦେଲେ। ଏହି ବିଷୟ ଯୋଗୁଁ ସିଂହ ସେମାନଙ୍କ ସହିତ ବହୁତ ଦିନ ଯାଏଁ ରୋଷକରି ରହିଥିଲେ। ସେଥିଯୋଗୁଁ ପଟିୟାଲା ବଡ଼ ଯୁଦ୍ଧ ହୋଇଥିଲା। ପରନ୍ତୁ କରୋଡିୟାଁ ଦଳର ଦଳପତି ସ.ବଘେଲ ସିଂହ ମଝିରେ ଆସି ଭାଇ-ଭାଇଙ୍କୁ ନାଶ କରୁଥିବା ଯୁଦ୍ଧକୁ ବନ୍ଦ କରାଇଥିଲେ ଓ ଦୁଇ ଦଳର ସମାଧାନ କରାଇଥିଲେ।

## ବିଦେଶୀ ଆକ୍ରମଣ

୧୮୩୬ ସମୟର ବଡ଼ ଯୁଦ୍ଧର ପ୍ରତିଶୋଧ ନେବାପାଇଁ ପଞ୍ଜାବକୁ ପୁଣି ଜମାନ ଶାହ ଦୁଇ-ତିନି ଥର ଜୋର ସୋରରେ ଆସିଥିଲା, ପରନ୍ତୁ ସିଂହମାନେ ନିଷ୍ପତ୍ତି ନେଲେ କି ମୁହାଁମୁହିଁ ହୋଇ ଯୁଦ୍ଧ କରିବା ନାହିଁ। ସେଥିଯୋଗୁଁ ଯେତେଥର ସେ ନିଜର ବହୁତ ସୈନ୍ୟବାହିନୀ, ଆଫଗାନିସ୍ତାନ ଓ କଜଲବାଶାଁର ସୈନ୍ୟ ଆସୁଥିଲେ। ସିଂହମାନେ ନିଜ ନିଜର କ୍ଷେତ୍ର ଛାଡ଼ି ଜଙ୍ଗଲରେ ପାହାଡ଼ରେ ଯାଇ ରହୁଥିଲେ ଓ ଶତ୍ରୁମାନଙ୍କୁ ଆକସ୍ମିକ ଭାବେ ଆକ୍ରମଣ କରି ସେମାନଙ୍କୁ ନାକେଦମ କରାଇଦେଉଥିଲେ। ଏହି ସମୟରେ ସିଂହମାନେ ଅଳ୍ପସଂଖ୍ୟକ ନ ଥିଲେ, ୬୦-୭୦ ହଜାର ସିଂହମାନଙ୍କ ବହୁତ ଦଳ ଶତ୍ରୁମାନଙ୍କ ନିଃଶ୍ୱାସ ବନ୍ଦ କରାଇ ରଖିଥିଲେ। ସେଥିଯୋଗୁଁ ଜମାନ ଶାହ ୨ଥର ମନୋବଳ ବଢ଼ାଇ ଅଗ୍ରସର ହୋଇଥିଲା। ପରନ୍ତୁ ତୃତୀୟଥର ସେ ନିଷ୍ପତ୍ତି ନେଲା କି ଏମାନଙ୍କ ସହିତ ଯୁଦ୍ଧ କରିବା ମୋ ପାଇଁ କ୍ଷତିକର ହେବ। ସିଂହମାନେ ମୋର ଘୋଡ଼ା, ଅସ୍ତ୍ରଶସ୍ତ୍ର ଓ ମୋର ସୈନ୍ୟମାନଙ୍କୁ ମାରି ଦେଉଛନ୍ତି ଓ ଯାହା କିଛି ମିଳୁଛି ଲୁଟି ନେଇଯାଉଛନ୍ତି। ଆଉ ଗୋଟିଏ କଥା ହୋଇଥିଲା, ଇତିହାସରେ ଲେଖା ହୋଇଛି କି ତାହାକୁ ସ୍ୱପ୍ନ ହୋଇଥିଲା କି ଏହି ପଞ୍ଜାବ ରାଜ୍ୟକୁ ବର୍ତ୍ତମାନ ଜଣେ ଏକ ଆଖି ଥିବା ବ୍ୟକ୍ତି ଶିଖ ଶାସନ କରିବ, ସେଥିଯୋଗୁଁ ତୁ ଜାଗ୍ରତ ହୋଇ ରହ, ତାହେଲେ ଠିକ୍ ହେବ। ଯେଉଁ ବିଚାର ଦିନରେ ଭାବୁଥିଲା ତାହା ରାତିରେ ନଜର ଆସୁଥିଲା। ସେଥିଯୋଗୁଁ ଜମାନ ଶାହ ପଞ୍ଜାବ ସୈନ୍ୟମାନଙ୍କ ସହ ଆସିଥିଲା। କିନ୍ତୁ ସିଂହମାନଙ୍କ ଡରରେ ଓ ମାଡ଼ ଖାଇ ନିଜର ସୈନ୍ୟମାନଙ୍କୁ ଦୌଡ଼ିବା ଦେଖୁଥିଲା। ପୁଣି ଏହି ବିଚାର କରୁଥିଲା କି, ଯେଉଁ ବିଚାର ସ୍ୱପ୍ନରେ ଆସିଥିଲା ତାହା ପ୍ରାୟ ୧୮୪୯ ସମୟର ଘଟଣା ଥିଲା।

ସେ ଯେତେବେଳେ ଫେରିଯାଉଥିଲା, ପାର ହେବାବେଳେ ଝେଲମ ନଦୀରେ ତାହାର ୧୨ଟି ତୋପ ବୁଡ଼ିଗଲା। ସେତେବେଳେ ମହାରାଜା ରଣଜିତ ସିଂହଙ୍କୁ ପ୍ରାୟ ୧୫ ବର୍ଷ ବୟସ ହୋଇଥାଏ ଓ ସେ ରାମନଗର ଅଞ୍ଚଳରେ ରହୁଥିଲେ। ଜମାନ ଶାହ ମହାରାଜା ରଣଜିତ ସିଂହଙ୍କୁ ଖବର ପଠାଇଲା ମୋର ତୋପଗୁଡ଼ାକ ବାହାର କରି ପଠାଇଦିଅ। ମହାରାଜା ରଣଜିତ ସିଂହ ସେହି ବର୍ଷ ତୋପ ଗୁଡ଼ାକ ବାହାର କରି କାବୁଲ ପଠାଇଦେଇଥିଲେ। ଜମାନ ଶାହ ସନ୍ଦେଶ ପଠାଇଥିଲା କିନ୍ତୁ

ସେ ଭାବିଥିଲା କି କିଏ ମୋର ତୋପ ପଠାଇବ। ପରନ୍ତୁ ସେ ଯେତେବେଳେ ତୋପଗୁଡ଼ାକ ଦେଖିଲା ସେ ବହୁତ ଖୁସି ହୋଇଗଲା। ସେତେବେଳେ ସେ ଭାବିଲା କି ପଞ୍ଜାବ ମୋର ହକ୍ ଶିଖମାନେ ଦେଉ ନାହାନ୍ତି, କାହିଁକି ମୁଁ ନିଜ ତରଫରୁ ପଞ୍ଜାବର ପଟ୍ଟା ମହାରାଜା ରଣଜିତ ସିଂହଙ୍କ ନାମରେ ଲେଖି ପଠାଇଦେବି, ମୋର କଣ ଯାଉଛି। ସେଥିଯୋଗୁଁ ସେ ପଞ୍ଜାବର ପଟ୍ଟା ଓ କାଗଜପତ୍ର ମହାରାଜା ରଣଜିତ ସିଂହଙ୍କୁ ପଠାଇଦେଲା ଓ କହିଲା କି ମୁଁ ପଞ୍ଜାବର ହକ ଛାଡ଼ି ଦେଲି ଓ ତୁମକୁ ହକଦାର କରୁଛି।

## ମହାରାଣୀ ସାହିବ କୌରଙ୍କ ବାହାଦୁରି

ଅହମ୍ମଦ ଶାହଠାରୁ ପରାସ୍ତ ହୋଇଥିବା ପରେ ମରାଠାମାନେ ବହୁତ ବର୍ଷ ଯାଏଁ ଉଠିପାରିନଥିଲେ। ପରନ୍ତୁ ୩୦ ବର୍ଷ ପରେ ଯେତେବେଳେ ଅହମ୍ମଦ ଶାହ ଓ ଦୁରାନୀ ବିଦେଶୀମାନଙ୍କର ସିଂହମାନେ ହକ ଛଡ଼ାଇ ଦେଇଥିଲେ। ପୁଣି ସେହି ଶକ୍ତି ଉଠାଇ ସେମାନେ ପଞ୍ଜାବକୁ ଆସିଥିଲେ। ପଞ୍ଜାବଠାରେ ସେମାନଙ୍କର ବହୁତ ସ୍ଥାନରେ ସଂଘର୍ଷ ହୋଇଥିଲା ଓ ପୂର୍ବ ଭଳି ପୁଣି ଏକାଥରକେ ପୂରା ପଞ୍ଜାବକୁ ଅଧିକାର କରିବାପାଇଁ ଚାହୁଁଥିଲେ। ପରନ୍ତୁ ପଟିୟାଲାରେ ପ୍ରସିଦ୍ଧ ଯୁଦ୍ଧରେ ପରାଜୟ ହୋଇ ଆଶା ବୋହିଯାଇଥିଲା ଓ ସେମାନେ ପଞ୍ଜାବ ଛାଡ଼ି ଚାଲିଯାଇଥିଲେ।

ଇତିହାସ କହିଛି କି, ମରାଠୀମାନେ ପୂରାପୂରି ପ୍ରସ୍ତୁତ ହୋଇ ପଟିୟାଲା ମହାରାଜାଙ୍କୁ ଆକ୍ରମଣ କରିଥିଲେ। ପଟିୟାଲା ଫୌଜମାନେ ବହୁତ ଲଢ଼ିଥିଲେ ପରନ୍ତୁ ମରାଠୀମାନେ ଖୁବ୍ ଶକ୍ତିଶାଳୀ ଥିଲେ। ସେମାନଙ୍କ ତୋପର ନିଆଁ ଗୋଳା ଦୁର୍ଗ ମଧ୍ୟରେ ଆସି ପଡୁଥିଲା ଓ ଏମାନଙ୍କ ତୋପ ଛୋଟ ଥିଲା ଓ ଯୁଦ୍ଧ କରିବା ସମ୍ଭବ ହୋଇପାରୁନଥିଲା। ଏହି କାରଣ ଯୋଗୁଁ ଫୌଜଙ୍କ ମଧ୍ୟରେ ବ୍ୟସ୍ତତା ଖେଳିଯାଇଥିଲା। ସେତେବେଳର ମହାରାଣୀ ସାହିବ କୌରଙ୍କ ପ୍ରଶଂସନୀୟ ବାହାଦୁରି ଓ ସାହସ ଯୋଗୁଁ ପରାଜୟକୁ ବିଜୟରେ ପରିବର୍ତ୍ତନ ହୋଇଗଲା। ଯେତେବେଳେ ପଞ୍ଜାବ ଫୌଜ ଭାଙ୍ଗି ପଡ଼ିଥିଲେ, ସେତେବେଳେ ମହାରାଣୀ ଫୌଜଙ୍କ ଦାୟିତ୍ୱ ଗ୍ରହଣ କରିଲେ ଓ ଏମିତି ପ୍ରଭାବଶାଳୀ ସାହସ କରିଲେ କି ଐତିହାସିକମାନେ କର୍ତ୍ତୃତ୍ୱ ଶୁଣାଇ ସିଂହମାନଙ୍କ ଭାଙ୍ଗି ଯାଇଥିବା ହୃଦୟକୁ ଯୋଡ଼ି ଦେଇଥିଲେ ଓ ରାତିରେ ଦୁର୍ଗ ମଧ୍ୟରୁ ବାହାରି, ଶତ୍ରୁଙ୍କ ଆକ୍ରମଣ କରିବା ଯୋଜନା ପ୍ରସ୍ତୁତ କରିଲେ।

ପୂରା ଦିନ ଯୁଦ୍ଧ କରିସାରି ମରାଠୀମାନେ ଖାଇପିଇ ଶୋଇଥିଲେ। ସେତେବେଳେ ମହାରାଣୀ ସାହିବ କୌର ଶିଖ ଫୌଜଙ୍କ ନେତୃତ୍ୱ ସହ ନିଜେ ବର୍ଣ୍ଣୀ ତଲବାର ସହ ଆକ୍ରମଣ ଅଚାନକ ଭାବେ କରିଦେଲେ। ବିଜୟ ଆଶାରେ ରହିଥିବା ମରାଠୀ ଏମିତି କେବେ ବିଶ୍ୱାସ କରିନଥିଲେ, ସେଥିଯୋଗୁଁ ସେମାନେ ନିଶ୍ଚିନ୍ତ ହୋଇ ଶୋଇଥିଲେ। ବର୍ତ୍ତମାନ ଆକସ୍ମିକ ଆକ୍ରମଣର ଜ୍ୱାଳା କିଏ ସମ୍ଭାଳିପାରିବ ? ରାତାରାତି ଦୌଡ଼ାଦୌଡ଼ି ଆରମ୍ଭ ହୋଇଗଲା। ପୂରା ଯୁଦ୍ଧ ସାମଗ୍ରୀ ଫୋପାଡ଼ି ଓ ହଜାର ହଜାର ଲୋକଙ୍କୁ ମରାଇ ମରାଠୀମାନେ ପଞ୍ଜାବ ଛାଡ଼ି ଚାଲିଗଲେ ଓ ପୁଣି ପଞ୍ଜାବ ତରଫକୁ ନଜର ଉଠାଇ ଦେଖିନଥିଲେ।

## ଜର୍ଜ ରବର୍ଟସନର ଆକ୍ରମଣ

ସେତେବେଳେ ଦିଲ୍ଲୀଠାରୁ ଦୂର ଦୂର ଅଞ୍ଚଳକୁ ଇଂରେଜମାନେ ଅଧିକାର କରିସାରିଥିଲେ। ସେମାନଙ୍କ ଜରନୈଲ ପ୍ରତ୍ୟେକ ଦୁର୍ବଳ ଅଞ୍ଚଳକୁ ଅଧିକାର କରିବାପାଇଁ ଲାଳସା ଚକ୍ଷୁରେ ଦେଖୁଥିଲା। ସେଥିଯୋଗୁଁ ପଞ୍ଜାବରୁ ଫେରି ମରାଠୀମାନେ ଦିଲ୍ଲୀ ପ୍ରତି ନଜର ରଖିଲେ ଓ ତାହାକୁ ଅଧିକାର କରିବାପାଇଁ ଯୋଜନା ପ୍ରସ୍ତୁତ କଲେ। ଠିକ୍ ସେତିକିବେଳେ ଜର୍ଜ ରବର୍ଟସନ ନାମକ ଜଣେ ଇଂରାଜୀ ଜରନୈଲ ଫୌଜ ସହ ଧସି ଆସିଲା ଓ ସେ କେତେକ ସିଂହ ଅଞ୍ଚଳ ଛଡ଼ାଇନେଲା। ପରନ୍ତୁ ସବୁ ସିଂହମାନେ ଏକାଠି ହୋଇ ତାହା ସହିତ ସଂଘର୍ଷ କରିବାପାଇଁ ଆସିଲେ। ସେ ବହୁ କ୍ଷତି ସହ୍ୟ କରି ପଞ୍ଜାବ ଛାଡ଼ି ଚାଲିଗଲା।

## ଦିଲ୍ଲୀକୁ ମରାଠୀମାନଙ୍କ ଅଧିକାର

ସେହି ସମୟରେ ଇଂରରେଜମାନେ ଦିଲ୍ଲୀ ଅଧିକାର କରିବା ମନ ବଳାଉଥିଲେ, କିନ୍ତୁ ମରାଠୀମାନେ ପ୍ରସ୍ତୁତ ହୋଇ ୧୮୫୪ ସମୟରେ ଅଧିକାର କରିଲେ ଓ ମୁସଲମାନ ଶାସକ ଓ ମନ୍ତ୍ରୀମାନଙ୍କୁ ଉଚିତ ଦଣ୍ଡ ଦେଇଥିଲେ। ଦିଲ୍ଲୀଠାରେ ସେତେବେଳେ ବାଦଶାହ ଥିଲା, କେବଳ ନାମକୁମାତ୍ର ଦିଲ୍ଲୀର ନିକଟବର୍ତ୍ତୀ ଅଞ୍ଚଳଠାରେ ତାହାର ଅଧିକାର ଥିଲା। ଯମୁନା ଯାଏଁ ପଞ୍ଜାବର ପୂରା ଅଞ୍ଚଳ ସିଂହମାନଙ୍କ ଅଧିକାର ଥିଲା। ସେଥିଯୋଗୁଁ ଆଲମ ଶାହ ଛଲୌଦୀ ସର୍ଦ୍ଦାର ବଘେଲ ସିଂହଙ୍କ ପାଖକୁ ଲୋକ ପଠାଇଲା କି ଆମର ସାହାଯ୍ୟ ସକାଶେ ଆସ।

ସର୍ଦ୍ଦାର ବଘେଲ ସିଂହ ଦିଲ୍ଲୀ ପହଞ୍ଚିଲେ ଓ ସମସ୍ତ ବିଷୟ ନିରୀକ୍ଷଣ କରିଲେ। ଏହିଭଳି ଭାବେ ଗୋଟିଏ ଥର ମରାଠୀମାନଙ୍କ ପଞ୍ଜାବ ଆକ୍ରମଣର ପ୍ରତିଶୋଧର ଉତ୍ତର ଦେବାପାଇଁ ସୁଯୋଗ ମିଳୁଥିଲା ଓ ଦ୍ୱିତୀୟରେ ଆହୁରି ଗୋଟିଏ କଥା ଥିଲା, ଯେଉଁ କାରଣ ଯୋଗୁଁ ବହୁତ ଦିନରୁ ସିଂହମାନଙ୍କ ମନ ଛଟପଟ ହେଉଥିଲା କିନ୍ତୁ ସୁଯୋଗ ମିଳୁନଥିଲା। ସର୍ଦ୍ଦାର ସିଂହଜୀ ବର୍ତ୍ତମାନ ସୁଯୋଗର ଲାଭ ଉଠାଇବା ପାଇଁ ମନ ବଳାଇଲେ।

## ଦିଲ୍ଲୀ ଗୁରୁଦ୍ୱାରାମାନଙ୍କ ସେବା

ସର୍ଦ୍ଦାର ବଘେଲ ସିଂହଜୀ ଦିଲ୍ଲୀର ଖବର ଶୁଣି ମନରେ ବିଚାରିଲେ କି ସିଂହମାନେ ବହୁତ ଥର ଦିଲ୍ଲୀଠାରେ ସତ୍‌ଗୁରୁଜୀମାନଙ୍କର ସ୍ମରଣ ଚିର ସ୍ମରଣୀୟ କରିବାପାଇଁ ପ୍ରସ୍ତାବ କରୁଛନ୍ତି, ପରନ୍ତୁ ଆଜି ସୁଦ୍ଧା ଆମ୍ଭେମାନେ ଏହି କାର୍ଯ୍ୟ ସକାଶେ ସୁଯୋଗ ପାଉନଥିଲୁ। ଏହି ପ୍ରସ୍ତାବକୁ ମନରେ ରଖି ଦିଲ୍ଲୀ ଅଧିକାରୀମାନଙ୍କୁ କହିଲେ ଆମ୍ଭେମାନେ ତୁମମାନଙ୍କୁ ସାହାଯ୍ୟ କରିବୁ, କିନ୍ତୁ ତୁମେମାନେ ଆମର କଥା ମାନିବ।

ସେମାନେ ସର୍ତ୍ତ ମାନିବାପାଇଁ ବିଶ୍ୱାସ ଦେଲେ। ସର୍ଦ୍ଦାର ବଘେଲ ସିଂହଜୀ କହିଲେ କି ଆମ୍ଭମାନଙ୍କୁ କେବଳ ସତ୍‌ଗୁରୁମାନଙ୍କ ଐତିହାସିକ ସ୍ମରଣ ସ୍ମରଣୀୟ ରଖିବାକୁ ଦିଆଯାଉ।

ଦିଲ୍ଲୀର ହାକିମମାନେ ଏହି ସର୍ତ୍ତ ମାନିଗଲେ ଓ ବୁଦ୍ଧି ମାନ ବଘେଲ ସିଂହଜୀ ସେମାନଙ୍କଠାରୁ ଲିଖିତ ଆକାରରେ ରଖିଲେ ଓ ସେଥିରେ ରାଜକୀୟ କାଜୀମାନଙ୍କ ଦସ୍ତଖତ ମଧ୍ୟ କରାଇଦେଲେ।

ଏହି କାଗଜ ଲେଖାଇ ସ.ବଘେଲ ସିଂହଜୀ ଫେରିଆସିଲେ। ପଞ୍ଜାବଠାରେ ପହଞ୍ଚି ସବୁ ସିଂହ ସର୍ଦ୍ଦାରମାନଙ୍କୁ ବିଶେଷ ଭାବେ ଲେଖି ପଠାଇଲେ-

"ଖାଲସା ଜୀ, ଆସ! ମିଳିମିଶି ଆକ୍ରମଣ କର, ସତ୍‌ଗୁରୁଜୀଙ୍କ ପବିତ୍ର ଶହୀଦୀ ସ୍ଥାନମାନଙ୍କ ନିର୍ମାଣ ପାଇଁ କରିବା ତୁରନ୍ତ ଆସ, ସତ୍‌ଗୁରୁଜୀଙ୍କ ସ୍ମରଣକୁ ଜୀବନ୍ତ ରଖିବା ପାଇଁ ସମୟ ହୋଇଗଲା। ଏହି ସନ୍ଦେଶ ପାଇ ତୁରନ୍ତ ସିଂହମାନଙ୍କ ଆଗ୍ରହ ବଢ଼ିଗଲା ଓ ଅଳ୍ପ ଦିନ ମଧ୍ୟରେ ୬୦-୭୦ ହଜାର ପାଖାପାଖି ଖାଲସା ଦଳ ଛଲୌଦୀଠାରେ ପହଞ୍ଚିଗଲେ ଓ ସେଠାରୁ ନାଗରା ପିଟିପିଟି ଦିଲ୍ଲୀ ଠାରେ ପହଞ୍ଚିଗଲେ। ଖାଲସାମାନଙ୍କ ଆକ୍ରମଣ ଦେଖି ସେହି ଅଞ୍ଚଳର ଅନ୍ୟ ଚୋର ଡାକୁମାନେ ଏକାଠି

ହୋଇଗଲେ। ଲୁଟେରାଙ୍କ କାମ କଣ ଲୁଟିବା ତଲାସରେ ରହିଲେ। ଯେତେବେଳେ ଖାଲସା ଦଳ ଧୁମ୍ ମଚାଇ ଦିଲ୍ଲୀ ନିକଟରେ ପହଞ୍ଚିଲେ ମରାଠୀମାନଙ୍କୁ ଖବର ମିଳିଗଲା। ମରାଠୀମାନେ ଦିଲ୍ଲୀ ଛାଡ଼ିବାକୁ ଚାହୁଁ ନ ଥିଲେ। ପରନ୍ତୁ ସେମାନେ ନିଷ୍ପତ୍ତି କରିଲେ କି ଏମାନଙ୍କ ସହ ଯୁଦ୍ଧ କରିବା ଅନୁଚିତ କାରଣ ଏହି ସିଂହମାନେ ଏଠାରେ ରହିବେ ନାହିଁ। ଏମାନଙ୍କର କେହି ବାଦଶାହ ନାହାନ୍ତି, ନା କେହି ବାଦଶାହର ପଦ ନେବାକୁ ବିଚାର ଅଛି। ପୂର୍ବରୁ ଦୁଇ ତିନି ଥର ଦିଲ୍ଲୀ ଖୋଲା ଛାଡ଼ି ଚାଲିଯାଇଛନ୍ତି। ସେଥିଯୋଗୁଁ ଯେବେ ସିଂହମାନେ ଦିଲ୍ଲୀ ଛାଡ଼ିବେ, ଆମ୍ଭେ ପୁଣି ଅଧିକାର କରିନେବା। ଏହି ବିଚାର କରି ମରାଠୀମାନେ ଖାଲସା ଆସିବା ଶୁଣି ଦିଲ୍ଲୀ ଛାଡ଼ି ଚାଲିଗଲେ। ସେପଟେ ମୁସଲମାନ ହାକିମମାନେ ଦେଖିଲେ କି ମରାଠୀମାନେ ଦୌଡ଼ି ଦୌଡ଼ି ଯାଉଛନ୍ତି ଓ ସେମାନେ କହିଲେ କି ଆମ୍ଭେ କାହିଁକି ସିଂହମାନଙ୍କୁ ଦିଲ୍ଲୀଠାରେ ପଶିବାକୁ ଦେବା। ବିନାଶ କାଳେ ବିପରୀତ ବୁଦ୍ଧି। ମୂର୍ଖମାନଙ୍କ ବୁଦ୍ଧି ନଷ୍ଟ ହୋଇଗଲା। ଯେତେବେଳେ ସିଂହମାନେ ଆଜମେରୀ ଦ୍ୱାର ଦେଇ ଆଗକୁ ବଢ଼ିଲେ, ସେମାନେ ସାମ୍ନାରୁ ଯୁଦ୍ଧ ଆରମ୍ଭ କରିଦେଲେ ଓ ସିଂହମାନେ କମ ନୁହନ୍ତି ସେମାନେ ମଧ୍ୟ ଲଢ଼ିଲେ। ସିଂହ ସର୍ଦ୍ଦାରମାନେ ଦେଖିଲେ ଏହି ରାସ୍ତାରେ ମୁସଲମାନମାନେ ଖୁବ୍ ବଡ଼ ଯୋଜନା କରିଛନ୍ତି। ସେମାନେ କହିଲେ, ଏଠାରେ ମଧ୍ୟ ଲଢ଼ାଇ ଚାଲୁ ରଖ ପରନ୍ତୁ ପାଖ ଦ୍ୱାର ଖୋଲା ଅଛି ଓ ସେପଟୁ ଅଚାନକ ପଶିଯାଅ।

ସେଥିଯୋଗୁଁ ଯେଉଁ ସିଂହମାନେ ଆଗକୁ ବଢୁଥିଲେ ସେହିଠାରେ ଲଢ଼ି ଚାଲିଲେ ଓ ପଛ ପଟରୁ ଅନ୍ୟ ସିଂହମାନେ ଚୁପଚାପ ଦିଲ୍ଲୀ ଠାରେ ପହଞ୍ଚିଗଲେ। ଚାଲିଲା ମାର-କାଟ ଓ ଜଳାଇବା ଆରମ୍ଭ କରିଦେଲେ। ସହରଠାରେ ହାହାକାର ହୋଇଗଲା। ଏହି କାମ କରି ସିଂହମାନେ ସନ୍ଧ୍ୟା ସମୟରେ ମଜନୁଁ ଟିଲ୍ଲେ ପାଖରେ ଏକତ୍ରିତ ହୋଇଗଲେ।

ମୁସଲମାନମାନେ କମ୍ପି ଉଠିଲେ, ଏହା କଣ ହୋଇଗଲା। ସବୁ ମନ୍ତ୍ରୀମାନେ ଧନାଢ୍ୟ, ହାକିମମାନେ ଏକାଠି ହୋଇ କହିବାକୁ ଲାଗିଲେ ଏହା କେମିତି ହୋଇଗଲା। ନିଜ ଗଳାରେ ନିଜେ ନାଗ ସାପ ଗୁଡ଼େଇ ହୋଇଗଲା। ବହୁତ ଯୁକ୍ତି, ତର୍କ ଚାଲିଲା ଓ ସେମାନେ ନିଷ୍ପତ୍ତି ନେଲେ କି ଯେମିତି ହେଲେ ସିଂହମାନଙ୍କ ସହ ବିଚାର ବିମର୍ଶ କରି ସମାଧାନ କରିବା ଉଚିତ ହେବ। ଯେଉଁ ବଚନ ଦିଆଯାଇଛି ତାହାପୂରା କରିବା ଉଚିତ। ସେମାନଙ୍କୁ ଗୁରୁଦ୍ୱାର ନିର୍ମାଣ କରିବା ଦିଆଯାଉ।

ସ.ବଘେଲ ସିଂହଜୀଙ୍କ ପାଖକୁ ଲୋକ ପଠାଇ ନିବେଦନ କରି କହିଲେ କି ଆମ ସହିତ ସମାଧାନ କର। ସର୍ଦ୍ଦାର ବଘେଲ ସିଂହଜୀ ପ୍ରାତଃ କାଳ ନିଜର ୫ଶହ ଅଶ୍ୱାରୋହୀଙ୍କ ସହିତ ଦିଲ୍ଲୀଠାରେ ପହଞ୍ଚି କଥାବାର୍ତ୍ତା କରିଲେ। ସେମାନେ ମାନିଗଲେ କି ସର୍ଦ୍ଦାର ବଘେଲ ସିଂହଜୀ ୫ଶହ ସବାର ସହିତ ଏଠାରେ ରହିବେ ଓ ଅବଶିଷ୍ଟ ସିଂହ ଫେରି ଚାଲିଯିବେ। ସର୍ଦ୍ଦାର ବଘେଲ ସିଂହଜୀ କହିଲେ, 'ଶକ୍ତି ବିନା କାମ କେମିତି ହେବ, ସେଥିଯୋଗୁଁ ମୁଁ ଏଠାରେ ଦିଲ୍ଲୀ ରକ୍ଷାକର୍ତ୍ତା ହିସାବରେ ରହିବି , ତାହେଲେ କାମ ହୋଇପାରିବ। ମୁସଲମାନମାନେ ମଧ୍ୟ ମାନିଗଲେ ଦିଲ୍ଲୀର ରକ୍ଷାକର୍ତ୍ତାର ଦାୟିତ୍ୱ ଗ୍ରହଣ କରି ସ.ବଘେଲ ସିଂହଜୀ ଅବଶିଷ୍ଟ ସିଂହମାନଙ୍କୁ ପଠାଇଦେଲେ। ପରନ୍ତୁ ସେମାନଙ୍କୁ କୁହାଗଲା ସନ୍ଦେଶ ମିଳିବା ସଙ୍ଗେ ସଙ୍ଗେ ତୁରନ୍ତ ଆସିବାପାଇଁ କୃପା କରିବ, କାରଣ ଏହି ଅବିଶ୍ୱାସୀମାନଙ୍କୁ କେଉଁ ସମୟରେ କଣ କରିବେ। ସର୍ବପ୍ରଥମେ ସ. ବଘେଲ ସିଂହଜୀ ମାତା ସାହିବ କୌର ଓ ମାତା ସୁନ୍ଦରୀଜୀଙ୍କ ସ୍ମରଣୀୟ ନିର୍ମାଣ କରାଇଲେ। ପୁଣି ଅଷ୍ଟମ ଗୁରୁ ମହାରାଜ ଶ୍ରୀ ଗୁରୁ ହରିକୃଷ୍ଣ ସାହିବଙ୍କ ସ୍ଥାନ ଖୋଜି ନିର୍ମାଣ କରାଇଲେ, ଯାହାକି ବଙ୍ଗଳା ସାହିବଙ୍କ ନାମରେ ଆଜି ପ୍ରସିଦ୍ଧ ହୋଇଛି। ତାହାପରେ ପୁଣି ଶ୍ରୀ ଗୁରୁ ତେଗ ବାହାଦୁର ସାହିବଜୀଙ୍କ ସ୍ଥାନ ତଲାସ କରିଲେ। ଯେଉଁ ବଞ୍ଜାରା ଶିଖ ଜଣକ ଶ୍ରୀ ଗୁରୁ ତେଗ ବାହାଦୁରଜୀଙ୍କ ଦେହ ସଂସ୍କାର କରିଥିଲା, ସେ ଶ୍ରୀ ଆନନ୍ଦପୁର ସାହିବ ଯାଇ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀଙ୍କୁ କହିଥିଲା କି ମୁଁ ସତଗୁରୁଜୀଙ୍କ ଶରୀର ସଂସ୍କାର ନିଜ ଘରେ କାଠ ଯୋଗାଡ଼ କରି କରିଥିଲି ଓ ସେହି ଘରକୁ ଦେହ ସହିତ ଜଳାଇ ଦେଲି, ଯାହାଦ୍ୱାରା ମୁସଲମାନ ସନ୍ଦେହ କରିବେ ନାହିଁ। ଘରକୁ ନିଆଁ ଲଗାଇ କାନ୍ଦିବାକୁ ଆରମ୍ଭ କରିଦେଲି, ଯେଉଁ କାରଣ ଯୋଗୁଁ ମୁସଲମାନମାନେ ସତେ ସନ୍ଦେହ କରି ଆସିଥିଲେ, ସେମାନେ ଫେରି ଚାଲିଗଲେ, ପୁଣି ମୁଁ ସେହି ଭସ୍ମ ଗୁଡାକୁ ଏକାଠି କରି ମାଠିଆରେ ଭର୍ତ୍ତି କରି ସେହିଠାରେ ପୋତିଦେଲି। ଏହା ଶୁଣି ଦଶମ ପାତଶାହ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ କହିଲେ ଠିକ୍ କରିଛ। ଆମର ଖାଲସା ସେହି ସ୍ଥାନକୁ ଖୋଜି ସତ୍‌ଗୁରୁଜୀଙ୍କ ସ୍ମରଣୀୟ ସ୍ଥାନକୁ ଜୀବନ୍ତ କରିଦେବେ।

ଏହିବର୍ଷ ସ.ବଘେଲ ସିଂହଙ୍କୁ ମନେଥିଲା। ସବୁ ସିଂହମାନେ ଖୁବ୍ ଉତ୍ସାହିତ ଥିଲେ କି ସତ୍‌ଗୁରୁଜୀଙ୍କ ସ୍ମରଣୀୟ ସ୍ଥାନକୁ ଜୀବନ୍ତ କରିବାପାଇଁ, ଯେତେବେଳେ ସର୍ଦ୍ଦାର ବଘେଲ ସିଂହଜୀ ତଦନ୍ତ ଆରମ୍ଭ କରିଲେ, ସେତେବେଳେ ସେହି ବଞ୍ଜାର

ବଂଶର କେତେ ଲୋକମାନେ କହିଲେ ଏହା ସେହି ସ୍ଥାନ। ଏହି ସ୍ଥାନରେ ମସଜିଦ ହୋଇଛି। ତୁରନ୍ତ ମସଜିଦ ଧ୍ୱଂସ କରିବା ଆରମ୍ଭ ହୋଇଗଲା। ଅଧା ମସଜିଦ ଭଙ୍ଗାରୁଜା ଚାଲିଛି ସେତିକିବେଳେ ହଜାର ହଜାର ମୁସଲମାନ ଏକାଠି ହୋଇ ବିଦ୍ରୋହ କରିଲେ। ସର୍ଦ୍ଦାର ବଘେଲ ସିଂହ ତୁରନ୍ତ ମନ୍ତ୍ରୀ ଓ କାଜିମାନଙ୍କୁ ଡକାଇଲେ ଓ କହିଲେ ଦେଇଥିବା ବଚନ ପୂରା କର। ଆମ୍ଭେ ତୁମମାନଙ୍କୁ ଆମର ଚିହ୍ନ ଦେଖାଇବୁ। ଚିହ୍ନ ନ ମିଳିଲେ ଆମେ ନିଜ ଖର୍ଚ୍ଚରେ ଏହିଠାରେ ପୁଣି ମସ୍‌ଜିଦ ନିର୍ମାଣ କରାଇଦେବୁ। ଏହି କଥାବାର୍ତ୍ତା ହୋଇ ମସ୍‌ଜିଦ ଧ୍ୱଂସ କରାଗଲା ଓ ମସ୍‌ଜିଦ ଖୋଳିବା ପରେ ସତକୁ ସତ ଦୁଇଟି ମାଠିଆରେ ଭସ୍ମ ପୋତା ହୋଇ ରହିଥିଲା। ସିଂହମାନେ ଖୁସି ହୋଇଗଲେ ଓ ମୁସଲମାନମାନଙ୍କ ମୁଣ୍ଡ ତଳକୁ ହୋଇଗଲା ଓ ସେମାନେ ପଛକୁ ହୋଇଗଲେ। ସେହି ସ୍ଥାନରେ ଗୁରୁଦ୍ୱାର ନିର୍ମାଣ କରାଗଲା, ଯାହାକି ବର୍ତ୍ତମାନ ସମୟରେ ରକାବଗଞ୍ଜ ସାହିବ ନାମରେ ପ୍ରସିଦ୍ଧ ଅଟେ।

ପୁଣି ସର୍ଦ୍ଦାର ବଘେଲ ସିଂହଜୀ ସାହିବମାନଙ୍କ ହତ୍ୟା ହୋଇଥିବା ସ୍ଥାନ ତଦନ୍ତ ଆରମ୍ଭ କରିଲେ। ସହରର ବୟସ୍କ ବୃଦ୍ଧ ବ୍ୟକ୍ତି ଓ ସ୍ତ୍ରୀମାନଙ୍କ ପଚରାଉଚରା କରାଯାଇଥିଲା। ଜଣେ ବୃଦ୍ଧା ସ୍ତ୍ରୀ ମାଶକୀ ଜାତିର ଥିଲେ। ସେ କହିଲେ ମୁଁ କହିଦେବି। ସେ କହିଲେକି ଏହି ସ୍ଥାନ ବିଷୟରେ ମୋର ବାପା ମତେ ବହୁତଥର କହିଛନ୍ତି। ମୁଁ ବାପାଙ୍କ ସହିତ ବହୁତ ଥର ଏହି ରାସ୍ତା ଦେଇ ଯାଇଛି। ସେ ଚାନ୍ଦନୀଚୌକ ନିକଟରେ ଗୋଟିଏ ଚିହ୍ନ ଥିଲା। ସେ କହିଲା- ମୋର ବାପା ସେତେବେଳେ ଏହି ପାଖରେ ଛିଡ଼ା ହୋଇଥିଲେ। ଯେତେବେଳେ ସାହିବମାନଙ୍କୁ ଖଣ୍ଡାରେ ପ୍ରହାର କରାଯାଉଥିଲା। ଏହି ସେହି ସ୍ଥାନ, ସେତେବେଳେ ବହୁତ ଅନ୍ଧାର ହୋଇଗଲା। ସେହି ସ୍ଥାନରେ ବର୍ତ୍ତମାନ ମସଜିଦର କାନ୍ଥ ପଡିଛି। ଏହା ଶୁଣି ସିଂହମାନଙ୍କ ନେତ୍ର ସଜଳ ହୋଇଗଲା, ତୁରନ୍ତ ସିଂହମାନେ ମସ୍‌ଜିଦର କାନ୍ଥ ଭାଙ୍ଗିବା ଆରମ୍ଭ କରିଦେଲେ। ସିଂହମାନଙ୍କ ମସଜିଦ ଭାଙ୍ଗିବା ଦେଖି ମୁସଲମାନମାନେ ପୁଣି ଏକାଠି ହୋଇଗଲେ ଓ ପୁଣି ଆନ୍ଦୋଳନ ଆରମ୍ଭ କରିଦେଲେ। ଏହି ଆନ୍ଦୋଳନ ସମୟରେ ପ୍ରାୟ ୬୦ ଲୋକ ମରିଗଲେ। ଏତିକିବେଳେ ମନ୍ତ୍ରୀ ଓ ଗୁରୁମାନେ ଆସି ପୁଣି ଆନ୍ଦୋଳନ ବନ୍ଦ କରାଇଦେଲେ। କିନ୍ତୁ ମୁସଲମୋନମାନେ ସେମାନଙ୍କ ଦୁଷ୍ଟତା ବନ୍ଦ କରିନଥିଲେ ଓ ଗୁରୁଦ୍ୱାର ନିର୍ମାଣରେ ବାଧା ଉତ୍ପନ୍ନ କରାଇଲେ। ବହୁତ କାଜୀ ହାଜୀମାନେ ଏହାର ବିରୋଧ କରିଲେ ଓ ସେମାନେ ଯାଇ ବାଦଶାହ ଆଲମଶାହକୁ କହିଥିଲେ କି

ତୁମେ ଧର୍ମ ନିନ୍ଦୁକମାନଙ୍କୁ ସାହାଯ୍ୟ କରୁଛ। ସେଥିଯୋଗୁଁ ତୁମେ ମଧ୍ୟ ଧର୍ମ ନିନ୍ଦୁକ ଅଟ।

## ମୁସଲମାନମାନେ ଅବରୋଧ କରିଥିଲେ

ସର୍ଦ୍ଦାର ବଘେଲ ସିଂହଜୀ ଏହି ପରିସ୍ଥିତି ଦେଖି, ଦିଲ୍ଲୀ ବାହାରେ ମଜନୁଁ ଟିଲ୍ଲେ ପାଖରେ ରହିଲେ। ସେ ଚିଠି ଲେଖି ଖାଲସାମାନଙ୍କୁ ଖବର ପଠାଇଲେ କି ମୁସଲମାନମାନେ ବାଧା ଦେଉଛନ୍ତି। ସେବା କରିବାପାଇଁ ଦେଉ ନାହାନ୍ତି। ସେଥିଯୋଗୁଁ ତୁରନ୍ତ ପହଞ୍ଚିଯାଅ, ନଚେତ୍ ଗୁରୁଦ୍ୱାରା ନିର୍ମାଣ କାର୍ଯ୍ୟ ମଝିରେ ରହି ନ ଯାଉ। ସେଥିଯୋଗୁଁ ପାଖରେ ରହୁଥିବା ସିଂହମାନେ ଦୁଇ ଚାରିଦିନରେ ପହଞ୍ଚିଗଲେ। ସର୍ଦ୍ଦାର ବଘେଲ ସିଂହଜୀ ସେହି ବାଦଶାହର କାଜୀ ଓ ମୁସଲମାନ ପରାମର୍ଶଦାତାମାନଙ୍କ ଗ୍ରାମ ମଧ୍ୟରେ ବିଂଶେଷ ଭାବେ ଲୁଟିବା ପାଇଁ ଇସାରା କରିଦେଲେ। ଯାହାକି ଦେଇଥିବା ବଚନ ବାଧା ଦେଉଛନ୍ତି ଓ ଖାଲସାମାନଙ୍କ କାମରେ ବାଧା ଦେଉଛନ୍ତି। ଖାଲସାମାନେ ଦିଲ୍ଲୀ ନିକଟବର୍ତ୍ତୀ ଅଞ୍ଚଳରେ ତାଣ୍ଡବ ସୃଷ୍ଟି କରିଥିଲେ। ମୁସଲମାନ ଉଚ୍ଚପଦବୀ, ପରାମର୍ଶଦାତା ଓ କାଜି ଝଗଡ଼ା ସ୍ୱଭାବମାନଙ୍କ ଜମିଦାରୀ ଗ୍ରାମ ଓ ସ୍ଥାନ ସିଂହମାନେ ଲୁଟିନେଲେ। ତାହା ସେମାନଙ୍କୁ ଖୁବ୍ ବାଧିଲା। ସମସ୍ତେ ଚିନ୍ତିତ ହୋଇଗଲେ କି ସିଂହମାନେ ଏବେ ଦିଲ୍ଲୀ ଛାଡ଼ିବେ ନାହିଁ। ଏହା ଦେଖି ସେହି ଆନ୍ଦୋଳନକାରୀ କାଜୀ ଓ ବଡ଼ ବଡ଼ ହାଜୀ ମଜନୁଁ ର ଟିଲ୍ଲେ ସରଦାର ବଘେଲ ସିଂହଜୀଙ୍କ ପାଖରେ ପହଞ୍ଚିଲେ ଓ କହିଲେ ଆମର ଭୁଲ ହୋଇଯାଇଛି ଆମ୍ଭମାନଙ୍କୁ କ୍ଷମା କରିଦିଅ ଓ ନିଜର ଗରୁଦ୍ୱାରା ନିର୍ମାଣ କର।

ସର୍ଦ୍ଦାର ବଘେଲ ସିଂହ କାଗଜ ମଗାଇ ସେଥିରେ ଲେଖିବା ପାଇଁ କହିଲେ ଓ ହସ୍ତାକ୍ଷର କରାଇଲେ। ସମସ୍ତେ ହସ୍ତାକ୍ଷର କରିଦେଲେ। ସେହି କାଗଜ ପୁଣି ସ.ବଘେଲ ସିଂହ ଆଲମଶାହ ପାଖକୁ ପଠାଇଦେଲେ। ବାଦଶାହ କହିଲା, ଚାଲ ଏହା ମଧ୍ୟ ଠିକ୍ ହେଲା। ମତେ ଧର୍ମ ନିନ୍ଦୁକ ଓ ଧର୍ମ ବିରୋଧୀ କହିବାମାନଙ୍କ ସହିତ ମିଶାଇ ଦେଲ। ସେମାନଙ୍କ ଦସ୍ତଖତ କରାଇଦେଲେ।

ବାଦଶାହ ଡକାଇବା ଯୋଗୁଁ ସ.ବଘେଲ ସିଂହଜୀ ପୁଣି ଦିଲ୍ଲୀ ପହଞ୍ଚିଲେ। ସେ ମସଜିଦର କାନ୍ଥ ଭଙ୍ଗାଇ ପାଞ୍ଚ ଗଜ ଜମି ଗୁରୁଦ୍ୱାରା ପାଇଁ ବାହାର କରି

ପୁଣି ମସଜିଦ ମଧ୍ୟ ରଖିଲେ । ବୋହଡ ତଳକୁ ମୂଳଦୁଆ ଦେଇ କାର୍ଯ୍ୟ ଆରମ୍ଭ କରିଲେ । ଯେଉଁଠି ଗୁରୁ ସାହିବଙ୍କୁ ଶହୀଦ କରାଯାଇଥିଲା । ତାହା ସହିତ ଗୁରୁ ଗ୍ରନ୍ଥ ସାହିବର ପ୍ରକାଶ କରାଇବାପାଇଁ ଗୋଟିଏ ସ୍ଥାନ ତିଆରି କରାଇଲେ ଓ ଦଶମ ପାତଶାହ ମହାରାଜ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ ବଖ୍ସା ଖାଲସୀ ଚିହ୍ନ (ଅସ୍ତ୍ର) ଝୁଲାଇ ଦେଲେ । ସର୍ଦ୍ଦାର ବଘେଲ ସିଂହଜୀ ଯେଉଁଠି ଦଶମ ପାତଶାହ ରହିଥିଲେ ସେହି ସ୍ଥାନ ମୋତୀ ବାଗ ଓ ମଜନୁଁ ଟିଲ୍ଲେର ସ୍ଥାନ ମଧ୍ୟ ନିର୍ମାଣ କରାଇଦେଲେ, ଯେଉଁଠି ଗୁରୁ ନାନକ ସାହିବ ଓ ଷଷ୍ଠ ଗୁରୁ ମହାରାଜ ଚରଣ ରଖିଥିଲେ ।

ସ୍ଥାନଗୁଡାକ ୫-୬ ମାସ ମଧ୍ୟରେ ନିର୍ମିତ ହୋଇଗଲା । ତାପରେ ବାଦଶାହଙ୍କୁ କୁହାଗଲା କି ଖାଲସା ବର୍ତ୍ତମାନ ଆଗକୁ ବଢ଼ିବେ, ବାଦଶାହ ଦେଖା କରିବାପାଇଁ ଇଚ୍ଛା ପ୍ରକଟ କରିଲା । ସିଂହଜୀ କହିଲେ, ଦେଖା କରିଲେ କିଛି ଅସୁବିଧା ନାହିଁ କିନ୍ତୁ ଆମ ଭଳି ଲୋକ ଧନ୍ୟବାଦ ଦେଇ ପ୍ରଣାମ କରି ବାଦଶାହର ଦର୍ଶନ କରନ୍ତି । ସେହିଭଳି ଆମେ ମିଶିପାରିବୁ ନାହିଁ । ଆମର ମସ୍ତକ କେବଳ ଅକାଳ ପୁରୁଷ ଗୁରୁ ଗ୍ରନ୍ଥ ସାହିବ ଓ ସାଧୁ ସଙ୍ଗତଙ୍କ ବ୍ୟତୀତ ଅନ୍ୟ କାହାରି ନିକଟରେ ନତମସ୍ତକ ହୋଇପାରିବ ନାହିଁ । ଆମ୍ଭେମାନେ ମିଶିବା ସମୟରେ କେବଳ ଶ୍ରୀ ୱାହେଗୁରୁଜୀଙ୍କ ଫତେହ (ବିଜୟ) ଗୁଞ୍ଜନ କରାଇବୁ । ବାଦଶାହ ଏହି ସର୍ତ୍ତ ମାନିନେଲା ଓ ସର୍ଦ୍ଦାର ବଘେଲ ସିଂହ ହାତୀ ସବାର ହୋଇ ଓ ଅନ୍ୟ ସିଂହମାନେ ପୂରାପୂରି ସଜାସଜି ହୋଇ ଜୁଲୁସ ଢଙ୍ଗରେ ବାଦଶାହ ସହିତ ମିଶିବାପାଇଁ ଯାଇଥିଲେ । ସିଂହମାନଙ୍କ ଏହି ନିର୍ଭୀକତା, ଅପୂର୍ବତା ଓ ସାହସୀ ଢଙ୍ଗ ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

କୁହାଯାଇଛି କି, ଗୁରୁଦ୍ୱାରା ଶିଶ୍ ଗଣ୍ଜିର୍ମାଣ ହେବା କେତେବର୍ଷ ପରେ ମୁସଲିମମାନେ ପୁଣି ଅସୁବିଧା କରିଥିଲେ ଓ ବାଧା ଦେଇଥିଲେ ଓ ୧୮୫୩ ସମୟରେ ଗଦର ଯାଏଁ ଏହିପରି ରହିଥିଲା ଓ ଗଦର ପରେ ମହାରାଜା ଗଜପତ ସିଂହ ବାଲିୟା ଜୀନ୍ଦ ଇଂରାଜୀମାନଙ୍କ ଠାରୁ ମଞ୍ଜୁରି ପ୍ରାପ୍ତ କରି ପୁଣି ସେହି ଗୁରୁଦ୍ୱାରାର ସେବା କରାଇଲା, ଯାହା ଆଜି ଯାଏଁ ଚାଲି ଆସୁଛି । ମୁସଲମାନମାନେ ପୁଣି ମକଦ୍ଦମା କରିଲେ, ପରନ୍ତୁ ଶେଷରେ ପ୍ରିଭି-କାଉନସିଲ (ଲଣ୍ଡନ) ମଧ୍ୟ ଏହା ଫୈସଲା ଶିଖଙ୍କ ହକରେ ଦେଇଥିଲା ।

## ମହାରାଜା ରଣଜିତ ସିଂହ

ଶିଖ ଦଳମାନେ ବିଶେଷ କାର୍ଯ୍ୟ ବା ଶତ୍ରୁଙ୍କ ଆକ୍ରମଣ ସରିବା ପରେ ଏକତ୍ରିତ ହେଉଥିଲେ, କିନ୍ତୁ ଏମାନଙ୍କ ପରସ୍ପର ବିଦ୍ରୋହ ଦିନକୁ ଦିନ ବଢ଼ି ଚାଲିଥିଲା । ସଦା କୌରଙ୍କୁ ରଣଜିତ ସିଂହ ସାହାଯ୍ୟ କରିବା ଯୋଗୁଁ ତାଙ୍କର ଶକ୍ତି ଓ ଅଞ୍ଚଳ ଦିନକୁ ଦିନ ବଢ଼ି ଚାଲିଲା । ଦଳର ସର୍ଦ୍ଦାରମାନଙ୍କ ମଧ୍ୟରେ ପରସ୍ପର ଝଗଡ଼ା ଦ୍ୱାରା ଲାଭ ହେଉଥିଲା ଓ ଅନ୍ୟ ଭାଇମାନଙ୍କ ସହ ଡରି ସ.ଭଗବାନ ସିଂହ ନିଜର ରାଜ କୌରଙ୍କ ବିବାହ ପ୍ରସ୍ତାବ ମହାରାଜା ରଣଜିତ ସିଂହଙ୍କ ସହିତ କରାଇ ନିଜର ସାହାଯ୍ୟ ଜାରି କରି ରଖିଲେ ।

ପ୍ରକୃତରେ କଥା ଏମିତି ଥିଲା କି ଯେମିତି ଯେମିତି ତଲବାରରେ ମାରି ଅଞ୍ଚଳଗୁଡିକୁ ଅଧିକାର କରିଥିବା ସିଂହ ସର୍ଦ୍ଦାରମାନେ ଆକ୍ରମଣ କରିଚାଲିଲେ । ସେମିତି ଭାବେ ଆଗକୁ ହେବାକୁ ଥିବା ହାକିମମାନେ ସିଂହମାନଙ୍କ ରାଜ୍ୟ ଶାସନରେ ପରିବର୍ତ୍ତନ କରି ଚାଲିଲେ । ଏହା ଭଙ୍ଗୀ ଦଳ ସହିତ ହୋଇଥିଲା । ସେମାନଙ୍କ ଅଧୀନରେ ବହୁତ ଅଞ୍ଚଳ ଥିଲା କିନ୍ତୁ ଯେତେ ଦଳର ବରିଷ୍ଠ ସର୍ଦ୍ଦାର ହରି ସିଂହ ଓ ସର୍ଦ୍ଦାର ଝଣ୍ଡା ସିଂହଜୀଙ୍କ ସ୍ୱର୍ଗବାସ ହୋଇଗଲା, ସେମାନଙ୍କ ରାଜ୍ୟ ଶାସନରେ ବହୁତ ତ୍ରୁଟି ଦେଖାଦେଲା ଓ ପ୍ରଜା ଅସନ୍ତୁଷ୍ଟ ହୋଇଥିଲେ ।

ଏହା ଏକ ଐତିହାସିକ ସତ୍ୟତା ଅଟେ । ଯେଉଁଠି ପ୍ରଜା ଅସନ୍ତୁଷ୍ଟ ହୁଅନ୍ତି ସେହିଠାରେ ରାଜ୍ୟ ପରିଚାଳନା କେମିତି ହେବ, ତାହାର ପରିବର୍ତ୍ତନ ସୁନିଶ୍ଚିତ । ଲୋକମାନଙ୍କ ମଧ୍ୟରେ ସେତେବେଳେ ରଣଜିତ ସିଂହଙ୍କ ସମୃଦ୍ଧି ଚର୍ଚ୍ଚାର ବିଷୟ ଥିଲା, ସେଥିଯୋଗୁଁ କେତେ ଲୋକ ତାଙ୍କ ନିକଟକୁ ସନ୍ଦେଶ ପଠାଇଲେ କି ଲାହୋର ଅଧିକାର କରିବା ଉଦ୍ୟମ କର । ସମ୍ବତ ୧୮୫୬ ସମୟରେ ସଦା କୌରଙ୍କ ସହିତ ରଣଜୀତ ସିଂହଙ୍କ ଅଳ୍ପ ଅଳ୍ପ ଆନ୍ଦୋଳନ ପରେ ଲାହୋର ଅଧିକାର କରିଦେଲେ । ସର୍ଦ୍ଦାର ଗୁଲାବ ସିଂହ ଭଙ୍ଗୀ କପୁରର ନବାବର ସାହାଯ୍ୟ ନେଇ ଲାହୋରକୁ ଆକ୍ରମଣ କରିଲେ ଓ ମାସେ ଯାଏଁ ଯୁଦ୍ଧ ଚାଲିଲା । ପରନ୍ତୁ ରାତିରେ ସର୍ଦ୍ଦାର ଗୁଲାବ ସିଂହ ଶୋଇଥିବାବେଳେ ଆକ୍ରମଣ ହୋଇଗଲା । ସର୍ଦ୍ଦାରର ମୃତ୍ୟୁ ହୋଇଗଲା, ତାପରେ ସୈନ୍ୟମାନେ କଣ ଲଢ଼ନ୍ତେ ? ରଣଜିତ ସିଂହର ବିଜୟ ହୋଇଗଲା । ସେଥିରେ ଭଙ୍ଗୀ ଦଳର ଅଗଣିତ ସିଂହ ପୁଣି ରଣଜିତ ସିଂହର ସୈନ୍ୟ ଦଳ ସହିତ ମିଶିଗଲେ ।



ମହାରାଜା ରଣଜିତ ସିଂହ ଜୀ

ସର୍ଦ୍ଦାର ଜସ୍ସା ସିଂହ ଆହୁଲବାଲିୟା ସମ୍ୱତ ୧୮୪୦ ସମୟରେ ସ୍ୱର୍ଗବାସ ହୋଇଥିଲେ। ତାଙ୍କ ଦଳର ସର୍ଦ୍ଦାର ସେତେବେଳେ ଫତେହ ସିଂହଜୀ ଥିଲେ, ତାଙ୍କର ରଣଜିତ ସିଂହ ସହିତ ମିତ୍ରତା ଥିଲା। ସେଥିଯୋଗୁଁ ଲାହୋର ଅଧିକାର ହେବାପରେ ଏହିସବୁ ହିତାକାଂକ୍ଷୀ ସଜ୍ଜନ ମାନେ ପରାମର୍ଶ ସହ ଲାହୋର ଠାରେ ବହୁତ ଧୁମଧାମ ସହ ୧୮୫୮ ସମୟରେ ରଣଜିତ ସିଂହ ନିଜ ନାମ ସହିତ ମହାରାଜା ରଣଜିତ ସିଂହ ଶବ୍ଦ ଲଗାଇଥିଲା। ଏହି ଉପାଧି ଧାରଣ କରି ମହାରାଜା ରଣଜିତ ସିଂହ ପୁଣି ନିଜର ବସୀହ ଅଞ୍ଚଳରେ ନାନକ ଶାହୀ ମୁଦ୍ରା ଆରମ୍ଭ କରିଥିଲେ, ତାହା ଉପରେ ଏହି ଅକ୍ଷର ଲେଖାଇଥିଲେ।

ଦେଗୁ ଓ ତେଗୁ ଉ ଫତହି ନୁସରତ ବେଦରଙ୍ଗ।
ୟାଫତ ଅଜ ନାନକ ଗୁରୁ ଗୋବିନ୍ଦ ସିଂହ।

ରାମଗଡ଼ ଦଳର ସର୍ଦ୍ଦାର ଜସ୍ସା ସିଂହଜୀ ସମ୍ୱତ ୧୮୫୯ ସମୟରେ ସ୍ୱର୍ଗବାସ ହୋଇଗଲେ। ତାହାପରେ ତାଙ୍କ ସୁପୁତ୍ର ସର୍ଦ୍ଦାର ଯୋଧ ସିଂହଜୀ ମହାରାଜା ରଣଜିତ ସିଂହଙ୍କ ସହ ମିତ୍ରତା ବନ୍ଧନରେ ବାନ୍ଧି ହୋଇ ଓ ପୁଣି ସବୁ ସର୍ଦ୍ଦାର ଶିଖ ରାଜ୍ୟର ବିଶାଳତାର ଯୋଜନାରେ ଲାଗିପଡ଼ିଲେ।

ଶିଖ ଦଳର ସମୟରେ ଶ୍ରୀ ଅମୃତସରଠାରେ ଭଙ୍ଗୀ ଦଳର ଅଧିକାରରେ ଥିଲା। ପରନ୍ତୁ ସହରର ରହଣି-ସହଣି ଓ ଧାର୍ମିକତା ଉପରେ ପ୍ରତ୍ୟେକ ଦଳର ସ୍ୱାଧୀନତା ଥିଲା ଓ ତାହା ସମସ୍ତଙ୍କ ଆଦରଣୀୟ ସହର ଥିଲା। ସବୁ ଦଳର ଏଠାରେ ନିଜର ଶାସକୀୟ ଢଙ୍ଗ ଥିଲା। ସେହି ନାମଗୁଡ଼ାକ ବର୍ତ୍ତମାନ ସୁଦ୍ଧା ଅମୃତସର ଠାରେ ରହିଛି। ଯେମିତି ସେଗୁଡାକ ନାମ- ଭଙ୍ଗିୟା, କଟଡ଼ା, ଘନଇୟାଁ, କଟଡା ରାମ ଗଢ଼ିୟାଁ, କଟଡା ଦଳ ସିଂହ, ଛବନୀ ନିହଙ୍ଗା, ବାଗ ଝଣ୍ଡା ସିଂହ, ଦରବାଜା ମହାସିଂହ ଓ ରଣଜିତ ସିଂହଙ୍କ ନିଜ ନିଜର ଶାସକୀୟ ସ୍ଥାନ ରାମ ବାସ। ଏହାସବୁ ସିଂହମାନଙ୍କର ସ୍ମରଣୀୟ ସ୍ଥାନ। ବର୍ତ୍ତମାନ ମହାରାଜା ରଣଜିତ ସିଂହ ସେଗୁଡାକୁ ଅଧୀନସ୍ଥ କରିବାକୁ ଚାହିଁଲେ ଓ ସେଥିରୁ କଳହ ସୃଷ୍ଟି ହେଲା। ଶେଷରେ ୧୮୬୨ ସମୟରେ ଅମୃତସରକୁ ଅଧିକାର କରିବାପାଇଁ ଆକ୍ରମଣ ହୋଇଥିଲା। କେତେ କଳହ ସୃଷ୍ଟି ସହ ଅକାଳୀ ଫୁଲା ସିଂହଜୀ ମଝିରେ ଆସି କଳହ ବନ୍ଦ କରାଇଥିଲେ। ମହାରାଜା ସର୍ଦ୍ଦାର ଗୁଲାବ ସିଂହଙ୍କ ଘରର ସରଦାରନୀଙ୍କୁ ଜମିଦାରି ଦେଇ ଅମୃତସରର ରାଜ୍ୟ ଭାର ସମାଧାନ କରାଇଦେଲେ।

## ଶିଖ ରାଜ୍ୟ ବିସ୍ତୃତ କରିବା ଯୋଜନା

୧୮୬୪ ଯାଏଁ ମହାରାଜା ସତଲୁଜର ଏକ ତରଫର ସବୁ ଅଞ୍ଚଳକୁ ନିଜ ଅଧୀନରେ ରଖିଦେଲେ। ପୁଣି ସତଲୁଜର ଅନ୍ୟପଟର ଅଞ୍ଚଳର ଅଧିକାର କରିବାପାଇଁ ବହୁ ସୈନ୍ୟବାହିନୀ ସହ ଅଗ୍ରସର ହେଲେ। ମାଲେରକୋଟଲା ତଥା ଅନ୍ୟ ରାଜ୍ୟର କ୍ଷେତ୍ରକୁ ହାକିମମାନଙ୍କୁ ଛଡାଇନେଲେ। ଦୋଆବର ବହୁତ ଅଞ୍ଚଳ ମୁସଲମାନ ହାକିମମାନଙ୍କ ଉପରେ ଚାପ ଦିଆଗଲା। ପରନ୍ତୁ ମହାରାଜା ରଣଜିତ ସିଂହଜୀଙ୍କ ଏହା ଉତ୍ୟକ୍ତ ଫୁଲକିୟା ଶାସନଙ୍କ ସହିତ ବହୁତ ସଙ୍କଟ ଉପୁଜିଥିଲା।

ପୁଣି ମହାରାଜା ରଣଜିତ ସିଂହ ଲାହୋର ଫେରିଗଲେ। ସେଠାରେ ଫୁଲକିୟା ତଥା ଅନ୍ୟ କେତେକ ଦଳର ସର୍ଦ୍ଦାରମାନେ ମିଶି ଯୋଜନା କରିଲେ କି ଆମ୍ଭେମାନେ କେମିତି ରଣଜିତ ସିଂହ ଠାରୁ ମୁକ୍ତି ପାଇବା। ମୁକ୍ତି ପାଇବା ଉପାୟ ହେଲା ଉଚିତ ହେବ କି ଆମ୍ଭେମାନେ ଇଂରେଜମାନଙ୍କ ସହିତ ମିଶିଯିବା ଉଚିତ ହେବ। ଇଂରାଜୀମାନେ ବର୍ତ୍ତମାନ ସୁଦ୍ଧା ଦିଲ୍ଲୀ, ଯମୁନା କୂଳ ଯାଏଁ ପୂରା ହିନ୍ଦୁସ୍ତାନକୁ ଅଧିକାର କରି ଏହି ଅଞ୍ଚଳକୁ ନଜର ଦେଉଛନ୍ତି, ଏହି ଯୋଜନା ହେଲା, ଏହି ଦଳର ସର୍ଦ୍ଦାରମାନେ ଯାଇ ଦିଲ୍ଲୀ ଠାରେ ପହଞ୍ଚି କଥାବାର୍ତ୍ତା କରିଲେ। ଇଂରାଜୀମାନଙ୍କୁ ଆଉ କଣ ଦରକାର ଥିଲା? ଏହି ଯୋଜନା ସେମାନଙ୍କ ମନମୁତାବକ ଥିଲା। ସେମାନେ ସମଗ୍ର ଭାରତବର୍ଷକୁ ଅଧିକାର କରିଛନ୍ତି, ଜଣେ ଅନ୍ୟର ବିରୋଧତା କରିବା ଯୋଗୁଁ ସେମାନେ ସୁଯୋଗ ପାଉଥିଲେ ଓ ଲାଭ ଉଠାଇ ଚାଲିଥିଲେ। ସେଥିଯୋଗୁଁ ସେମାନେ ତୁରନ୍ତ ରାଜି ହୋଇଗଲେ। ପ୍ରସ୍ତାବ ଅନୁଯାୟୀ ଇଂରାଜୀମାନେ ନିଜର ଛାଉଣୀ ସତ୍‌ଲୁଜ କୂଳରେ ଲୁଧିଆନା ଠାରେ ରଖିଲେ।

ମହାରାଜା ରଣଜିତ ସିଂହ ଜୀଙ୍କୁ ଏହି ଖବର ମିଳିଲା। ସେ ଏହା ଶୁଣି ବହୁତ ବ୍ୟସ୍ତ ହୋଇପଡ଼ିଲେ। ବର୍ତ୍ତମାନ ତାଙ୍କ ପାଖରେ ଏତେ ଶକ୍ତି ନ ଥିଲା କି ସେ ସମଗ୍ର ହିନ୍ଦୁସ୍ତାନକୁ ଅଧିକାର କରିଥିବା ଇଂରାଜୀ ସହିତ ସାମନା କରିବେ। ସେଥିଯୋଗୁଁ ୧୮୬୭ ସମୟରେ ସେ ସ୍ୱୟଂ ଇଂରାଜୀଙ୍କ ସହିତ ଲଢ଼ିବାପାଇଁ ଅନିଚ୍ଛାସତ୍ତ୍ୱେ ସନ୍ଧି କରିଥିଲେ। ଫିଲୌର, ସେମାନେ ମଧ୍ୟ ଏଠାରେ ବହୁତ ବଡ଼ ଦୁର୍ଗ ନିର୍ମାଣ କରିଥିଲେ।

ସେଠାରୁ ଯାଇ ମହାରାଜା ରଣଜିତ ସିଂହ ପୁଣି ଦ୍ୱିତୀୟ ପଦକ୍ଷେପ ଉଠାଇଲେ। କସୁର ଓ ପୁଣି ଉଖରର ଅଞ୍ଚଳକୁ ୧୮୭୩ ସମୟରେ ନିଜ ରାଜ୍ୟ ସହିତ ଯୋଡ଼ିଥିଲେ। ପୁଣି ବହାବଲପୁର ଓ ମୁଲତାନକୁ ମିଶାଇଲେ। ମୁଲତାନର ନବାବ ମୁଜଫର ଖାଁ ବହୁତ ଥର ଧୋକା ଓ ବିଶ୍ୱାସଘାତ କରିଥିଲା, ତାକୁ ଅଧୀନସ୍ଥ କରିଲେ। ପରନ୍ତୁ ୧୮୭୪ରେ ସେ ବହୁ ଯୋଜନା ପ୍ରସ୍ତୁତ ସହ ବିଶ୍ୱାସଘାତ କରିଥିଲା। ମହାରାଜା ସୈନ୍ୟବାହିନୀ ପଠାଇଲେ, ସେମାନେ ପାରି ନ ଥିଲେ। ଏହିଥର ରାଜକୁମାର ଖଡ଼କ ସିଂହଜୀ ଓ ବହୁତ ଫୌଜ ସହ ପଠାଇଦେଲେ। ପୁଣି ସଫଳତା ମିଳିନଥିଲା। ଯୁଦ୍ଧ ଲମ୍ବା ସମୟ ଯାଏଁ ଚାଲିଲା। ଶେଷରେ ୧୮୫୭ ସମୟରେ ଅକାଳୀ ଫୁଲା ସିଂହଜୀ ପହଞ୍ଚିବା ପରେ ଏହି ସଂଘର୍ଷ ବିଜୟ ପ୍ରାପ୍ତ କରିଥିଲେ। ମୁଜଫର ଖାଁ ନବାବ ଅକାଳୀ ଫୁଲା ସିଂହଜୀଙ୍କ ଦ୍ୱାରା ମରିଥିଲା। ମୁଲତାନକୁ ସମ୍ପୂର୍ଣ୍ଣ ଭାବେ ଶିଖ ରାଜ୍ୟ ସହ ସମ୍ମିଳିତ କରାଇଥିଲେ।

ଏପଟେ ଅଟକ ଯାଏଁ ଶିଖମାନେ ପହଞ୍ଚିଯାଇଥିଲେ। ପରନ୍ତୁ ଅଟକ ପାର ହେବା ପରେ ପଠାଣମାନେ ରହିବାକୁ ଦେଉ ନ ଥିଲେ। ସେତେବେଳେ ଆନ୍ଦୋଳନ ଲାଗି ରହିଥିଲା। ୧୮୭୫ ବେଳେ ସୈନ୍ୟ ଏକତ୍ରିତ ହୋଇଗଲେ। ଅଟକଠାରେ ପୋଲ ତିଆରି କରି ଫୌଜଙ୍କ ଗୋଟିଏ ଦଳ ପ୍ରଥମେ ପଠାଗଲା ଓ ଦ୍ୱିତୀୟ ଦିନ ମହାରାଜା ସାହେବ ମଧ୍ୟ ବହୁତ ସୈନ୍ୟବଳ ସହ ଅଟକ ପାର ହୋଇ ଚାଲିଗଲେ ଓ ଗୁଡ଼ାଏ ଯୁଦ୍ଧ ପରେ ୧୮୭୫ ବେଳେ ପେଶବାର ଅଧିକାର କରିଥିଲେ।

୧୮୭୬ ସମୟରେ କାଶ୍ମୀର ଆକ୍ରମଣ କରିଲେ। ଦୁଇ-ତିନି ମାସ ରାସ୍ତା ବହୁତ କଷ୍ଟ ଭୋଗିଲେ ଓ ଶତ୍ରୁଙ୍କ ସହିତ ଲଢ଼ି ଶେଷରେ ଶ୍ରୀନଗରର ଆବାଦିଠାରେ ଶିଖ ସୈନ୍ୟ ପ୍ରବେଶ କରିଲେ ଓ ବିଜୟ ପ୍ରାପ୍ତ କରି ଉତ୍ସବ ପାଳନ କରିଥିଲେ।

ପେଶାବର ପରାସ୍ତ ପରେ ପଠାଣମାନେ କ୍ରୋଧାଗ୍ନିରେ ଜଳୁଥିଲେ। ଇଂରେଜମାନେ ମଧ୍ୟ ଚାହୁଁଥିଲେ କି ମହାରାଜାଙ୍କ ଅନିଷ୍ଟ ହେଉ ଓ ତାଙ୍କର ଶକ୍ତି ଦୁର୍ବଳ ହେଉ, କାରଣ ଇଂରାଜୀଙ୍କ ଲକ୍ଷ୍ୟ ଥିଲା ସବୁ ସ୍ଥାନ ଅଧିକାର କରିବାପାଇଁ। ପରନ୍ତୁ ମହାରାଜା ରଣଜିତ ସିଂହଜୀଙ୍କ ଚତୁରତା ଓ ଦକ୍ଷତା ବୁଝିପାରି ସେ ଇଂରାଜୀମାନଙ୍କ ସହ ସ୍ୱାକ୍ଷରନାମା କରାଇ ନିଜର ଶକ୍ତି ବଢ଼ାଇ ଓ ତାହାର ବଞ୍ଚିଥିବା ଯାଏଁ ଇଂରାଜୀମାନେ ପଞ୍ଜାବକୁ ନଜର ଉଠାଇ ଦେଖିବା ପାଇଁ ସୁଯୋଗ ମିଳି ନ ଥିଲା। ବର୍ତ୍ତମାନ ପେଶାବର ଠାରେ ବିଦ୍ରୋହ ବଢ଼ି ଉଠିଲା, ବାରକଜୟୀ ବଂଶର

ପଠାଣମାନେ ଜେହାଦ୍ ପ୍ରସ୍ତାବ ଉଠାଇ ସବୁ ପଠାଣ ଜାତିକୁ ଏକତ୍ରିତ କରିଲେ ଓ ପେଶାବରର ଅଧିକାର କରିଦେଲେ।

ମହାରାଜା ରଣଜିତ ସିଂହଜୀ, ଅକାଳୀ ଫୁଲା ସିଂହ ତଥା ଅନ୍ୟ ସର୍ଦ୍ଦାରମାନଙ୍କ ସହିତ ମିଶି ପେଶାବରକୁ ଧ୍ୱସଂବିଧ୍ୱସଂ କରିଦେଲେ। ମହାରାଜାଙ୍କ ଅଟକ ନଦୀ ଯାଏଁ ପହଞ୍ଚିବା ପୂର୍ବରୁ ରାଜକୁମାର ଶେର ସିଂହ ଓ ସର୍ଦ୍ଦାର ହରିସିଂହ ନଲୁବା ବେଡ଼ୀର ପୋଲ ତିଆରି କରି ପାର ହୋଇସାରିଥିଲେ। ସେମାନେ ଜହାଙ୍ଗୀରର ଦୁର୍ଗକୁ ତୁରନ୍ତ ଯାଇ ବିଜୟ ହାସଲ କରିଥିଲେ, ପରନ୍ତୁ ମୁହମ୍ମଦ ଜମାନ ଖାଁ ନିଜର ଲୋକ ପଠାଇ ଅଟକ ନଦୀର ପୋଲକୁ ଭାଙ୍ଗିଦେଲା ଓ ଜହାଙ୍ଗୀରର ଦୂର୍ଗକୁ ୨୫,୦୦୦ସୈନ୍ୟ ଘେରାଉ କରିଥିଲେ।

ଏତିକି ବେଳେ ମହାରାଜା ରଣଜିତ ସିଂହ ଅଟକଠାରେ ପହଞ୍ଚିଲେ। ଖବର ପାଇଲେ କି ଖାଲସା ସୈନ୍ୟ ଘେରାଉ ହୋଇଛନ୍ତି ଯଦି ସାହାଯ୍ୟ ନ ମିଳିବ କେଜାଣି କ'ଣ ହେବ। ଏହା ଶୁଣି ମହାରାଜା ସାହିବ ସିଂହ, ସାହିବ ଅକାଲୀ ଫୁଲା ସିଂହ ତଥା ଅନ୍ୟ ଆହୁରି ଶୂରବୀର ସିଂହ ନଦୀର ତେଜ ପ୍ରବାହ ସନ୍ତରଣ କରି ନ ପାରି ଓ ବହୁତ ସର୍ଦ୍ଦାର, ସୈନ୍ୟମାନେ ପ୍ରବାହିତ ହୋଇଗଲେ ପରନ୍ତୁ ଅଳ୍ପ ସମୟ ମଧ୍ୟରେ ହଜାର ହଜାର ସୈନ୍ୟ ପାର ହୋଇଗଲେ। ଏମାନଙ୍କ ପାର ହେବା ସୂଚନା ମିଳିବା ସଙ୍ଗେ ସଙ୍ଗେ ଶତ୍ରୁମାନେ ଦୁର୍ଗର ଘେରାଉ ଛାଡ଼ିଦେଲେ ଓ ମହାରାଜା ରଣଜିତ ସିଂହ ଜହାଙ୍ଗୀର ଦୁର୍ଗ ଠାରେ ପହଞ୍ଚିଥିଲେ।

ଶତ୍ରୁ ସଂଖ୍ୟା ଅଧିକ ଦେଖି ମହାରାଜା ସାହେବ ଓ ସୈନ୍ୟଙ୍କ ପ୍ରତୀକ୍ଷା କରିବାକୁ ଇଚ୍ଛା କରିଥିଲେ। ପରନ୍ତୁ ଅରଦାଶ ହୋଇ ସାରିଛି। ସେଥିଯୋଗୁଁ ଅକାଳୀ ଫୁଲା ସିଂହଜୀ ସେତେବେଳେ ଆକସ୍ମିକ ଆକ୍ରମଣ କରିବାକୁ ଚାହୁଁଥିଲେ ଓ ମହାରାଜା ମାନୁ ନ ଥିଲେ। ସେ ନିଜେ ନିଜେ ଦଳ ସହିତ ଶତ୍ରୁଙ୍କୁ ଆକ୍ରମଣ କରିଦେଲେ। ଅକାଳୀ ଦଳର ସାହସ ଦେଖି ମହାରାଜା ସାହିବଙ୍କୁ ମଧ୍ୟ ଆକ୍ରମଣ ଆଦେଶ ଦେବାକୁ ବାଧ୍ୟ ହୋଇଥିଲେ। ଦୁଇ ପ୍ରହର ବେଳେ ଧମାସାନ ଯୁଦ୍ଧରେ ଶତ୍ରୁଙ୍କ ମଧ୍ୟରେ ଅସ୍ତବ୍ୟସ୍ତ ଖେଳିଗଲା। ପରନ୍ତୁ ଅକାଳୀଜୀ ତଥା ଅନ୍ୟ ହଜାର ହଜାର ସିଂହ ଶହୀଦ ହୋଇଗଲେ। ଆଗକୁ ଯାଇ ପେଶାବରକୁ ଅଧିକାର କରିଥିଲେ ଓ ଖୁବ୍ ଭୟାନକ ଯୁଦ୍ଧ ୧୮୭୯ ସମୟରେ ସମାପ୍ତ ହୋଇଥିଲା।

## ଶିଖ ରାଜ୍ୟ ବିସ୍ତୃତ ହୋଇଗଲା

ଏହିପରି ଭାବେ ଖୁବ୍ ସଂଘର୍ଷ ଓ ଯୁଦ୍ଧ କରି ମହାରାଜା ରଣଜିତ ସିଂହ ମୁଲତାନ, ଝଙ୍ଗ, ଅଟକ, କାଶ୍ମୀର, ମାନକୋରା ପେଶାବାର ଓ ଲଦାଖ ଯାଏ ଅଞ୍ଚଳଗୁଡ଼ାକ କିଛି ବର୍ଷ ମଧ୍ୟରେ ନିଜ ଅଧୀନରେ ମିଶାଇଦେଲେ। ଏହି ବିଶାଳ ଶିଖ ରାଜର ଚାରିଗୋଟି କେନ୍ଦ୍ର ଲାହୋର, ମୁଲତାନ କାଶ୍ମୀର ଓ ପେଶାବର ସ୍ଥିର କରାଗଲା। ଏହିପରି ଭାବେ ସେତେବେଳେ ଏସିଆର ସବୁଠାରୁ ବଡ଼ ରାଜ୍ୟ ହୋଇଗଲା। ଏହାର ଆମଦାନୀ ୪ କରୋଡ଼ ଓ ସୈନ୍ୟ ସଂଖ୍ୟା ପ୍ରାୟ ୨ ଲକ୍ଷ ହୋଇଥିଲା। ରିଜର୍ଭ ସେଥିରେ ଅଲଗା ଥିଲା। ବିଦେଶୀ ଜରନୈଲମାନଙ୍କ ଅଧୀନତ୍ୱ ଯୋଗୁଁ ଶିଖ ଫୌଜମାନଙ୍କୁ ଆହୁରି ଶକ୍ତିଶାଳୀ ଓ ସୁଦୃଢ଼ ଓ ଯୁଦ୍ଧ ପ୍ରବୀଣ କରାଗଲା। ଇଂରାଜୀ ଯେଉଁମାନେ ପଞ୍ଜାବ ଲାଳାୟିତ ଚକ୍ଷୁରେ ଜିଜ୍ଞାସୁ ଥିଲେ, ସେମାନେ ଚେଷ୍ଟା କରିଚାଲିଲେ, କିପରି ଏହି ରାଜ୍ୟରେ ଅସନ୍ତୁଷ୍ଟ କରାଯାଉ।

କେତେ ମଧୁରମୟ ଜୀବନ ମହାରାଜା ରଣଜିତ ସିଂହଜୀଙ୍କ ସେ ନିଜ ଜୀବନ କାଳରେ ଗୋଟିଏ ଥର ମଧ୍ୟ ପରାସ୍ତ ଦେଖି ନ ଥିଲେ। ଚତୁର ଇଂରାଜୀମାନଙ୍କ ସହ ବହୁତଥର ମିଶିଥିଲେ ଓ ନିଜର ଦକ୍ଷତା ଦେଖାଇ ସେମାନଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଉଥିଲେ। ଶିଖମାନେ ମଧ୍ୟ କମ୍ ନ ଥିଲେ। ଭଲ ଜିନିଷ ଦେଖିବା ସଙ୍ଗେ ସଙ୍ଗେ ହରିମନ୍ଦିରକୁ ପଠାଇ ଦେଉଥିଲେ। ବହୁମୂଲ୍ୟ ହୀରାର ହାର ଓ ଲକ୍ଷାଧିକ (ସେହି ସମୟର) ମୂଲ୍ୟର ରତ୍ନ ବର୍ତ୍ତମାନ ସୁଦ୍ଧା ଭଣ୍ଡାର ଘରେ ରଖାଯାଇଛି। ଶିଖମାନଙ୍କ ସଂସ୍କାର ଓ ମର୍ଯ୍ୟାଦା ଏତେ ଅଧିକ କି ଚାବୁକ ମାଡ ଖାଇବା ସ୍ୱୀକାର କରୁଥିଲେ, କିନ୍ତୁ ଆଦେଶ ଉଲ୍ଲଂଘନ କରୁନଥିଲେ। ଏତେ ଦାନୀ ଥିଲେ କି ଜମି ବାଡି ଓ ହୃଦୟ ଖୋଲି ଦାନ ଓ ଲଙ୍ଗର ଚାଲୁ ରହୁଥିଲା। ଗୁରୁଦ୍ୱାରମାନଙ୍କରେ ଓ ସାଧୁମାନଙ୍କ ଡେରାମାନଙ୍କରେ ବର୍ତ୍ତମାନ ସୁଦ୍ଧା ଆପଣମାନେ ବହୁତ ଜମିବାଡ଼ି ଓ ମାହାସୁଲ ଦେଖି ପାରିବେ। ଏହାସବୁ ଶିଖ ସର୍ଦ୍ଦାର ଓ ମହାରାଜା ରଣଜିତ ସିଂହଙ୍କ ସମୟରୁ ଚାଲିଆସୁଛି। ବିଶେଷତା ଏହା ଥିଲା କି ସ୍ୱୟଂ ପ୍ରଜାଙ୍କ ଦୁଃଖର ଦାୟିତ୍ୱ ନେଉଥିଲେ। ଯଦି ଦେଶରେ କେଉଁଠାରେ ମରୁଡ଼ି, ପୋଡ଼ି, ବନ୍ୟା ହେଉଥିଲା ସେ ତୁରନ୍ତ ସଞ୍ଚିତ ଧନ, ଖାଦ୍ୟ, ବସ୍ତ୍ର, ନିଃଶୁଳ୍କ ବାଣ୍ଟି ଦେଉଥିଲେ।

ମହାରାଜା ରଣଜିତ ସିଂହଜୀ ଶାସନ ସମୟରେ ନିଶ୍ଚିତ ଭାବେ ଶିଖଙ୍କ ରାଜ୍ୟ ଥିଲା। ପରନ୍ତୁ ମନ୍ତ୍ରିମଣ୍ଡଳରେ ଶିଖ, ହିନ୍ଦୁ ଓ ମୁସଲମାନ ମନ୍ତ୍ରୀ କାର୍ଯ୍ୟ କରୁଥିଲେ ଓ ପ୍ରକୃତରେ ସେତେବେଳେ ଧର୍ମନିରପେକ୍ଷତାର ଶାସନ ଚାଲିଥିଲା। ଯଦି ମହାରାଜା ସାହିବ ହରିମନ୍ଦିର ସାହିବ ଯାଆନ୍ତି ଓ ମନ୍ଦିରରେ ଭେଟ ଚଢ଼ାନ୍ତି ଓ ତାହା ସହିତ ପୂର୍ଣ୍ଣ ସତ୍କାର ସହ ମର୍ଯ୍ୟାଦା ପାଳନ କରନ୍ତି ଓ ସହାୟତା ମଧ୍ୟ କରୁଥିଲେ।

ମହାରାଜା ରଣଜିତ ସିଂହଜୀଙ୍କ ସମୟରେ ଶିଖ ସର୍ଦ୍ଦାର ଓ ମହାରାଜା ସାହେବ ଐତିହାସିକ ଗୁରୁଧାମର ସେବା ବିଶେଷ ଧ୍ୟାନ ଦେଉଥିଲେ। ତଖତ୍ ହଜୁର ସାହିବ (ଅବଚଲ ନଗର) ନଂଦେଡର ସେବା ସକାଶେ ମହାରାଜା ସାହେବ ବିଶେଷ ଉଦ୍ୟମ କରିଥିଲେ। ଇତିହାସରେ ଉଲ୍ଲେଖିତ ହୋଇଛି କି, ସାହିବ ଦଶମ ପାତଶାହଜୀ ଅନ୍ତିମ ସମୟରେ ହୁକୁମ ଦେଇଥିଲେ କି ମୋର ଅନ୍ତିମ ସ୍ଥାନ ବିଲକୁଲ ନିର୍ମାଣ କରାଯିବ ନାହିଁ ଓ ଯଦି କେହି ଏମିତି କରିବ ତାହାର ସର୍ବନାଶ ହୋଇଯିବ। ଯେତେବେଳେ ମହାରାଜା ସାହିବ ଏହି ସ୍ଥାନର ସେବାର ଦାୟିତ୍ୱ ଉଠାଇଲେ, ପୁରୁଣା ପୁରୁଣା ବୟସ୍କ ସିଂହମାନେ ମହାରାଜାଙ୍କୁ ଏହି ବଚନ ବିଷୟରେ ମନେ ପକାଇଦେଲେ ଓ କହିଲେ ମହାରାଜା ଆପଣ ଏହି ବିପଦକୁ ହାତ ଲଗାନ୍ତୁ ନାହିଁ। ଏହା ଶୁଣି ମହାରାଜା ସାହିବ କହିଲେ କି ଯଦି ସର୍ବନାଶ ହୋଇ ମଧ୍ୟ ଏହି ଭାଗ୍ୟଶାଳୀ ସେବା କରିବା ସମୟ ବର୍ତ୍ତମାନ ମତେ ମିଳୁଛି ତାହହେଲେ ମୁଁ ତଥାପି ଏହାକୁ ସୌଭାଗ୍ୟ ମନେ କରୁଛି ଓ ଶିଖ ପନ୍ଥର ସାଜସଜାର ଦାତା ସିରଜନହାରଙ୍କ ସ୍ମରଣୀୟ ସ୍ଥାନକୁ ନିଶ୍ଚିତ ଭାବେ ନିର୍ମାଣ କରି ଛାଡ଼ିବି, ସର୍ବନାଶ ହେବ ତ ହେଉଥାଉ।

ଜଣାନାହିଁ ଏହା ଠିକ୍ ଥିଲା କି ଭୁଲ, ଶେଷରେ କିଛି ଏମିତି ହୋଇଥିଲା, ମହାରାଜାଙ୍କ ଶେଷ ନିଃଶ୍ୱାସ ଯାଏଁ, ଯେତେବେଳ ଯାଏଁ ମହାରାଜାଙ୍କ ଶ୍ୱାସ ଚାଲିଥିଲା, ସେତେବେଳ ଯାଏଁ ଶିଖ ପନ୍ଥ ଓ ଶିଖ ରାଜ୍ୟ ବହୁତ ଉନ୍ନତି ହୋଇ ଚାଲିଥିଲା। ଶିଖ ଶାସନ ସମୟରେ ସିଂହମାନଙ୍କ ସଂଖ୍ୟା କୋଟି ଠାରୁ ଅଧିକ ଥିଲା। ସିଂହମାନଙ୍କ ଶାସନ କାବୁଲ କଂଧାର ଓ ଏପଟେ ଦିଲ୍ଲୀ ଠାରୁ ଆଗକୁ ବିସ୍ତୃତ ହୋଇ ପାଖାପାଖି ପଡ଼ୋଶୀ ରାଜା, ମହାରାଜାମାନେ ମହାରାଜା ରଣଜିତ ସିଂହଙ୍କ ମିତ୍ରତା କରିବା ପାଇଁ ସୌଭାଗ୍ୟ ମନେ କରୁଥିଲେ।

## ଅକାଳୀ ଫୁଲା ସିଂହଜୀ

ଶିଖ ରାଜ୍ୟ ପାଇଁ ଜୀବନ ସମର୍ପଣ କରିବା ଗଣିବା ଅସମ୍ଭବ ଥିଲେ, କିନ୍ତୁ ଅକାଳୀ ଫୁଲା ସିଂହ ଓ ଜନରଲ ହରି ସିଂହଜୀଙ୍କର ଏଥିରେ ବିଶେଷତା ଥିଲା। ଅକାଳୀ ଫୁଲା ସିଂହଜୀ ଆରମ୍ଭରୁ ଶେଷ୍ ଯାଏଁ ଶିଖ ରାଜ୍ୟ ସମୃଦ୍ଧି ସକାଶେ ପ୍ରଯତ୍ନ କରି ଚାଲିଥିଲେ। ତାଙ୍କର ଜୀବନଶୈଳୀ ଉଚ୍ଚକୋଟୀର ସିଂହ ଓ ସିପାହୀ ଥିଲେ। ତାଙ୍କର ଜନ୍ମ ବାଙ୍ଗର ଅଞ୍ଚଳଠାରେ ହୋଇଥିଲା। ଯେତେବେଳେ ସେ ୧୫ମାସ ବୟସର ଥିଲେ ସେ ପିତୃହୀନ ହୋଇଗଲେ। ତାଙ୍କ ବୟସରେ ଇତିହାସରେ ଲେଖା ଯାଇଛି କି ସେ ସେହି ଦିନ ଜନ୍ମ ହୋଇଥିଲେ ଯେଉଁଦିନ ବାବା ଦୀପ ସିଂହଜୀ ଶହୀଦ ହୋଇଥିଲେ।

ସେ ସ୍ୱୟଂ ଆରମ୍ଭ ସମୟରେ ବହୁତ ଦିନ ଯାଏଁ ଆନନ୍ଦପୁରଠାରେ ରହିଥିଲେ ଓ ଅକାଳୀ ସିଂହଜୀଙ୍କ ଠାରୁ ସମସ୍ତ ପ୍ରକାର ଶିକ୍ଷା ଗ୍ରହଣ କରିଥଲେ, ପୁଣି ଅମୃତସର ଠାରେ ରହିଥିଲେ।

ଆରମ୍ଭ ସମୟରେ ଅମୃତସରଠାରେ ଯେତେବେଳେ ମହାରାଜା ରଣଜିତ ସିଂହ ଓ ଭଙ୍ଗୀ ଦଳର ପରସ୍ପର ମଧ୍ୟରେ ଅସନ୍ତୁଷ୍ଟ ଦେଖା ଯାଇଥିଲା। ସେହି ସମୟରେ ଅକାଳୀଜୀ ଦୁଃଖିତ ହୋଇଥିଲେ। ତୁରନ୍ତ ନିଜର ସାଥୀ ସିଂହମାନଙ୍କ ସହ ଦୁଇଦଳ ମଧ୍ୟରେ ଛିଡା ହୋଇ କହିଥିଲେ – "ହେ ସିଂହମାନେ ! ଆଖି ଖୋଲ ! ଚିନ୍ତା କର, ସିଂହମାନଙ୍କ ବନ୍ଧୁକ ଗୁଳି ନିଜର ସତ୍‌ଗୁରୁଙ୍କ ସହର ଅମୃତସର ଠାରେ ଫୁଟିବ, ଏହା କେତେ ଲଜ୍ଜା ଓ ଦୁଃଖଜନକ ଘଟଣା।" ଏହା ଶୁଣିବା ପରେ ଦୁଇଦଳଙ୍କ ମଧ୍ୟରେ ମତଭେଦ ବନ୍ଦ ହୋଇଥିଲା।

ପରେ ଅକାଳୀଜୀ ମହାରାଜାଙ୍କ ସହାୟକ ହୋଇଥିଲେ। ପରନ୍ତୁ ଡୋଗରାଙ୍କ ପ୍ରତ୍ୟେକ କଥାରେ ଦୁର୍ବ୍ୟବହାର ଦେଖି ସେ ପୁଣି ଆନନ୍ଦପୁର ସାହିବ ଫେରି ଆସିଥିଲେ। ସେଠାରେ ସେ ସ୍ୱୟଂ ଅସୁଲ କରିଥିଲେ। ଅକାଳୀଜୀଙ୍କ ଏହି କାର୍ଯ୍ୟ ଯୋଗୁଁ ଇଂରାଜୀମାନେ ରାଗି ଯାଇଥିଲେ। ସେମାନେ ମହାରାଜା ରଣଜିତ ସିଂହଜୀ ନିକଟରେ ଅଭିଯୋଗ କରିଲେ। ଆପଣଙ୍କ ଅକାଳୀ ନିୟମ ଉଲ୍ଲଙ୍ଘନ କରୁଛନ୍ତି। ମହାରାଜା ରଣଜିତ ସିଂହ ସେତେବେଳେ ଏହି ପରିସ୍ଥିତିକୁ ଅଙ୍କୁଶ ଦେବାକୁ ଚାହୁଁଥିଲେ। ସେ ଅକାଳୀଜୀଙ୍କୁ ଅବରୋଧ କରିବା ପାଇଁ କେତେକ ସୈନ୍ୟମାନଙ୍କୁ

ପଠାଇଲେ, କେତେ ସୈନ୍ୟ ସତଲୁଜ ପାର କରି ଶିଖ – ଅଧୀନସ୍ଥ ଠାରୁ ଏହି କାମ କରିବା ପାଇଁ ପଠାଇଲେ କି ଅକାଳୀଜୀଙ୍କୁ ବନ୍ଦୀ କରାଯାଉ ବୋଲି ମନ୍ତବ୍ୟ ଦେଲେ। ପରନ୍ତୁ ଅକାଳୀଜୀ ଶୁଦ୍ଧତା ରଙ୍ଗରେ ରଙ୍ଗିଯାଇ ଜିତିଗଲେ। ସେହିମାନେ ନିଜର ଅଧିକାରୀମାନଙ୍କୁ କହିଦେଲେ କି ଏହି ଅକାଳଜୀଙ୍କୁ ବନ୍ଦୀ କରାଯାଉ।

ଯେତେବେଳେ ଏହି ଖବର ମହାରାଜା ରଣଜିତ ସିଂହଜୀଙ୍କୁ ମିଳିଲା ସେ ଭାରି ବ୍ୟସ୍ତ ହୋଇ ପଡ଼ିଲେ। ସେ ବେଦୀ ସାହିବ ସିଂହଜୀଙ୍କୁ ଡକାଇ ମଧ୍ୟସ୍ଥତା କରାଇଦେଲେ ଓ ସମ୍ମାନ ସତ୍କାର ସହ ଶ୍ରୀ ଅମୃତସର ଫେରାଇ ଶ୍ରୀ ଅକାଳ ତଖ୍ତ ସାହିବର ସେବା ତାଙ୍କର ଦାୟିତ୍ୱରେ ଦେଇଥିଲେ। ମହାରାଜା ତାଙ୍କର ଓ ତାଙ୍କ ସାଥୀମାନଙ୍କ ଜୀବିକାନିର୍ବାହ ସକାଶେ ଜମିବାଡ଼ି ଲେଖାଇଦେଲେ।

ତାହା ପରେ ଅକାଳୀଜୀ ଶିଖମାନଙ୍କ ପାଇଁ ଓ ଶିଖ ରାଜ୍ୟ ସକାଶେ ବହୁତ କାମ କରିଥିଲେ। ସେ ଶିଖମାନଙ୍କ ବିପରୀତ କାର୍ଯ୍ୟ ଦେଖି ମହାରାଜାଙ୍କୁ ମଧ ଦଣ୍ଡ ଦେବା ପାଇଁ କୁଣ୍ଠାବୋଧ କରି ନ ଥିଲେ। ଇଂରେଜମାନଙ୍କ ସୈନିକ ଶିହା ମୁସଲମାନମାନଙ୍କୁ ପିଟିବା ଯୋଗୁଁ କୀର୍ତ୍ତନ ବେଳେ ଅବରୋଧ କରିଥିଲେ, ଯେତେବେଳେ ସେମାନେ ପିଟିବା ବନ୍ଦ କରିନଥିଲେ ଓ ଓଲଟି ଦୁଷ୍ଟତା ଦେଖାଇଥିଲେ, ସେତେବେଳେ ସ୍ୱୟଂ ସେମାନଙ୍କ କୃତକର୍ମର ଫଳ ଭୋଗିବାକୁ ଦେଇଥିଲେ। ଇତିହାସରେ ଉଲ୍ଲେଖିତ ହୋଇଛି କି ସେ ପୂରା ଜୀବନ ଯୁଦ୍ଧ ଲଢ଼ାଇରେ କଟାଇଥିଲେ। ଶିଖ ରାଜ୍ୟର ବିକାଶ କରାଇ, ପୂରା ଯୁଦ୍ଧ ମୁଲତାନ, କାଶ୍ମୀର ହଜାରା ଓ ପେଶାବର ସବୁ ବଡ଼ ଯୁଦ୍ଧ ସହ ସେ ସଂପୃକ୍ତ ଥିଲେ। କିନ୍ତୁ ସବୁଠାରୁ ପ୍ରସିଦ୍ଧ ଯୁଦ୍ଧ ନୌସହର ଠାରେ ହୋଇଥିଲା। ସେଠାରେ ସେ ଶେଷଯୁଦ୍ଧ କରିଥିଲେ ଓ ବିଜୟ ପ୍ରାପ୍ତ କରି ଶହୀଦ ହୋଇଥିଲେ।

ପଠାଣ ଓ ଆଫଗାନ ନୌସହରେ ଯୁଦ୍ଧ ବେଳେ ଏହାର ନିଷ୍ପତ୍ତି କରାଇଥିଲେ କି ଶିଖମାନଙ୍କୁ ଝେଲମ୍ ପାର ହେବା ବେଳେ ଅବରୋଧ କରାଯାଉ। ସେମାନଙ୍କ ସହ ଯୁଦ୍ଧ କରିବା ପାଇଁ ବହୁ ଯୋଜନାର ଆବଶ୍ୟକତା ଥିଲା। ପରନ୍ତୁ ଅକାଲୀଜୀ ନିଜର ଅଳ୍ପସଂଖ୍ୟକ ସାଥିଙ୍କ ସହିତ ପୂର୍ବ ସୈନ୍ୟଙ୍କ ଅପେକ୍ଷା କରିବା ବ୍ୟତୀତ ଗାଜିମାନଙ୍କର ବହୁସଂଖ୍ୟକ ସୈନ୍ୟ ବାହିନୀ ସହ ମୁହାଁମୁହିଁ ହୋଇଥିଲେ। ସେ ସିଂହ ଭଳି ହୁଙ୍କାର ଆକ୍ରମଣ ସହ ଆଗକୁ ବଢ଼ିଥିଲେ ଓ ବୈରି ମାନଙ୍କୁ ଛିନ୍ନଛତ୍ର କରିଦେଇଥିଲେ। ସେମାନଙ୍କ ଯୋଜନାକୁ ଭସ୍ମ କରିଦେଇଥିଲେ। ନିଜର ଦୃଢ଼ତା



ବାବା ଅକାଳୀ ଫୁଲା ସିଂହ ଜୀ



ବାବା ଅକାଳୀ ଫୁଲା ସିଂହ ଜୀ

ଯୋଗୁଁ ଶତ୍ରୁ ମାନେ ପରାଜୟ ହୋଇଥିଲେ। ସେତେବେଳେ ତାଙ୍କର ଶରୀରରେ ଗୁଳି ଅସଂଖ୍ୟ ଛିଦ୍ର କରି ଦେଇଥିଲା। ପରନ୍ତୁ ସେ ନିଜକୁ ଦୃଢ଼ ରଖି ଲଢ଼ି ଚାଲିଥିଲେ। ଯେତେବେଳେ ଫୌଜଙ୍କ ତରଫରୁ ବିଜୟ ଉଲ୍ଲାସର ଭେଦ ଆକାଶକୁ ଗୁଞ୍ଜନ କରାଇ ଦେଇ ନ ଥିଲା।

ଏଠାରେ ମହାରାଜାଙ୍କ ବିଜୟ ଉଲ୍ଲାସ ହୋଇଥିଲା। ସେହିଠାରେ ସ୍ୱୟଂ ମହାନୁଭବଙ୍କର ଶହୀଦର ଗଭୀର ଶୋକ ଖେଳି ଯାଇଥିଲା। ତାଙ୍କର ସମାଧି ନୌସହର ଲୁଣ୍ଡେ ନଦୀ କୂଳରେ ନିର୍ମାଣ କରାଇଲା। ତାହା ସହିତ ଜମିବାଡ଼ି ଲେଖାଗଲା।

## ଜେନରଲ (ସେନାପତି) ହରି ସିଂହ ନଲୁଓ୍ୱା

ନଲୁଓ୍ୱା ସର୍ଦ୍ଦାର ଯେତେବେଳେ ୭ବର୍ଷ ବୟସର ଥିଲେ ତାଙ୍କର ପିତା ସ୍ୱର୍ଗବାସ ହୋଇଗଲେ, ତାଙ୍କୁ ବଡ଼ ଦୁଃଖ ହୋଇଥିଲା। ସେ ଗୁଜରାଁ ନିବାସୀ ଥିଲେ। ଭାଇ ସେତେବେଳେ ଭଉଣୀଙ୍କ ଦାୟିତ୍ୱ ନେଲେ ଓ ମାମୁ ନଲୁଓ୍ୱାଜୀଙ୍କ ପ୍ରତିପାଳନ ଭଲ ଭାବେ କରିଲେ। ଖୁବ୍ ସୁନ୍ଦର ପ୍ରତିପାଳନ ଯୋଗୁଁ ନଲୁଓ୍ୱା ସର୍ଦ୍ଦାରଙ୍କ ଶରୀର ବାଳ ସମୟରୁ ବହୁତ ସୁନ୍ଦର ସୁଡୋଳ ଓ ସୁସ୍ଥ ଥିଲା। ସେତେବେଳର ଶିକ୍ଷା ଓ ସୈନ୍ୟ ଯୁଦ୍ଧ ବିଦ୍ୟା ତାଙ୍କୁ ମିଳିଥିଲା। ସେଥିଯାଗୁଁ ସେ ଉତ୍ତମ ବିଦ୍ୟାର୍ଥୀ ହୋଇ ଚାଲିଲେ। ଘୋଡ଼ା ଚଢ଼ାରେ ସୌଖୀନ ଥିଲେ। ସେଥିଯୋଗୁଁ ସେ ଅତି ଶୀଘ୍ର ଜଣେ ଉତ୍ତମ ଶୂରବୀର ହୋଇଗଲେ। ସେହି ସମୟରେ ଲାହୋର ସହରଠାରେ ମହାରାଜା ରଣଜୀତ ସିଂହଜୀଙ୍କ ଶାସନ ଥିଲା। ମହାରାଜା ସାହିବ ସେନା ଭର୍ତ୍ତିର ଆବଶ୍ୟକତା ପୂରଣ ସକାଶେ ସର୍ବପ୍ରଥମେ ସୈନ୍ୟ ମେଳା ଲଗାଇବା ଆରମ୍ଭ କରିଥିଲେ। ଦୂର - ଦୂରରୁ ଅଶ୍ୱାରୋହୀ, ଭଲ୍ଲ ଶିକ୍ଷା ପ୍ରବୀଣ ଓ କବାଡ଼ି ଖେଳାଳି ଓ ଦୌଡ଼ ପ୍ରବୀଣମାନଙ୍କୁ ସନ୍ଦେଶ ପଠାଇ ସେଠାରେ ପହଞ୍ଚିବା ପାଇଁ କୁହାଗଲା। ସାଧାରଣ ଭାବେ ଏହି ମେଳା ଆୟୋଜନ ବସନ୍ତ ଋତୁରେ ଆରମ୍ଭ କରାଯାଇଥିଲା। ପ୍ରଥମ ଓ ଦ୍ୱିତୀୟ ମେଳା ସମୟରେ ୧୭-୧୮ ବର୍ଷ ବୟସରେ ସର୍ଦ୍ଦାର ହରି ସିଂହ ନଲୁଓ୍ୱା ନିଜର ବିଚକ୍ଷଣତା ମେଳାରେ ପ୍ରଦର୍ଶନ କରାଇବା ପାଇଁ ପହଞ୍ଚିଲେ। ସବୁ ପ୍ରତିଯୋଗିତାରେ ନଲୁଓ୍ୱା ସର୍ଦ୍ଦାର ପ୍ରଥମ ସ୍ଥାନରେ ରହିଲେ। ସେହି କାରଣ ଯୋଗୁଁ ମହାରାଜାଙ୍କ ଦୃଷ୍ଟି ନଲୁଓ୍ୱା ସର୍ଦ୍ଦାରଙ୍କ ପ୍ରତି ଆକର୍ଷିତ ହୋଇଥିଲା। ହରି ସିଂହଜୀଙ୍କ

ଆଗକୁ ବଢ଼ି ଚାଲିଲା। ତାଙ୍କ ବନ୍ଧୁକର ଗୁଳି ଫୁଟି ଚାଲିଥିଲା। ସେହି କ୍ଷଣ ପାହାଡ଼ୀମାନେ ନିକଟକୁ ପହଞ୍ଚି ନଲୁଓ୍ୱା ସର୍ଦ୍ଦାରଙ୍କୁ ଗୁଳି ଚଳାଇଲେ। କିନ୍ତୁ ସେ ହାତୀ ଉପରୁ ତଳକୁ ପଡ଼ି ନ ଥିଲେ। କିନ୍ତୁ କ୍ଷତ ବିକ୍ଷତ ହୋଇଗଲେ, ହାତୀ ଉପରେ ଯେଉଁ ଆସନ ଥାଏ ସେଠି ଶୋଇ ପଡ଼ିଲେ, ସିଂହମାନେ ଅଳ୍ପ ଦୂରରେ ଥିଲେ। ସେମାନେ ତୁରନ୍ତ ସେଠି ପହଞ୍ଚିଗଲେ। ମାହୁନ୍ତ ଇସାରା କରି ନଲୁଓ୍ୱା ଜରନେଲଙ୍କ ଅବସ୍ଥା କହିଲା। ସିଂହମାନଙ୍କୁ ପାଟିତୁଣ୍ଡ କରି ଦୂରେଇ ଦେଲେ ଓ କହିଲେ କି ମୋତେ ଦୁର୍ଗର ଉପର ଛାତରେ ବସାଇ ଦିଅ ଓ ଘୋଷଣା କରିଦିଅ କି ସର୍ଦ୍ଦାର ନିଜେ ଯୁଦ୍ଧର ଦୃଶ୍ୟ ଦେଖିବେ ଓ ତୁମେମାନେ ବହୁତ ଆକ୍ରୋଶିତ ହୋଇ ଆକ୍ରମଣ କରି ଚାଲ, ଦୁର୍ଗର ରକ୍ଷା କର, ଏତିକିବେଳେ ମହାରାଜା ସାହିବ ପହଞ୍ଚିଯିବେ।

ଏତିକି କହି ନଲୁଓ୍ୱା ଜରନେଲ ଶରୀର ତ୍ୟାଗ କରିଥିଲେ। ନିଜର ମୃତ ଶରୀରକୁ ଦୁର୍ଗର ଛାତ ଉପରେ ଏମିତି ବସାଇ ରଖିଲେ ଯାହାକି ପ୍ରକୃତରେ ଜୀବନ୍ତ ଓ ଶତ୍ରୁଙ୍କ ତରଫକୁ ନଜର ରଖିଛନ୍ତି। ତୃତୀୟଦିନ ପରେ ମହାରାଜା ସାହିବ ସୈନ୍ୟବଳ ସହ ପହଞ୍ଚିଗଲେ ଓ ବହୁତ ଆକ୍ରୋଶିତ ହୋଇ ବନ୍ଧୁ ମୁହମ୍ମଦ ତିନି ଚାରିହଜାର ପଠାଣଙ୍କ ସହିତ ମରିଗଲା। ପରନ୍ତୁ ଏହି ଯୁଦ୍ଧରେ ଶିଖ ରାଜ୍ୟର ବାହାଦୁର ଓ ଅମୂଲ୍ୟ ତେଜୋବନ୍ତ କମାଣ୍ଡର ଇନ୍ ଚିଫ୍ ସବୁଦିନ ପାଇଁ ଶିଖ ରାଜ୍ୟ ଠାରୁ ଚାଲିଗଲେ। ପଠାଣମାନଙ୍କ ମଧ୍ୟରେ ଏହି ସର୍ଦ୍ଦାରଙ୍କ ପ୍ରତି ଏତେ ଡର ରହିଥିଲା କି ବର୍ତ୍ତମାନ ମଧ୍ୟ ପଠାଣମାନେ ଛୋଟ ପିଲାମାନଙ୍କୁ 'ହରିୟା ରାଗଲେ' (ଏ, ନଲୁଓ୍ୱା ଆସିଲା) କହି ଡରାଇ ଦିଅନ୍ତି।

(ଶିଖ ରାଜ୍ୟର ବିରୋଧୀ ଶିଖ ରାଜ୍ୟରେ ହିଁ ଜନ୍ମିଥିଲେ। ପରନ୍ତୁ ଅକାଳୀ ଫୁଲା ସିଂହଜୀ ଓ ନଲୁଓ୍ୱା ବାହାଦୁର ଦୁଇଜଣ ଏମିତି କମାଣ୍ଡର ଥିଲେ, ଯେଉଁମାନେ କି ମହାରାଜାଙ୍କ ଠାରୁ ମଧ୍ୟ ଅଧିକ ପ୍ରତାପଶାଳୀ ଥିଲେ, ପରନ୍ତୁ ମହାରାଜାଙ୍କ ଦେହାନ୍ତ ପରେ ଓ ଏହି ଦୁଇ ଜରନେଲଙ୍କ ଅନୁପସ୍ଥିତି ଯୋଗୁଁ ବିରୋଧୀମାନେ ମୁଣ୍ଡ ଉଠାଇ ଦେଖିଥିଲେ। ଶକ୍ତି ବଳରେ ଓ ସେମାନଙ୍କ ବିରୋଧୀ ସ୍ୱଭାବ ଓ ବିଶ୍ୱାସଘାତକତା ଶେଷରେ ଏହି ବହୁ ପରିଶ୍ରମ ସହ ପ୍ରାପ୍ତ କରିଥିବା ଏହି ଆଦଣୀୟଙ୍କ ଶିଖ ରାଜ୍ୟ ସମାପ୍ତ କରି ରଖିଦେଲେ।

## ଶିଖ ରାଜ୍ୟ ସମାପ୍ତ ହୋଇଗଲା

ଶେର-ଏ-ପଞ୍ଜାବ (ପଞ୍ଜାବର ସିଂହ) ମହାରାଜା ରଣଜିତ ସିଂହ ନିଜର ଆଦରଣୀୟ ଦେଶ ପଞ୍ଜାବକୁ ମହାନ୍ ନିର୍ଦ୍ଦେଶନା ସହ ଆଗକୁ ବଢ଼ାଇ ଶେଷରେ ୧୫ ଆଷାଢ଼ ସମ୍ବତ ୧୮୯୬ ସମୟରେ ସ୍ୱର୍ଗବାସ ହୋଇଥିଲେ। ତାଙ୍କର ବିୟୋଗ ଯୋଗୁଁ ସମଗ୍ର ପଞ୍ଜାବ କାନ୍ଦି ଉଠିଲା। ସେ ପଞ୍ଜାବର ଗର୍ବ ଓ ପ୍ରତିଭା ମଧ୍ୟ ଶେର-ଏ-ପଞ୍ଜାବ ସାଥିରେ ନେଇ ଚାଲିଗଲେ। ସେ ଜୀବିତ ଅବସ୍ଥାରେ ଥିବା ସମୟରେ ରାଜକୁମାର ଖଡ଼କ ସିଂହଙ୍କୁ ମହାରାଜା ଘୋଷଣା କରିଥିଲେ, ପରନ୍ତୁ ପ୍ରକୃତିରେ ଏମିତି ଖେଳ ରଚିଲା ଯାହାକୁ ସବୁକିଛି ନଷ୍ଟ ହୋଇଗଲା। ଖଡକ ସିଂହ କେବଳ ତିନି ମାସ ରାଜଗଦି ଭୋଗ କରିଥିଲେ। ୧୧ ମାସ ରୋଗଗ୍ରସ୍ତ ହେବାପରେ, ଯେତେବେଳେ ଖଡକ ସିଂହ ଚାଲିଗଲେ, ସଂସ୍କାର ପରେ ଫେରୁଥିବା କୁମାର ନୌନିହାଲ ସିଂହଙ୍କୁ ମଧ୍ୟ ଡୋଗରାମାନେ ଦୁର୍ଗର ଦ୍ୱାର ଛାତ ଭାଙ୍ଗି ଆହତ କରିବା ଉଦ୍ଦେଶ୍ୟ ସହ ଯାଉଥିଲେ। ଡୋଗରାମାନେ ଯମଦୂତ ଭାବେ ମହାରାଜା ରଣଜିତ ସିଂହଙ୍କ ସନ୍ତାନମାନଙ୍କୁ ଶେଷ କରିବାପାଇଁ ଲାଗିପଡ଼ିଥିଲେ।

ଏହାପରେ ଖଡ଼କ ସିଂହଜୀଙ୍କ ରାଣୀ ଚନ୍ଦ୍ର କୌର ରାଜ୍ୟଭାର ଗ୍ରହଣ କରିବାପାଇଁ ଇଚ୍ଛା କରିଥିଲେ। ପରନ୍ତୁ ଧ୍ୟାନ ସିଂହ ତାହାର ଘରର ଚାକରାଣୀଙ୍କୁ ଲୋଭ ଦେଖାଇ ରାଣୀଙ୍କୁ ମହଲ ମଧ୍ୟରେ ମାରିଦେଲା। ଏହି ନୀତି ଅନ୍ୟ ରାଣୀମାନଙ୍କୁ ମଧ୍ୟ କରାଗଲା। ପୁଣି ଚାଲାକ ଧ୍ୟାନ ସିଂହ ସବୁ ଦାସୀମାନଙ୍କୁ ମରାଇଦେଲା, ନଚେତ୍ ଏହି ଭେଦ ଖୋଲିଯିବ।

ଧ୍ୟାନ ସିଂହ ଶିଖ ରାଜ୍ୟକୁ ଅଧିକାର କରିବାପାଇଁ ଏହି ପାପ ରାସ୍ତାରେ ଚାଲିଲା। ପରନ୍ତୁ ରଣଜିତ ସିଂହଙ୍କ ପୁତ୍ରଙ୍କ ଜୀବିତ ଅବସ୍ଥାରେ କେମିତି ଅଧିକାର ପ୍ରାପ୍ତ କରିପାରନ୍ତା ? ସେଥିଯୋଗୁଁ ସେ କୁମାର ଶେର ସିଂହଜୀଙ୍କୁ ରାଜଗାଦିରେ ବସାଇଦେଲା କିନ୍ତୁ ତାହାର ଦେହରକ୍ଷୀମାନଙ୍କ ହାତରେ ମରାଇବା ଚାହିଁଲା, ଘରେ ବଡ଼ ଶତ୍ରୁ ରହିଛି ! ଏହି ସବୁ ବୁଦ୍ଧି ଡୋଗରାମାନଙ୍କର ଥିଲା। ଶେର ସିଂହ ଏହାର କୂଟନୀତି ବୁଝିପାରି ସଚେତ ହୋଇ ଦେହରକ୍ଷୀ ଓ ଅନ୍ୟାନ୍ୟମାନଙ୍କ ସହ ବୁଦ୍ଧି ଲଗାଇଲେ। ସବୁ ଜମିଦାରଙ୍କୁ ଡକାଇ ସେମାନଙ୍କୁ ଜମିଦାରୀ ଫେରାଇ ନିଜ ହାତରେ ରଖିଲେ। ପରନ୍ତୁ ସେମାନେ ରାଗି ଯାଇଥିଲେ, ସେମାନେ ଗୋଟିଏ ଦିନରେ ଶେର

ସିଂହ ଓ ପୁତ୍ର କୁମାର ପ୍ରତାପ ସିଂହଙ୍କୁ ହତ୍ୟା କରିଦେଲେ। ତାହା ସହିତ କଳହର ମୂଳ ଧ୍ୟାନ ସିଂହଙ୍କୁ ମଧ୍ୟ ମାରିଦେଲେ। ଶେର ସିଂହ ଦୁଇ ମାସ ଆଠ ଦିନ ରାଜଗାଦିରେ ବସିଥିଲେ। ସେମାନେ ଶେର ସିଂହଙ୍କୁ ମାରି ଦିଲୀପ ସିଂହଙ୍କୁ ରାଜଗାଦିରେ ବସାଇଥିଲେ।

ଦ୍ୱିତୀୟ ଦିନ ଫୌଜମାନଙ୍କୁ ବତାଇ ଧ୍ୟାନ ସିଂହର ପୁତ୍ର ହୀରା ସିଂହ ତାଙ୍କୁ ମରାଇଦେଲା ଓ ନିଜେ ମନ୍ତ୍ରୀ ହୋଇଗଲା। ସେ କୁମାର କଶ୍ମୀରା ସିଂହଙ୍କୁ ମରାଇଦେଲା। ଶିଖ ଫୌଜଙ୍କୁ ଏହି ଖବର ମିଳିଲା। ସେମାନେ କ୍ରୋଧିତ ହୋଇ ତାକୁ ମଧ୍ୟ ମାରିଦେଲେ। ପୁଣି ରାଣୀ ଜିନ୍ଦ କୌରଙ୍କ ଭାଇ ଜବାହର ସିଂହ ମନ୍ତ୍ରୀ ହେଲେ। କିନ୍ତୁ ସେ କୁମାର ପିଶୌରା ସିଂହଙ୍କୁ ମାରିଦେଲେ। ତାହା ଉପରେ ସିଂହ ଫୌଜ ରାଗିଯାଇ ତାକୁ ଶିକାର କରିଥିଲେ।

ଶିଖ ଫୌଜଙ୍କ ମଧ୍ୟରେ ଏହି ଢଙ୍ଗ ଯୋଗୁଁ ଅଶାନ୍ତି ବଢ଼ିଗଲା। ବର୍ତ୍ତମାନ ହୋଇଥିବା ମନ୍ତ୍ରୀ ଓ ଜରନୈଲ ଶିଖ ଫୌଜଙ୍କୁ ମରାଇବା ପାଇଁ ବିଚାର କରି ଇଂରେଜମାନଙ୍କ ସହ ଲଢ଼ାଇ ଆରମ୍ଭ କରିଦେଲେ। ଶିଖ ଫୌଜମାନେ ଇଂରେଜମାନଙ୍କ ଉପରେ ପ୍ରଭାବିତ ହୋଇ ସେମାନଙ୍କୁ ଦବାଇ ଚାଲିଲେ। ଏହାଦେଖି ଜରନୈଲମାନେ ବିଶ୍ୱାସଘାତ କରିଲେ। ଏଥିଯୋଗୁଁ ଶିଖ ସୈନ୍ୟଙ୍କ ଅସଫଳତା ଆରମ୍ଭ ହୋଇଗଲା। ସର୍ଦ୍ଦାର ଶାମ ସିଂହ ଅଟାରୀ ମଧ୍ୟ ସାହାଯ୍ୟ ପାଇଁ ଆସିଲେ। ଯୁଦ୍ଧ କରିବାବେଳେ ଶହୀଦ ହୋଇଗଲେ। ବିଶ୍ୱାସଘାତ କରି ଡୋଗରାମାନେ ଶିଖ ସୈନ୍ୟମାନଙ୍କୁ ମରାଇଦେଲେ। ଇଂରାଜୀମାନଙ୍କ ଉତ୍ସବ ହୋଇଗଲା। ଗୁଲାବ ସିଂହ ଇଂରାଜୀମାନଙ୍କ ସହ ହାତ ମିଶାଇ ଜମ୍ମୁ-କାଶ୍ମୀର ନିଜେ ଅଧିକାର କରିନେଲା। ଉରୋବାଲର ସମାଧାନ କରାଇ ପଞ୍ଜାବକୁ ଇଂରାଜୀ ରେଜିମେଣ୍ଟ ଅଧିକାର କରିଲା।

ଇଂରାଜୀମାନେ ପଞ୍ଜାବକୁ ନିଜ ଅଧୀନରେ ରଖିବାପାଇଁ ଆଗ୍ରହ ହୋଇ ରହିଥିଲେ। ସେଥିଯୋଗୁଁ ସେମାନେ ଉତ୍ପାତ କରିଚାଲିଲେ ଓ ଶିଖ ସର୍ଦ୍ଦାରମାନଙ୍କୁ ହଇରାଣ କରି ଚାଲିଲେ। ଦିବାନ ମୂଳ ରାଜ ଯିଏ ଲାହୋର ଦରବାରରେ ମୁଲତାନର ହାକିମ ଭାବେ ରହିଥିଲା ସେ ଇଂରେଜଙ୍କ ବିରୋଧରେ ଆନ୍ଦୋଳନ ଆରମ୍ଭ କରିଦେଲେ। ରାଜା ଶେର ସିଂହ ଅଟାରୀ (ରାଜା) ଲାହୋରର ଦରବାର ତରଫରୁ ତାଙ୍କୁ ବିରୋଧ କରିବାପାଇଁ ପଠାଗଲା କିନ୍ତୁ ଶିଖ ଫୌଜମାନେ ଇଂରେଜମାନଙ୍କର ଦୃଢ଼ ବିରୋଧ କରୁଥିଲେ। ସେଥିଯୋଗୁଁ ଫୌଜଙ୍କ ବ୍ୟବହାର ଯୋଗୁଁ ସେ ରୁକ୍ଷ

ହୋଇଗଲେ । ଅଟାରୀ ରାଜା ଶେର ସିଂହଙ୍କ ପିତା ପେଶାବର ଠାରେ ଗଭର୍ଣ୍ଣର ଥିଲେ । ସେଠାରେ ରେଜିମେଣ୍ଟ ପହଞ୍ଚି ତାଙ୍କୁ ବହୁତ ଅସୁବିଧାରେ ପକାଇଲେ । ସେଥିଯୋଗୁଁ ପିତା, ପୁତ୍ର ତଥା ଆହୁରି ବହୁତ ସର୍ଦ୍ଦାରମାନେ ମିଶି ଭାଗ୍ୟକୁ ଆଦରି ପରିବର୍ତ୍ତନ ସକାଶେ ଭୟାନକ ଯୁଦ୍ଧ ଆରମ୍ଭ କରିଦେଲେ । ଯେମିତି ଏମାନଙ୍କୁ ପଞ୍ଜାବଠାରୁ ତଡ଼ି ଦିଆଯାଇ ପାରିବ । କିନ୍ତୁ ଇଂରେଜଙ୍କ ସହ ଚାରି ଥର ଯୁଦ୍ଧ ପରେ ଯୁଦ୍ଧ ସାମଗ୍ରୀ ଓ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀ ସମାପ୍ତ ହୋଇଗଲା । ବାଧ ହୋଇ ସେମାନେ ଅସ୍ତ୍ରଶସ୍ତ୍ର ଛାଡ଼ିଥିଲେ ।

କାରଣ ଲାହୋର ଦରବାର ତରଫରୁ କେତେକ ଶିଖ ସର୍ଦ୍ଦାର ମଧ୍ୟ ଇଂରେଜମାନଙ୍କ ସହ ମିଶି ଏମାନଙ୍କ ବିରୋଧରେ ଲଢୁଥିଲେ । ବର୍ତ୍ତମାନ ଇଂରେଜମାନେ ବିଜୟ ପ୍ରାପ୍ତ କରିଲେ । ସେମାନେ ମହାରାଣୀ ଜିନ୍ଦଙ୍କୁ ଧରିନେଲେ । ଦିଲୀପ ସିଂହଙ୍କୁ ମଧ୍ୟ ରାଜଗାଦିରୁ ଓହ୍ଲାଇଦେଲେ ଓ ପଞ୍ଜାବକୁ ନିଜ ଅଧୀନରେ ମିଶେଇ ଦେଲେ ।

୧୯୦୫ ଯାଏଁ ଇଂରାଜୀମାନେ ପଞ୍ଜାବକୁ ପୂରାପୂରି ଅଧିକାର କରିଦେଲେ ଓ ବର୍ତ୍ତମାନ ଶିଖ ସର୍ଦ୍ଦାରମାନଙ୍କର ବୁଦ୍ଧି ଆସିଲା କି ଆମର ସ୍ୱାଧୀନତା ଚାଲିଗଲା । ସେମାନେ ଇଂରାଜୀମାନଙ୍କ ତୋଷାମଦିଆ ବ୍ୟବହାର ଖୁବ୍ ଭଲ ଭାବେ ବୁଝିପାରିଲେ, କିନ୍ତୁ ସେତେବେଳେ ଉପାୟ ଶୂନ୍ୟ ହୋଇସାରିଥିଲେ । ଇଂରାଜୀମାନେ ବାଛି-ବାଛି ସବୁ ଶିଖ ସର୍ଦ୍ଦାରମାନଙ୍କୁ ବାହାର ଦୂର ଦୂରରେ ନଜରବନ୍ଦୀ ଭାବେ ରଖିଲେ । ବହୁତ ବର୍ଷ ଯାଏଁ ଶିଖ ସୈନ୍ୟମାନେ ଓ ଶିଖ ଜରନୈଲମାନଙ୍କୁ ବିଶ୍ୱାସ କରିଲେ ନାହିଁ ।

## କଣ ବୁଝାଯିବ ?

ନିରାଶ ! ଶହେ ବର୍ଷ ପାଖାପାଖି ତଲବାର ଚଲାଇ ମାରକାଟ କରି ଅଗଣିତ ବଳିଦାନ ଦେଇ ପ୍ରାପ୍ତ କରିଥିବା ସ୍ୱାଧୀନତା ଅଳ୍ପ କେତେ ବର୍ଷ ମଧ୍ୟରେ ସମାପ୍ତ ହୋଇଗଲା । କାହିଁକି ? ଏହାର ଉତ୍ତର ଯାହାକୁ ଯେମିତି ମିଳିବ, ମିଳିପାରେ, ପରନ୍ତୁ ମତେ ଏହାର ସବୁଠାରୁ ବଡ କାରଣ ଗୁରୁ ଶିଖ ଓ କ୍ରିୟାଶୀଳ ଶିଖଙ୍କ ଅଭାବ ଯୋଗୁଁ ଏମିତି ପ୍ରତୀତ ହୋଇଥିଲା । ସର୍ଦ୍ଦାର ପଦ ପ୍ରାପ୍ତି ଓ ସୁଖ ସଂଭୋଗରେ ଲାଳସା ଯୋଗୁଁ ନିଜର ଶିଖ ନିୟମ ପଦ୍ଧତି ଓ ପରମ୍ପରା ଭୁଲିଯାଇ ପ୍ରକୃତ ଭାବେ

ଏହି ବିନାଶର କାରଣ ହୋଇଥିଲା । ଧ୍ୟାନ ଦେଇ ଚିନ୍ତା କରିଲେ, ତାହା ନିର୍ମଳ ଭାବେ ପ୍ରତୀତ ହେବ କି ଶିଖ ଧର୍ମ ଗୁରୁଦେବମାନେ ସୃଷ୍ଟିରେ ଅଧର୍ମକୁ ସମାପ୍ତ ପାଇଁ ଏହି ଦଣ୍ଡ ମିଳିଥିଲା । ଏହି ଧର୍ମର ଈଶ୍ୱର ପ୍ରଭୁଙ୍କ ଅତ୍ୟନ୍ତ ନିକଟ ହୋଇଥିବାର ସମ୍ମାନ ଅଟେ । ବିଶେଷ ଭାବେ–

"ମୈ ଆପନା ସୁତ ତୋହି ନିବାଜା
ପନ୍ଥ ପ୍ରଚୁର କରବୈ କଉ ସାଜା ।।"

ଏହା କହିବା ପ୍ରଭୁଙ୍କ ପନ୍ଥ ଅଟେ ।

ଏହି ଧର୍ମର ରୀତି ପରମ୍ପରା, ବ୍ୟବହାର ଚାଲିଚଳଣି ଶିଖମାନଙ୍କ ନାମ ସ୍ମରଣ ସହ ଯୋଡ଼ିହେବା ଓ ପୁଣି ସୈନ୍ୟ ଯୋଦ୍ଧା ଓ ସାହସିକତା ମଧ୍ୟ ବିଶେଷତା ଅଟେ । ସେଥିଯୋଗୁଁ ୱାହିଗୁରୁ ଏତେ ନିକଟ, ୱାହେଗୁରୁ ଅତି ନିକଟତା, ୱାହେଗୁରୁଙ୍କ ଏହି ପ୍ରତ୍ୟକ୍ଷ ଓ ସର୍ବତ୍ର ଦୃଶ୍ୟ ହେଉଥିବା ଶିଖ ଯେତେବେଳେ ନିଜର ପ୍ରକୃତ ପରିଚୟ ଭୁଲି ଯାଏ, ନିରବୈରତା, ସମାନତା, ସମଦୃଷ୍ଟି ଓ ନିଷ୍କାମତାର ପ୍ରକୃତ ମାର୍ଗ ଯିଏ ଭୁଲିଯାଏ । ତାହା କେତେ ଅନୁଚିତ । ବାସ୍ ! ଏହି କାରଣ ଯୋଗୁଁ ସେହି ଆଦରଣୀୟ ସର୍ବଦୃଷ୍ଟ ୱାହେଗୁରୁଜୀଙ୍କ ହାତରୁ ଏମିତି ଭାବେ ଶିଖମାନଙ୍କ ମସ୍ତକ ଶୀଘ୍ର ବାହାରିଯାଏ ଓ ଶିଖ ସେତେବେଳେ ଆସି ପହଞ୍ଚି ଯାଆନ୍ତି । ଯେଉଁଠି ସାଧାରଣ ଭାବେ ଭୁଲି ସଂସାର ଛାଡ଼ି ଦିଅନ୍ତି ଅର୍ଥାତ୍ ଯେଉଁ ପରିସ୍ଥିତି ସମୟରେ ସତ୍‌ଗୁରୁମାନେ ତାହାକୁ ଉଦ୍ଧାର କରିଥିଲେ ଓ ପ୍ରଭୁଙ୍କ ରଙ୍ଗରେ ରଙ୍ଗିନ ହୋଇ ଆତ୍ମିକ ରଙ୍ଗରେ ବୁଡ଼ି ରହିଥିଲେ । ଅନ୍ୟ ଧର୍ମ ଓ ଜାତି ବିଷୟରେ ଏହିପରି କେବେ ଅନୁମାନ କରାଯାଇପାରିବ ନାହିଁ, ପରନ୍ତୁ ଏମାନେ ନିଜର ଜାତି ବିଷୟରେ ଗୋଟିଏ ସ୍ଥିରତା ହେଉଛି କି ଆମର ପତନର ବହୁତ ବଡ଼ କାରଣ କେବଳ ଆମର ନିଜର ଆଦର୍ଶ ଭୁଲିବା ।

ଆମ୍ଭେମାନେ ମାଛ ଭଳି ଅଟୁ, ୱାହେଗୁରୁଙ୍କ ସ୍ମରଣ (ଜପିବା) ଓ ଶିଖଙ୍କ ଦୃଢ଼ତା ଓ ଶୁଦ୍ଧତା ପାଣି ଭଳି ଅଟେ । ପରନ୍ତୁ ଯେତେବେଳେ ଏହି ପାଣିଠାରୁ ଆମ୍ଭେ ବିଚ୍ଛେଦ ଅଟୁ ତାହେଲେ ତୁରନ୍ତ ଆମର ସେହି ପରିସ୍ଥିତି ହୋଇଯିବ ଯେମିତିକି ମାଛଟିଏ ପାଣିରୁ ବିଚ୍ଛେଦ ହୋଇ ଛଟପଟ ହୋଇ ମରିଯାଏ, କିନ୍ତୁ ଆମେ ଦୁନିଆ ମୋହ ରୂପକ ଚକ୍ରରେ ପଡ଼ି ଭଲ ଭାବେ ପେଷି ହୋଇଯାଉ । ଯେତେବେଳେ ଶିଖମାନେ ନିଜର ଦୃଢ଼ତା ଓ ବିଶ୍ୱାସ ଅଟଳ ରଖିଥିଲେ, ନିଜ ଉପରେ ଆସୁଥିବା

ପ୍ରତ୍ୟେକ ସଙ୍କଟକୁ ବହିଷ୍କାର କରିପାରୁଥିଲେ, ପରନ୍ତୁ ଯେମିତି ଆମର ବିଶ୍ୱାସ ଓ ଦୃଢ଼ତାର ମାତ୍ରା ତଳକୁ ଖସିଲା , ସବୁ ସଙ୍କଟର ଭଣ୍ଡାର ମଧ୍ୟରେ ଜାଲ ମଧ୍ୟରେ ବାନ୍ଧି ହୋଇ ନିଜର ଲକ୍ଷ୍ୟ, ଧର୍ମ ଓ ପ୍ରତିଷ୍ଠା, ମର୍ଯ୍ୟାଦା, ସମ୍ମାନ ସବୁ କିଛି ହରାଇ ବସିଲେ।

## ପରେ କଣ ହୋଇଥିଲା ?

ଯେତେବେଳେ ଶିଖ ଶାସନ ଚାଲିଥିଲା, ଠିକ୍ ଏହି ପରିସ୍ଥିତି ହୋଇଥିଲା। ଇଂରାଜୀଙ୍କ ଶକ୍ତି ଆମ୍ଭମାନଙ୍କୁ ଉପାୟଶୂନ୍ୟ କରାଇ ଦେଲା ଓ ବହୁତ ବର୍ଷ ଯାଏ ଏହି ଅବସ୍ଥା ଲାଗିରହିଲା। ଶିଖମାନେ ନିଜର ଶିଖ ଆଦର୍ଶରୁ ଏତେ ତଳକୁ ଖସିଗଲେ ଶିଖଙ୍କ ସଂଖ୍ୟା ୬୦-୭୦ ଲକ୍ଷ ଠାରୁ କମ ହୋଇ ହୋଇ କେବଳ ୧୮ କିମ୍ବା ୨୦ ଲକ୍ଷରେ ପହଞ୍ଚିଲା। ପରନ୍ତୁ ସମ୍ଵତ ୧୯୧୪ (୧୮୫୭) ଶତାବ୍ଦୀ ଗଦର ଏହି ସ୍ରୋତକୁ ଅବରୋଧ କରିଥିଲା। ସେତେବଳେ ଇଂରେଜମାନେ ନିଜର ସିଦ୍ଧାନ୍ତ ବଦଳାଇଲେ ଓ ଶିଖମାନଙ୍କ ନିଜ ସୈନ୍ୟ ଦଳରେ ଭର୍ତ୍ତି କରିବା ଆରମ୍ଭ କରିଦେଲେ। ସେତେବେଳେ ଶୋଚନୀୟ ଥିଲା ଓ ପୂର୍ବପଟର ଫୌଜଙ୍କ ସହ ରୁକ୍ଷ ହୋଇ ସେମାନେ ଇଂରେଜମାନଙ୍କ ସହ ଭାରତର ଏକା ସ୍ୱତନ୍ତ୍ର ରାଜ୍ୟ, ଶିଖ ରାଜ୍ୟକୁ ସମାପ୍ତ କରିଦେଇଥିଲେ ଓ ଇଂରାଜୀମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ କରିଥିଲେ।

ତାହା ସହିତ ମୋଗଲମାନଙ୍କ ସହ ଶିଖମାନଙ୍କ ପୁରୁଣା ଶତ୍ରୁତା ଥିଲା। ତାହାର ଲାଭ ଇଂରାଜୀମାନେ ଉଠାଇଥିଲେ, ଜ୍ଞାନୀମାନେ ଆଜି ସେହି ସମୟରେ ଶିଖମାନଙ୍କର ଏହି କାର୍ଯ୍ୟ ବିଳାପକୁ ନିନ୍ଦନୀୟ ମତ ଦେଇଛନ୍ତି, ପରନ୍ତୁ ଯଦି ଶିଖମାନଙ୍କ ଓ ମୋଗଲମାନଙ୍କ ଦୀର୍ଘ ୧୦୦ ବର୍ଷର ଯୁଦ୍ଧ, ପ୍ରାଣ ଦାନ ଓ କଷ୍ଟ ସହ୍ୟ କରିଥିଲେ ଓ ପୂର୍ବ ତଟର ସୈନ୍ୟମାନଙ୍କୁ ପଞ୍ଜାବ ଚାକର ଭାବେ ଇଂରାଜୀମାନଙ୍କ ସାହାଯ୍ୟ କରିଥିଲେ ସେମାନଙ୍କ ବିଚାରକୁ ନିନ୍ଦା କରିଥିଲେ। ୧୮୫୭ ସମୟର ଗଦରକୁ ହିନ୍ଦୁସ୍ତାନର ସ୍ୱାଧୀନତାର ଯୁଦ୍ଧ ନାମ ଦେଉଛନ୍ତି ପରନ୍ତୁ ପ୍ରକୃତରେ ଶିଖମାନଙ୍କୁ ଏହା ଜଣା ନ ଥିଲା କି ସ୍ୱାଧୀନତା ଲୁଟି ଚାକର କରିବା ମାନେ ଓ ଶିଖମାନଙ୍କ ପ୍ରତି ଅତ୍ୟାଚାର କରିବା ମୋଗଲ ସାମ୍ରାଜ୍ୟ ସକାଶେ ପୂର୍ବ ତଟର ଯୁଦ୍ଧ ସମୟରେ ସର୍ଦ୍ଦାର ମନେ ପଡ଼ିଥିଲେ। ପୁଣି ଶିଖମାନଙ୍କୁ ଏହି ଗଦର

ମିଶାଇବା ପାଇଁ ସେମାନଙ୍କୁ ନିମନ୍ତ୍ରଣ ଦିଆଯାଇ ନ ଥିଲା କିମ୍ବା କୌଣସି ଦାୟିତ୍ୱ ଦିଆଯାଇ ନ ଥିଲା।

## ନାମଧାରୀ ଲହର

ଶିଖମାନଙ୍କୁ ସୈନ୍ୟ ଦଳରେ ଭର୍ତ୍ତି କରାଗଲା କିନ୍ତୁ ଶିଖମାନଙ୍କ ମନରେ ଇଂରେଜମାନଙ୍କ ପ୍ରତି ଶତ୍ରୁତା ସେହିଭଳି ବ୍ୟବହାର ଥିଲା। ତାହା ଧୀରେ ଧୀରେ ବଢ଼ି ଚାଲିଲା। ଗଦରର ଆଠ ଦଶବର୍ଷ ପରେ ଏହି ଆନ୍ଦୋଳନ ସମଗ୍ର ପଞ୍ଜାବରେ ବଢ଼ି ଚାଲିଲା। କୁକା ଲହରର ସଂସ୍ଥାପକ ବାବା ରାମ ସିଂହଜୀ ସେତେବେଳେ ଇଂରାଜୀ ଓ ଇଂରାଜୀଙ୍କ ଅସଦ୍‌ବ୍ୟବହାର ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ। ସେହି ସ୍ୱର ଶିଖମାନଙ୍କୁ ବହୁତ ଶୀଘ୍ର ପ୍ରଭାବ ପକାଇଲା, ତାହା ସହିତ ଶିଖ ଜୀବନର ପ୍ରକୃତ ମନ୍ତ୍ର ନାମ ବାଣୀର ସ୍ରୋତ ଚାଲୁ ରହିଲା। ଶିଖମାନଙ୍କ ହୃଦୟରୁ ସେତେବେଳେ ଗୁରୁବାଣୀର ପ୍ରଭାବ ଏତେ ପ୍ରେମମୟ ହୋଇଗଲା, ତାହା ଘରେ ଘରେ ଗୁରୁବାଣୀ ରୂପେ ଗୁଞ୍ଜରି ଉଠିଲା।

ବାବା ରାମ ସିଂହଜୀଙ୍କ ଧର୍ମ ଓ ଶିଖ ଧର୍ମର ପ୍ରଚାରର ପରିଣାମ ଏମିତି ଭାବେ ପ୍ରଭାବ ପକାଇଲା କି ଶୀଘ୍ର ପୂରା ପଞ୍ଜାବ ଠାରେ ପ୍ରାୟ ସବୁ ଶିଖ, ଏକ ସଙ୍ଗଠନ ମଧ୍ୟରେ ବାନ୍ଧି ହୋଇଗଲେ ଓ ଜଣଙ୍କ ଠାରୁ ଅନ୍ୟ ଜଣଙ୍କ ଯାଏଁ ଗୋଟିଏ ସ୍ୱର ଉଠିଲା। ଇଂରାଜୀମାନେ ପ୍ରଥମେ ଚୁପ୍ ରହିଥିଲେ, ପରନ୍ତୁ ଯେତେବେଳେ ଶିଖଙ୍କ ଏକତା ଓ ବିରୋଧ ବହୁତ ବଢ଼ିବା ଦେଖାଗଲା ଓ ଅତ୍ୟାଚାରୀ, ପରାଧୀନର ବିରୋଧରେ ସ୍ୱର ଉଠିବା ଦେଖି ସେମାନେ ତୁରନ୍ତ ପ୍ରତିରୋଧ କରିଲେ। ବନ୍ଦୀ କରାଇଲେ ଓ ସେମାନଙ୍କ ପ୍ରତି କଡ଼ା ନଜର ରଖାଗଲା, ପରନ୍ତୁ ଦୁଃଖର ବିଷୟ ଏହି ସ୍ରୋତ ଶୀଘ୍ର ଦବି ଯାଇଥିଲା। ବାବା ରାମ ସିଂହଜୀ ସେତେବେଳେ ଆହୁରି ଶକ୍ତିଶାଳୀ ହେବା ପାଇଁ କିଛି ସମୟ ଚାହୁଁଥିଲେ, କିନ୍ତୁ ବ୍ୟସ୍ତତା ସହ୍ୟ କରି ନ ପାରି ତାହା ଶୀଘ୍ର ଆରମ୍ଭ କରିଦେଲେ। ମୁସଲମାନମାନେ ସେତେବେଳେ ଗୋ ହତ୍ୟା କରୁଥିଲେ, କିନ୍ତୁ ଇଂରାଜୀମାନଙ୍କ ସମୟରେ ମଧ୍ୟ ତାହା କମ୍ ହୋଇ ନ ଥିଲା। ମାଲେରକୋଟଲାଠାରେ ସିଂହମାନେ ଆକ୍ରମଣ କରି ଗାଈ ମାରୁଥିବା ବହୁତ ଜଣଙ୍କୁ ମାରିଦେଲେ। ତାହାର ବାହାନା ଇଂରାଜୀମାନଙ୍କୁ ମିଳିଗଲା ଓ ସେମାନେ ବାବା ରାମ ସିଂହଜୀଙ୍କୁ ବନ୍ଦୀ ଭାବେ ରେଙ୍ଗୁନ୍ ପଠାଇଦେଲେ। ମାଲେରକୋଟଲାଠାରେ

୧୯୨୮ ସମ୍ବତ ମାଘ ମାସ ସମୟରେ ୫୦ଜଣ ଶିଖଙ୍କୁ ତୋପ ସାମନା ରଖି ଉଠାଇ ଦେଲେ।

ଏହି ସ୍ରୋତ ନିଶ୍ଚିତ ଭାବେ ନିଜର ପ୍ରକୃତ ଉଦ୍ଦେଶ୍ୟ (ନିଜର ହରାଇଥିବା ସ୍ଥାନ ପ୍ରାପ୍ତ କରିବା)ରେ ସଫଳତା ମିଳି ନ ଥିଲା, ପରନ୍ତୁ ଏହି ସ୍ରୋତ ଶିଖମାନଙ୍କୁ ପୁଣି ଥରେ ନାମ ବାଣୀରୁ ସ୍ମରଣ (ଜପ) ଭୁଲି ଯାଇଥିବା ପୁଣି ମନେ ପକାଇଦେଲା, ଯେଉଁମାନେ ଶିଖମାନଙ୍କ ଆତ୍ମିକ ଜୀବନକୁ ଛିନ୍ନଛତ୍ର କରିଲେ, ଯାହାକି ଶିଖମାନଙ୍କର ଅସଲ ରାମ-ପୁଞ୍ଜି ଅଟେ।

ପୁଣି ଆହୁରି ଗୋଟିଏ ଦୁଃଖର ବିଷୟ ମଧ୍ୟ ହୋଇଥିଲା କି ବାବା ରାମ ସିଂହଜୀଙ୍କୁ ବନ୍ଦୀ ହେବା ପରେ ନାମଧାରୀ ସ୍ରୋତର ଅନ୍ୟ ନେତାମାନେ ବାବାଜୀଙ୍କୁ ଗୁରୁ କହିବା ଆରମ୍ଭ କରିଦେଲେ। ପରନ୍ତୁ ନଜରବନ୍ଦୀ ସମୟରେ ରେଙ୍ଗୁନ ଠାରେ ଯେଉଁ ପତ୍ର ବାବାଜୀ ପଞ୍ଜାବ ପଠାଇଥିଲେ ସେଥିରେ କୌଣସି ସ୍ଥାନରେ ବାବାଜୀ ନିଜକୁ ନିଜେ ଗୁରୁ ଶବ୍ଦ ପ୍ରୟୋଗ କରି ନ ଥିଲେ, ଶିଖମାନେ ହିଁ ଲେଖିଥିଲେ ଓ ଭୁଲ୍ ପ୍ରଚାର ଆରମ୍ଭ କରିଦେଲେ ଓ ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଗୁରୁ ପ୍ରଥା ଆରମ୍ଭ କରିଦେଲେ।

ଏହି ଭୁଲ୍‌ର ଢେଉ ଭୁଲ୍ ଭାବେ ରାସ୍ତା ମୋଡ଼ିଲା ଓ ବାବା ରାମ ସିଂହଜୀଙ୍କ ସେବା ଓ ବଳିଦାନକୁ ଗୋଟିଏ କୋଣରେ ସୀମିତ ରଖି ଗୁରୁ ଶିଖମାନେ ତାଙ୍କ ସହିତ ସମ୍ପର୍କ କାଟିଦେଲେ। ଶିଖମାନେ କେବଳ ଗୁରୁ ନାନକ - ଗୁରୁ ଗୋବିନ୍ଦ ସିଂହଜୀ ରୂପ ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କୁ ମାନନ୍ତି। ସେଥିଯୋଗୁଁ ସମ୍ବନ୍ଧ କେମିତି ଯୋଡ଼ି ହୋଇ ରହିପାରନ୍ତା ? ଶିଖମାନେ ବାବା ବନ୍ଦା ସିଂହଜୀଙ୍କ ଭଳି ବାହାଦୁରଙ୍କୁ ମଧ୍ୟ (ଯିଏ ମୋଗଲ ଶାସନ କାଳରେ ଥରେ ପଞ୍ଜାବଠାରେ ଏହିପରି ଭାବେ ସମାପ୍ତ କରି ରଖିଥିଲେ) ଅସ୍ୱୀକାର କରିଥିଲେ, ଯାହାକି ସେ ମଧ୍ୟ ଗୁରୁମତିର ବିପରୀତ ଭାବେ ନିଜର ବୁଦ୍ଧି ପ୍ରୟୋଗ କରିବା ପାଇଁ ଚେଷ୍ଟା କରିଥିଲେ।

ସେଥିଯୋଗୁଁ ସେତେବେଳେ ନାମଧାରୀ ଯେଉଁ ଲହର ଦବିଯିବା ଯୋଗୁଁ ସେମାନଙ୍କ ଓ ଶିଖମାନଙ୍କ ମଧ୍ୟରେ ଗାଦିଧାରଣ କରି ବସିବା ଓ ଶିଖ ଜାତି ପ୍ରତିଷ୍ଠା ପ୍ରତି ପୁଣି ନିର୍ମମ ଧକ୍କା ଲାଗିଥିଲା। ଏହି ଅବିଶ୍ୱାସତା ଯୋଗୁଁ ଯାହା କିଛି ବାକି ଥିଲା ତାହାର ପୂରା ହୋଇଗଲା ଓ ଶିଖମାନଙ୍କ ଚାଲି ଚଳନ ଓ ଶିଖ ଢଙ୍ଗ, ପରମ୍ପରା ପଦ୍ଧତି କିଛି ଦିନ ଯାଏଁ ପୁଣି ଗଭୀର ନିଦ୍ରାରେ ଶୋଇ ପଡ଼ିଲା।

## ସିଂହ ସଭା ଲହର

୧୯୩୪ - ୩୫ ସମୟରେ ପଞ୍ଜାବଠାରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଆର୍ଯ୍ୟ ସମାଜର ପ୍ରଚାର ଜୋର ସୋରରେ ଚାଲିଥିଲା । ଏହି ପ୍ରଚାରର ଲହର ଶିଖମାନଙ୍କ ପ୍ରତି ଖରାପ ପ୍ରଭାବ ପଡ଼ିଥିଲା । କେତେ ଶିଖ୍ ଏହି ପ୍ରଚୋରର ପବନରେ ବହି ଯାଇ ପବିତ୍ର କେଶ କଟାଇ ଅପବିତ୍ର ହୋଇଗଲେ । ଏହି ରୋଗ ବହୁତ ଗୁରୁ ଶିଖଙ୍କ ମନକୁ ପ୍ରେରିତ କରାଇଲା କି ତୁମେମାନେ ଦେଖିପାରୁଛ; ଏହି ସମୟରେ ଶିଖମାନଙ୍କୁ ସେବା ସକାଶେ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହେବା ସମୟ । ସେଥିଯୋଗୁଁ ଏମିତି ବିଚାର ଆସିଥିବା ଗୁରୁ ଶିଖମାନେ ଉଦ୍ୟମ ଏମିତି ଭାବେ କରିଥିଲେ କି ଲାହୋରଠାରେ ଏକତ୍ରିତ ହୋଇଥିଲେ ଓ ୧୯୪୪ ସମୟରେ ଖାଲସା ସମ୍ମିଳନୀର ମୂଳଦୁଆ ରଖିଥିଲେ ।

ଏହା ସିଂହ ସଭା ଢେଉର ମୂଳଦୁଆ ଥିଲା । ଏହି ଢେଉର ମୁଖିଆମାନଙ୍କ ମଧ୍ୟରେ ଜବାହାର ସିଂହ, ସର୍ଦ୍ଦାର ଗୁରୁ ମୁଖ ସିଂହ, ଜ୍ଞାନୀ ଦତ୍ତ ସିଂହଜୀଙ୍କ ନାମ ପ୍ରଶଂସନୀୟ ଅଟେ । ଯାହାର ଉପଦେଶ ଓ ଲିଖିତ ହିସାବରେ ଶିଖ ଜାତିକୁ ସଚେତନ କରାଇ ଦେଇଥିଲା । ଶିଖମାନଙ୍କ ମଧ୍ୟରେ ଆର୍ଯ୍ୟ ସମାଜର ପ୍ରଚାରକୁ ପ୍ରହାର ହୋଇଥିଲା । ସେମାନଙ୍କ ଉଦ୍ୟମ ଓ ପ୍ରଚାର ଗାଁ ଗାଁ ଓ ସହର ସହର ସିଂହ ସଭା ନିର୍ମିତ ହୋଇଗଲା । ସେମାନେ ଶିଖ ପ୍ରଚାର ଖୁବ୍ ଜୋରସୋରରେ କରି ଚାଲିଲେ ଓ ଭାଗ ନେଲେ । ସେଥିଯୋଗୁଁ ଏହି ଢେଉ ଶିଖମାନଙ୍କ ଜାଗୃତି ସୃଷ୍ଟି କରାଇ ଥିଲା ।

୧୯୫୬ ବେଳେ ମୁଖ୍ୟ ଖାଲସା ସମ୍ମେଳନ ହୋଇଥିଲା । ସେମାନେ ପୁଣି ପ୍ରଚାର କରିବା ପାଇଁ ସମ୍ମିଳନୀର ସ୍ଥାନ କରିଲେ ଓ ସେହି ସମ୍ମେଳନର ପ୍ରଚାର କାର୍ଯ୍ୟ ଉତ୍ତମ ରୂପେ କରିଲେ ଓ ବିଶେଷଭାବେ ଧାର୍ମିକ ପ୍ରଚାର ସୁଚାରୁ ରୂପେ କରାଯାଇଥିଲା । ବହୁତ ପ୍ରାଥମିକ, ମାଧ୍ୟମିକ, ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ସ୍ଥାପନା କରାଗଲା । ଏହି ସମ୍ମିଳନୀ ତରଫରୁ ଶିଖ ଶିକ୍ଷା ସମ୍ମିଳନୀ କରାଇ ବାର୍ଷିକ ଉତ୍ସବ ପାଳନ କରାଗଲା, ତାହା ବର୍ତ୍ତମାନ ସୁଦ୍ଧା ହୋଇ ଆସୁଛି ।

## ଇଂରେଜମାନଙ୍କ ବିରୋଧରେ ପୁଣି ସମ୍ବେଦନଶୀଳତା ବଢ଼ିଥିଲା

୧୯୬୭ ନିକଟରେ ଇଂରାଜୀ ସରକାର ହିନ୍ଦୁସ୍ତାନର ରାଜଧାନୀ କଲିକତା ସ୍ଥାନରେ ଦିଲ୍ଲୀଠାରେ ସ୍ଥାପନା କରିଲେ । ଦିଲ୍ଲୀର ଗୁରୁଦ୍ୱାରା ରକାବଗଂଜର

ମହନ୍ତଙ୍କଠାରୁ ସରକାର ଗୁରୁଦ୍ୱାରର କେତେ ଜମି ଓ କିଛି ସ୍ଥାନ କ୍ରୟ କରି ଗୁରୁଦ୍ୱାର କାନ୍ଥ ଭାଙ୍ଗି ଗଭର୍ଣ୍ଣମେଣ୍ଟ୍ ହାଉସ୍‌ର ସାମନା ରାସ୍ତା ଚଉଡ଼ା କରିବା ପାଇଁ ଚାହିଁଲା। ତାହା ଜାଗ୍ରତ ହୋଇଥିବା ଶିଖ ଜନତା ବହୁତ ଖରାପ ମନେ କରିଲେ। ଏହା ବିରୋଧରେ ବହୁତ ଆନ୍ଦୋଳନ ଚାଲିଥିଲା। ଏହି ଆନ୍ଦେଳନ ସମ୍ମିଳନୀର ମୁଖ୍ୟ ଖାଲସା କରି ନ ଥିଲେ, କାରଣ ତାଙ୍କର ଇଚ୍ଛା ପୂର୍ବରୁ ସରକାରକୁ ମିଳିଥିଲା। ସେହି କାରଣ ଯୋଗୁଁ ସମ୍ମିଳନୀର ନେତା ହିସାବରେ ପରିଣାମ ଅନ୍ୟ ଶିଖମାନଙ୍କର ଦୁର୍ବଳ ହୋଇଗଲା।

ସେତେବେଳେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା, ଯେଉଁ କାରଣ ଯୋଗୁଁ ଏହି ଆନ୍ଦୋଳନ କେତେଦିନ ଯାଏଁ ସ୍ଥଗିତ ହୋଇଗଲା, ଓ ସରକାର ତରଫରୁ ଭରସା ମିଳିଲା କି ଯୁଦ୍ଧ ଶେଷ ହେବା ପରେ ଏହି କାନ୍ଥ ନିର୍ମାଣ କରାଯିବ, ଗୁରୁଦ୍ୱାରା ରକାବଗଂଜ ର ଏହି ବିଶାଳ କାନ୍ଥ ସରକାରୀ ଖର୍ଚ୍ଚ ସହ ନିର୍ମାଣ ହୋଇଥିଲା।

ମୁଖ୍ୟ ଖାଲସା ସମ୍ମିଳନୀ ଓ ସିଂହ ସଭାର ପ୍ରଭାବର ବହୁତ ଶିଖ ପ୍ରଚାର ର ପ୍ରଭାବ ସେତେବେଳେ ଶିଖ୍ ଜାତି ମଧ୍ୟରେ ଏତେ ପ୍ରଭାବିତ ହୋଇ ଜାଗରଣ ସୃଷ୍ଟି କରାଇଥିଲା, ତାହା ବହୁତରୁ ବହୁତ କହିଲେ ଠିକ୍ ହେବ। ପରନ୍ତୁ ଏହି ଜାତିର ଜାଗ୍ରତ ହୋଇଥିବା ସମ୍ବେଦନତାକୁ ଇଂରେଜ ସରକାର କୌଣସି ଭାବେ ସମାପ୍ତ କରିବା ପାଇଁ ଚାହୁଁଥିଲେ। କିନ୍ତୁ ପରିସ୍ଥିତି ଏମିତି ହୋଇଥିଲା କି ଚେଷ୍ଟା କରାଯାଉଥିଲା କେମିତି ଭାବେ ଶିଖ ସମ୍ବେଦନକୁ ଦବାଇ ରଖାଯିବ, ସେମିତି ଭାବେ ତାହା ବଢ଼ି ଚାଲିଲା। ଯୁଦ୍ଧ ସମୟରେ ଆମେରିକାଠାରୁ ଗୁରୁ ନାନକ ଜାହାଜ ଠାରୁ ୫୦୦ ଶିଖ ଭାରତକୁ ସ୍ୱାଧୀନତାର ଶପଥ କରି ଆସିଥିଲେ, ସେମାନଙ୍କ ଉପରେ କଲିକତାର ବଜବଜ ଘାଟ ଠାରେ ଗୁଳି ବର୍ଷା ହୋଇଥିଲା ଓ ବହୁତ ଶହୀଦ ହୋଇଥଲେ ଓ କେତେ ବନ୍ଦୀ ହୋଇଗଲେ, ସେମାନଙ୍କ ଉପରେ ବିଶ୍ୱାସଘାତର କେସ୍ ଚାଲିଲା। ଏହିଠାରେ ମଧ୍ୟ ବହୁତ ଶିଖ ଧରା ପଡ଼ି ଜେଲ୍ ଗଲେ ଓ ଫାଶି ପାଇଲେ।

## ଜାଲିଆଁୱାଲାବାଗର ରକ୍ତାକ୍ତ କାଣ୍ଡ

୧୯୭୬ ସମ୍ଭତର ବୈଶାଖୀ ସମୟର ଏହି ଘଟଣା। ଯେଉଁଦିନ ଇଂରାଜୀମାନେ ଅତ୍ୟାଚାର ଶେଷ ସୀମା ପାର କରିଥିଲେ। ବଡ଼ ଯୁଦ୍ଧ ପରେ,



ଜାଲିଅାଁୱାଲାବାଗ୍ ହତ୍ୟାକାଣ୍ଡର୍ ଦୃଶ୍ୟ



ଜାଲିଆଁୱାଲାବାଗ ହତ୍ୟାକାଣ୍ଡର ଦୃଶ୍ୟ

ଯାହା ପ୍ରତିଶ୍ରୁତି କରାଯାଇଥିଲା କି ହିନ୍ଦୁସ୍ତାନର ଶାସନ ତ୍ୟାଗ କରିବେ, ଆହୁରି "ରୋଲ୍ଟ ଏକ୍ଟ" (କଳା କାନୁନ) ପାସ୍ କରାଇ ନୂଆ ଷଡ଼ଯନ୍ତ୍ର ଆରମ୍ଭ କରିଦେଲେ। ନୂଆ ନୂଆ ଟେକ୍ସ ରୁଲ୍ସ୍ ଅନୁସାରେ ସ୍ୱାଧୀନର ସ୍ୱରକୁ ଦବାଇ ରଖିବା ପାଇଁ ବଡ଼ ବଡ଼ ପୋଲିସ୍ ଥାନା ଓ ବନ୍ଦୀଗୃହ ତିଆରି କରାଗଲା। ପୂରା ହିନ୍ଦୁସ୍ତାନ ଓ ବିଶେଷ ଭାବେ ଅମୃତସରଠାରେ ଏହି ନିୟମ ବିରୋଧରେ ବହୁତ ଆନ୍ଦୋଳନ ଆରମ୍ଭ ହୋଇଗଲା। ମହାତ୍ମା ଗାନ୍ଧୀ, ଲୋକମାନ୍ୟ ତିଳକ ତଥା ଆହୁରି ବଡ଼ ବଡ଼ ନେତାମାନେ ଏହି ପ୍ରସ୍ତାବର ନେତୃତ୍ୱ ନେଇ ଅମୃତସରଠାରେ ପହଞ୍ଚି ବହୁତ ବଡ଼ ସମାଗମର ଆୟୋଜନ କରାଇଥିଲେ।

ସେଥିଯୋଗୁଁ ଅମୃତସର ନିବାସୀମାନେ ଆନ୍ଦୋଳିତ ହୋଇଗଲେ। ବହୁତ ବ୍ୟାଙ୍କ୍ ଓ ଷ୍ଟେସନ୍ ଲୁଟି ଦେଲେ। ବହୁତ ବ୍ୟାଙ୍କ୍‌ର ପ୍ରବନ୍ଧକ ଇଂରାଜୀଙ୍କୁ ମାରି ଦେଲେ। ଜନରୈଲ ଉଡବାୟର ସେତେବେଳେ ପଞ୍ଜାବର ଗଭର୍ଣ୍ଣର ଥିଲା। ସେ ବହୁତ ସୈନ୍ୟବଳ ଲଗାଇଲା। ବୈଶାଖୀ ପୂର୍ବରୁ ମଧ୍ୟ ଦୁଇଟି ସ୍ଥାନରେ ଗୁଳି ଚଲାଯାଇଥିଲା। ବୈଶାଖୀ ଦିନ ଅମୃତସର ଠାରେ ବହୁତ ଜନ ସମାଗମ ଥିଲା, ବାହାରୁ ବହୁତ ଲୋକ ସ୍ୱର୍ଣ୍ଣମନ୍ଦିରର ଦର୍ଶନ ସକାଶେ ପହଞ୍ଚିଗଲେ। ସେତେବେଳେ ମାର୍ଶଲ ଏକ୍ଟ ଘୋଷଣା କରାଗଲା। ପରନ୍ତୁ ଏହା ସତ୍ତ୍ୱେ ବହୁତ ସଂଖ୍ୟାର ଲୋକମାନେ ଜାଲିଆଁୱାଲାବାଗ ପଡ଼ିଆଠାରେ ଏକତ୍ରିତ ହୋଇ ସମାଗମ ଆରମ୍ଭ କରିଥିଲେ। ଜନରଲ ଉଡବାୟର ନିଜେ ଇଂରାଜୀ ସୈନ୍ୟ ସହ ସେଠାରେ ପହଞ୍ଚିଲା। ପ୍ରାୟ ସନ୍ଧ୍ୟା ୪ଟା ବେଳେ, ଧଡ଼ାଧଡ଼ ନିରସ୍ତ୍ର ଲୋକଙ୍କ ଉପରେ ମେସିନଗନର ଗୁଳି ବର୍ଷା କରାଇଦେଲା। ସେଠାରେ ପ୍ରାୟ ଦୁଇ ହଜାର ଆର୍ଟ ଶିଖ ଲୋକ ସମସ୍ତେ ମରିଗଲେ। ମାସକ ଯାଏଁ ମାର୍ଶଲ ଚାଲୁ ରହିଲା।

ଚୁରସ୍ତୀ ଅଟାରୀ, ଚିଡ଼େ କୂଅଁ ପାଖରେ ଏକ ଇଂରାଜୀକୁ ମାରିବା ଦୋଷ ଲଗାଇ ଲୋକମାନଙ୍କୁ ଖୁବ୍ ଦଣ୍ଡ ଦିଆଯାଇଥିଲା। ମଲକାର ବୁଢ଼ ରାସ୍ତାଠାରେ ଚାଲିଯାଉଥିବା ସାଧାରଣ ଲୋକମାନଙ୍କୁ ପେଟରେ ଘୋଷାରି ଘୋଷାରି ଯିବା ପାଇଁ ବାଧ୍ୟ କରାଯାଇଥିଲା। ବେତରେ ମାରିଥିଲେ ଓ କେତେକଙ୍କୁ ଆଜୀବନ କାରାଦଣ୍ଡ ଦେଲେ ଓ କେତେକଙ୍କୁ ବନ୍ଦୀ କରିଲେ। ଏହି ଘଟଣା ପୂରା ଭାରତବର୍ଷକୁ କମ୍ପାଇ ଦେଇଥିଲା। ସମଗ୍ର ଦୁନିଆବାସୀ ଇଂରେଜମାନଙ୍କର ଏହି ନିର୍ମମ ବ୍ୟବହାର ଯୋଗୁଁ କ୍ଷୋଭ ପ୍ରକାଶ କରିଥିଲା। ଏହାପରେ ଇଂରେଜମାନେ ମୃତକମାନଙ୍କୁ କିଛି ଟଙ୍କା

ପଇସା ଦେଇ ଏହି ସ୍ୱର ଆନ୍ଦୋଳନକୁ ନରମ କରିବାପାଇଁ ଇଚ୍ଛା କରିଥିଲା, କିନ୍ତୁ ଏହି ସ୍ୱର ଆନ୍ଦୋଳନ ବଢ଼ିଚାଲିଲା।

ଦେଶ ସ୍ୱାଧୀନ ହୋଇନଥିଲା, ଏ ଉଡବାୟରକୁ ପୈପସୁର ଶିଖ ଯୁବକ ସର୍ଦ୍ଦାର ଉଧମ ସିଂହ ଲଣ୍ଡନ ପହଞ୍ଚି ତାକୁ ଗୁଳି ଦ୍ୱାରା ଶିକାର କରିଥିଲେ ଓ ନିଜର ଦେଶ ଖୁନୀ ଠାରୁ ପ୍ରତିଶୋଧ ନେଲେ।

ଏହି ସମୟରେ କେତେକ ଶିଖ ଧାର୍ମିକ କେନ୍ଦ୍ର ସରକାର ଅଧୀନରେ ଥିଲା ଓ କେତେ ମହନ୍ତଙ୍କ ଅଧୀନରେ ଥିଲା। ଶିଖମାନଙ୍କ ଆନ୍ଦୋଳନର ଢଙ୍ଗ ଦେଖି ସରକାର ଏହି ମହନ୍ତମାନଙ୍କୁ ସ୍ୱାଧୀନ ଭାବେ ଅଧିକାର ଦେଲା କି ଯାହା ଇଚ୍ଛା ଗୁରୁଦ୍ୱାରମାନଙ୍କରେ କରିପାର। ମହନ୍ତମାନଙ୍କ ଓ ସରକାର ସମାଧାନ ଯୋଗୁଁ ପୁଣି ଅକାଳୀ ଲହରକୁ (ସ୍ରୋତ) ଜନ୍ମ ଦେଲା। ଯାହାକି ବଳିଦାନ ଦେଇ ଦେଇ ମହନ୍ତମାନଙ୍କର ଓ ସରକାର ମଧ୍ୟ ନିଃଶ୍ୱାସ ବନ୍ଦ କରାଇଦେଲେ। ଏହି ଅକାଳ ସ୍ରୋତ ପୁଣି ଥରେ ଶିଖମାନେ ସେହି ଶକ୍ତି (ବାହାଦୁରି ଓ ବଳିଦାନ)କୁ ପ୍ରତ୍ୟକ୍ଷ କରି ଦେଖାଇଲେ, ଯାହାକି ଦୁନିଆ ଧରି ଉଠିଥିଲା।

## ଅକାଳୀ ସ୍ରୋତ

ଶିଖ ଶାସନ ପରେ ପ୍ରାୟ ୪୦ ବର୍ଷ ଯାଏଁ ଶିଖ ଐତିହାସିକ ଗୁରୁଦ୍ୱାରର ଅଧିକାର ଓ ପ୍ରବନ୍ଧ ଶିଖ ଭକ୍ତଙ୍କ ଅଧିକାର ନ ଥିଲା। ବଡ଼ କେନ୍ଦ୍ରୀୟ ଗୁରୁଦ୍ୱାର ଦରବାର ସାହିବ ଅମୃତସର (ସ୍ୱର୍ଣ୍ଣମନ୍ଦିର) ଇତ୍ୟାଦି ଇଂରେଜମାନଙ୍କ ଅଧୀନରେ ଥିଲା। ପରନ୍ତୁ ନନକାନା ସାହିବ ଇତ୍ୟାଦି ଅନ୍ୟ ବଡ଼ ବଡ଼ ଗୁରୁଦ୍ୱାରା ମହନ୍ତଙ୍କ ଅଧୀନ ଓ ପ୍ରବନ୍ଧ ମଧ୍ୟରେ ଥିଲା। ସରକାରୀ ପ୍ରବନ୍ଧ ସରକାରଙ୍କ ନିୟମ ନିଯୁକ୍ତି ପ୍ରତିନିଧିମାନଙ୍କ ଦ୍ୱାରା ହେଉଥିଲା। ପରନ୍ତୁ ମହନ୍ତ ପ୍ରବନ୍ଧ ପୂରାପୂରି ନିଜ ମନରେ ଚାଲୁଥିଲା। ଏହି ପ୍ରବନ୍ଧରେ ଗୁରୁମତ ଓ ଇଖଲାକଙ୍କ ବିରୁଦ୍ଧ ବହୁତ ବିରୋଧତା ଆସିଥିଲା, ଯାହା ଦୂର କରିବାପାଇଁ ଶିଖ ଜାତିଙ୍କ ପାଖରେ ଅଦାଲତ ରାସ୍ତା ଖୋଜିବାକୁ ପଡ଼ିଥିଲା ୨୦-୨୦, ୨୫-୨୫ ବର୍ଷ ଯାଏଁ ମୋକଦମା ଚାଲିଥିଲା ଓ ପରିଣାମ ମିଳି ନ ଥିଲା। ଶେଷରେ ଗୁରୁଦ୍ୱାରା ବାବା କି ବେର ସିୟାଲକୋଟଠାରେ ଗୋଟିଏ ନୂଆ ନିୟମ ଲାଗୁ କରାଗଲା, ତାହା 'ଡାଇରେକ୍ଟ ଏକସନ'। ସେଠାରେ ଶ୍ରଦ୍ଧାଳୁ ଓ ଭକ୍ତମାନେ ମହନ୍ତଙ୍କ ବିରୋଧରେ ନିଜେ ପ୍ରବନ୍ଧକ କମିଟି ଗଠନ କରିଲେ ଓ

ସେହି କମିଟି ପ୍ରବନ୍ଧର ଦାୟିତ୍ୱ ଓ ପରିଚାଳନା ସଫଳ ହୋଇଗଲା ଓ ସରକାର ସେଥିରେ ହସ୍ତକ୍ଷେପ କରିପାରିନଥିଲା। ବାସ୍ ଏହି ରାସ୍ତା ଖୋଲିଗଲା। ଭକ୍ତ ଓ ଶ୍ରଦ୍ଧାଳୁ ସଙ୍ଗତମାନେ ଏହି ରାସ୍ତା ଅନୁସରଣ କରି ଶ୍ରୀ ଅମୃତସର, ତରନତାରନ ଓ ଫଞ୍ଜା ସାହିବ ଗୁରୁଦ୍ୱାରକୁ ସ୍ୱାଧୀନ କରାଇଥିଲେ।

ସେତେବେଳେ ନନକାନେ ସାହିବର ଗୁରୁଦ୍ୱାର ପ୍ରବନ୍ଧକଙ୍କ ବିରୋଧରେ ବହୁତ ଚର୍ଚ୍ଚା ଚାଲିଥିଲା। ଅଭିଯୋଗ ମିଳିଥିଲା କି ମହନ୍ତ ଓ ତାଙ୍କର ଶିଷ୍ୟ ମଦ୍ୟପାନ କରନ୍ତି ଓ ଘୋଡ଼ାକୁ ମଧ୍ୟ ମଦ୍ୟପାନ କରାନ୍ତି। ଜନ୍ମ ସ୍ଥାନ (ଗୁରୁ ଶ୍ରୀ ନାନକ ଦେବଜୀଙ୍କ ଜନ୍ମ ସ୍ଥାନ) ସମ୍ମୁଖରେ ଦୁଇ ଥର ବେଶ୍ୟାମାନଙ୍କ ମୁଜରା ହୋଇଥିଲା। ନନକାନେ ସାହିବର ଷ୍ଟେସନର ରେଳଗାଡ଼ି ରହିଯାଇଥିବା ୬ଜଣ ସ୍ତ୍ରୀ ରାତି ବିତାଇବା ପାଇଁ ଦକ୍ଷିଣ ବାହୀର କୋଠିଠାରେ ରଖାଯାଇଥିଲା। ସେମାନଙ୍କ ଇଜ୍ଜତ ସହିତ ଖେଳାଯାଇଥିଲା। ଜଣେ ସିନ୍ଧି ଶ୍ରଦ୍ଧାଳୁଙ୍କ କନ୍ୟାର ଇଜ୍ଜତ ଲୁଟି ତାହାକୁ ତିନି ଦିନ ଯାଏଁ ଲୁଚାଇ ରଖାଯାଇଥିଲା। ଲାୟଲପୁର ଓ ଶେଖପୁର ବିଷୟରେ ଭୀଷଣ ରୋଷ ଖେଳିଯାଇଥିଲା। ଭାଇ ଲକ୍ଷ୍ମଣ ସିଂହଙ୍କ ଶହୀଦ ଧାରେବାଲିମାନଙ୍କୁ ଧ୍ୟାନ ଲାଗିଥିଲା କି ଯଦି ଆମେମାନେ ଆମ ଅଞ୍ଚଳର ଏତେ ପବିତ୍ର ଗୁରୁଦ୍ୱାର ସୁଧାର କରିପାରିବା ନାହିଁ। ଆମେ କଣ ପାଇଁ ଶିଖ ହୋଇ ରହିବା। ତାପରେ ଗୁରୁଦ୍ୱାରର ଉନ୍ନତି ସକାଶେ ପନ୍ଥ ତରଫରୁ ଶିରୋମଣି ପ୍ରବନ୍ଧକ କମିଟି ଗଠନ ହୋଇସାରିଥିଲା।

ନାନକାନେ ସାହିବ ବିଷୟରେ ଶିରୋମଣି କମିଟି ସମ୍ବତ ୧୯୨୧ ଚୈତ୍ରମାସ ହୋଲି ସମୟରେ ନନକାନେ ସାହିବ ଏହି ସମ୍ବନ୍ଧୀୟ ସଭା ରଖିବା ପାଇଁ ନିଷ୍ପତ୍ତି ନିଆଗଲା। ନନକାଣା ସାହିବର ମହନ୍ତ ନାରାୟଣ ଦାସ ବହୁତ ଧନୀ ଓ କ୍ରୋଧୀ ମହନ୍ତ ଥିଲେ। ତାଙ୍କ ପାଖରେ ଗୁରୁଦ୍ୱାରର ହଜାର ହଜାର ଏକର ଜମି ଥିଲା। ତାଙ୍କ ପାଖରେ ଜମିରେ କାମ କରୁଥିବା ମୂଲିଆ ଓ ଜମିଦାର ଭୋଗବିଳାସ ସକାଶେ ଶହ ଶହ କିଣା ବଦମାସ, ଡାକୁ, ମୁସଲମାନ ଓ ପଠାଣ ବନ୍ଧୁକଧାରୀ ଓ ଛୁରୀ ମାରିବାମାନେ ରହୁଥିଲେ। ସେ ଓ ତାହାର ଭାଇ ନାଙ୍ଗେ ସାଧୁ ମଧ୍ୟ ଅନ୍ୟର ଧନ ଖାଇ ଖାଇ, ମଦ୍ୟପାନ କରି କରି ବହୁତ ଖରାପ ହୋଇସାରିଥିଲା। ପନ୍ଥ ତରଫରୁ ଏହି ସଭା ବିଷୟ ଶୁଣି ସେ ଏକତ୍ରିତ ହୋଇଥିବା ସଙ୍ଗତମାନଙ୍କ ଉପରେ ଚଢ଼ାଉ କରି ମାରିବା ପାଇଁ ପ୍ରସ୍ତୁତ ହୋଇଥିଲା। ମଦ୍ୟ, ମାଂସ, ବନ୍ଧୁକ, ଗୁଳି, ଲାଠି, ଠେଙ୍ଗା ଇତ୍ୟାଦି ସକାଶେ ସେ ଲକ୍ଷ ଲକ୍ଷ ଟଙ୍କାର ପେଡ଼ି ଖୋଲିଦେଲା।

ଆକ୍ରମଣର ଏହି ଯୋଗାଡ଼ ସକାଶେ ସାଧାରଣଙ୍କ ମଧ୍ୟରେ ଚର୍ଚ୍ଚା ହୋଇଥିଲା । ଭାଇ ଲକ୍ଷ୍ମଣ ସିଂ ଗୋଟିଏ ଉପାୟ ବିଚାରିଲେ । ସେ ନିଜର ସାଥି ସର୍ଦ୍ଦାର କରତାର ସିଂହଝାବର ଓ ଭାଇ ବୁଟା ସିଂହ ୪୦୨ ବାଲାଙ୍କ ସହିତ ପରାମର୍ଶ କରିଲେ । ହୋଲି ସମାଗମ ସମୟରେ ମହନ୍ତ ପୂରା ଯୋଗାଡ଼ କରି ରହିଥିବ । ସେଥିଯୋଗୁଁ ଏମିତି କରିବା ଏହା ପୂର୍ବରୁ ଚୁପଚାପ ଦଳ ସହ ଗୁରୁଦ୍ୱାରା ନନକାନେ ସାହିବ ଠାରେ ଅଧିକାର କରାଯାଉ ଓ ମହନ୍ତକୁ ଖବର ନମିଳୁ । ଏହି ଯୋଗାଡ ସକାଶେ ତିନିଜଣ ମିଶି ନିଜ ନିଜ ଅଞ୍ଚଳର ନିରୀକ୍ଷଣ କରି ଶହୀଦ ଦଳ ଭର୍ତ୍ତି ଆରମ୍ଭ କରିଦେଲେ । ଏହି ଗୁପ୍ତ ଯୋଗାଡ ବିଷୟରେ ଲାୟଲପୁରର ପନ୍ଥ ନେତା ସ.ତେଜା ସିଂହ ସମୁଦ୍ରୀ ଇତ୍ୟାଦିଙ୍କୁ ଖବର ମିଳିଲା, ସେମାନେ ଅଟକାଇ ଦେଲେ କି ପନ୍ଥର ନିଷ୍ପତ୍ତି ଅନୁଯାୟୀ ସଭା କାର୍ଯ୍ୟ ଶେଷଯାଏ କୌଣସି ପ୍ରକାର କାର୍ଯ୍ୟ କରିବା ଅନୁଚିତ; କିନ୍ତୁ ଶହୀଦଙ୍କ ମନରେ ଆଗ୍ରହ ବଢ଼ିଯାଇଥିଲା । ସେମାନଙ୍କୁ କିଏ ଅଟକାଇ ପାରିବ ? ଲାୟଲପୁରର ଷ୍ଟେସନରେ ଗାଡ଼ିରେ ଚଢ଼ିଥିବା ଭାଇ ଲକ୍ଷ୍ମଣ ସିଂହଜୀଙ୍କୁ ସ.ତେଜା ସିଂହ ସମୁଦ୍ରୀ ଗାଡ଼ିରୁ ଓହ୍ଲାଇ ଗାଡ଼ି ଛାଡ଼ିବା ଯାଏ ଗଳାରେ ମିଳାଇ ଧରି ରହିଲେ । ଗାଡ଼ି ଛାଡ଼ି ଦେଲା, ଛାଡ଼ି ଦିଅ । ପରନ୍ତୁ ଯେତେବେଳେ ରେଳଗାଡ଼ି ଛାଡ଼ିଲା, ଭାଇ ଲକ୍ଷ୍ମଣ ସିଂହଜୀ ପୂରା ଜୋର ସହ ଡେଇଁ ପଡ଼ି ଦୌଡ଼ି ଯାଇ ଗାଡ଼ିର ଡବାର ଲୁହାକୁ ଧରି ରେଳରେ ଚଢ଼ିଗଲେ । ସର୍ଦ୍ଦାର କରତାର ସିଂହ ଝବରକୁ ଅମୃତସର ଠାରୁ ଏହି ଯୋଜନାକୁ ସ୍ୱୀକାର କରିବା ପାଇଁ ପଠାଯାଇଥିଲା । ଯଦି ସ୍ୱୀକୃତ ହୁଏ ତାହାଲେ ତାର ବାର୍ତ୍ତା ଦେଇଦେବ କି, "ହଜି ଯାଇଥିବା କମ୍ବଳ ମିଳିଗଲା ।" ଯଦି ମିଳିବ ନାହିଁ 'ମିଳିଲା ନାହିଁ' ର ବାର୍ତ୍ତା ଦେବ । ସେଥିପାଇଁ ତା'ର ଦୁଇଦିନ ପୂର୍ବରୁ "ମିଶିଗଲେ" ଆସି ପହଞ୍ଚିଛି । ଦ୍ୱିତୀୟ ଦିନ ସିଂହମାନେ ନନକାନେ ସାହିବ ଯିବାପାଇଁ ପ୍ରାର୍ଥନା ସମର୍ପି ଦେଲେ । ସନ୍ଧ୍ୟାବେଳେ ଦଳ ଚାଲିଗଲେ । ଦଳପତିମାନେ ଶାନ୍ତ ପରିବେଶରେ ରହିବାପାଇଁ ପଣ କରିଥିଲେ ।

ପ୍ରକୃତରେ ତାର ନିଷ୍ପତ୍ତି ନେବା ପୂର୍ବରୁ ଦିଆଯାଇଥିଲା ବାରଣ ପରେ ନିଷ୍ପତ୍ତି ଏହିପରି ଭାବେ ହୋଇଥିଲା କି ନିର୍ଦ୍ଧାରିତ ତାରିଖ ପୂର୍ବରୁ କେହି ଦଳପତି (ଦଳ ମୁଖିଆ) ଯିବ ନାହିଁ, ଏଥିପାଇଁ ବର୍ତ୍ତମାନ ତାର ପଠାଯାଇଥିଲା କି 'କମ୍ବଳ ମିଳିଲା ନାହିଁ' ପରନ୍ତୁ ସିଂହମାନେ ଚାଲିଯାଇଥିଲେ । ପ୍ରସ୍ତୁତ ହେଉଥିଲେ ଅଟକାଇ ଦିଆଗଲା । କିନ୍ତୁ ଭାଇ ଲକ୍ଷ୍ମଣ ସିଂହଙ୍କ ଦଳ ରାତିରୁ ବାହାରି ସକାଳୁ ୬ଟା ବେଳେ ଶ୍ରୀ ନାନକାନା

ସାହିବଠାରେ ପହଞ୍ଚି ଯାଇଥିଲେ। ଅଟକାଇବା ମାନେ ନନକାନେ ସାହିବଙ୍କୁ ଖବର ଦେଇ କହିଲେ କି ବର୍ତ୍ତମାନ ଗୁରୁଦ୍ୱାର ଯାଅନାହିଁ। ପରନ୍ତୁ ଭାଇ ଲକ୍ଷ୍ମଣ ସିଂହଜୀ କହିଲେ କି ଆମ୍ଭେମାନେ ପ୍ରାର୍ଥନା ସମର୍ପି ଦେଇ ଆସିଅଛୁ, ଅବରୋଧ କର ନାହିଁ। ଅଟକାଇବା ଆମ୍ଭେ ଦୁହିଁଙ୍କ ପକ୍ଷେ ଅନୁଚିତ ହେବ। ଆହୁରି ବହୁତ କିଛି କହିଲେ, ପରନ୍ତୁ ଦଳଟି ଅଟକିବା ପାଇଁ ରାଜି ହୋଇ ନ ଥିଲା। ଲୋକ ପଠାଇ ଖବର ନିଆଗଲା କି ଖବର ମିଳିଲା କି ଦର୍ଶନୀ ମୁଖ୍ୟଦ୍ୱାରର କବାଟ ଖୋଲାଅଛି।

ଆଉ କଣ କଥା ଥିଲା ? ସିଂହମାନଙ୍କ ଶହୀଦମାନଙ୍କ ଆଗ୍ରହ ବଢ଼ିଗଲା। ଶୀଘ୍ର ସିଂହମାନେ ଅଗ୍ରସର ହେଲେ ଓ ଦର୍ଶନୀ ମୁଖ୍ୟଦ୍ୱାର ଦେଇ ଜନ୍ମସ୍ଥାନର ଦର୍ଶନ କରିଲେ। ମୁଖ୍ୟଦ୍ୱାରର କବାଟ ବନ୍ଦ କରି ସିଂହ ମହାରାଜଙ୍କ ହଜୁରଠାରେ ବସିଗଲେ।

ମହନ୍ତର ମଧ ସବୁ ଜିନିଷ ପ୍ରସ୍ତୁତ ଥିଲା। ସେଥିଯୋଗୁଁ ଏହି ଶହୀଦ ଖାତିର ନ କରି ହସି ହସି ଗୁଳିର ଶିକାର ହୋଇଗଲେ। ଅସ୍ତ୍ରଶସ୍ତ୍ରରେ କାଟି ହୋଇ ଓ କିରୋସିନି, ପେଟ୍ରୋଲ ଢାଳି ଜଳିପୋଡ଼ି ମରିଗଲେ। ପରନ୍ତୁ କେହି ହାତ ଉଠାଇ ନ ଥିଲେ ଓ ନିଷ୍ପତ୍ତି କରି ଶହୀଦ ପ୍ରାପ୍ତ କରିଥିଲେ।

ଶହୀଦ ଦଲ୍ଲୀପ ସିଂହଜୀ ପୂରା ଦଳକୁ ଅଟକାଇବାପାଇଁ ନନକାନେ ସାହିବଠାରେ ପହଞ୍ଚିଯାଇଥିଲେ। ଗୁଳି ଶବ୍ଦ ଶୁଣି ଗୁରୁଦ୍ୱାର ଜନ୍ମସ୍ଥାନ ଆଡ଼କୁ ଦୌଡ଼ିଥିଲେ। ସାମନା ଦ୍ୱାର ବନ୍ଦ ଥିଲା। ଅନ୍ୟ ପଟରୁ ମହନ୍ତର ଉପର ମହଲାରେ ଛାତ ଚାରିପଟୁ ଖୋଲା ରହିଥିବା ସ୍ଥାନ, ଯାହାକି ଚାରିପଟୁ ଖୋଲା ପବନ ଓ ଆଲୁଅ ପହଞ୍ଚି ପାରୁଥିବା ପଟକୁ ଗଲା ବେଳକୁ ନିକଟରେ ରକ୍ତାକ୍ତ ହୋଇଥିବା ଅବସ୍ଥା ଅସ୍ତ୍ରଶସ୍ତ୍ରର ହତ୍ୟାକାରୀମାନେ ମିଳିଗଲେ। ଜଣେ କାନ୍ଧ ଉପରେ ଅସ୍ତ୍ର ପ୍ରହାର କରିଲା ଓ ଦ୍ୱିତୀୟଜଣକ ନିଆଁରେ ଫୋପାଡ଼ିବା ପାଇଁ ଘୋଷାରି ଘୋଷାରି ନେଲା ଓ ସେ ସେତେବେଳେ ୧୯ ଶହ ଟଙ୍କା ଶହ ଶହର ନୋଟ ବାହାର କରି ବାହାରେ ଫୋପାଡ଼ି ଦେଲେ, କାରଣ ଟଙ୍କା ଜଳିଯିବା ବଦଳରେ ବାହାର କାମ ଆସିବ, ଏମିତି କାହିଁକି ଜଳି ନଷ୍ଟ ହୋଇଯିବ ? ଦିଲୀପ ସିଂହଜୀଙ୍କୁ ଜୀବନ୍ତ ଦଗ୍ଧ କରାଯାଇଥିଲା। ମାଘ ମାସ ସମ୍ଭତ ୧୯୨୮ ସମୟରେ ନନକାନା ସାହିବଠାରେ ଶହୀଦ ଘଟଣା ଘଟିଥିଲା ଓ ଦୁଇଶହ ଶହୀଦ ପ୍ରାଣମୂର୍ଚ୍ଛା କରି ମୃତ୍ୟୁରସକୁ ଘଟ ଘଟ କରି ପିଇଗଲେ। ଏହି ଘଟଣା ସଂସାରରେ ଶହୀଦଙ୍କ ଇତିହାସ ମଧ୍ୟରେ ନିଜର ସ୍ମୃତି ଦେଇ ଜୀବନ୍ତ ହୋଇଗଲେ ଓ ଅକାଳୀ ଢେଉର ସବୁଠାରୁ ନିର୍ମମ ଓ ମୁଖ୍ୟ ଘଟଣା ହୋଇଥିଲା।

ଅକାଳୀ ଢେଉ ଶିଖମାନଙ୍କୁ ପୁନର୍ଜୀବନ ହେବାର ଦୃଷ୍ଟାନ୍ତ ଥିଲା । ସେଥିରୁ ଶିଖ ଆଚରଣର ପ୍ରସିଦ୍ଧ ଗୁଣ ଯୁଦ୍ଧ ଯୁକ୍ତ ପୂରା ପ୍ରତିଭା ପ୍ରକଟ ହୋଇଅଛି । ବଳିଦାନର ଅଗ୍ନି ମଧ୍ୟରେ ଶିଖମାନଙ୍କର ବ୍ୟବହାର ସହିଷ୍ଣୁତା ସହ ଉଷ୍ମତା ପ୍ରଦାନ ଦେଇ ଦାନ କରି ସମସ୍ତ ଦୁର୍ବଳତାକୁ ଜଳାଇଦେଲେ ଓ ନିଖୁଣ କାରୁକାର୍ଯ୍ୟ ମଧ୍ୟରେ ରହିଗଲେ । ଏହି ଢେଉ ପନ୍ଥର ପୂରା ସମସ୍ତ ଅଗ୍ନି ଝାସକୁ ସ୍ପର୍ଶ କରି ଏକ ହୋଇଗଲେ । ସେଥିରେ କୁମ୍ଭାର, ଧୋବା, ବାରିକ, ଦର୍ଜି, ମେହେର, ଜୁଲାହେ, କ୍ଷତ୍ରିୟ, ଅରୋଡେ, ଜଟେ (ଜାଠ), ସନ୍ତ ଗୁଲାବ ଦାସି, ବିବେକି, ରାମ ଦାସି, ମଜହବୀ, ନାମଧାରୀ, ନିହଙ୍ଗ, ରାମଗଢ଼ିଏ, ଉଦାସୀ, ଧନୀ, ଗରିବ ମୂର୍ଖ, ପାଠ ପଢ଼ିବା, ନ ପଢ଼ିବା, ସମସ୍ତେ ମିଳିମିଶି କାମ କରିଥିଲେ ।

## ଚାବି ଦଳ (ଗୋଟିଏ ଦଳର ନାମ)

ନାନକାନା ସାହିବଠାରେ ହୋଇଥିବା ଦୁର୍ଦ୍ଦଶା ହେବା କେତେଦିନ ପୂର୍ବରୁ ଶିରୋମଣି ପ୍ରବନ୍ଧକ କମିଟି ହୋଇସାରିଥିଲା । ଗୁରୁଦ୍ୱାରା ପ୍ରବନ୍ଧ ପନ୍ଥକମାନେ ନିଜ ଅଧୀନରେ ରଖିବା ପାଇଁ ପ୍ରୟାସ ଆରମ୍ଭ କରିଦେଲେ । ଏହାପୂର୍ବରୁ ଶିଖ ଲିଗ କନଫରେନ୍ସ ବାରମ୍ବାର କରାଇ (ଶିଖମାନଙ୍କ ମନରେ ଉତ୍ସାହ ଜାଗ୍ରତ କରାଇଥିଲେ) । ଶିଖ ନେତାମାନେ ପଞ୍ଜାବୀ ଜନତାଙ୍କ ଉପରେ ଶିଖ ମାନେ ବିଶେଷ ଭାବେ ଇଂରେଜଙ୍କ ବିରୁଦ୍ଧ ଏତେ ବେଶି ପ୍ରଭାବିତ କରିଥିଲେ । ତାହା ଇଂରାଜୀ ସରକାରକୁ ପ୍ରତିଶୋଧର ଅଗ୍ନିରେ ଜଳାଇଦେଇଥିଲା । ସେତେବେଳେ ପନ୍ଥ ମଧ୍ୟରେ ସଂଯୋଗ ହୋଇଥିଲା । ଦୁନିଆ ଚକିତ ହୋଇଯାଇଥିଲା । କିନ୍ତୁ ଇଂରାଜୀ ସରକାର ବର୍ତ୍ତମାନ ମଧ୍ୟ ଚେଷ୍ଟା କରୁଥିଲା କି କେମିତି ଶିଖମାନଙ୍କ ଏହି ଅଖଣ୍ଡ ଦଳ କୋଣେ କୋଣେ ଜାଲ ଭଳି ବିଛେଇ ହୋଇ ରହିଥିବାକୁ ନଷ୍ଟ କରାଯିବ । ସେଥିଯୋଗୁଁ ସରକାର ଏହି ଚେଷ୍ଟା କରିଲା କି ପ୍ରଥମେ ଶ୍ରୀ ଦରବାର ସାହିବ ଅମୃତସରର ଭଣ୍ଡାରର ଚାବି ଜବରଦସ୍ତି ଅକ୍ତିଆର କରିନେଲା । ତା'ପରେ ଶିରୋମଣି କମିଟି ସରକାର ତରଫରୁ ନିଯୁକ୍ତି ପାଇଥିବା ପ୍ରତିନିଧି ପ୍ରବନ୍ଧ ପ୍ରତି ଦଖଲ କରିବା ବନ୍ଦ କରିଥିଲେ । ସେମାନେ ତାହା ଜବରଦସ୍ତି କରିଥିଲେ । ଇଂରେଜ ପ୍ରତିନିଧିମାନଙ୍କୁ ତାହା ଅପମାନ ହୋଇଥିଲା । ସେଥିଯୋଗୁଁ ସେମାନେ ଇସ୍ତଫା ଦେଇଥିଲେ । ଚାବି କାରଣ ଯୋଗୁଁ ପଞ୍ଜା ସାହିବର ସଙ୍ଗତ, ପେଶାବରର ଗୁରୁଦ୍ୱାରର ଭାଇ ଯୋଗା

ସିଂହ, ଶ୍ରୀ ମୁକ୍ତସର ତଥା ବହୁତ ଗୁରୁଦ୍ୱାର ପନ୍ଥକମାନେ ପ୍ରବନ୍ଧରେ ଯୋଗ ଦେଇଥିଲେ। ସରକାରଙ୍କୁ ଶିଖମାନଙ୍କ ପ୍ରତିନିଧିତ୍ୱ କରିବା ପାଇଁ କେହି ମିଳି ନ ଥିଲେ। ସମସ୍ତ ଜିଲ୍ଲାରେ ଡେପୁଟି କମିଶନରର ବଦନାମ ହେବାକୁ ଲାଗିଲା। ତାହାପରେ ସେମାନେ ସବୁ ଜିଲ୍ଲାରେ ସମ୍ମିଳନ ରଖିଲେ ଓ ଶିଖମାନଙ୍କ ବିରୋଧରେ ଭ୍ରାନ୍ତି ଖୋଳାଇବା ଆରମ୍ଭ କରିଦେଲେ। ଏହା ଦେଖି ଶିରୋମଣି କମିଟି ସେହି ସେହି ସ୍ଥାନରେ ସମ୍ମିଳନୀ ରଖାଇ ଘଟଣାକ୍ରମେ ପ୍ରଚାର ଆରମ୍ଭ କରିଦେଲେ। ସେଥିଯୋଗୁଁ ଡେପୁଟି କମିଶନର ରାଗିଯାଇ ବନ୍ଦୀ କରିବା ପ୍ରକ୍ରିୟା ଆରମ୍ଭ କରିଦେଲେ। ତାହାର ସଂଖ୍ୟା ୧୮୩ରେ ପହଞ୍ଚିଥିଲା। ଡେପୁଟୀ କମିଶନରମାନେ ଚାବି ଫେରାଇବା ପାଇଁ ବହୁତ ଯୋଜନା କରିଲେ ଓ ପ୍ରତ୍ୟେକ ସ୍ଥାନ ଓ ପ୍ରତ୍ୟେକ ସମୟରେ ଗୋଟିଏ ଉତ୍ତର ମିଳୁଥିଲାକି ପ୍ରଥମେ ତୁମେ ପୂରା ବନ୍ଦୀମାନଙ୍କୁ ମୁକ୍ତ କର, ତାହାହେଲେ ଚାବି ନେବୁ।

ଶେଷରେ ଏହି ସଭାର କେତେ ମାସ ପରେ ସେମାନେ ପହଞ୍ଚି ଡେପୁଟି କମିଶନର ବାବା ଖଡ଼କ ସିଂହଜୀ ଶିରୋମଣି କମିଟିର ମୁଖିଆଙ୍କ ଦାୟିତ୍ୱରେ ଦେଲେ। ପରନ୍ତୁ ତାହା ସହିତ ସରକାର ପଞ୍ଜାବର ଗ୍ରାମମାନଙ୍କରେ ପୋଲିସ ଥାନା ସ୍ଥାପନା କରାଇଲା ଓ ଅକାଳୀମାନଙ୍କୁ ଖର୍ଚ୍ଚ ଦେବା ପାଇଁ ଓ କୃପାଣ ଧାରଣ ସମ୍ବନ୍ଧରେ ପ୍ରାୟ ୨୦୦୦ଙ୍କୁ ବନ୍ଦୀ କରାଇଥିଲା।

## ଗୁରୁଙ୍କ ବଗିଚା ପାଇଁ ଦଳ

ଗୁରୁଙ୍କ ବଗିଚାର ମହନ୍ତ ସୁନ୍ଦର ଦାସ ନାନକାନା ସାହିବର ଘଟଣା ସମୟରେ ଅକାଳୀମାନଙ୍କ ଶକ୍ତି ଭୟରେ ଗୁରୁଦ୍ୱାର ପ୍ରବନ୍ଧକୁ ୧୧ଜଣଙ୍କ ଗୋଟିଏ କମିଟି ପଠାଇଥିଲା। କିନ୍ତୁ ଧନସମ୍ପତ୍ତି ଉପରେ ତାହାର ସେମିତି ଅଧିକାର ଥିଲା। ଲଙ୍ଗର ଇତ୍ୟାଦି ପାଇଁ କାଠ ସେହି ବଗିଚାରୁ ପ୍ରତିଦିନ ସିଂହମାନେ କାଟି ଆଣୁଥିଲେ। ପ୍ରାୟ ଦେଢ଼ ବର୍ଷ ଯାଏଁ ଏହା ଚାଲୁ ରହିଥିଲା। ପରନ୍ତୁ ୧୯୭୯ ସମ୍ବତ ସମୟର ଏହି ଘଟଣା ହଠାତ୍ ମହନ୍ତ ନିଜର ମନୋଭାବ ବଦଳାଇ ଦେଲା।

ସାମନାପଟୁ ସାଧାରଣ ଭାବେ ୫ଜଣ ସିଂହ ସେହି ବଗିଚାରୁ ଇନ୍ଧନ ସକାଶେ ଗୋଟିଏ ଶୁଖିଲା ଗଛ କାଟୁଥିଲେ, ମହନ୍ତ ପୋଲିସ ଡକାଇ ସେହି ୫ଜଣଙ୍କୁ ବନ୍ଦୀ କରାଇଲା। ଏହି ଘଟଣା ଓ ସରକାର ମିଶି ପରାମର୍ଶ କରି ହୋଇଥିଲା। ଏହାପରେ

ଦ୍ୱିତୀୟ ଦିନ ସୁପରିଣ୍ଟେଣ୍ଡ୍ ପୋଲିସ ବିଟି, ଜଗୁଆଳି ରଖାଇଦେଲା କିନ୍ତୁ ପରେ ମଧ୍ୟ ସିଂହମାନେ କାଠ କାଟିବାପାଇଁ ଯାଉଥିଲେ ଓ ପୋଲିସ ଦଶ-ବାର ଦିନ ଯାଏଁ ପ୍ରତିବନ୍ଧ ଲଗାଇଲା। ପରନ୍ତୁ ପରେ କାଠ କାଟିବା ସିଂହମାନଙ୍କୁ ବନ୍ଦୀ ବନାଇବା ଆରମ୍ଭ ହୋଇଗଲା। ଏହାର ବିରାଧରେ ପ୍ରଚାର କରିବା ଦୋଷଯୁକ୍ତ ଶିରୋମଣି କମିଟିର କେତେକ ସଭ୍ୟଙ୍କୁ ବନ୍ଦୀ କରାଗଲା। ଗୋଟିଏ ସପ୍ତାହ ପରେ ଗୁରୁଙ୍କ ବଗିଚାର କାଠ କାଟିବା ପାଇଁ ପହଞ୍ଚିବା ସିଂହଙ୍କୁ ଖୁବ ଯୋରରେ ମାରପିଟ ଆରମ୍ଭ ହୋଇଥିଲା ଓ ଧାରା ଲାଗୁ ହୋଇଥିଲା। ପୁଣି ୧୦୦-୧୦୦ରେ ଦଳ ଶ୍ରୀ ଅକାଳ ତଖତ୍ ଠାରେ ଶାନ୍ତ ପରିବେଶ ରଖିବା ପଣ ସହ ଯିବାକୁ ଆରମ୍ଭ କରିଦେଲେ। ସେମାନଙ୍କୁ କେନାଲର ପୋଲ ପାଖରେ ଅଟକାଇ ପ୍ରତ୍ୟେକଙ୍କୁ ମାରି ମାରି ବେହୋସ କରାଇ ଦେଉଥିଲେ। ସେଠାରୁ ସେମାନଙ୍କୁ ଶିରୋମଣି କମିଟି ଡାକ୍ତରୀ ଗାଡ଼ି ପଠାଇ ଅମୃତସର କମିଟିର ଡାକ୍ତରଖାନାଠାରେ ରଖୁଥିଲେ। ସେଠାରେ ସଙ୍ଗତମାନେ ବଡ଼ ପ୍ରେମର ସହ ସେମାନଙ୍କର ଆବଶ୍ୟକୀୟ ସେବା କରୁଥିଲେ।

ପ୍ରତିଦିନ ମାରପିଟ ଚାଲୁରହିଲା। ସେହି ସିଂହ ଦଳ ସେତେବେଳେ ୧୩୦୦ ଯାଏଁ ପହଞ୍ଚିଯାଇଥିଲେ।

୧୩ ଦିନ ପରେ ଲକ୍ଷ୍ୟ ପୂରା ହୋଇ ନ ଥିବା ଦେଖିପାରି ସରକାର ରାସ୍ତାରୁ ପୋଲିସ ଚୌକି ଉଠାଇଦେଲା ଓ ସିଂହ ଦଳ ଗୁରୁଙ୍କ ବଗିଚାରେ ପହଞ୍ଚିବା ଆରମ୍ଭ କରିଦେଲେ। ତାହାପରେ ଗଭର୍ଣ୍ଣର ସାହେବ ଅମୃତସର ଆସିଲେ ଓ ମାରପିଟ ବନ୍ଦ ହୋଇଗଲା। ମାସକ ଯାଏଁ ବନ୍ଦୀ କାମ ଚାଲୁରହିଲା। ୫୬୭୮ ସିଂହ ବନ୍ଦୀ ହୋଇଥିଲେ। ସେଥିରୁ ୩୫ଜଣ ଶିରୋମଣି କମିଟିର ସଭ୍ୟ ଥିଲେ।

ଶେଷରେ ଗଙ୍ଗାରାମ ଲାହୋରର ମହନ୍ତ ସୁନ୍ଦର ଦାସ ଠାରୁ ଗୁରୁଦ୍ୱାର ଗୁରୁଙ୍କ ବଗିଚାର ଜମି ଠିକା ବାବଦ ନିଜ ନାମରେ କରାଇଦେଲେ ଓ ସରକାରଙ୍କୁ ଲେଖି ଜଣାଇଲେ କି ମୋତେ ପୋଲିସର ଆବଶ୍ୟକତା ନାହିଁ। ଏହିପରିଭାବେ ସେହି ଦଳର ବିଜୟ ହୋଇଥିଲା।

୧୯୭୮ ସମ୍ଵତର ଆରମ୍ଭ ସମୟରେ ଅମୃତସରଠାରେ ହିନ୍ଦୁ, ମୁସଲମାନମାନଙ୍କ ମଧ୍ୟରେ ବହୁତ ମତଭେଦ ହୋଇ ଆନ୍ଦୋଳନ ହୋଇଥିଲା। ସେଥିରେ ଶିଖମାନେ ବିଶେଷ ଭାବେ ଅକାଳୀମାନେ ଶାନ୍ତି ଓ ଖୁସିର ସ୍ଥିରତା ରଖିବା ପାଇଁ ଏମିତି କାମ କରିଥିଲେ। ଯାହାକୁ ପୋଲିସକୁ ମଧ୍ୟ ଅସୁବିଧା

ହୋଇଥିଲା। ଏହି ନିୟମ ଚାଲୁ ହୋଇଥିବା ଯୋଗୁଁ ସରକାର ନିଜେ ଗୁରୁଙ୍କ ଦଳର ସମସ୍ତ ବନ୍ଦୀଙ୍କୁ କେତେଦିନ ପରେ ମୁକ୍ତ କରାଇଥିଲା।

## କାର ସେବା ଶ୍ରୀ ଅମୃତସର: ନିର୍ମାଣ ଓ ପୁନରୁଦ୍ଧାର(ପୁନଃ ନିର୍ମାଣ)

୧୯୭୮ ସମ୍ବତରେ ଜ୍ୟେଷ୍ଠ-ଆଷାଢ଼ ମାସ ସମୟରେ ଶ୍ରୀ ଅମୃତସର ହରିମନ୍ଦିର ସାହିବର ସରୋବରର କାର ସେବା ଆରମ୍ଭ ହୋଇ ମାସକ ଯାଏଁ ଲାଗି ରହିଥିଲା। ପୂରା ପଞ୍ଜାବ ଓ ଅନ୍ୟାନ୍ୟ ଅଞ୍ଚଳର ଛୋଟ-ବଡ଼ ପ୍ରସିଦ୍ଧ ଓ ଲୋକପ୍ରିୟ ସିଂହମାନେ ଏହି କାର୍ଯ୍ୟ ଅବସର ସମୟରେ ଶ୍ରୀ ଅମୃତସରଠାରେ ପହଞ୍ଚିଥିଲେ। ବହୁତ ବଡ଼ ସମ୍ମିଳନୀ ହୋଇଥିଲା। ପିପିଲୀ ସାହିବ ଗୁରୁଦ୍ୱାର ଠାରୁ ନେଇ ଘଣ୍ଟାଘର ଯାଏଁ ଯାଆଁଳା ଜୁଲମ ବାହାରିଥିଲା। ପନ୍ଥକମାନଙ୍କ ଉତ୍ସାହ ଓ ଗୌରବମୟ ଅଦଭୂତ ଘଟଣା ସଦା ସ୍ମରଣୀୟ ଅଟେ।

## ଜୈତୋଙ୍କ ଦଳ

କାର ସେବାର ପର୍ବ ସମାପ୍ତ ହୋଇଥିଲା, ସେହିବର୍ଷ ମହାରାଜା ରିପୁଦମନ ସିଂହଜୀଙ୍କୁ ନାଡ଼ା ରାଜଗାଦିରୁ ଓହ୍ଲାଇ ଦିଆଯାଇଥିଲା। ଶିଖମାନେ ଏହାର ବିରୋଧ କରିଥିଲେ। ଶିରୋମଣି କମିଟି ଏହି ନିଷ୍ପତ୍ତି ଅନୁସାରେ ପୂରା ଶିଖ ସମାଜରେ ନାଡ଼ା ଦିନ ମନାଇଥିଲେ। ଆନ୍ଦୋଳନ ଓ ଭାଷଣ ଦେବା ଅପରାଧ ଯୋଗୁଁ ସ୍ଥାନ ସ୍ଥାନରେ ଗିରଫ କରାଯାଇଥିଲା।

ନାଭା ଶାସକଙ୍କ ବଂଶଧର କର୍ମଚାରୀ ଓ ଜନତା ଏକତ୍ରିତ ହୋଇ ସିଂହମାନଙ୍କ ଦୁର୍ଗ ପାଖରେ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀଙ୍କ ସ୍ମରଣୀୟ ଗୁରୁଦ୍ୱାର ଅଛି, ସେଠାରେ ମଧ୍ୟ ଗିରଫ ହୋଇଥିଲେ।

ଗିରଫ ହୋଇସାରିବା ଅନ୍ୟ ଜୈତୋମାନେ ଏକତ୍ରିତ ହୋଇଥିଲେ ଓ ସିଂହ ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କ ଅଖଣ୍ଡ ପାଠ ଆରମ୍ଭ ହୋଇଥିଲା। ଶାସକୀୟ ପୋଲିସ ଉପସ୍ଥିତି ସଙ୍ଗତ ଓ ଶ୍ରୀ ଗୁରୁ ଗ୍ରନ୍ଥ ସାହିବ ଜୀଙ୍କ ସମ୍ମୁଖରେ ବସିଥିବା ସିଂହମାନଙ୍କର ବାହୁ ଘୋଷାରି ଉଠାଇଦେଲେ ଓ ଗିରଫ କରିନେଲେ। ଏହିପରି ଭାବେ ଅଖଣ୍ଡ ପାଠ ଖଣ୍ଡିତ ହୋଇଯିବା ଯୋଗୁଁ ପୂରା ଶିଖ ସମାଜରେ ରୋଷ ଖେଳି ହୋଇଯାଇଥିଲା।

ଏହି ଧାର୍ମିକ ଅଧିକାରକୁ ନିଷ୍ଠା ସହିତ ଚାଲୁ ରଖିବା ପାଇଁ ୨୫ଜଣ ସିଂହ ଦଳ ଶ୍ରୀ ଅକାଳ ତଖତ୍ ସାହିବଠାରୁ ପଦାତିକ ଶ୍ରୀ ଗଙ୍ଗାସରକୁ ଯାତ୍ରା ଆରମ୍ଭ କରିଥିଲେ। ସ୍ଥାନ ସ୍ଥାନରେ ୨୫-୩୦ ସିଂହ ସଭ୍ୟ ମିଶିଲେ। ସରକାର ଏହି ସିଂହମାନଙ୍କୁ ରାସ୍ତାରୁ ଧରି ନେଇ ମାରପିଟ କରି ୩୦୦-୩୦୦ ମାଇଲ ଦୂର ଜନବସତି ଅଞ୍ଚଳଠାରୁ ଦୂରରେ ଛାଡି ଦେଲେ। ୫୦୦୦ ଶିଖ୍ଙ୍କୁ ଏହିପରି ଭାବେ ଦଣ୍ଡ ମିଳିଥିଲା।

ଏହି ଆନ୍ଦୋଳନର ଝାସ ବଢି ଚାଲିବା ଦେଖି ସରକାର ଶିରୋମଣୀ ଅକାଳୀ ଦଳ ଓ ଶିରୋମଣୀ କମିଟୀଙ୍କୁ ଆଇନ ବିରୋଧୀ ଦୋଷୀ ସାବ୍ୟସ୍ତ କରାଇଲା ଓ କାର୍ଯ୍ୟକାରୀ କମିଟିର ୨୦ ସଭ୍ୟଙ୍କୁ ବିଭିନ୍ନ ସ୍ଥାନରେ ଗିରଫ କରାଇଲା ଓ ସେମାନଙ୍କ ଉପରେ ଧୋକାଦାରୀ, ଗୁପ୍ତଚର ଓ ଦଗାବାଜୀ ଦୋଷର ମକଦ୍ଦମା ଚାଲିଲା। ଶ୍ରୀ ଅକାଳ ତଖତ୍ ସାହିବ ଠାରୁ ନାଡ଼ାର ସହାୟକ ପ୍ରଶାସକ ସର୍ଦ୍ଦାର ଗୁରୁଦୟାଲ ସିଂହଙ୍କୁ ଅଖଣ୍ଡ ପାଠର ଖଣ୍ଡନ କରିବା ଦାୟିତ୍ୱହୀନ ନିର୍ଦ୍ଧାରିତ କରି ଶିଖ ଧର୍ମରୁ ବହିଷ୍କାର କରିବାପାଇଁ ହୁକୁମନାମା ମଧ୍ୟ ବ୍ୟବହାର କରାଗଲା।

## ଜୈତୋଠାରେ ମହାନ୍ ଶହୀଦୀ ଘଟଣା

ସମ୍ୱତ ୧୯୮୦ ମାଘ ମାସ ବସନ୍ତ ପଞ୍ଚମୀ ଦିନ ୫୦୦ ସିଂହଙ୍କ ଦଳ ଶ୍ରୀ ଅକାଳ ତଖତ୍ସାହିବ ଠାରୁ ବସନ୍ତୀ ବସ୍ତ୍ର ଧାରଣ କରି ବେଣ୍ଡ ବାଜା ସହ ଅଖଣ୍ଡ ପାଠ ପ୍ରାରମ୍ଭ କରିବାପାଇଁ ଜୈତୋ ପଟକୁ ପଦଯାତ୍ରା ଆରମ୍ଭ ହେଲା। ସେମାନେ ୧୨ ଦିନ ପରେ ଓ ଅନ୍ୟ ବହୁତ ଦର୍ଶକ ସଙ୍ଗତଙ୍କ ସହ ଜୈତୋଠାରେ ପହଞ୍ଚିଥିଲେ। ନାଭୋ ଶାସକୀୟ କର୍ମଚାରୀମାନେ ଏହି ଦଳକୁ ସିଂହ ଓ ସଙ୍ଗତମାନଙ୍କ ଉପରେ ବଡ ନିର୍ଦ୍ଦୟ ସହ ଗୁଳିବର୍ଷା କରିଦେଲେ। ଧଡ଼ାଧଡ଼ ଶବ ପଡ଼ି ଚାଲିଲା। ପରନ୍ତୁ ଏହି ଦଳ ସମ୍ପୂର୍ଣ୍ଣ ଶାନ୍ତମୟୀ ଓ ସହଜ - ଅବସ୍ଥା ସହ ଆଗକୁ ବଢ଼ିଚାଲିଲା। ଏହିପରିକି ଜଣେ ମହିଳାର ନବଜାତ ଶିଶୁକୁ ମଧ୍ୟ ଗୁଳି ଲାଗିଲା ଓ ସେ ମଧ୍ୟ ଶହୀଦ ହୋଇଗଲା। ପରନ୍ତୁ ପ୍ରଭୁଙ୍କ ଇଚ୍ଛା ସହ ମହିଳାଜଣଙ୍କ ଧୈର୍ଯ୍ୟ ଓ ସାହସ ସହିତ ନିଜର କଲିଜାକୁ ଜମିରେ ଶୁଆଇ ଦେଲା ଓ ଦଳ ସହିତ ଦୌଡ଼ି ଯାଇଥିଲା।

ଗୁରୁଦ୍ୱାରା ଟିବ୍ବୀ ସାହିବ, ଯେଉଁଠାରେ କଲଗୀଧରଜୀ (ଦଶମ ଗୁରୁ ମହାରାଜ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ) ରହିରାସ (ସନ୍ଧ୍ୟା ସମୟର ପାଠ)ର ସଙ୍ଗତ ସଭା

ସଜାଉଥିଲେ, ସେହି ସ୍ଥାନଯାଏଁ ଏହି ଦଳଟି ଦୌଡ଼ି ଯାଇ ପହଞ୍ଚିଯାଇଥିଲେ, ପତାକା ପୋଡ଼ି ଯାଇଥିଲା ଓ ଉଠାଇ ଆଣିଥିବା ସିଂହମାନଙ୍କୁ ସେହିଠାରେ ରଖିଦେଲେ ଓ ସିଧା ଗଙ୍ଗସରଠାକୁ ଚାଲିଗଲେ। ପରନ୍ତୁ ରସାଲେ ଓ ଛାଛୀ ପୋଲିସମାନେ ଏହି ଦଳକୁ ଘେରାଉ କରିଦେଲା। ଗୋଟିଏ ଗୋଟିଏ ସିଂହକୁ ପାଞ୍ଚ, ଛଅ ଜଣ ଅଶ୍ୱାରୋହୀମାନେ ମାରି ମାରି ବେହୋସ କରିଦେଲେ। ଖାଲୁଆ ସ୍ଥାନକୁ ବସ୍ତା ଫୋପାଡ଼ିବା ଭଳି ଫୋପାଡ଼ିଦେଲେ, ଲଦିଦେଲେ ଓ ଦୁର୍ଗକୁ ପଠାଇଦେଲେ। ସେଠାରେ ୨୪ଘଣ୍ଟା ଯାଏଁ ଘାୟଲମାନଙ୍କୁ ନା କିଏ ପାଖକୁ ଆସିବା ଅନୁମତି ଦେଲେ ନା କାହାକୁ ସେମାନଙ୍କ ସେବା ଶୁଶ୍ରୂଷା କରିବା ଅନୁମତି ଦେଲେ, ସେହି କାରଣ ଯୋଗୁଁ ଏହି ଆହତମାନେ ତୃଷାର୍ତ୍ତ ଅବସ୍ଥାରେ ଶହୀଦ ହୋଇଗଲେ।

୩୦୦ ଶିଖ ଆହତ ହୋଇଥିଲେ। ସେଥିରୁ ପ୍ରାୟ ୧୦୦ ସିଂହ ଶହୀଦ ପ୍ରାୟ କରିଥିଲେ। ନିୟୁୟର୍କର ଖବର କାଗଜରେ ଟ୍ରିବ୍ୟୁନର ପତ୍ର ପ୍ରେରକ ଫିମାଡ଼ ଏହି ଦଳ ସହିତ ଥିଲା। ସେ ନିଜର ରିପୋର୍ଟ ମଧ୍ୟରେ ଗୁଳି ଚଳାଇବା ଓ ଦଳ ସହିତ ପୋଲିସ ଫୋର୍ସର ପରିସ୍ଥିତି ଲିଖିତ ଆକାରରେ ଦର୍ଶାଇଥିଲା। ସିଂହଙ୍କ ଏହି ଦଳ ସମ୍ପୂର୍ଣ୍ଣ ରୂପେ ଶାନ୍ତ ପରିବେଶ ସହ ଶାନ୍ତ ରହିଥିଲେ, କିନ୍ତୁ ଏହି ଶକ୍ତିଶାଳୀ ନିର୍ଦ୍ଦୟୀ ଇଂରାଜୀଙ୍କ ପୋଲିସମାନେ ୨୫ ସିଂହଙ୍କ ବିରୋଧରେ ହିଂସା କାନୁନ ସହ ଦୋଷୀ ସାବ୍ୟସ୍ତ କରି ସେମାନଙ୍କୁ ଦୀର୍ଘ ଦିନ ପାଇଁ ଦଣ୍ଡ ଦେଇଥିଲେ। ଏହାର ଭୟାନକ ଦୁଷ୍ଟତା ବିଷୟରେ ପଢ଼ି ଶୁଣି ଡରିବା ବଦଳରେ ସିଂହମାନଙ୍କର ଶହୀଦ ରକ୍ତ ଫୁଟିବାକୁ ଲାଗିଲା। ବସନ୍ତୀ (ଗେରୁଆ ବସ୍ତ୍ର) ବସ୍ତ୍ର ଧାରଣ କରି ବସନ୍ତୀ ନିଶାନ ସାହିବ ସହ ୫ଶହ ସିଂହଙ୍କୁ ଅନ୍ୟ ଶହୀଦ ଦଳ ଅକାଳ ତଖତ୍ ସାହିବଠାରୁ ବାହାରି ଜୈତୋଠାରେ ପହଞ୍ଚିଥିଲେ। ସେଠାରେ ପଣ୍ଡିତ ମଦନ ମୋହନ ମାଲବୀୟା ତଥା ଅନ୍ୟ ସଭ୍ୟ (ଏସେମ୍ବଲୀ ଦଳର) ଦଣ୍ଡିତ ଓ କଷ୍ଟ ପାଉଥିବାଙ୍କ ପରିସ୍ଥିତି ନିଜେ ଆଖିରେ ଦେଖିବା ପାଇଁ ପହଞ୍ଚିଥିଲେ। ଏହି ଦଳଟିକୁ ବିନା କାରଣରେ ଗିରଫ କରାଯାଇଥିଲା ଓ ଏହିପରି ସଶସ୍ତ୍ର ଶହୀଦ ଦଳ ଲଗାତାର ଶ୍ରୀ ଅକାଳ ତଖତ୍ ସାହିବଠାରୁ ଜୈତୋକୁ ପଠାଯାଉଥିଲା।

ଶେଷରେ ପଞ୍ଜାବର ଗଭର୍ଣ୍ଣର ସର ମୈଲକମ ହେଲୀ ଗୋଟିଏ ଅଫିସରେ ବୈଠକ କରି ଅକାଳୀ ବନ୍ଦୀମାନଙ୍କୁ ମୁକ୍ତି କରାଇଲା ଓ ଅଖଣ୍ଡ ପାଠକୁ ଛୁଟି(Free) କରିବା ଘୋଷଣା କରିଦେଲା।

୧୯୮୧ ସମ୍ବତ ଆଷାଢ ମାସ ଗୁରୁଦ୍ୱାର ଗଙ୍ଗସର ଜୈତୋଠାରେ ଅଖଣ୍ଡ ପାଠ ଆରମ୍ଭ କରାଗଲା ପରେ ଶହୀଦୀ ଦଳର ସଙ୍ଗତମାନେ ପହଞ୍ଚି ୧୦୧ ଅଖଣ୍ଡ ପାଠ ନିର୍ବିଘ୍ନରେ ସମାପ୍ତ କରିଥିଲେ।

ତାହାପରେ ପ୍ରାୟ ସବୁ ସିଂହମାନଙ୍କୁ ମୁକ୍ତି କରାଯାଇଥିଲା। ସିଂହମାନେ ଅମୃତସରଠାରେ ପହଞ୍ଚି, ସେଠାରେ ସେମାନେ ବଡ଼ ଉତ୍ସୁକତା, ପ୍ରେମ ଓ କୃତଜ୍ଞତା ସହ ଯାତ୍ରା ବାହାର କରିଲେ। ତାହାର ଉଦାହରଣ ଅବର୍ଣ୍ଣନୀୟ, ତାହାର ବର୍ଣ୍ଣନା ଅକଥନୀୟ, ଦେଖିବା ବ୍ୟକ୍ତି କେବଳ ତାହା ବୁଝିପାରିବେ।

ଭାଇ ଫେରୁଙ୍କ ବହୁତ ବଡ଼ ଦଳକୁ ମଧ ପନ୍ଥମାନେ ବିଜୟ ହାସଲ କରିଥିଲେ। ଏହି ଦଳରେ ପ୍ରାୟ ୫୦୦୦ ସିଂହ ଗିରଫ ହୋଇଥିଲେ। ସେଠାରେ ଗୁରୁଦ୍ୱାର, ଚୁନିୟା ଜିଲ୍ଲା ଲାହୋର ଛାଙ୍ଗା ମାଙ୍ଗା ଷ୍ଟେସନ ଠାରୁ ୯ ମାଇଲ ଦୂରରେ ଅବସ୍ଥିତ ଅଟେ।

## ଗୁରୁଦ୍ୱାରର ଆଇନ ବ୍ୟବସ୍ଥା

ସମ୍ବତ ୧୯୮୨ ସମୟରେ କାଉନସିଲ ଶିମଲେ ସେସନରେ 'ପଞ୍ଜାବ ଆକ୍ଟ ନଂ ୮ରେ ଶିଖ ଗୁରୁଦ୍ୱାର ଧାରା ଖ୍ରୀଷ୍ଟାବ୍ଦ୧୯୨୫'ର ନାମର ତଳେ ଗୁରୁଦ୍ୱାର ଆଇନ ପାସ୍ ହୋଇଥିଲା, ତାହାକୁ ଗଭର୍ଣ୍ଣର ମଞ୍ଜୁରି ପ୍ରାପ୍ତ କରାଇଥିଲେ। ସେହି ବର୍ଷ ତାହା ଚାଲୁ ହୋଇଗଲା, କାରଣ ଯେଉଁ ଶିରୋମଣି କମିଟୀର ସଭ୍ୟମାନେ ଏଥିପାଇଁ ସଂଘର୍ଷ କରିଥିଲେ, ସେମାନଙ୍କୁ ସେହି ସମୟରେ ମୁକ୍ତି କରାଯାଇଥିଲା।

ଶିରୋମଣି ଗୁରୁଦ୍ୱାର ପ୍ରବନ୍ଧକ କମିଟୀ ଯାହାର ନାମ ଧାର ମଧରେ "ସେଣ୍ଟ୍ରାଲ ଗୁରୁଦ୍ୱାର ବୋର୍ଡ" ଲେଖା ଯାଇଥିଲା, ତାହାର ପ୍ରଥମ ଭେଟ ପରେ ପ୍ରଥମେ ସଭା ମଧରେ ନାମ ନିର୍ବାଚିତ କରାଇ ଶିରୋମଣି ଗୁରୁଦ୍ୱାର ପ୍ରବନ୍ଧକ କମିଟୀ ରଖାଯାଇଥିଲା।

ତାହାପରେ ସମ୍ବତ ୧୯୮୩ ବେଳେ ସରକାର ଶିରୋମଣି କମିଟି ଓ ଶିରୋମଣି ଅକାଳୀ ଦଳକୁ ଦୋଷୀ ଘୋଷଣା କରାଇ ଦିଆଯାଇଥିବା ଆଇନ ପ୍ରତିଶ୍ରୁତିକୁ ଫେରସ୍ତ ନେଇଥିଲା। ସଭ୍ୟମାନଙ୍କୁ ମୋକଦ୍ଦମା ଫେରସ୍ତ କରାଇ ସମସ୍ତଙ୍କୁ ବିନା ପ୍ରତିଶ୍ରୁତି ସହ ମୁକ୍ତି କରାଯାଇଥିଲା।

ସର୍ଦ୍ଦାର ତେଜା ସିଂହଜୀ ସମୁଦ୍ରୀ ଦୁର୍ଗଠାରେ ବନ୍ଦୀ ହୋଇଥିବାବେଳେ ଶହୀଦ ହୋଇଯାଇଥିଲେ। ପନ୍ଥକ ହିସାବରେ ତାଙ୍କର ସେବା ବିଶେଷତା ଥିଲା। ସେଥିଯୋଗୁଁ ତାଙ୍କର ସ୍ମରଣ ସକାଶେ ଶିରୋମଣି କମିଟୀର କାର୍ଯ୍ୟାଳୟର ବଡ଼ ହଲର ନାମ 'ସ.ତେଜା ସିଂହ ସମୁଦ୍ରୀ ହଲ' ନାମରେ ରଖାଗଲା। ଏହି ହଲଠାରେ ଆଜିକାଲି ଶିରୋମଣି କମିଟିର ସାଧାରଣ ସମାଗମ ହେଉଅଛି।

## ଅକାଳୀ ସ୍ରୋତ ପରେ

ଅକାଳୀ ସ୍ରୋତ ସମୟରେ ବହୁତ ଶିଖ ବଳିଦାନ ଦେଇଥିଲେ। ବହୁତ ସଂଘର୍ଷ କରିବାପରେ ମଧ୍ୟ ଇଂରାଜୀ ସରକାର ବିଚାର କରିଲା କି.ଶିଖମାନଙ୍କୁ ଦବାଇ ରଖାଯାଇପାରିବ ନାହିଁ। ପରନ୍ତୁ ଇଂରେଜମାନେ ବହୁତ ଚତୁର ଥିଲେ। ସେମାନେ ଗୁରୁଦ୍ୱାର ଆଇନ ଲାଗୁ କରାଇ ପଛକୁ ହଟିଗଲେ। ଶିଖ୍‌ମାନେ ପୁଣି ପରସ୍ପର ମଧ୍ୟରେ ଲଢ଼ି ଚାଲିଲେ। ଗୁରୁଦ୍ୱାରର ମୁଖିଆ ଓ ପ୍ରବନ୍ଧକଙ୍କ ମଧ୍ୟରେ ବହୁତ ସଂଘର୍ଷ ହୋଇଥିଲା। ଦୁଇପକ୍ଷ ହୋଇଗଲେ। ସେମାନଙ୍କ ଲକ୍ଷ୍ୟ ହୋଇଥିଲା କି ନିଜ ଅଧିକାରରେ ଗୁରୁଦ୍ୱାର ରହୁ। ସବୁଠାରୁ ଖରାପ କଥା ଥିଲା କି, ଯେତେବେଳ ଠାରୁ ଏହି ଆଇନ ଲାଗୁ ହୋଇଗଲା, ସେତେବେଳେ ଠାରୁ ଶିଖମାନଙ୍କର ମଧ୍ୟ ଅସନ୍ତୋଷ ଖେଳି ରହିଲା। ଜାତି, ପରମ୍ପରା ବଂଶ ସମାଜର ଜୋର ହୋଇ ପକ୍ଷପାତ ଆରମ୍ଭ ହୋଇଥିଲା। ନିଜ ନିଜର ସମାଜ ପାଇଁ ମତଦାନ ମାଗିଥିଲେ। କିନ୍ତୁ ସର୍ବସାଧାରଣ ଧୀରେ ଧୀରେ ଏହା ବିଷୟରେ ଆଗ୍ରହ ଦେଖାଇ ନ ଥିଲେ। ଦଳମାନଙ୍କର ଖୁବ୍ ଜୋର ରହିଲା ଓ ସ.ବ. ମହତାବ ସିଂହଜୀଙ୍କ ସ୍ୱର୍ଗବାସ ପରେ ମାଷ୍ଟର ତାରା ସିଂହଙ୍କ ଦଳର ଯୋର ବଢ଼ିଲା ଓ ପ୍ରାୟ ସବୁ ଗୁରୁଦ୍ୱାର ପୁଣି ଏହି ଦଳର ଅଧିକାର ହୋଇଗଲା। ଧାରା ୮୫ ଅନୁଯାୟୀ ପ୍ରଥମେ ଅଲଗା-ଅଲଗା କମିଟୀର ପ୍ରବନ୍ଧ ମଧ୍ୟରେ ରହିଥିଲା ଓ ଶିରୋମଣି କମିଟିର ଏହା ଉପରେ ଅଧିକାର ନ ଥିଲା। ସେହି କାରଣ ଯୋଗୁଁ ଶିରୋମଣି କମିଟୀର ସଭ୍ୟମାନେ ୧୯୯୭ (୧୯୪୦ ଖ୍ରୀ.) ସମୟରେ ଗୁରୁଦ୍ୱାରା କମିଟୀ ଆଇନକୁ ସଂଶୋଧନ କରାଇଥିଲେ ଓ ଦଫା ୮୫ଧାରା ଅନୁଯାୟୀ ଗୁରୁଦ୍ୱାର ପାଇଁ ସ୍ୱତନ୍ତ୍ର କମିଟୀ ଓ ଶ୍ରେଣୀ ଗୁରୁଦ୍ୱାର ଆଇନ ମଧ୍ୟରୁ କାଟି ଦିଆଗଲା ଓ ଏହିପରି ପ୍ରାୟ ସବୁ ଗୁରୁଦ୍ୱାରର ପ୍ରବନ୍ଧ ସିଧା ଶିରୋମଣି କମିଟିର ପ୍ରବନ୍ଧକ ମଧ୍ୟରେ ରହିଲା।

## ଦେଶର ରକ୍ତାକ୍ତ ଭାଗବଣ୍ଟା

ସମ୍ଭତ ୧୯୮୭ ସମୟରେ ଅକାଳୀ ଢେଉ ପରେ ଦେଶ ସ୍ୱତନ୍ତ୍ର ସକାଶେ ବହୁତ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏହି ଆନ୍ଦୋଳନରେ ଶିଖମାନେ ଯୋଗ ଦେଇଥିଲେ । ଜେଲ, ଜୁରମାନା ଓ ଫାଶି ଇତ୍ୟାଦି ମଧ୍ୟରେ ଶିଖମାନଙ୍କ ସଂଖ୍ୟା ବହୁତ ଗୁଣରେ ଅଧିକ ଥିଲା । ଇଂରେଜ ଜାଲିଆଁନାବାଲା ବାଗର ହତ୍ୟାକାଣ୍ଡ ପରେ ଏହା ଏତେ ଭୟାନକ ହୋଇଥିଲା କି, ସ୍ୱତନ୍ତ୍ର ଚଢ଼ଉ (ଆନ୍ଦୋଳନ) ସେମାନଙ୍କୁ ଆହୁରି ଦ୍ୱନ୍ଦ୍ୱ କରିଦେଲା । ସେତେବେଳେ ଲାହୋରଠାରେ ଗୋଟିଏ ଶୋଭାଯାତ୍ରା ଉପରେ ଲାଠିଚାର୍ଜ ହୋଇଥିଲା । ସେତେବେଳେ ସର୍ଦ୍ଦାର ଲାଲା ଲାଜପତ ରାଏଙ୍କ ମୃତ୍ୟୁ ସେଥିରେ ହୋଇଥିଲା । ଜଣେ ଯୁବକ ଶିଖ ଭଗତ ସିଂହ ତାହାର ପ୍ରତିଶୋଧ ନେଇଥିଲେ ଓ ମିଷ୍ଟର ସାଁଡ଼ର୍ସ ପୁଲିସ କପ୍ତାନର ଗୁଳି ଦ୍ୱାରା ଉଡ଼ାଇ ଦେଇଥିଲେ । ତାହାର ଆଦେଶ ଯୋଗୁଁ ଲାଠି ଚାର୍ଜ ହୋଇଥିଲା । ସେଥିଯୋଗୁଁ ଭଗତ ସିଂହ, ରାଜଗୁରୁ ଓ ସୁଖଦେବଙ୍କୁ ଏହି ଦୋଷ ଯୋଗୁଁ ଫାଶୀ ଦଣ୍ଡ ମିଳିଥିଲା ।

ସମଗ୍ର ଦେଶରେ ସ୍ୱତନ୍ତ୍ରତାର ଆନ୍ଦୋଳନ ତୀବ୍ରତା ସହ ବଢ଼ିଚାଲିଥିଲା । ସେଥିଯୋଗୁଁ ଇଂରାଜୀ ସରକାର ଚିନ୍ତିତ ହୋଇଥିଲା ଗଭୀରତାରେ ଡୁବି ବିଚାର କରିଥିଲେ । ସେମାନେ ଦୀର୍ଘ ଦିନ ଧରି ଶାସନ କରିପାରିବେ ନାହିଁ । ଅନ୍ୟପଟରେ ମୁସଲମାନମାନେ ବିଚାର କରିଲେ କି ଏହି ଦେଶରେ ସ୍ୱୟଂ ସେମାନେ ଶାସନ କରିବେ । ଏହି ବିଚାରରେ ପ୍ରଭାବ ମୁସଲିମ ଲିଗକୁ ତୀବ୍ର ଭାବେ ପ୍ରଭାବିତ କରିଥିଲା ।

ମୁସଲିମ୍ ଲିଗ ମଧ୍ୟରେ ବହୁତ ସଂଖ୍ୟାର ମୁସଲମାନ ଅଞ୍ଚଳକୁ ଏକତ୍ରିତ କରାଇ ଗୋଟିଏ ଅଲଗା ଦେଶ ପାକିସ୍ତାନ ନାମ ଦେଇ ତାହାର ଦାବି କରିବା ଆରମ୍ଭ କରିଦେଲେ । କଂଗ୍ରେସର ନେତୃତ୍ୱ ଅଗ୍ରଣୀ ଥିବା ଯୋଗୁଁ ସେମାନଙ୍କୁ ବହୁତ ପ୍ରସ୍ତାବ ଦେଇଥିଲା ଓ ବହୁତ ରାଜ୍ୟ ଶାସନ ଦେବାପାଇଁ ପ୍ରସ୍ତାବ ଦେଇଥିଲା । କିନ୍ତୁ ମିଷ୍ଟର ଜିନ୍ନାର ନେତାଗିରି ଯୋଗୁଁ କଂଗ୍ରେସ ଦେଇଥିବା ପ୍ରସ୍ତାବ ମୁସଲମାନମାନଙ୍କ ନିକଟରେ ଜଣାଇବାକୁ ଦେଇ ନ ଥିଲା । ମିଷ୍ଟର ଜିନ୍ନା ବାରମ୍ବାର ଘୋଷଣା କରିଲା କି କଂଗ୍ରେସ ହିନ୍ଦୁ ଶ୍ରେଣୀର ଅଟେ । ମହାତ୍ମା ଗାନ୍ଧୀଜୀ ଓ ମିଷ୍ଟର ଜିନ୍ନା ସହିତ ବହୁତ ଥର ମିଶିବା ହୋଇଥିଲା, ପରନ୍ତୁ ପରିଣାମ ବାହାରି ନ ଥିଲା । ଯିବାବେଳେ ଇଂରେଜମାନେ ଏହାକୁ ଅଲଗା ରୂପ ଧାରଣ କରାଇଦେଲେ ।

ସମ୍ବତ ୧୯୯୭ (୧୯୪୦ ଖ୍ରୀ.) ସମୟରେ ପାକିସ୍ତାନ ଦାବିର ଜୋର ବଢ଼ିଲା । ଜାତିବାଦର ପ୍ରବଳତାର ଯୌବନ ଶକ୍ତି ଉଛୁଳିବା ଆରମ୍ଭ ହୋଇଗଲା । ହିନ୍ଦୁ ଖବରକାଗଜରେ ମୁସଲିମ ଲିଗକୁ ଓ ମୁସଲମାନ ଖବରକାଗଜରେ କଂଗ୍ରେସର ବିରୁଦ୍ଧ ଖୁବ୍ ସମାଲୋଚନା କରିବା ଆରମ୍ଭ ହୋଇଗଲା । ସେତେବେଳେ ମୁସଲମାନ ଫୋର୍ସ ଖାକିବସ୍ତ୍ରର ଫୌଜର ପେରେଡ ଆରମ୍ଭ ହୋଇଗଲା । ତାହାର ଉତ୍ତରରେ ଶିଖମାନେ ମଧ୍ୟ ଅକାଳ ରେଜିମେଣ୍ଟ୍ ଓ ହିନ୍ଦୁଙ୍କ ସପକ୍ଷରେ ସ୍ୱୟଂ ସେବକ ସଂଘ ଆସିଲେ । ପରନ୍ତୁ ସମ୍ବତ ୧୯୯୯ (୧୯୪୨ଖ୍ରୀ.) ସମୟରେ ସ୍ୱତନ୍ତ୍ରତାର ଢେଉ ଇଂରେଜମାନଙ୍କୁ ଅଣନିଶ୍ୱାସୀ କରାଇଦେଲା । ତାହା ସହିତ ତୃତୀୟ ବିଶ୍ୱଯୁଦ୍ଧ ଓ ଆଜାଦହିନ୍ଦ ଫୌଜର ଶକ୍ତିଶାଳୀ ପ୍ରଭାବରେ ଇଂରେଜମାନେ ଆହୁରି ଚକ୍ରବ୍ୟୂହ ମଧ୍ୟରେ ପଡ଼ିଗଲେ ।

## ଦେଶର ଏକତା ସକାଶେ ଶିଖମାନଙ୍କ ବଳିଦାନ

ଦେଶ ସ୍ୱତନ୍ତ୍ର ହେବା ସମୟରେ ଶିଖମାନେ ଇଛା କରିଥିଲେ ନିଜର ସ୍ୱତନ୍ତ୍ର ଅଞ୍ଚଳ ନେଇ ପାରିଥାଆନ୍ତେ, କାରଣ ଇଂରେଜମାନେ ତୃତୀୟ ଜାତି (ସଂଘ) ନିଶ୍ଚିତ କରି ସ୍ୱତନ୍ତ୍ର କ୍ଷେତ୍ର ଦେବାପାଇଁ ରାଜି ହୋଇଥିଲା, ପରନ୍ତୁ ନେତାମାନଙ୍କ ଅପିଲ ଦେଶର ଏକତା ଓ ମଙ୍ଗଳ ସକାଶେ ଶିଖମାନେ ଭାରତ ସହିତ ରହିବା ଉଚିତ ମନେ କରିଥିଲେ ଓ ସ୍ୱତନ୍ତ୍ର କ୍ଷେତ୍ରର ପ୍ରସ୍ତାବକୁ ନାସ୍ତି କରିଥିଲେ । ସଟୈଫୋର୍ଡ କ୍ରୟର ମିଶନ ଶିଖ ସିଂହ ସକାଶେ ବହୁତ ଚେଷ୍ଟା କରିଲା ଓ ବ୍ରିଟିଶ ସଂସଦ ମଧ୍ୟରେ ଘୋଷଣା କରାଇଲା କି ଇଂରାଜୀ ଦେଶ ତ୍ୟାଗ କରିବା ସମୟରେ ଭାରତର ପ୍ରତ୍ୟେକ ଅଳ୍ପ ସଂଖ୍ୟାର ଲାଭ ପ୍ରତି ବିଚାର କରିବ; ପରନ୍ତୁ ଶିଖ ନେତା କଂଗ୍ରେସ ନେତାଙ୍କୁ ବିଶ୍ୱାସ କରିବାଯୋଗୁଁ ଭାରତଠାରୁ ବିଛିନ୍ନ ହେବାପାଇଁ ରାଜି ହୋଇ ନ ଥିଲେ ।

କଂଗ୍ରେସର ବଡ଼ ବଡ଼ ନେତା ତଥା ଦେଶର ଅନ୍ୟ ଶୁଭାକାଂକ୍ଷୀ ଶେଷ ଯାଏଁ ପାକିସ୍ତାନ ପ୍ରସ୍ତାବର ବିରୋଧ କରିଥିଲେ ଓ ଏହି ଘୋଷଣା କରିଥିଲେ କି ପାକିସ୍ତାନ ଦିଆଯିବ ନାହିଁ । ମୁସଲିମ ଲିଗ ପ୍ରସ୍ତୁତ ହୋଇ ସମ୍ବତ ବିକ୍ରମୀ ୨୦୦୩ (୨୭ ଜୁଲାଇ ୧୯୪୬ ଖ୍ରୀ.) ସମୟରେ ଡାଇରେକ୍ଟ ଏକ୍ସନ ନେବାପାଇଁ ନିଷ୍ପତ୍ତି କରିଦେଲା । ସେହିଦିନ ପୂରା ଦେଶରେ ଖୁବ୍ ଗଣ୍ଡଗୋଳ ଆରମ୍ଭ ହୋଇଗଲା ।

ଇଂରେଜମାନଙ୍କ ଗୁହ୍ୟ ଭେଦ ଥିଲା କି, ହିନ୍ଦୁସ୍ତାନ ମଧ୍ୟରେ ଏମିତି ପରିସ୍ଥିତି ସୃଷ୍ଟି କରାଯାଉକି ହିନ୍ଦୁମାନଙ୍କ ମଧ୍ୟରେ ଦେଶ ସମ୍ଭାଳିବା କଷ୍ଟକର ହୋଇଉଠୁ ଓ ଏମିତି ଭାବେ ବରବାଦ ହେଉ, ଯାହାକୁ ଦେଖି ସମସ୍ତଙ୍କ ରୋମ ଟାଙ୍କୁରି ଉଠୁ। ସେଥିପାଇଁ ମୁସଲିମ ଲିଗମାନେ ବଙ୍ଗାଲ (ବିଶେଷ ଭାବେ ନବାଖଲୀ) ଓ ତାହା ସହିତ ପଞ୍ଜାବ (ରାଓ୍ୱଲପିଣ୍ଡି, ଝେଲମ) ସରହଂଦ ଠାରେ ଖୁବ୍ ରକ୍ତାକ୍ତ ଗଣ୍ଡଗୋଳ କରିବା ଆରମ୍ଭ ହୋଇଗଲା। ସେଥିରେ ହିନ୍ଦୁ ଶିଖମାନଙ୍କର ବହୁତ କ୍ଷତି ହୋଇଥିଲା। ପ୍ରାୟ ୫ହଜାର ଲୋକ ମରିଥିଲେ ଓ କୋଟି କୋଟି ଟଙ୍କା ଧନ ସମ୍ପତ୍ତି ଜଳାଇ ଦିଆଯାଇଥିଲା। ଶେଷରେ କର୍ଫ୍ୟୁ ଲଗାଇ ପରିସ୍ଥିତି ସମ୍ଭାଳିବା ଚେଷ୍ଟା କରାଯାଇଥିଲା। କିନ୍ତୁ ପରିସ୍ଥିତି କେମିତି ଠିକ ହୁଅନ୍ତା କାରଣ ମୁସଲମାନ ଅଫିସର ସମସ୍ତେ ମୁସଲମାନମାନଙ୍କ ସାଥିରେ ଥିଲେ ଓ ମୁସଲମାନମାନଙ୍କୁ ଖୋଲା ହୃଦୟରେ ସାହାଯ୍ୟ କରିଥିଲେ। ଏହାର ବିପରୀତ ହିନ୍ଦୁ ଓ ଶିଖ ଅଫିସରମାନେ ସଙ୍କୁଚିତ ହୋଇ ସାହାଯ୍ୟ କରୁଥିଲେ। ଯେଉଁଠି ହେଉନା କାହିଁକି ବିହାର ଠାରେ ମଧ୍ୟ ଏହାର ବିପରୀତ ଗଣ୍ଡଗୋଳ ହୋଇଥିଲା, କିନ୍ତୁ ପରିସ୍ଥିତି ଠିକ୍ ହୋଇ ନ ଥିଲା। ଦେଶର ସବୁଠାରୁ ବଡ଼ ଅଫିସର ଇଂରେଜମାନେ ଥିଲେ ଓ ସେମାନେ ମୁସଲମାନମାନଙ୍କୁ ଉତ୍ସାହିତ କରାଉଥିଲେ। କିଛି ଦିନ ପାଇଁ ଗଣ୍ଡଗୋଳ ବନ୍ଦ ଥିଲା। ପୁଣି ଲିଗ୍‌ମାନେ ସମାଗମ କରିବା ଓ ଗାଡ଼ି ଅଟକାଇ ସେଥିରେ ମୁସଲିମ୍ ଲିଗର ଝଣ୍ଡା ବାନ୍ଧିବା ଆରମ୍ଭ କରିଦେଲେ।

ତିନି ଚାରି ମାସ ଯାଏଁ ଏମିତି ଚାଲିଲା, ପରନ୍ତୁ ଶୀଘ୍ର ତାହାର ଜ୍ୱାଳାମୁଖୀ ଫୁଟିଲା ଓ ଭୟାନକ ଗଣ୍ଡଗୋଳ ହୋଇଥିଲା। ପଞ୍ଜାବର ମନ୍ତ୍ରୀ, ଛୋଟ ଛୋଟ ରାଜା ହୟାତ ଖାଁ ଟିବାନା ୧୮ ଫାଲ୍‌ଗୁନ ୨୦୦୩ (୨ ମାର୍ଚ୍ଚ ୧୯୪୭) ଦିନ ହିନ୍ଦୁ ଶିଖ ଓ ମୁସଲମାନମାନଙ୍କ ମିଳିତ ସରକାରର (ରାଜା) ବଜୀର ଆଜମୀ ଠାରେ ଇସ୍ତଫା ଦେଇଦେଲେ। ଦ୍ୱିତୀୟ ଦିନ ବିଧାନସଭାର ସମ୍ମିଳନୀର ପ୍ରସ୍ତାବ ଥିଲା, ସେଥିଯୋଗୁଁ ସେହି ଦିନ ସକାଳ ସମୟରେ ଲାହୋରଠାରେ ମୁସଲମାନମାନେ ଶୋଭାଯାତ୍ରା ବାହାର କରି (ଖିଜର ହମାରା ଭାଇ ହୈ) ଏହିପରି ଭାବେ ନାରା ଦେବା ଆରମ୍ଭ କରିଦେଲେ।

ସେଥିରୁ ଜଣାପଡ଼ିଥିଲା କି ଆଜି ବଙ୍ଗାଲ ଭଳି ଏହିଠାରେ ମଧ୍ୟ ମୁସଲିମ ସରକାର ହୋଇଯିବ। ହିନ୍ଦୁ ଶିଖ ନେତା ମଧ୍ୟ ସେହିଦିନ ଲାହୋରଠାରେ ପହଞ୍ଚିଥିଲେ। ଲିଗ୍‌ମାନେ ବିଧାନସଭାର ସଭା ଆରମ୍ଭ ହେବା ପୂର୍ବରୁ ଏସେମ୍ଲି ହଲ ଠାରେ ପତାକା

ଫେରାଇବା ଆରମ୍ଭ କରିଦେଲେ ଓ ପାକିସ୍ତାନ ଜିନ୍ଦାବାଦର ନାରା ଆରମ୍ଭ କରିଦେଲେ। ଯାହାକି ଶୂନ୍‌ଶାନ୍ କରାଇଦେଲା। ମାଷ୍ଟର ତାରା ସିଂହଜୀ ଖୁବ ସାହସିକତାର କାମ କରିଥିଲେ। ସେ ନିଜ ହାତରେ ତଲବାର ଖୋଲି ଲିଗ ପତାକାକୁ ଏସେମ୍ଲି(ବିଧାନସଭା) ହଲରେ ବାହାର କରି ଫାଡି ଫୋପାଡି ଦେଲେ ଓ ପାକିସ୍ତାନ ମୁର୍ଦ୍ଦାବାଦର ନାରା ଲଗାଇଲେ। ଯାହାକି ସଭା ହୋଇନପାରୁ ଓ ମୁସଲିମ ଲିଗର ସରକାର ନ ହେଉ। ପ୍ରଥମେ ହିନ୍ଦୁ ଓ ଶିଖ ସଭ୍ୟମାନେ ସଙ୍କୋଚ କରିଥିଲେ, କିନ୍ତୁ ପରେ ସମସ୍ତେ ମିଶି ନାରା ଲଗାଇଥିଲେ। ୧୨ଟା ପରେ ହିନ୍ଦୁ, ଶିଖ କଲେଜ ଛାତ୍ରମାନେ ଲାହୋରଠାରେ ବହୁତ ବଡ଼ ଶୋଭାଯାତ୍ରା ବାହାର କରିଥିଲେ, ଯାହାକି ପୋଲିସ ବିନା କାରଣରେ ଗୁଳି ଚଳାଇ ଦେଲା ଓ ବିଦ୍ୟାର୍ଥୀମାନେ ମରିବା ସହିତ ଅନେକ ଆହତ ହୋଇଥିଲେ। ୨୦ ଫାଲ୍‌ଗୁନ, ଅମୃତସର ତଥା ଅନ୍ୟ ସହରମାନଙ୍କରେ ହିନ୍ଦୁ, ଶିଖମାନଙ୍କ ବହୁତ ବଡ଼ ସମ୍ମିଳନୀ ହୋଇଥିଲା ଓ ୨୧ ଫାଲ୍‌ଗୁନ (୫ ମାର୍ଚ୍ଚ, ୧୯୪୭) ଆକ୍ରୋଶିତ ହୋଇ ବନ୍ଦ ଆହ୍ୱାନ କରିବା ଯୋଜନା କରିଥିଲେ। ପରନ୍ତୁ ବନ୍ଦ ଦିନ ଅନ୍ୟ ଗୋଟିଏ ଚାଲାକି ହୋଇଥିଲା। ସେତେବେଳେ ମୁସଲମାନମାନେ ଭଲ ଭାବେ ପ୍ରସ୍ତୁତ ହୋଇଥିଲେ ଓ ଏହି ଜିଦ୍‌ରେ ଅଟଳ ଥିଲେ କି ପାକିସ୍ତାନର ସୀମା ଯମୁନା ଯାଏଁ ସ୍ଥିର ହେଉ। ସେଥିଯୋଗୁଁ ଲାହୋରଠାରେ ଏହିପରି ଭାବେ ପଞ୍ଜାବ (ମଶକରୀ ପଞ୍ଜାବ) ଯେଉଁଠି ହିନ୍ଦୁ ଓ ଶିଖଙ୍କ ସଂଖ୍ୟା ଅଧିକ ଥିଲା। ମୁସଲମାନମାନେ ଖୁବ୍ ପ୍ରସ୍ତୁତ ହୋଇ ରହିଥିଲେ। ଅମୃତସର ଶିଖମାନଙ୍କ ବିଶେଷ ସହର ଥିଲା ଓ ବିଶେଷ ଭାବେ ଶିଖମାନେ ଦଳି ଦେବାକୁ ଚାହୁଁଥିଲେ।

ସେଥିଯୋଗୁଁ ଅମୃତସରଠାରେ ବହୁତ ଗଣ୍ଡଗୋଳ ହୋଇଥିଲା। ଦୀବାନ୍ (ସଭା)ର ଡିଣ୍ଡିମ ପିଟିବାକୁ ଯାଇଥିବା ଘୋଷଣାକାରୀ ମଙ୍ଗଳ ସିଂହଙ୍କୁ ଲିଗ ଲୋକମାନେ ମୋନି ଚୌକଠାରେ ଇଟା ମାରି ମାରି ପ୍ରାଣ ନେଲେ। ଅମୃତସରଠାରେ ପୋଲିସ୍ ଅଫିସରଙ୍କ ସଂଖ୍ୟା ଅଧିକ ଥିଲା। ବାହରଲ ଦରବାଜା ପଟରେ ଅଧିକ ଲିଗ ଭିଡ଼ ଥିଲା। ସେଥିଯୋଗୁଁ ସେହିଦିନ ବାହାରୁ ଆସିଥିବା ହିନ୍ଦୁ ଓ ଶିଖ ବହୁତ ସଂଖ୍ୟାରେ ମରିଥିଲେ। ସେହି ହିନ୍ଦୁ, ଶିଖମାନଙ୍କ ମଧ୍ୟରେ ବଡ଼ ଧରଣର ମୁହାଁମୁହିଁ ସଂଘର୍ଷ ଥିଲା ତଥାପି ଅନ୍ୟଦିନ ହିନ୍ଦୁ ଶିଖ ମୁହାଁମୁହିଁ ହେବାପାଇଁ ବାହାରିଲେ। ଅକାଳୀ ଦଳର ତତ୍‌କାଳୀନ ଜରନୈଲ ଦଳପତି (ମୁଖିଆ) ଜଥେଦାର ଉଦ୍ଧମ

ସିଂହଜୀ ନାଗୋକେ ଓ ତାଙ୍କର ସାଥିମାନେ ସେତେବେଳେ ଅମୃତସରର ଲକ୍ଷ୍ୟ ସକାଶେ ପ୍ରଶଂସନୀୟ କାର୍ଯ୍ୟ କରିଥିଲେ। ଘେରାଉ ରହିଥିବା ହିନ୍ଦୁ ଓ ଶିଖମାନଙ୍କ ସାହାଯ୍ୟ ସକାଶେ ବର୍ଷୁଥିବା ଗୁଳି ମଧ୍ୟରେ ପ୍ରବେଶ କରିଲେ ଓ ସେମାନଙ୍କୁ ଉଦ୍ଧାର କରିଥିଲେ। ଏହିପରି ସହର ବହୁତ ଗଳି, ବଜାର, ସାହି, ସାହିରେ ବଡ଼ ବଡ଼ ଲୋକମାନେ ବଞ୍ଚାଇଲେ। ତୃତୀୟ ଦିନ ବର୍ତ୍ତମାନ ଶିଖମାନେ ପୂରା ଜୋରରେ ଥିଲେ। ସେତେବେଳେ ତୁରନ୍ତ କାର୍ଯ୍ୟ ଲଗାଇ ସମସ୍ତଙ୍କୁ ଭିତରେ ବନ୍ଦ କରିଦେଲେ। ଏହି ପ୍ରଭାବ ଅନ୍ୟ ଜାଗାରେ ମଧ୍ୟ ପଡ଼ିଥିଲା। ଯେଉଁଠାରେ ଯେତିକି ଯେତିକି ସମୟ ମୁସଲମାନମାନଙ୍କୁ ହତ୍ୟା କରିବା ଓ ଲୁଟମାର କରିବାରେ ବ୍ୟସ୍ତ ରହିଲେ, ସେତିକିବେଳେ ଅନ୍ୟ କାହାର ହସ୍ତକ୍ଷେପ ନ ଥିଲା। କିନ୍ତୁ ଅନ୍ୟ ତରଫରୁ ଶିଖମାନଙ୍କ ଓ ହିନ୍ଦୁମାନଙ୍କର ପ୍ରଭାବ ବେଶି ପଡ଼ିଲା। ତୁରନ୍ତ କର୍ଫ୍ୟୁ ଲଗାଇ ଦିଆଗଲା ଓ ହିନ୍ଦୁ ଶିଖମାନଙ୍କ ଉପରେ ଲଢ଼ିବା ମୁସଲମାନମାନଙ୍କୁ ଯଥାସମ୍ଭବ ଚେଷ୍ଟା କରାଗଲା କି କେମିତି ସମାଧାନ ହେବ। ସେହି କାରଣ ଗୋଟିଏ ହେଲା କି ଅଧିକ ସଂଖ୍ୟାର ମୁସଲମାନ ଅଫିସର ନିଯୁକ୍ତି ଥିବା ଯୋଗୁଁ ଓ ସେମାନଙ୍କ ସହ ଇଂରେଜଙ୍କ ହାତ ରହୁଥିଲା। ସେମାନେ ନିଆଁରେ ଘିଅ ଢାଳୁଥିଲେ, କିଏ ଅଟକାଇବ ? ସେଥିଯୋଗୁଁ କେବଳ ଅମୃତସରଠାରେ ହଜାର ହଜାର ଲୋକଙ୍କୁ ହତ୍ୟା କରାଯିବା ସହ ଶହ ଶହ ଘର ଜଳାଇ ଦେଇଥିଲେ।

## ପଞ୍ଜାବ ଓ ବଙ୍ଗାଳ ବାଣ୍ଟି ଦିଆଗଲା

ମୁସଲିମ ଲିଗ୍‌ମାନଙ୍କ ଦାବି ଅନୁଯାୟୀ ପାକିସ୍ତାନଠାରୁ ପଞ୍ଜାବ, ବଙ୍ଗାଳ, ସିଂହ ଓ ସରହଦର ସୁବାମାନେ ଚାଲିଯିବ। ପରନ୍ତୁ ଶିଖ ଲିଡ଼ରମାନେ ଦେଖିଲେ କି ପାକିସ୍ତାନର ଦାବି କଂଗ୍ରେସ ନେତା ମାନିବାପାଇଁ ରାଜି ହୋଇଗଲେ, ସେମାନେ ଦାବି କରିଲେ କି ପଞ୍ଜାବର ଶିଖ ହିନ୍ଦୁ ଅଧିକ ସଂଖ୍ୟକଙ୍କୁ ରସିଦ କଟାଇ ଭାରତଠାରେ ଲଗାଇ ଦିଆଯାଉ। ଶିଖମାନଙ୍କର ଏହି ଦାବି ଦେଖି ବଙ୍ଗାଳୀ ହିନ୍ଦୁ ମଧ୍ୟ ଆନ୍ଦୋଳନ କରିଥିଲେ କି ବଙ୍ଗାଳର ହିନ୍ଦୁ ବହୁ ସଂଖ୍ୟକଙ୍କୁ ରସିଦ କଟାଇ ଭାରତରେ ଯୋଡ଼ି ଦିଆଯାଉ। ଲିଗ୍‌ମାନେ ଏହାର ବିରୋଧ କରିଲେ। ପରନ୍ତୁ ଏହି ଦାବି ସେମାନଙ୍କ ଦାବି ଅନୁସାରେ ଥିଲା। ସେଥିପାଇଁ ଏହା ମଧ୍ୟ ସ୍ୱୀକାର ହୋଇଥିଲା। ସେଥିରେ ପାକିସ୍ତାନର କ୍ଷତି ହୋଇଥିଲା ଓ ମିଷ୍ଟର ଜିନ୍ନା ଏହି ପ୍ରସ୍ତାବ ଯୋଗୁଁ ଶିଖମାନଙ୍କୁ

ଘୋର ବିରୋଧ କରିଥିଲେ ଓ କ୍ରୋଧିତ ହୋଇଥିଲେ। ସେ ଶିଖମାନଙ୍କୁ ଧମକି ଦେଲେ ଓ ଯମୁନା କୂଳ ଯାଏଁ ଅଧାରୁ ଅଧିକ ପଞ୍ଜାବର ଶିଖ ରାଜ୍ୟ କରାଯାଉ। ଭୁଲ ପ୍ରତିଶ୍ରୁତି ଦେଇ ମଧ ପାକିସ୍ତାନ ସହ ଯୋଡ଼ି ହେବା ଉପାୟ କରିଥିଲେ। ପରନ୍ତୁ ଶିଖମାନେ କେମିତି ଭୁଲିପାରନ୍ତେ? ସେମାନେ ବହୁତ ପୂର୍ବରୁ ମୁସଲମାନମାନଙ୍କଠାରୁ ଶାସକମାନଙ୍କ ଠାରୁ ଚାଖି ରହିଛନ୍ତି। ସେଥିଯୋଗୁଁ ପଞ୍ଜାବ ଓ ବଙ୍ଗାଳ ଶିଖମାନଙ୍କ ଦୃଢ଼ତା ସହ ବାଣ୍ଟି ଦେଲେ।

## ସ୍ୱତନ୍ତ୍ରତାର ରକ୍ତାକ୍ତ ଦିନ

ସମ୍ବତ୍ ୨୦୦୪ ଆରମ୍ଭ ଭାଦ୍ରବ ମାସ (୧୫ ଅଗଷ୍ଟ ୧୯୪୭) ଦିନ ଦେଶ ସ୍ୱାଧୀନ ହେବାର ଘୋଷଣା ହୋଇଥିଲା। ତାହାପରେ ତ ସୀମା ପାର ହୋଇଗଲା। ପାକିସ୍ତାନର ବଣ୍ଟନ ଯୋଗୁଁ କ୍ଷେତ୍ରର ପ୍ରତ୍ୟେକ ସହରଠାରେ ଗଣ୍ଡଗୋଳ ମାର କାଟ ଆରମ୍ଭ କରିଦେଲେ। ଜିନିଷ ପତ୍ର ଟଙ୍କା ପଇସା ଲୁଟିବା ପାଇଁ ପ୍ରତ୍ୟେକ ହିନ୍ଦୁ, ଶିଖଙ୍କୁ ମାରିଦେବାପାଇଁ ଯୋଜନା ଆରମ୍ଭ କରିଦେଲେ। ବର୍ତ୍ତମାନ ବୋଧହୁଏ କେଉଁ କେଉଁଠି ବର୍ତ୍ତିଗଲେ, ପରନ୍ତୁ ଶିଖମାନଙ୍କୁ ଖୋଜି ଖୋଜି ପହଞ୍ଚି ମାରିବା ପାଇଁ ଚେଷ୍ଟା କରିଲେ, କାରଣ ପାକିସ୍ତାନ ରେଡ଼ିଓ ସେତେବେଳେ ଶିଖମାନଙ୍କ ବିରୋଧରେ ମିଛ ଓ ମନଗଢ଼ା ଅତ୍ୟାଚାରର ଦୋଷ ଲଦି ଲଦି ଚାଲିଥିଲା। ସେହିପରି ଭାବେ ଶିଖ ସମାଜ ଉପରେ ଅତ୍ୟାଚାର ଓ କଳାବାଦଲର ଜାଲ ବିଛେଇ ହୋଇଗଲା ଓ ଅଳ୍ପସଂଖ୍ୟକ ହେବା ଯୋଗୁଁ ଏହି ଅତ୍ୟାଚାରର ଲକ୍ଷ୍ୟ ହୋଇଗଲା।

ସ୍ୱାଧୀନତାର ଘୋଷଣା ହେବାପରେ ବହୁତ ବଡ଼ ଧରଣର ଜନସାଧାରଣଙ୍କୁ ହତ୍ୟା ଆରମ୍ଭ ହୋଇଗଲା। ତାହାର ଦୃଷ୍ଟାନ୍ତ ଦୁନିଆର ଇତିହାସରେ ମଧ ଲିଖିତ ହୋଇ ନାହିଁ। ରାଜ୍ୟ ବଦଳିବାକୁ ଚାଲିଥିଲା। ପରନ୍ତୁ ଏହିପରି ଭାବେ ଜନସଂଖ୍ୟାକୁ ଆଜିଯାଏଁ ବଦଳିପାରିଲେ ନାହିଁ। ଲକ୍ଷ ଲକ୍ଷ ସଂଖ୍ୟାର ହିନ୍ଦୁ ଶିଖଙ୍କୁ ପାକିସ୍ତାନଠାରେ ହତ୍ୟା କରାଯାଇଥିଲା। ତାହାର ଉତ୍ତର ହିନ୍ଦୁ ଓ ଶିଖମାନେ ମଧ ଦେଇଥିଲେ। ପ୍ରତ୍ୟୁତ୍ତର କାର୍ଯ୍ୟ ଯୋଗୁଁ ମୁସଲମାନମାନଙ୍କୁ ଦୌଡ଼ି ଦୌଡ଼ି ଯାଇ ପାକିସ୍ତାନ ଠାରେ ପହଞ୍ଚିବାକୁ ପଡ଼ିଥିଲା। ପରନ୍ତୁ ଏପଟ କେବଳ ପଞ୍ଜାବର ମୁସଲମାନ ଯାଇଥିଲେ ଓ କେତେକ ସେପଟରୁ ଗଲେ, ଯେଉଁଠି ଶିଖ, ହିନ୍ଦୁ ଶରଣାର୍ଥୀ ବହୁ ସଂଖ୍ୟାରେ ପହଞ୍ଚିଗଲେ। ସେଥିଯୋଗୁଁ କେବଳ ପଞ୍ଜାବଠାରେ ମୁସଲମାନ ବିରଳ ହୋଇଥିଲେ।

ପରନ୍ତୁ ସେପଟୁ  ପାକିସ୍ତାନର ପୂରା ପଞ୍ଜାବ ପୂରା ସରହଁଦ ଓ କେତେକ ସିଂହ ଓ ବଙ୍ଗାଳର ଅଞ୍ଚଳରେ ମଧ୍ୟ ହିନ୍ଦୁ, ଶିଖଙ୍କୁ ଖାଲି କରାଯାଇଥିଲା ।

ପରେ ପାକିସ୍ତାନ କବାୟଲିୟାଁ ଠାରୁ କାଶ୍ମୀରକୁ ଆକ୍ରମଣ କରାଇଲା । ଏହି ଆକ୍ରମଣର କାରଣ ଅଧା କାଶ୍ମୀର ମଧ୍ୟ ହିନ୍ଦୁ, ଶିଖଙ୍କୁ ଖାଲି କରିବାକୁ ପଡ଼ିଥିଲା । ସେଠାରେ ମଧ୍ୟ ହିନ୍ଦୁ ଓ ବିଶେଷ ଭାବେ ଶିଖ୍ଙ୍କୁ ବହୁତ କ୍ଷତି ସହ୍ୟ କରିବାକୁ ପଡ଼ିଥିଲା ଓ ମୃତାହତ ହୋଇଥିଲେ ।

ଏହି ଦୁଷ୍ଟ ଦଳର ସାମ୍ନାରେ ଆସୁଥିବା ହିନ୍ଦୁ, ଶିଖଙ୍କୁ ବହୁତ କଷ୍ଟରେ ସୀମା ଯାଏଁ ପହଞ୍ଚୁଥିଲେ । ରାସ୍ତାରେ ବିପକ୍ଷଙ୍କ ସହ ସଂଘର୍ଷ ଚାଲି ରହିଥାଏ । ସେଥିରେ ମୁସଲିମ ଫୌଜ ଓ ପୋଲିସଙ୍କ ସିପାହୀ ସାଧାରଣ ଭାବେ ଭାଗ ନେଉଥିଲେ । ଓ ଶିଖ ହିନ୍ଦୁ ମାନଙ୍କୁ ଲୁଟିବା ମାରିବା କରି ଚାଲିଲେ ।ବିଶେଷ ଭାବେ ଶିଖ ମାନେ ଏମିତି ଭାବେ ବରବାଦ ହୋଇଥିଲେ କି ଭିକାରୀ ଭାବେ ଆତୁର ହୋଇ ଭାରତର ସୀମା ଠାରେ ପହଞ୍ଚିଗଲେ । ହଜାର ହଜାର ହିନ୍ଦୁ, ଶିଖ କନ୍ୟାମାନେ ପାକିସ୍ତାନ ଠାରେ ରହିଗଲେ ।

ଶିଖମାନଙ୍କୁ ଘର ଜମି ଓ ଅନ୍ୟାନ୍ୟ ଯାବତୀୟ ବସ୍ତୁ ବ୍ୟତୀତ ପବିତ୍ର ଗୁରୁଧାମ ଶ୍ରୀ ନନକାନା ସାହିବ, ପଞ୍ଜା ସାହିବ, ବାବେ କୀ ବୈର ସିୟାଲକୋଟ, ଗୁରୁଦ୍ୱାର କରତାରପୁର (ରାବୀ) ଓ ଡେରା ସାହିବ ଲାହୋର ଇତ୍ୟାଦି ପାକିସ୍ତାନ ଠାରେ ହିଁ ରହିଗଲେ । ଆଜି ତାହାର ଦର୍ଶନ କରିବା ସକାଶେ ଶିଖମାନେ ଆତୁର ସହ ନିରୁପାୟ । କେବଳ ସତ୍‌ଗୁରୁଙ୍କ ଆଶା ପ୍ରତୀତ ହୋଇପାରି ନାହିଁ କାରଣ ଭାରତ ସରକାର ଗୁରୁଦ୍ୱାର ସମ୍ପର୍କୀୟ ପାକିସ୍ତାନ ସହ କୌଣସି ପ୍ରକାର ଝଗଡ଼ା ଇଚ୍ଛା କରିନାହିଁ କିମ୍ବା କଥାବାର୍ତ୍ତା ଦ୍ୱାରା ତାହାର ସ୍ୱତନ୍ତ୍ରତା ସକାଶେ କୌଣସି ପ୍ରକାର ଉପାୟ ବିଚାର କରାଯାଇଛି । କିଏ ଜାଣିଛି ଗୁରୁଦ୍ୱାରମାନଙ୍କ ଦର୍ଶନଠାରୁ କେତେଦିନ ଶିଖମାନଙ୍କୁ ବିଚ୍ଛେଦ ହୋଇ ରହିବାକୁ ପଡ଼ିବ । ହୋଇପାରେ ପରମିଟ୍ ଓ ଭିସା ଇତ୍ୟାଦି ଯୋଗାଡ଼ କରି ଶିଖମାନେ ଏହାର ଦର୍ଶନ ସକାଶେ ଯାଆନ୍ତି ପରନ୍ତୁ ବିନା ପ୍ରତିବନ୍ଧ ସହ ଯେଉଁ ଦର୍ଶନ ଆନନ୍ଦ ହେଉଥିଲା, ତାହା ଗୋଟିଏ ସ୍ୱପ୍ନ ହୋଇ ରହିଗଲା । ଲାହୋର ଡେରା ସାହିବର ଶହୀଦୀ ଯୋଡ ମେଳା, ନନକାନେ ସାହିବର କାର୍ତ୍ତିକ ପୂର୍ଣ୍ଣିମା, ପଂଜେ ସାହିବର ବୈଶାଖୀର ମେଳା ଯେତେବେଳେ ମନେପଡ଼େ, ହୃଦୟ ଭରି ଅଶ୍ରୁ ହୋଇଯାଏ, ତଥାପି ଉପାୟ ଶୂନ୍ୟ ନିରାଶମୟ ଦୁଃଖରେ ଅଶ୍ରୁଳ ହୋଇ

ରହିଯାଏ, କିଛି ଉପାୟ ନାହିଁ, ପ୍ରୀୟତମ ମାଲିକ, ସୃଷ୍ଟିକର୍ତ୍ତା ଯେଉଁ ପରିସ୍ଥିତି ସହ ରଖିଛି ଓ ଆହୁରି ମଧ୍ୟ ରହିବ।

## ଦେଶ ସ୍ୱାଧୀନ ହୋଇଗଲା

ଦେଶ ବଣ୍ଟନ ଯୋଗୁଁ ଶିଖମାନଙ୍କୁ କ୍ଷତି ସହ୍ୟ କରିବାକୁ ପଡିଥିଲା, ନିଜ ଦେଶର ସ୍ୱତନ୍ତ୍ରତା ସକାଶେ ଶିଖମାନଙ୍କ ବହୁମୂଲ୍ୟ ବଳିଦାନ ଯାହାକି ହିସାବ ଲଗାଇପାରିବା କଷ୍ଟକର। ଶିଖମାନେ ସେତେବେଳେ ଚାହିଁଥିଲେ ଭାଇ ଭାଗ ଭଳି ନିଶ୍ଚିତରୂପେ କେତେକ ଅଞ୍ଚଳ ମିଳିଥାନ୍ତା, ପରନ୍ତୁ ଦେଶର ପ୍ରକୃତ ଦେଶପ୍ରେମୀ ଓ ସ୍ୱାର୍ଥପର ଶିଖମାନେ ଦେଶର ଏକତା ସକାଶେ ଏମିତି କରି ନ ଥିଲେ।। ସେମାନେ ବଡ଼ ବଡ଼ ନେତାମାନଙ୍କ ଉପଦେଶ ମାନିନେଲେ ଓ ତାହାପ୍ରତି ଭରସା ପ୍ରକଟ କରି ନିଜର ଭାଗ୍ୟକୁ ସମର୍ପି ଦେଲେ।

ସେଥିଯୋଗୁଁ କଂଗ୍ରେସ ତରଫରୁ ଦେଶ ବାଣ୍ଟିବାପରେ ପଞ୍ଜାବ ସରକାରଠାରୁ ଶିଖମାନଙ୍କ ସକାଶେ ସେମାନଙ୍କ ବିଶେଷ ବଳିଦାନ ଯୋଗୁଁ ଭରସା ଦେଇଥିଲେ କି ବର୍ଷେ ଦୁଇ ବର୍ଷ ଏହିପରି ହୋଇଥିଲା। ପରନ୍ତୁ ବରାବର ହକ ମିଳିଥିଲା। ପ୍ରତି ମହକୁମାର ଅଧା ଶିଖଙ୍କୁ ଦେବାପାଇଁ ବିଶ୍ୱାସ ଦିଆଗଲା ଓ ବର୍ଷେ ଦୁଇବର୍ଷ ଏହିପରି ହୋଇଥିଲା। ପରନ୍ତୁ ଅତିଶୀଘ୍ର ଏହି ଭରସା ଅବିଶ୍ୱାସରେ ପାଲଟିଗଲା। ବିଶେଷ ଭାବେ ଏହି ଭରସା ପାଲଟିବା ଯୋଗୁଁ ସେହି ଖବରକାଗଜ ବିଶେଷ ଭାବେ ସଂପୃକ୍ତ ହେଲା। ଯେଉଁମାନେ କି ଭାଗବଣ୍ଟା ବେଳେ ମୁସଲମାନମାନଙ୍କ ବିରୋଧରେ ଲେଖି ଲେଖି ବିଷାକ୍ତ ଖେଳାଇ ଥିଲେ ଓ ସେହି ବିଷ ଶିଖଙ୍କ ବିରୋଧରେ ବିଷାକ୍ତ କରାଇବା ପ୍ରୟାସ ସହ ଲାଗି ରହିଲେ। ସେମାନେ ଏହାକୁ ସାମ୍ପ୍ରଦାୟିକ ନାମ ଦେଇ ବିରୋଧତା ଆରମ୍ଭ କରାଇଲେ। ସେଥିଯୋଗୁଁ ଦୁଇ ବର୍ଷ ପରେ ଏହାର ମୃତ୍ୟୁ ହୋଇଗଲା। ବରାବର ଭାଗର ନିୟମ ସାମ୍ପ୍ରଦାୟିକତାର ଆଶ୍ରୟଯାଏଁ ରହିଗଲା। ପ୍ରକୃତରେ ଏହା ଭୁଲ ଥିଲା। ସାମ୍ପ୍ରଦାୟିକତାର ଲକ୍ଷ୍ୟ ନ ଥିଲା, କେବଳ ଶିଖମାନଙ୍କ ଦେଶ ସ୍ୱାଧୀନ ସମୟରେ ଯେଉଁ ବିଶେଷ କ୍ଷୟକ୍ଷତି ହୋଇଥିଲା, ସେଥିଯୋଗୁଁ ଏହା କରାଯାଇଥିଲା। ପରନ୍ତୁ ସାମ୍ପ୍ରଦାୟିକ ଦୋଷ ଲଗାଇ ଏହି ରାଜସ୍ୱ ଅଧିକାରଠାରୁ ବହିଷ୍କାର କରାଇ ଦିଆଗଲା। ମତଦାନ ସମୟରେ ମଧ୍ୟ ଶିଖମାନଙ୍କ ବହୁତ କ୍ଷୟକ୍ଷତି ହୋଇଥିଲା।

ଏହାପରେ ବହୁତ ଶିଖ ଓ ସେମାନଙ୍କ ସନ୍ତାନମାନେ ପତିତ (କେଶ କଟା ଓ ଶିଖ ନିୟମ ଉଲ୍ଲଘଂନ କରିବା) ହେବାକୁ ଲାଗିଲେ। କାରଣ ଉନ୍ନତି ଚାହୁଁଥିବାଙ୍କ ଇଚ୍ଛା ଭଲ ଲାଗେ ଯେତେବେଳେ ହାକିମମାନଙ୍କ ନଜର ପଡ଼େ।

ସେତେବେଳେ ଶିଖ ଲିଡ଼ରମାନଙ୍କ ମନରେ ବିଚାର ଆସିଥିଲା କି ବିଶେଷ ଜଥେବନ୍ଦୀ (ଦଳପତି)ଙ୍କ ଆବଶ୍ୟକତା ନାହିଁ। ଶିରୋମଣି ଅକାଳୀ ଦଳର ବହୁତ ନେତା ଏହି ବିଷୟକୁ ମାନିଗଲେ ଓ ଏସେମ୍ବ୍ଲିର ଅକାଳୀ ସଭ୍ୟମାନେ କଂଗ୍ରେସରେ ଯୋଗ ଦେବାପାଇଁ ନିଷ୍ପତ୍ତି ନେଲେ।

ପରନ୍ତୁ ଶୀଘ୍ର ଏହି ଲିଡ଼ରମାନଙ୍କୁ ଏହା ବୁଝା ପଡ଼ିଲା କି ଏହି ନିଷ୍ପତ୍ତି ଠିକ ନୁହଁ ଓ ଶିଖମାନଙ୍କୁ ନିଜର ସ୍ୱତନ୍ତ୍ର ନେତା ପ୍ରତି ମୁହୂର୍ତ୍ତରେ ଆବଶ୍ୟକତା ଅଟେ। କାରଣ କଂଗ୍ରେସର ହିନ୍ଦୁମାନେ ଏକ ସାମ୍ପ୍ରଦାୟିକ ହିନ୍ଦୁ ଆମର ଉନ୍ନତି ଚାହିଁବ ନାହିଁ। ସେଥିଯୋଗୁଁ ଏହି ନିଷ୍ପତ୍ତିର ବିପରୀତ ଘୋଷଣା କରିବାପାଇଁ ମାଷ୍ଟର ତାରା ସିଂହ ଅଧୀନତ୍ୱ କରିଥିଲେ। ଏହି ଘୋଷଣା ପରେ କେତେଜଣ ସଭ୍ୟ ଖରାପ ଭାବିଥିଲେ, କାରଣ କଂଗ୍ରେସରେ ଯୋଗ ଦେଇ କିଛି ଫାଇଦା ଉଠାଇବାପାଇଁ ବିଚାର କରିଥିଲେ।

ଏହି ଉପରାନ୍ତରେ ଏମିତି ହୋଇଥିଲାକି ଅକାଳୀମାନେ ପାର୍ଟିରୁ ବାହାରିବା ସଜ୍ଜନମାନେ କଂଗ୍ରେସୀ ହୋଇଗଲେ ଓ ସବୁ କଂଗ୍ରେସୀ, କଂଗ୍ରେସୀ ଶାସକ ଓ ହିନ୍ଦୁ ପତ୍ରିକାର ସେମାନଙ୍କ ସାହାଯ୍ୟ କରିଲେ ଓ ବିରୋଧ ଆରମ୍ଭ ହୋଇଗଲା। କଂଗ୍ରେସୀ ହୋଇଥିବା ଶିଖ ଅବଶ୍ୟ ହିଁ ବଳିଦାନ ଦେବାରେ କମ୍ ନ ଥିଲେ ଓ ବିଶେଷ ଭାବେ ଜଥେଦାର ଉଧମ ସିଂହ ନାଗୋକେ ଓ ତାଙ୍କ ସାଥିମାନେ ଅମୃତସର ସହରର ରକ୍ଷା ନିମନ୍ତେ ଜନସାଧାରଣରେ ପହଞ୍ଚି ଯେଉଁ ବଳିଦାନ ଦେଲେ ତାହା କମ୍ କଥା ନୁହଁ। ପରନ୍ତୁ ବୋଧହୁଏଏହି ବଳିଦାନର ପରିଣାମର କାରଣ ସତ୍‌ଗୁରୁଜୀଙ୍କ ତରଫରୁ ସେମାନଙ୍କୁ ଏତେ ଶକ୍ତି ପ୍ରାପ୍ତ ହୋଇଥିଲା କି ନିଜର ଶିଖ ସମାଜର ବହୁତ ଭାଗର ସ୍ୱର ଆନ୍ଦୋଳନ ଯୋଗୁଁ ବହୁତ ବର୍ଷ ଯାଏଁ ଟାଣିଥିଲା।

## ଅକାଳୀ ଦଳ ଓ କଂଗ୍ରେସୀ ଶିଖମାନଙ୍କ ମୁହାଁମୁହିଁ ଟକ୍କର

ଗୁରୁଦ୍ୱାରମାନଙ୍କର ଅଧିକାରୀ କଂଗ୍ରେସ ଦଳର ଶିଖମାନେ ଓ ଅକାଳୀ ଶିଖମାନଙ୍କ ମଧ୍ୟରେ ଖୁବ୍ ସଂଘର୍ଷ ହୋଇଥିଲା। ସେତେବେଳେ ଶିରୋମଣି ଅକାଳୀ

ଦଳ ଦିଲ୍ଲୀଠାରେ ସର୍ବଭାରତୀୟ ଅକାଳୀ ସମ୍ମିଳନୀ କରିବାପାଇଁ ସ୍ଥିର କଲେ। ଦିଲ୍ଲୀର ଗୁରୁଦ୍ୱାର ସବୁ କଂଗ୍ରେସୀ ଶିଖମାନଙ୍କ ହାତରେ ଥିଲା। ସେଥିଯୋଗୁଁ ସେମାନେ ଏହି ସମ୍ମିଳନୀ ରକାବ ଗଞ୍ଜ ଗୁରୁଦ୍ୱାରଠାରେ କରିବାପାଇଁ ଅନୁମତି ଦେଇ ନ ଥିଲେ ଓ ଏହା ଘୋଷଣା କରିଦେଲେ। ମାଷ୍ଟର ତାରା (ସିଂହଜୀ) କହିଲେ, ଏହି ସମ୍ମିଳନୀ ନିଶ୍ଚିତ ଭାବେ କରାଯିବ। ସେଥିଯୋଗୁଁ ସମ୍ମିଳନୀରେ ଯୋଗ ଦେବାପାଇଁ ସେ ଅମୃତସରଠାରୁ ଦିଲ୍ଲୀ ପ୍ରସ୍ଥାନ କରିଲେ। ପରନ୍ତୁ ରାସ୍ତାରେ ଦିଲ୍ଲୀ ପୂର୍ବରୁ ନୌରାଲା ଷ୍ଟେସନଠାରେ ତାଙ୍କୁ ୧୮୫୮ ଧାରା ଅନୁଯାୟୀ କଳା ଆଇନ ଅଧୀନରେ ଗିରଫ କରାଯାଇଥିଲା। ତାଙ୍କର ଉତ୍ତମ ସ୍ୱାସ୍ଥ୍ୟ ସକାଶେ (ପ୍ରାର୍ଥନା) ଅରଦାଶ (ପ୍ରାର୍ଥନା) କରିବା ଓ ସୁରକ୍ଷା କରିବାପାଇଁ ଶିରୋମଣି ଅକାଳୀ ଦଳ ୧୮ ଫାଲ୍‌ଗୁନ ସମ୍ୱତ ୨୦୦୫ ବିକ୍ରମୀ (୨ ମାର୍ଚ୍ଚ ୧୯୪୯ ଖ୍ରୀ.) ଦିନ ସ୍ଥିର ହେଲା ଓ ସେହିଦିନ ଅମୃତସରଠାରେ ବହୁତ ଗଣ୍ଡଗୋଳ ହୋଇଥିଲା। ଅକାଳୀ ସମର୍ଥକ ଶ୍ରୀ ଅକାଳ ତଖତ୍ ଠାରେ ଅରଦାଶ କରିବାପାଇଁ ଚାହିଁଥିଲେ। ପରନ୍ତୁ ପ୍ରବନ୍ଧ କଂଗ୍ରେସୀ ଶିଖମାନଙ୍କ (ଅକାଳୀ ଦଳରୁ ବାହାରି ଯାଇଥିବା) କାରଣ ଯୋଗୁଁ ସେମାନଙ୍କୁ ଅରଦାସ କରିବାପାଇଁ ମନା କରିଥିଲେ ଓ ସେଥିପାଇଁ ଝଗଡ଼ା ହୋଇଥିଲା। ଜଥେଦାର ଉଧମ ସିଂହଜୀ ନାଗୋକେ ସେତେବେଳେ ଶିରୋମଣି ଗୁରୁଦ୍ୱାର ପ୍ରବନ୍ଧକ କମିଟିର ପ୍ରଧାନ ଓ ଜଥେଦାର ମୋହନ ସିଂହଜୀ ଶ୍ରୀ ଅକାଳ ତଖତ୍ ସାହିବର ଜଥେଦାର ଥିଲେ। ସଙ୍ଗତମାନଙ୍କ ମନରେ ଏମାନଙ୍କ ବିରୋଧରେ ସେତେବେଳେ ବହୁତ ରୋଷ ଖେଳିଥିଲା। ଏହି ଖରାପ ପରିସ୍ଥିତି ପ୍ରଭାବ ଯୋଗୁଁ ମିଲେଟାରୀ ଆସିଥିଲେ ଓ ତାହା ପୂର୍ବରୁ ପୋଲିସ ମଧ୍ୟ ଥିଲେ। କେତେକ ଜାଗାରେ ମାରପିଟ ମଧ୍ୟ ହୋଇଥିଲା ଓ ଇଟା ପଥର ମଧ୍ୟ ଚାଲିଥିଲା, ପ୍ରତ୍ୟୁତ୍ତର ଡାକରା ମଧ୍ୟ ହୋଇଥିଲା। ଶେଷରେ ବ୍ରିଗେଡିୟର ସାହିବଙ୍କ ଚାପ ପଡ଼ିବା ଯୋଗୁଁ ଶ୍ରୀ ଅକାଳ ତଖତ୍ ନିକଟରେ ଛିଡ଼ା ହୋଇ ଅରଦାଶ କରାଯାଇଥିଲା। ପରନ୍ତୁ ପରେ କ୍ରୋଧିତ ଜନତାଙ୍କ ଗଣ୍ଡଗୋଳ ବଢ଼ିଥିବା ଯୋଗୁଁ ପୋଲିସ ବହୁତ ସଂଖ୍ୟାର ଲୁହବୁହା ଧୂଆଁର ବ୍ୟବହାର କରିଥିଲେ, ଜଥେଦାର ମୋହନ ସିଂହଜୀ ମଧ୍ୟ ମାଡ଼ ଖାଇଥିଲେ ଓ ତାଙ୍କର ରକ୍ଷା ସକାଶେ ଫାଙ୍କା ଗୁଳି ପ୍ରୟୋଗ କରାଯାଇଥିଲା। ସେଥିଯୋଗୁଁ ଏହିପରି ଭାବେ ପବିତ୍ର ଗୁରୁଦ୍ୱାରର ଅପମାନ ଓ ଭୁଲ ଶିଖମାନେ ନିଜ ହାତରେ କରିଥିଲେ। ତାହାପରେ କର୍ଫ୍ୟୁ ଲଗାଇ ପରିସ୍ଥିତି ସମ୍ଭାଳିବାକୁ ପଡିଥିଲା। ତାହାପରେ ସ.ଭାଗ ସିଂହ

ଆଡ଼ଭୋକେଟ ଓ ବାବା ହରକିଶନ ସିଂହଜୀଙ୍କ ଚେଷ୍ଟା ସହ ଶ୍ରୀ ଅକାଳ ତଖତ୍ ସାହିବଠାରେ ଦିବାନ ସଜାଇ ପ୍ରାୟଶ୍ଚିତ୍ତ କରାଯାଇଥିଲା । କଂଗ୍ରେସୀ ଶିଖମାନେ ନିଜର ମନ୍ତବ୍ୟ ଶୁଣାଇଥିଲେ କି ଗୁରୁଦ୍ୱାରମାନଙ୍କଠାରେ କେବଳ ଧାର୍ମିକ ଚର୍ଚ୍ଚା କରାଯାଉ, ସେଠାରେ ରାଜନୀତିର ପ୍ରଚାର କରାନଯାଉ । ପରନ୍ତୁ ଅକାଳୀ ଶିଖମାନେ ଧର୍ମ ଓ ଶାସନ ଏକ ଅଟେ । ଏହାର ପ୍ରଚାର ଲଗାଇଲେ, ଯାହାକି ଐତିହାସିକ ହିସାବରେ ଉଚିତ ଅଟେ । ଏହିପରି ଭାବେ ଦୁଇଟି ମତ ମଧ୍ୟ ଭିତରେ ଦୁଇ ଶିଖ ଦଳଙ୍କ ମଧ୍ୟରେ ସଂଘର୍ଷ ବଢିଚାଲିଲା । ପରନ୍ତୁ କଂଗ୍ରେସୀ ଶିଖମାନଙ୍କ ଧର୍ମ ଓ ରାଜନୀତିକୁ ପୃଥକ୍ କରିବା ଉତ୍ୟକ୍ତତାର କାରଣ, ସାଧାରଣ ଶିଖ ଜନତାଙ୍କ ମଧ୍ୟରେ ସେମାନଙ୍କ ସ୍ଥିତି ଦୁର୍ବଳ ହେବାକୁ ଲାଗିଲା, ପୁଣି ଭାରତର ନୂତନ ବିଧାନ ଅନୁଯାୟୀ ମତଦାନର ସମୟକୁ ଲକ୍ଷ୍ୟ ରଖି କଂଗ୍ରେସୀ ଶିଖଙ୍କୁ ସୁଯୋଗ ମିଳିଲା । ହିନ୍ଦୁ ଭାଇ ସ୍ଥିର କରି ଅକାଳୀ ଶିଖଙ୍କ ବିରୋଧରେ ମତଦାନ ଦେଲେ । ପରନ୍ତୁ ନିର୍ମଳ ଓ ସାହସୀ ହୃଦୟ ଅକାଳୀ ଶିଖମାନଙ୍କ (ବିଶେଷ ଭାବେ ମାଷ୍ଟର ତାରା ସିଂହଜୀ) ସେମାନେ ମନୋବଳ ଛାଡ଼ିନଥିଲେ । ସେମାନେ ନିଜର ସଭ୍ୟତା ସହିତ ପଛକୁ ଚାଲିଗଲେ । ଏହା ଥିଲା କି କଂଗ୍ରେସ ସରକାର ଆମକୁ (ବିଶେଷ ଭାବେ ଶିଖମାନଙ୍କୁ) ନିରାଶ କରାଇ ମୁହଁ ବନ୍ଦ କରାଇବା ପାଇଁ ଚାହୁଁଥିଲେ । ଶେଷରେ ସମ୍ୱତ ୨୦୧୧ରେ ଭାଦ୍ର ମାସରେ ଶିରୋମଣି ଗୁରୁଦ୍ୱାର ପ୍ରବନ୍ଧକ କମିଟିର ନୂତନ ମତଦାନ ହେଲା । ସେତେବେଳେ ଅକାଳୀ ଓ କଂଗ୍ରେସୀ ଶିଖମାନଙ୍କ ମଧ୍ୟରେ ବହୁତ ସଂଘର୍ଷ ହୋଇଥିଲା । ପରସ୍ପର ମଧ୍ୟରେ ବିରୁଦ୍ଧ ପ୍ରଚାର ହୋଇଥିଲା । ପରନ୍ତୁ କେବଳ ଶିଖମାନଙ୍କ ମତଦାନ ହେବାଯୋଗୁଁ କଂଗ୍ରେସୀ ଶିଖ ନିରାଶ ଭାବେ ପରାଜୟ ହୋଇଥିଲେ । ଅକାଳୀମାନଙ୍କୁ ଭାବନାଠାରୁ ବହୁତ ଗୁଣରେ ବିଜୟ ପ୍ରାପ୍ତ ହୋଇଥିଲା ।

## ପଟିୟାଲା ୟୁନିୟନ ହେବା

ଶିଖରାଜ୍ୟ ଚାଲିଯିବା ପରେ ତାହା ସତ୍‌ଲୁଜର ଅନ୍ୟପଟର କେତେକ ଶିଖ ଶାସନ ଇଂରେଜଙ୍କ ସହିତ ସନ୍ଧି ସ୍ୱାକ୍ଷର ସହ ରହିଯାଇଥିଲା, ଯାହାକି ଦେଶର ସ୍ୱାଧୀନ ପରେ  ବର୍ଷକ ପରେ ସମ୍ୱତ ୨୦୦୫ ସମୟ ଭାଙ୍ଗି ଯାଇଥିଲା । ପଟିୟାଲା, ନାଭା, ଜିଁଦ, ମାଲେର କୋଟଲା, ନାଲାଗଡ଼, କପୁରଥଲା ଓ ଫରୀଦକୋଟ

ଇତ୍ୟାଦିକୁ ଏକାଠି କରି  ଏହି ସବୁର ନାମ "ପେପସୁ ପଟିୟାଲା ଷ୍ଟେଟସ ୟୁନିୟନ" ରଖାଗଲା। ମହାରାଜା ସାହିବ ପଟିୟାଲାର ଏହି ୟୁନିୟନକୁ ରାଜପ୍ରମୁଖ ନିଯୁକ୍ତ ହେଲେ। ନୂତନ ମତଦାନ ଯାଏ ସର୍ଦ୍ଦାର ଜ୍ଞାନ ସିଂହଜୀ ରାଡେବାଲା ପ୍ରକାଶକ ଭାବେ କାର୍ଯ୍ୟଭାର ଗ୍ରହଣ କଲେ। ସେ ପୈପସୁଠାରେ ପଞ୍ଜାବୀମାନଙ୍କ ଉନ୍ନତି ସକାଶେ ବହୁତ କଷ୍ଟ କରିଥିଲେ। ପଞ୍ଜାବ ମହକୁମା ଚାଲୁ କରାଇଲେ, ପଞ୍ଜାବୀ ମହାବିଶ୍ୱବିଦ୍ୟାଳୟ ସ୍ଥାପନା କରାଇବା ପାଇଁ ବିଚାର କରିଲେ।

ନୂଆ ଭୋଟ ପରେ କଂଗ୍ରେସ ସରକାର ହୋଇଥିଲା। ସେଠାରେ ମଧ୍ୟ ଅକାଳୀ ଓ କଂଗ୍ରେସ ବିଚାରର ଶିଖମାନଙ୍କ ସହ ଖୁବ୍ ସଂଘର୍ଷ ହୋଇଥିଲା। ସର୍ଦ୍ଦାର ପଟେଲ ଏହି ୟୁନିୟନକୁ ଶିଖ୍ମାନଙ୍କ ହୋମଲ୍ୟାଣ୍ଡ କହିଥିଲେ। ଧିରେ ଧିରେ ହିନ୍ଦୁ ସାମ୍ପ୍ରଦାୟିକ ତତ୍ତ୍ୱ ଏଥିପ୍ରତି ଭୂଲ ନଜରରେ ଦେଖିବାକୁ ଲାଗିଲେ। ପରନ୍ତୁ ଏମିତି ସଂଯୋଗ ହୋଇଥିଲା କି କଂଗ୍ରେସ ସରକାର ଭଙ୍ଗ ହୋଇଥିଲା ଓ ଅକାଳୀ ବିଚାରର ସଭ୍ୟଙ୍କ ସଂଖ୍ୟା ଅଧିକ ଯୋଗୁଁ ସର୍ଦ୍ଦାର ଜ୍ଞାନ ସିଂହ ରାଡ଼େବାଲା ମୁଖ୍ୟମନ୍ତ୍ରୀ ହୋଇଗଲେ। ତାହାକୁ ଭଙ୍ଗ କରିବାପାଇଁ କଂଗ୍ରେସୀମାନେ ଖୁବ ଜୋର ଲଗାଇଲେ। ଯେବେ ଭୋଟ ଦ୍ୱାରା କିଛି କରିପାରିଲେ ନାହିଁ, ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଜୀଙ୍କ ଆଦେଶ ଦ୍ୱାରା ଏହି ସରକାର ଭଙ୍ଗ କରାଇଲେ, କାରଣ ସର୍ଦ୍ଦାର ଜ୍ଞାନ ସିଂହଜୀଙ୍କ ବିରୋଧରେ ଭୋଟ ନିଷ୍କାସିତ ମଞ୍ଜୁରୀ ପ୍ରାପ୍ତ ହୋଇଗଲା ଓ ସେ ସଭ୍ୟ ମଧ୍ୟ ନ ଥିଲେ। ୟୁନିୟନର ଜଣେ ସାଧାରଣ ସଭ୍ୟକୁ ପ୍ରଶାସନ କରାଇ ଦିଆଗଲା। ପୈପସୁର ନୂଆ ଭୋଟ ଯୋଗୁଁ ଅକାଳୀମାନେ ମଧ୍ୟ ମୁକାବିଲା କରିଥିଲେ, ପରନ୍ତୁ ହିନ୍ଦୁ ସାମ୍ପ୍ରଦାୟିକତା କାରଣ ଯୋଗୁଁ ପୁଣି ପରାଜୟ ହୋଇଥିଲା ଓ କଂଗ୍ରେସ ସରକାର ହୋଇଥିଲେ। କରନୈଲ ରଘୁବୀର ସିଂହଜୀ ଯେତେବେଳ ଯାଏଁ ଜୀବିତ ଥିଲେ, ସେ ମୁଖ୍ୟମନ୍ତ୍ରୀ ହୋଇଥିଲେ। ପରନ୍ତୁ ତାଙ୍କର ଦେହାନ୍ତ ପରେ ସର୍ଦ୍ଦାର ପଟେଲଙ୍କ କହିବା ଅନୁଯାୟୀ ଏହି ଶିଖ ହୋମ ଲ୍ୟାଣ୍ଡର ମୁଖ୍ୟମନ୍ତ୍ରୀ ଶିଖ ପରିବର୍ତ୍ତେ ହିନ୍ଦୁ ହେବାପାଇଁ ପୂରା ଚେଷ୍ଟା କରିଥିଲେ କିନ୍ତୁ ଏହି ୟୁନିୟନର ମୁଖ୍ୟମନ୍ତ୍ରୀ ଶ୍ରୀ ବ୍ରିଶ୍ ଭାନଜୀ ହୋଇଥିଲେ। ପରନ୍ତୁ ଦୁଃଖର ବିଷୟ କି ପୁଣି ପୈପସୁକୁ ଭଙ୍ଗ କରି ପଞ୍ଜାବ ମଧ୍ୟରେ ଯୋଡ଼ି ଦିଆଗଲା ଓ ସେଠାରେ ପ୍ରଚଳିତ ହୋଇଥିବା ପଞ୍ଜାବୀଙ୍କୁ ପଞ୍ଜାବ ସହିତ ମିଶାଇ ଶେଷ କରିଦିଆଗଲା।

## ପଞ୍ଜାବୀ ସୁବା

ସମ୍ଭବତ ୨୦୦୭ ନିକଟ ସମୟରେ ଗୋଟିଏ ସର୍କୁଲାର ଜାରୀ କରାଇଲେ କି ପଞ୍ଜାବ ସରକାର ନିଷ୍ପତ୍ତି କରିଲା କି ପୂର୍ବ ପଞ୍ଜାବ ସବୁ ପ୍ରାଥମିକ ସ୍କୁଲରେ ଉର୍ଦ୍ଦୁ ବଦଳରେ ଗୁରୁମୁଖୀ ଓ ହିନ୍ଦୀ ଦେବନାଗରୀ ଲିପି ଅକ୍ଷର ପଢ଼ାଇବା ଆରମ୍ଭ କରାଯାଉ। ଯେଉଁ ସ୍କୁଲରେ ପଞ୍ଜାବୀ ଗୁରୁମୁଖୀ ଅକ୍ଷର ଆରମ୍ଭ କରାଯିବ। ସେଠାରେ ତୃତୀୟ ଶ୍ରେଣୀର ଛାତ୍ରଛାତ୍ରୀ ହିନ୍ଦି, ଦେବନାଗରୀ ଅକ୍ଷର ପଢ଼ିବେ ଓ ଯେଉଁ ବିଦ୍ୟାଳୟ ଠାରେ ହିନ୍ଦୀ ଦେବନାଗରୀ ଅକ୍ଷର ଆରମ୍ଭ ହେବ। ସେଠାରେ ତୃତୀୟ ଶ୍ରେଣୀରେ ପଞ୍ଜାବୀ ଗୁରୁମୁଖୀ ଅକ୍ଷର ପଢାଯିବ।

ଏହି ନିୟମ ଲାଗୁ କରାଇ କାର୍ଯ୍ୟକାରୀ କରିବାପାଇଁ ପଞ୍ଜାବ ସରକାରଙ୍କ ତରଫରୁ ଅଷ୍ଟମ ଶ୍ରେଣୀ ଯାଏ ନୂଆ ସିଲାବସ ପ୍ରସ୍ତୁତ କରାଗଲା। ଏହି ବର୍ଷ ପଞ୍ଜାବ ମହାବିଶ୍ୱବିଦ୍ୟାଳୟର ସିନେଟ ମାଟ୍ରିକର ବିଦ୍ୟାର୍ଥୀଙ୍କ ଗୋଟିଏ ଶେଷ ବିଷୟ ହିନ୍ଦୀ ଓ ଗୋଟିଏ ପଞ୍ଜାବ ଅପ୍‌ସନାଲ୍ ବିଷୟ ରଖାଗଲା।

ଶ୍ରୀ ସଚ୍ଚର ମହାଶୟ ନିଜର ଭାଷା ବିଷୟରେ ଫର୍ମୁଲା ପରେ ତିଆରି କରିଥିଲେ ଓ ପଞ୍ଜାବ ସରକାରଙ୍କ ତରଫରୁ ଦ୍ୱିତୀୟରେ ଘୋଷଣା କରାଗଲାକି ସ୍କୁଲ୍‌ମାନଙ୍କରେ ପାଠପଢ଼ା ପଞ୍ଜାବୀ (ଗୁରୁମୁଖୀ ଅକ୍ଷରରେ) ଓ ହିନ୍ଦୀ (ଦେବନାଗରୀ ଅକ୍ଷର) ସହ ପଢ଼ାଯାଉ। ପରନ୍ତୁ ସେମାନେ ଆହୁରି ଗୋଟିଏ ବଡ଼ ସୁବିଧା ହିନ୍ଦୀ ପଢ଼ିବାମାନଙ୍କ କାମରେ ଆସିବା ଭଳି ଫର୍ମୁଲା ଦେଇଥିଲେ। ମାତୃଭାଷା ବିଷୟରେ ଏମିତି ସୁବିଧା କେହି ସୁବା କଣ, ଦୁନିଆର କୌଣସି ଅନ୍ୟ ଅଞ୍ଚଳରେ ମିଳି ନ ଥିଲା। ସଂସାରର ଛାତ୍ରଛାତ୍ରୀଙ୍କ ମାତୃଭାଷାର ସୁବିଧା ଯୋଗୁଁ ଏହା ହୋଇଥିଲା କି ସେ ଓ ତାହାର ପିତା ପିତାମହ ଯେଉଁ ଭାଷା ସହ ଏହି ଜନ୍ମଭୂମିରେ ଜନ୍ମ ନେଇଛନ୍ତି, ସେମାନଙ୍କର ତାହା ମାତୃଭାଷା ଅଟେ, ପରନ୍ତୁ ସଚ୍ଚର ଫର୍ମୂଲା ମଧ୍ୟରେ ହିନ୍ଦୁମାନଙ୍କୁ ସୁବିଧା ମିଳିଲା କି ପଞ୍ଜାବରେ ଜନ୍ମ ନେଇ, ପଞ୍ଜାବୀ କହି ମଧ୍ୟ ଯଦି ଇଚ୍ଛା ହୁଏ ତାହାହେଲେ ପିଲାମାନଙ୍କୁ ମାତୃଭାଷା ହିନ୍ଦୀ ଲେଖାଇ ସେମାନଙ୍କୁ ହିନ୍ଦୀ ବିଦ୍ୟା ଦେଇପାରନ୍ତି ଓ ଏଥିଯୋଗୁଁ କଳହ ସୃଷ୍ଟି ହୋଇଥିଲା।

ବୁଝାପଡୁ ନାହିଁ କି ଏହି କଳହକୁ ଯେତେବେଳେ ସବୁ ନେତା ଶ୍ରୀ ସଚ୍ଚର ପଣ୍ଡିତ ଜବାହରଲାଲ ଜୀ ନେହେରୁ ଓ ଜ୍ଞାନୀ ଗୁରୁମୁଖ ସିଂହଜୀ, 'ମୁସାଫିର'

ଇତ୍ୟାଦି ସବୁ ହୃଦୟଙ୍ଗମ କରିଥିଲେ କି ଏହି ମାତା ପିତାଙ୍କ ଇଚ୍ଛା ଅନୁଯାୟୀକୁ ଖଣ୍ଡନ କରି ପଞ୍ଜାବୀକୁ ବାଧ୍ୟତାମୂଳକ ସ୍ୱୀକାର କରନ୍ତି ତାହାହେଲେ ପୂରା କଳହ ଓ ଅଶାନ୍ତି ସମାପ୍ତ ହୋଇଯିବ।

ସମ୍ୱତ ୨୦୦୭ (ସନ ୧୯୬୦) ସମୟରେ ଜନଗଣନା ହୋଇଥିଲା। ପଞ୍ଜାବର ସମସ୍ତେ ହିନ୍ଦୁ ଓ ଶିଖ ପଞ୍ଜାବୀ କୁହନ୍ତି, ପରନ୍ତୁ ଏହି ସମୟରେ ହିନ୍ଦୁ ଖବରକାଗଜରେ ପ୍ରଚାର କରାଯାଇଥିଲା କି ହିନ୍ଦୁ ନିଜର ଭାଷା ହିନ୍ଦୀ ଲେଖାଇବା ଏହି ପ୍ରକାରର ମିଥ୍ୟା ପ୍ରଚାର ଖୋଲାଖୋଲି କରାଗଲା। ଏହିପରି ଭାବେ ଭାଷାଦ୍ରୋହୀ, ଧୋକା ଆଜି ଯାଏଁ ନିଜର ମାତୃଭାଷା ସହିତ କୌଣସି ଦେଶରୁ ଲୋକଙ୍କ ତରଫରୁ ଏମିତି ଦେଖାଯାଇ ନାହିଁ। ପରନ୍ତୁ ପଞ୍ଜାବ ଠାରେ ଏହି ଦୁଃସାଧ ରୋଗ ବ୍ୟାପିଥିଲା। ଶିଖମାନେ ଏହି ସଂଘର୍ଷକୁ ବନ୍ଦ କରିବାପାଇଁ ବହୁତ ଚେଷ୍ଟା କରିଥିଲେ। କେତେକ ବୁଦ୍ଧିଜୀବୀ ଓ ସରଳ ବିଶ୍ୱାସୀ ଲୋକମାନେ ନିଜର ମାତୃଭାଷା ପଞ୍ଜାବୀ ଲେଖାଇଥିଲେ। ତଥାପି ଏଥିରେ ବହୁତ ଭ୍ରଷ୍ଟାଚାରିତା ଦେଖାଯାଇଥିଲା। ପ୍ରକୃତ ଭାଷାକୁ ମିଥ୍ୟାର ତଳେ ଦବାଇବା ଚେଷ୍ଟା ଚାଲିଥିଲା। ଭାରତ ସରକାର ମଧ୍ୟ ଏହି ପ୍ରଚାରକୁ ଭୁଲ ମାନିଥିଲେ ତଥା ହିନ୍ଦୀ ଓ ପଞ୍ଜାବୀ କ୍ରମରୁ ବାହାର କରିଦିଆଗଲା। ତଥାପି ଏହାର ଘୋର ଅନ୍ୟାୟ ଦେଖି ଶିରୋମଣି ଅକାଳୀ ଦଳ ପଞ୍ଜାବୀ ସୁବାକୁ ଦାବି କରିଲେ। ପଞ୍ଜାବର ଜିଲ୍ଲାମାନଙ୍କର ନୂତନ ପ୍ରଣାଳୀର ଭାଷାର ଆଧାର ସହ ପରିବର୍ତ୍ତନ କରିବାପାଇଁ ଯୋଜନା ଆରମ୍ଭ କରି କାର୍ଯ୍ୟକାରୀ କରିବାପାଇଁ ଆରମ୍ଭ କରାଗଲା। କଂଗ୍ରେସ ହାଇକମାଣ୍ଡ ଦେଶ ସ୍ୱାଧୀନ ହେବାପୂର୍ବରୁ ଏହି ପ୍ରସ୍ତାବକୁ ସ୍ୱୀକାର କରିଥିଲେ କି ଇଂରାଜୀମାନେ ସୁବାମାନଙ୍କ ସୀମାବନ୍ଦୀ ଭାଷାର ଆଧାର କରିନଥିଲେ। ସେଥିଯୋଗୁଁ ଆମର ଦେଶ ସ୍ୱାଧୀନ ହେବା ଓ ହିନ୍ଦୁସ୍ତାନର ସୁବାଙ୍କ କହିବା ଅନୁଯାୟୀ ଠିକ୍ ସମୟରେ ଆନ୍ଦୋଳନ କରିବା। ଯେତେବେଳେ ଅକାଳୀ ଦଳ ଏହି ପ୍ରସ୍ତାବ ଦାବି କରିଥିଲେ। ସେମାନେ ଏହି ପ୍ରସ୍ତାବକୁ ସାମ୍ପ୍ରଦାୟିକ କହି ଏହା ମାନିବା ପାଇଁ ରାଜି ହୋଇନଥିଲେ। ଅକାଳୀ ଦଳ ଏହି ପଞ୍ଜାବୀ ସୁବାର କାର୍ଯ୍ୟ ନିଜର ଲକ୍ଷ୍ୟ କରିଲେ।

ବହୁ ସଂଖ୍ୟାର ନକାରାତ୍ମକ ଓ ତାହା ସହିତ ସାମ୍ପ୍ରଦାୟିକତା ଯୋଗୁଁ ଓ ସାମ୍ପ୍ରଦାୟିକ ହିନ୍ଦୁ ଖବରକାଗଜମାନଙ୍କରେ ଘୋର ବିରୋଧତା ଯୋଗୁଁ ଧୀରେ ଧୀରେ ଅଧିକ ସଂଖ୍ୟାର ଶିଖମାନଙ୍କୁ ଏହି ପ୍ରଥା ମାନିବା ପାଇଁ ବାଧ କରାଇଥିଲା କି ଏହି

ପଞ୍ଜାବୀର ରକ୍ଷା ସକାଶେ ଓହ୍ଲାଇବାକୁ ବାଧ ହୋଇଥିଲା। ୧୯୫୪ଖ୍ରୀ. ସମୟର ଶିରୋମଣି କମିଟିର ମତଦାନ ଯୋଗୁଁ ଅବଶ୍ୟ ପ୍ରମାଣିତ ହୋଇଗଲା କି ଶିଖମାନେ ପଞ୍ଜାବୀ ସୁବା ଇଚ୍ଛା କରୁଛନ୍ତି ଓ ସେମାନଙ୍କ ଛୋଟ ପଞ୍ଜାବୀ ସୁବାକୁ ସହମତ ମିଳିପାରିବ, ପରନ୍ତୁ ସାମ୍ପ୍ରଦାୟିକ ଖବରକାଗଜ ଓ ସାମ୍ପ୍ରଦାୟିକ କର୍ତ୍ତୃତ୍ୱର ପ୍ରଭାବ ଯୋଗୁଁ ସରକାରଙ୍କ ତରଫରୁ ନିଜର ଦେଶର ମାତୃଭାଷା ପଞ୍ଜାବୀ ସହ ଅନ୍ୟାୟ ପଟକୁ ଚାଲିଗଲା।

ଶିରୋମଣି କମିଟୀର ମତଦାନର ପରିଣାମ ସାମ୍ପ୍ରଦାୟିକ ହିନ୍ଦୁମାନଙ୍କୁ ଓ କଂଗ୍ରେସୀ ଶିଖମାନଙ୍କ ହାତକୁ ଶୁଆ ଉଡ଼ାଇଦେଲେ। ତଥାପି ଏହି ଚେଷ୍ଟା ସହ ଲାଗିରହି ଚେଷ୍ଟା କରୁଥିଲେ କି ଏହି ଅକାଳୀମାନଙ୍କୁ ପୁଣି ଥରେ ନିଶ୍ଚିତ ଭାବେ ଦରକାର ରଖିବା ଉଚିତ ହେବ। ଏହାକୁ ଲକ୍ଷ୍ୟ ରଖି, ଯଦି ଶିଖ ଲାହୋର ଯିବେ ଓ ସେଠାରେ ବହୁତ ଦିନରୁ ବିଚ୍ଛେଦ ହୋଇଥିବା ମୁସଲମାନମାନେ ଯଦି ଶିଖମାନଙ୍କୁ ବହୁତ ସ୍ୱାଗତ କରିଦେବେ, ତାହେଲେ ସେହି ଶିଖ ଶତ୍ରୁର ବିଚାରକୁ ଲୋକମାନେ କହିବା ଆରମ୍ଭ କରିଦେଲେ କି ପାକିସ୍ତାନ ସହ ମିଶିଗଲେ। ଲଣ୍ଡନର ବି.ବି.ସି. ରେଡ଼ିଓ ଯଦି ଶିଖମାନଙ୍କର କିଛି ଖବର ପ୍ରଚାର କରିଲା ତାହାଲେ ସେମାନେ କହିଲେ କି ସେମାନେ ଇଂରେଜମାନଙ୍କ ସହ ହାତ ମିଳାଇଲେ। ଆମେରିକା ସହ ମିଶିବା ପ୍ରଚାର ମଧ ମିଳିଲା। ପରନ୍ତୁ ପ୍ରକୃତରେ ଏଥିରେ କୌଣସି ସତ୍ୟତା ନ ଥିଲା। ପଞ୍ଜାବର ସାମ୍ପ୍ରଦାୟିକ ହିନ୍ଦୁ ପତ୍ରିକାମାନଙ୍କରେ ସମ୍ପାଦକମାନେ ଗୋଟିଏ ଭୁଲ ବୁଝାମଣା ସରକାରକୁ ଦେଲେ କି ସାଧାରଣ ଶିଖ ଅକାଳୀମାନଙ୍କ ସହ ନାହାନ୍ତି ଓ ଅକାଳୀମାନଙ୍କ ଶକ୍ତି କେହି ନାହାନ୍ତି। ଆହୁରି ଶିରୋମଣି କମିଟୀ ପ୍ରବନ୍ଧକ କମିଟୀରେ ମତଦାନ ସମସ୍ତେ ଦେଖିଛନ୍ତି, କାରଣ ସରକାର ପାଖରେ କେତେକ ସାମ୍ପ୍ରଦାୟିକ ତତ୍ତ୍ୱ ରହିଛି। ଯାହାକି ସବୁବେଳେ ଏହି ସୁଯୋଗର ତଦନ୍ତ ମଧରେ ଥିଲା ତାହାକୁ ଦବାଇ ଦିଆଯାଉ। ଭାରତର ଅନ୍ୟ ପାର୍ଟି ମଧରେ କଂଗ୍ରେସ ସହ ହାରିଯାଇଥିଲେ। ପରନ୍ତୁ ଏହା ଗୋଟିଏ ଅକାଳୀ ପାର୍ଟି କଂଗ୍ରେସ ସହ କଂଗ୍ରେସର ପତନ ହୋଇଥିବା ସବୁ ପରିସ୍ଥିତିରେ ବିରୋଧ କରି ଚାଲିଆସୁଥିଲା।

ପଞ୍ଜାବୀ ହିନ୍ଦୁମାନଙ୍କ ବିରୋଧରେ ପଞ୍ଜାବୀ ଖୁବ୍ ବିରୋଧ କରି ରହିଲେ। ଏହି କାରଣ ଯୋଗୁଁ ଶିଖମାନଙ୍କ ପାଇଁ ଏହା ବହୁତ ଜରୁରୀ ହୋଇଥିଲା କି ପଞ୍ଜାବୀ ଭାଷାର ରକ୍ଷା କରିବା କାରଣ ପ୍ରକୃତ ପଞ୍ଜାବୀ ତତ୍ତ୍ୱହିଁ ସେମାନଙ୍କ ବାହାଦୁରି,

ତାହାର ସଂସ୍କାର, ନୀତି ନିୟମ ଓ ତାହାର ଧର୍ମ ପ୍ରଚାର ବଞ୍ଚାଇ ରଖି ହୁଅନ୍ତା। ସେଥିଯୋଗୁଁ ଏହାପଛରେ ଲାଗି ରହିଲେ। ପଞ୍ଜାବୀକୁ ଆରମ୍ଭ କରାଇବାପାଇଁ କୌଣସି ଉପାୟ ମିଳିନଥିଲା, ପଞ୍ଜାବୀ ରାଜ୍ୟର ଦାବି କରିଲେ। ତାହାର ଉଦ୍ଦେଶ୍ୟ ଥିଲାକି ସବୁ କ୍ଷେତ୍ର ଏକତ୍ରିତ ହୋଇଯାଉ। ଯେଉଁମାନେ ପଞ୍ଜାବୀ କହୁଛନ୍ତି ଓ ତାହାର ନାମ ପଞ୍ଜାବୀ ରାଜ୍ୟ ରଖାଯାଉ। ଏହି ରାଜ୍ୟର ସରକାରୀ ଭାଷା ପଞ୍ଜାବୀ ହେଉ। ସେଥିଯୋଗୁଁ ପଞ୍ଜବୀମାନେ ନିଜକୁ ନିଜେ ଉନ୍ନତି କରିଚାଲିଲେ କାରଣ ଦେଶରେ ଅନ୍ୟ ସୁବା ମଧ୍ୟ ଭାଷାର ଆଧାର ମଧ୍ୟରେ ଚାଲିଆସିଥିଲେ।

ଏହି ହକର ଦାବିକୁ ବହୁତ ଦୃଢ଼ କରିଲେ। ଏହା ଉଜ୍ଜ୍ୱଳ ଦେଖାଗଲା କି ପଞ୍ଜାବୀ ସୁବାର ଦାବି ସରକାରକୁ ମାନିବାକୁ ପଡ଼ିବ, ସେଥିଯୋଗୁଁ ବିରୋଧୀମାନେ ଅଟକାଇ ଦେବାପାଇଁ ମହାପଞ୍ଜାବର ସ୍ୱର ଉତ୍ତୋଳନ ଆରମ୍ଭ କରିଦେଲେ। ପଞ୍ଜାବର ଶାନ୍ତି ନଷ୍ଟ କରିବାପାଇଁ ଉତ୍ତରରେ ଅନ୍ୟ ସ୍ୱର ଉତ୍ତୋଳନର ଯୋଜନା ଆରମ୍ଭ କରାଯାଇଥିଲା।

## ସ୍ୱର ଉତ୍ତୋଳନର ଦଳ

ସମ୍ୱତ ୨୦୧୧ ପୌଷ ସପ୍ତମୀ ସମୟରେ ଲୁଧିୟାନାଠାରେ ଶିଖମାନଙ୍କ ବହୁତ ବଡ଼ ଶୋଭାଯାତ୍ରା ବାହାରିଲା। ସେଠାରେ କେତେକ ସାମ୍ପ୍ରଦାୟିକ ହିନ୍ଦୁମାନଙ୍କ ତରଫରୁ ଘୋଷଣା କରାଗଲା କି ଶିଖମାନଙ୍କ ଶୋଭାଯାତ୍ରାରେ ପଞ୍ଜାବୀ ସୁବାଙ୍କ ନାରା ଲଗାଇବାକୁ ଦିଆଯିବ ନାହିଁ। ଯଦି ସେମାନେ ନାରା ଲଗାନ୍ତି ତାହାର ଉତ୍ତରରେ ଓଲଟା ନାରା ମିଳିବ। ଏହା ଗୋଟିଏ ବଡ଼ ଷଡଯନ୍ତ୍ର ରହିଥିଲା। କାରଣ ନାରା କୁଆଡ଼େ ନାରା ରହିଗଲା, ଶୋଭାଯାତ୍ରା ଉପରେ ଇଟା ପଥର ବର୍ଷା ହୋଇ ଚାଲିଲା। ଆଜିଯାଏଁ କେବେ ମଧ୍ୟ ମୁସଲମାନମାନେ ମଧ୍ୟ ଏମିତି ଦୁଷ୍ଟାମି କରିନଥିଲେ କି ଶିଖ୍‌ମାନଙ୍କ ଧାର୍ମିକ ଶୋଭାଯାତ୍ରାରେ ଏମିତି ଆକ୍ରମଣ କରିବେ। ମୁସଲମାନ ମାନଙ୍କ ବହୁସଂଖ୍ୟା ଜନବସତି ସହରରେ ଏମିତିକା ଶୋଭାଯାତ୍ରା ବଡ଼ ସୁନ୍ଦରଭାବେ ବାହାରୁଥିଲା। ସେଥିଯୋଗୁଁ ଏହି ଘଟଣା ପାଇଁ ଶିଖ ଜଗତରେ ବହୁତ ବିଦ୍ରୋହ ଖେଳିଗଲା। ସାମ୍ପ୍ରଦାୟିକ ହିନ୍ଦୁ ଖବରକାଗଜମାନଙ୍କରେ ବିପରୀତ ଖବର ଛାପିଥିଲା କି ଶିଖମାନେ ଦୋକାନ ଲୁଟିଲେ ଓ ଗଣ୍ଡଗୋଳ ସୃଷ୍ଟି କରିବାପାଇଁ ଚେଷ୍ଟା କରିଥିଲେ। ଶିଖ ଖବରକାଗଜମାନଙ୍କରେ ଏହି ମିଛ ଖବରର ସଠିକ୍ ଜବାବ ଦେଇଥିଲେ।

ସରକାର ତଦନ୍ତ କରିବାପାଇଁ ବୋହରା ସାହିବ କମିଶନରକୁ ସେଠାକୁ ପଠାଇଲା। ପରନ୍ତୁ ତଦନ୍ତର ନିର୍ଣ୍ଣୟ ହୋଇପାରି ନ ଥିଲା।

ଏହାର ଚର୍ଚ୍ଚା ହୋଇଥିଲା କି ଅମୃତସରଠାରେ ଶୀଶ ଭେଟ ସାହିରେ ଶୋଭାଯାତ୍ରା ସମ୍ବନ୍ଧିତ ହିନ୍ଦୁ ଖବରକାଗଜ ପ୍ରଥମେ ଆୱାଜ ବାହାର କରିବାକୁ ଲାଗିଲା। ଅକାଳୀ ଏହି ଶୋଭାଯାତ୍ରାରେ ପୁଣି ନାରା ଲଗାଇବେ, ସରକାରକୁ ତାହା ବନ୍ଦ କରାଇବା ପ୍ରବନ୍ଧ କରିବା ଉଚିତ। ସେଥିଯୋଗୁଁ ସରକାର ଏହି ଶୋଭାଯାତ୍ରା ବାହାରିବା ୧୫ ଦିନ ପୂର୍ବରୁ ନାରା ଉପରେ ଅଟକଳ ଲଗାଇଥିଲା। ଜନସଂଘମାନେ ବହୁତ ପ୍ରସ୍ତୁତ କରିଥିଲେ ଓ ଶୋଭାଯାତ୍ରା ବାହାରିବା ପୂର୍ବରୁ ହିଁ ଘଣ୍ଟାଘର ଛକଠାରେ ସେମାନେ ବହୁସଂଖ୍ୟାରେ ଏକତ୍ରିତ ହୋଇଥିଲେ। ଏହି ପ୍ରତ୍ୟୁତ୍ତର ନାମରେ ଲଗାଯାଇଥିଲା ଓ ଶିଖମାନଙ୍କର ମନୋଭାବକୁ ଭୁଲ ଢଙ୍ଗରେ ଦବାଇବା ଚେଷ୍ଟା କରାଯାଇଥିଲା। ତାହା ଯୋଗୁଁ ଝଗଡା ବଢ଼ିଗଲା। ଦୁଇପକ୍ଷର ବହୁତ କର୍ମକର୍ତ୍ତା ବନ୍ଦ ହୋଇଗଲେ।

ଆବଶ୍ୟକ ଥିଲା କି ପଞ୍ଜାବ ସରକାର ଏହି ପ୍ରତ୍ୟୁତ୍ତରର ସ୍ୱର ଉତ୍ତୋଳନକୁ ବନ୍ଦ କରାଇ ଅନାବଶ୍ୟକ ଝଗଡା ସୃଷ୍ଟି କରିବାମାନଙ୍କୁ ଅଟକାଇବା, ପରନ୍ତୁ ସେ ଆହୁରି ସେମାନଙ୍କ ସପକ୍ଷରେ ରହି ଆନ୍ଦୋଳନ ଉପରେ ଅଟକଳ ଲଗାଇ ପଞ୍ଜାବର ଭାଷାର ମୂଳ ଆଧାର ଥିବା ସୁବାମାନଙ୍କୁ କୌଣସି ସ୍ୱର ଉଠାଇବାକୁ ମନା କରାଗଲା। ମତଲବ ଥିଲା କି ସ୍ୱର ଉଠାଇବା ଉପରେ ଯେଉଁ ବଳ ପ୍ରୟୋଗ କରି ଦେଖାଯିବ ଓ ଏଥି ସମ୍ବନ୍ଧରେ ହିଁ ସ୍ୱର ଦବାଇ ଦିଆଯିବ।

ପ୍ରକୃତରେ ଏତିକିବେଳେ ପଞ୍ଜାବୀ ସୁବାଙ୍କ ସପକ୍ଷରେ ଅକାଳୀ ଦଳ ଥିଲେ। ବର୍ତ୍ତମାନ ସେମାନଙ୍କ ପରୀକ୍ଷା ସମୟ ଆସିଗଲା। ଯଦି ସେମାନେ ମୁହଁ ଲଗାଇବେ ସାମନାରେ ସରକାରଠାରୁ ବଡ଼ ସଂଘର୍ଷ ହେବା ବିପଦ ଥିଲା ଓ ଯଦି ମୁହଁ ଫେରାନ୍ତି ତାହାଲେ ପଞ୍ଜାବୀ ରାଜ୍ୟକୁ ପ୍ରାପ୍ତ କରିବା ପ୍ରଶ୍ନ ଉଠି ନ ଥାନ୍ତା।

ସେଥିଯୋଗୁଁ ଅକାଳୀ ଲିଡରମାନେ ଏହି ଅଟକଳକୁ ମାନିବା ପାଇଁ ଘୋଷଣା କରିଦେଲେ। ୨୮ ବୈଶାଖ ସମ୍ୱତ ୨୦୧୨ (୧୦ ମଇ, ୧୯୫୫) ଦିନ ଶିରୋମଣି ଅକାଳୀ ଦଳ ପକ୍ଷରୁ ଏହା ବିରୋଧରେ ଆନ୍ଦୋଳନ ଆରମ୍ଭ କରିଦିଆଗଲା। ପ୍ରଥମଦିନ ମାଷ୍ଟର ତାରା ସିଂହଜୀ ମଞ୍ଜି ସାହିବ ଶ୍ରୀ ଅମୃତସରଠାରୁ ଯଥା (ଦଳସହ) ଯାଇଥିଲେ। ପୁଣି ଏହିପରି ଭାବେ ୬୪ ଦିନ ଯାଏଁ ସେଠାରେ

ଶୋଭାଯାତ୍ରା ଓ ଆୱାଜ ନାରା ଲଗାଇ ଗିରଫ ହେବାପାଇଁ ହାଜିର ହେଉଥିଲେ। ସେତେବେଳେ ପ୍ରାୟ ୧୨ ହଜାର ସିଂହ ଜେଲରେ ଭର୍ତ୍ତି ହୋଇଥିଲେ।

## ନିର୍ଦ୍ଦୟୀ ପୋଲିସ ଏକ୍‌ସନ୍

ସରକାର ଏହାକୁ ଦବାଇବା ପାଇଁ ବହୁତ କୂଟନୀତି ପ୍ରୟୋଗ କରିଥିଲା। ଅପେକ୍ଷା କରିଚାଲିଲେ କି ଆଜି ଏହି ଆୱାଜ ବନ୍ଦ ହୋଇଯିବ। କାଲି ସମାପ୍ତ ହୋଇଯିବ ପରନ୍ତୁ ବନ୍ଦୀ ଗିରଫ ଏହିଭଳି ଭାବେ ଏହା ଆହୁରି ବଢ଼ିଚାଲିଲା। ଶେଷରେ ଏହି ଆନ୍ଦୋଳନକୁ ଦବାଇବା ପାଇଁ ନିଜ ଦେଶର କଂଗ୍ରେସ ସରକାର ତରଫରୁ ଗୋଟିଏ ମସ୍ତବଡ଼ ଭୁଲ ପଦକ୍ଷେପ ଉଠିଥିଲା, ଯାହାକି ଶିଖ ଜଗତକୁ ସମ୍ପୂର୍ଣ୍ଣ ଭାବେ ଏହି ଆନ୍ଦୋଳନ ସହ ଯୋଡ଼ି ଦିଆଯାଇଥିଲା। ତାହା ଥିଲା ସରକାର ତରଫରୁ ପୋଲିସ ଏକ୍‌ସନ୍ ତାହା ୨୦ ଆଷାଢ ସମ୍ବତ ୨୦୧୨ (୪ ଜୁଲାଇ, ୧୯୫୫) ଦିନ ତାହା ବହୁତ କଠୋର ନୀତିର ପଦକ୍ଷେପ ନିଆଗଲା। ସେହିଦିନ ପ୍ରଭାତ ସମୟ ସାଢ଼େ ତିନିଟା ସମୟରେ ପୋଲିସର ଗାଡ଼ି ସରାୟ ବଜାରଠାରେ ପହଞ୍ଚିଥିଲା ଓ ଦରବାର ସାହିବ (ସ୍ୱର୍ଣ୍ଣମନ୍ଦିର)ର ଯିବା ଆସିବା ସବୁ ରାସ୍ତା ବନ୍ଦ କରାଗଲା। ଗୁରୁ ରାମଦାଶ ନିବାସ, ଶିରୋମଣି କମିଟିର ଅଫିସ, ଅକାଳୀ ଦଳଙ୍କ ଅଫିସ ଓ ଶ୍ରୀ ଦରବାର ସାହିବର ଅଫିସକୁ ଘେରାଉ କରିଦେଲେ। ସରାୟ (ଧର୍ମଶାଳା) ଠାରେ ସବୁ ଯାତ୍ରୀମାନଙ୍କୁ ଡ୍ୟୁଟିରେ ରହିଥିବା କ୍ଲର୍କ, ସେବକ ଓ ପ୍ରବନ୍ଧକମାନଙ୍କୁ ଗିରଫ କରି ଟ୍ରକରେ ଲଦି ପୋଲିସ ଥାନାରେ ଭର୍ତ୍ତି କରାଗଲା। ଶ୍ରୀ ଦରବାର ସାହିବର ପ୍ରଥମ ହୁକୁମ ନାମ ଶୁଣି ଫେରୁଥିବା କେତେକ ସିଂହମାନେ ମଧ୍ୟ ଗିରଫ ହୋଇଗଲେ।

ଏମିତି ଭାବେ ପ୍ରାୟ ୬୦୦ ସିଂହ ଗିରଫ ହୋଇଥିଲେ। (ସରାୟ) ଧର୍ମଶାଳାର ବଖରା ଭିତରେ ମହିଳା ଓ ପିଲାମାନେ ଦୁଃଖୀ ହୋଇ ସମୟ କଟାଇବାବେଳେ ପୋଲିସ ସେମାନଙ୍କୁ ତୁରନ୍ତ ବଖରା ଖାଲି କରିବାପାଇଁ ହୁକୁମ ଦେବାରୁ ବଖରା ଖାଲି କରାଗଲା।

ଡି.ସି.ଆଇ.ଜି. (ଶ୍ରୀ ଅଶ୍ୱିନ କୁମାର), ଏସ.ଏସ.ପି. ମାଜିଷ୍ଟ୍ରେଟ ସର୍ଦ୍ଦାର ହରଦୟାଲ ସିଂହ, ଏ.ଡି.ଏମ. ଇତ୍ୟାଦି ବଡ଼ ବଡ଼ କର୍ମଚାରୀ ସେହିଠାରେ ଉପସ୍ଥିତ ରହି ଏହି କାର୍ଯ୍ୟ କରାଇବାପାଇଁ ଆଦେଶ ଦେଉଥିଲେ।

ସରାୟ ଶିରୋମଣି କମିଟି, ଆକଲୀ ଦଳ ଓ ଦରବାର ସାହିବ କମିଟୀର ଅଫିସ ଭଲଭାବେ ନିରୀକ୍ଷଣ କରି ଯାହା ନିଜକୁ ଭଲ ଲାଗିଲା ତାହା ସେମାନେ ନିଜେ ରଖିଲେ।

ପ୍ରାୟ ୧ ୧ଟା ସମୟରେ ଏମରଜେନ୍‌ସି ଶିଖ ସୈନ୍ୟ ବନ୍ଦ ଡକାଇ ଦେଲେ। ସେନାମାନେ ଶିରୋମଣି କମିଟିର ସାମନା ସଡ଼କକୁ ଅଧିକାର କରିଲେ। ସେନାମାନଙ୍କୁ ଦେଖି ସର୍ଦ୍ଦାର ହୁକୁମ ସିଂହଜୀ କହିଲେ କି ଯେତେବେଳେ ତୁମେମାନେ ସବୁ ଅଫିସର ତଲାସି ସାରିଲଣି ପ୍ରାୟ ସିଂହମାନଙ୍କୁ ଗିରଫ କରିସାରିଛି। ତାହାପରେ ସେନା ଡକାଇବା କଣ ଆବଶ୍ୟକ ?

ସର୍ଦ୍ଦାର ହୁକୁମ ସିଂହଜୀ ଗେଟ ପାଖରେ ଛିଡ଼ା ହୋଇ ସଙ୍ଗତମାନଙ୍କୁ ଶାନ୍ତି ରଖିବାପାଇଁ କହିଲେ ଓ ତତ୍‌ସହିତ ଏହା ମଧ୍ୟ କହିଲେ କି ସରକାର ସନ୍ଦେହ ବ୍ୟବହାର କରିଛନ୍ତି। ସେଥିଯୋଗୁଁ ଆପଣମାନଙ୍କୁ ପ୍ରାର୍ଥନା କରୁଛି କି ଯେଉଁ ଭଦ୍ରବ୍ୟକ୍ତି ବଳିଦାନ ଦେଇପାରିବେ ସେମାନେ ରୁହନ୍ତୁ ଓ ଅନ୍ୟ ସବୁ ଚାଲିଯାଆନ୍ତୁ। ବାବା ହରିକିଶନ ସିଂହଜୀ ସଙ୍ଗତମାନଙ୍କୁ ଶାନ୍ତି ରଖିବାପାଇଁ ଓ ଆତ୍ମା ଯୋଡୋ ଘରକୁ ଯିବାପାଇଁ କହିଲେ, ସେହି ଦଳର ପୋଲିସ ଏକସନ ବିରୋଧରେ ସର୍ଦ୍ଦାର ଇଶର ସିଂହ ମଝୋଲ ମଧ୍ୟ ପଞ୍ଜାବ ସରକାରଙ୍କୁ ତାର ପଠାଇଲେ।

ପ୍ରାୟ ଦେଢ଼ଟା ସମୟରେ ଡି.ସି ଡି.ଆଇ.ଜି ଏସ.ଏସ.ପି ସିଟି ମାଜିଷ୍ଟ୍ରେଟ, ଏଡିଏମ ଇତ୍ୟାଦି ଅଫିସର ଗ୍ୟାସ ମୁଖଟା ଇତ୍ୟାଦି ପ୍ରସ୍ତୁତ ସହ ପହଞ୍ଚିଥିଲେ। କେତେକ ପୋଲିସ ସେମାନଙ୍କ ଜୋତା ବାହାର କରି ପ୍ରସ୍ତୁତ ରହିବାପାଇଁ ଅର୍ଡର ଦେଇ ସବୁ ଶିରୋମଣି କମିଟିର ଅଫିସ ଭିତରକୁ ଚାଲିଗଲେ। କିଛି କଥାବାର୍ତ୍ତା କରି ୧୫ ମିନିଟ ପରେ ବାହାରକୁ ବାହାରି ପବ୍ଲିସିଟି ଭେନ ଦ୍ୱାରା ସରାୟ (ଧର୍ମଶାଳା) ରାସ୍ତା ଓ ମଞ୍ଜୀ ସାହିବ ପାଖରେ ଛିଡ଼ା ହୋଇଥିବା ସଙ୍ଗତକୁ ହୁକୁମ ଦେଲେ କି ଏଠାରେ ୧୪୪ ଧାରା ଲାଗୁ ହୋଇଛି। ୧୫ ମିନିଟ ଭିତରେ ସଙ୍ଗତ ଏଠାରୁ ଚାଲିଯାଅ, ନଚେତ୍ କଡ଼ା ନିୟମ ଲାଗୁ ହେବ।

ପରନ୍ତୁ ସଙ୍ଗତମାନେ ସେଠାରୁ ହଲି ନ ଥିଲେ, ପୋଲିସ ଆନ୍ଧାଧୁନ ଟିୟର ଗ୍ୟାସ ଚେକିଙ୍ଗ୍ ଗ୍ୟାସ୍‌ର ବଂବୋ ବର୍ଷା କରିବା ଆରମ୍ଭ କରିଦେଲା। ସ୍ୱର୍ଣ୍ଣମନ୍ଦିର ପୂରା ଧୂଆଁ ଧୂଆଁ ହୋଇଗଲା। ଲାଠିଚାର୍ଜ ମଧ୍ୟ ହୋଇଥିଲା। ଅଡ଼ା (ଯୋତା ଘର) ଯୋଡ଼ୋ ପାଖରେ ଛିଡ଼ା ହୋଇଥିବା ସିଂହମାନଙ୍କୁ ଜଣ ଜଣଙ୍କୁ ବାହାର କରାଗଲା।

ଛଡ଼ିରେ ପିଟି ପିଟି ଫଟାଫଟ ଗାଡ଼ିରେ ଚଢ଼ାଇଦେଲେ। ହସ୍‌ପିଟାଲ ପଟରୁ ପୋଲିସ୍ ଜୋତା ପିନ୍ଧି ମଂଜୀ ସାହିବ ଓ ଜୀବନ ସ୍ଥାନଯାଏଁ ଯାଇଥିଲେ। ପ୍ରାୟ ୧୦୦ ସିଂହ ଆହତ ହୋଇଥିଲେ। କଡାହ ପ୍ରସାଦ ଦୋକାନ (ଯେଉଁ ହାଲୁଆ ଭୋଗ ଲାଗେ) ସାମନାରେ ଟ୍ରକ ଛିଡ଼ା କରାଇଦେଲେ। ଗୁରୁଦ୍ୱାରା ମଞ୍ଜି ସାହିବ ଉପରେ ଚଢି ଡ.ଏସ୍.ପି. ଗୁଳି ଚଳାଇଥିଲେ। ପାଖାପାଖି ଘର ଉପରେ ପୋଲିସ ପଶି ଗ୍ୟାସ୍ ଗୁଳିର ବର୍ଷା ଦିନରେ ବାରବାର କରିଲେ କି ଦରବାର ସାହିବ ଧୂଆଁ ଧୂଆଁ ହୋଇଗଲା। ଅନେକଙ୍କ ଅଖଣ୍ଡ ପାଠିମାନଙ୍କ ଆଖିରେ ଧୂଆଁ ଲାଗିବା ଯୋଗୁଁ ବହୁତ ଡେରି ଯାଏଁ ଗୋଟିଏ ବାକ୍ୟ ଉଚ୍ଚାରିତ କରିରହିଲେ ଓ ୫-୫ ମିନିଟ୍ ପରେ ଡିୟୁଟି ବଦଳି ରହିଲେ। ଗୁରୁଦ୍ୱାରା ପଞ୍ଚ ପ୍ରକାଶଠାରେ ଜୋତା ସହିତ ପୋଲିସ ଚଢ଼ିଗଲେ ଓ ବହୁତ ଦିନ ଯାଏଁ ତମ୍ବୁ ଲଗାଇ ରହିଲେ। ଗୁରୁଙ୍କ ଲଙ୍ଗର ବନ୍ଦ କରାଯାଇଥିଲା। ଲଙ୍ଗରଠାରେ ମଧ ପୋଲିସ ଦଳ ଦଳ ହୋଇ ରହିଲେ। ପରନ୍ତୁ ସେତେବେଳେ ଯଥା ତଥାପି ଅଟକିଥିଲେ ଓ ନାରା ଲଗାଇ ସେହି ରାସ୍ତା ବାହାରକୁ ବାହାରିଲେ। ମୁଖ୍ୟ ଦ୍ୱାର ଉପରେ ଚଢି ସଙ୍ଗତମାନଙ୍କୁ ଲାଠିଚାର୍ଜ କରାଗଲା ଓ ବହୁତ ସିଂହ ଆହତ ହୋଇଥିଲେ। ଦରବାର ସାହିବ, ଅକାଳ ତଖତ୍ ଇତ୍ୟାଦଠାରେ ବାବା ଅଟଲ ଯିବା ରାସ୍ତା ବନ୍ଦ କରାଇଦେଲେ। ଡିୟୁଟିର ସେବକମାନଙ୍କୁ ଯିବା ପାଇଁ ଦିଆଯାଇ ନ ଥିଲା। ଲଙ୍ଗର ସକାଶେ ପ୍ରସାଦ ତିଆରି କରୁଥିବା ମହିଳାମାନଙ୍କୁ ଅସମ୍ମାନ କରାଯାଇଥିଲା ଓ ସେମାନଙ୍କୁ ଥାନାକୁ ନିଆଯାଇଥିଲା। ଦରବାର ସାହିବଠାରେ ପୂରା ନାକାବନ୍ଦୀ କରାଯାଇଥିଲା। ସହର ଭିତରକୁ ଆସୁଥିବାମାନଙ୍କୁ ରାସ୍ତାରେ ଅଟକାଇ ଦିଆଗଲା ଓ ଯେଉଁ ସିଂହ ଓ ଯଥେ ଯିବା ଜଣାପଡୁଥିଲା ସେମାନଙ୍କୁ ହଇରାଣ କରାଇ ଗିରଫ କରାଯାଉଥିଲା। ଦରବାର ସାହିବର ଲୁହା ଶିକୁଳିରେ ତାହା ଲଗାଇ ସଙ୍ଗତମାନଙ୍କ ରାସ୍ତା ପୂରାପୂରି ବନ୍ଦ କରାଇଦିଆଗଲା।

ସେଥିଯୋଗୁଁ ୨୦-୨୧ ଓ୨୨ ଆଷାଢ଼ (୪-୫ଓ୬ଜୁନ) ସମୟରେ ଅମୃତସରଠାରେ ଜଣାପଡୁଥିଲା କି କୌଣସି ଆକ୍ରମଣକାରୀ ଆକ୍ରମଣ ସକାଶେ ଭଲ ଭାବେ ପ୍ରସ୍ତୁତ ହୋଇ ରହିଛି। ଚାରିଆଡ଼େ ପୋଲିସ୍, ଅଶ୍ୱାରୋହୀ ଓ ସେନାଙ୍କ ଗାଡି ମାଳମାଳ ଘୁଁ ଘୁଁ ଶବ୍ଦ। ୨୧ ଆଷାଢ଼ ଦିନ ସର୍ଦ୍ଦାର ଜ୍ଞାନସିଂହ ଜୀ ରଡେବାଲା ଆସି ଅମୃତସରରେ ପହଞ୍ଚିଲେ। ସେଠାରେ ବାବା ହରିକିଶନ ସିଂହଜୀର ଓ ସ. ହୁକୁମ ସିଂହଜୀ ଗିରଫ ହୋଇଗଲେ। ବାବାଜୀଙ୍କୁ ମାଷ୍ଟରଜୀ ନିଜ ସ୍ଥାନର ଶିରୋମଣି

କମିଟିର ପ୍ରଧାନ ଘୋଷଣା କରିସାରିଥିଲେ ଓ ବାବାଜୀ ସ.ଜ୍ଞାନ ସିଂହଜୀ କାର୍ଯ୍ୟଭାର ଦେଇଥିଲେ। ସରକାର ଜ୍ଞାନ ସିଂହଜୀ ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ବଡ଼ ସତର୍କତା ସହ କାମ କରିଥିଲେ। ତିନିଦିନ ଯାଏଁ ପୋଲିସ ବହୁତ ଜୋର ଲଗାଇ କଠୋର ବ୍ୟବହାର କରି ଥକିଗଲେ ଓ ବାହାରୁ ଏତେ ସିଂହ ସେଠାରେ ପହଞ୍ଚିଲେ, ତାହା ବନ୍ୟା ଭଳି ଦେଖାଯାଉଥିଲା।

ଏହି ନିର୍ମମ ବ୍ୟବହାର ଯୋଗୁଁ କଠୋର ଏକ୍‌ସନ୍ ଯୋଗୁଁ ଶିଖ ଜଗତରେ ଶୋକ ଓ ବିଷାଦ ଖେଳିଯାଇଥିଲା,କ'ଣ କଂଗ୍ରେସୀ କ'ଣ ଶିଖ ସମସ୍ତେ ବିରୋଧ କରିଥିଲେ।

ବର୍ତ୍ତମାନ ସରକାରକୁ ମଧ୍ୟ ହୃଦୟଙ୍ଗମ ହୋଇଥିଲା କି ଗୋଟିଏ ମସ୍ତବଡ଼ ଭୁଲ୍ ହୋଇଗଲା। ସେଥିଯୋଗୁଁ ପରିବର୍ତ୍ତନ ପରିସ୍ଥିତିକୁ ମଧ୍ୟ ନଜର ରଖି ୨୮ ଆଷାଢ଼ (୧୨ଜୁଲାଇ) ତୁରନ୍ତ ଏକ୍ସନ୍ ରଦ୍ଦ କରାଗଲା ଓ ପରିସ୍ଥିତିକୁ ଖରାପ ହେଉଥିବାକୁ ବଞ୍ଚାଇଦେଲା। କାରଣ ମୋର୍ଚ୍ଚାର ବିଷୟ ହୋଇଥିଲା, କେତେକ ବନ୍ଦୀଙ୍କୁ ସେତେବେଳେ ମୁକ୍ତ କରାଯାଇଥିଲା। ପରନ୍ତୁ କେତେକ ବନ୍ଦୀଙ୍କୁ ମାସେ-ଦେଢ଼ ମାସ ପରେ ମୁକ୍ତ କରାଯାଇଥିଲା।

ପୋଲିସମାନଙ୍କରେ ଏହି ଘୃଣିତ ପଦକ୍ଷେପ ବିରୋଧରେ ଶିଖମାନଙ୍କର ଭାରୀ ରୋଷ ଥିଲା ଓ ଶିରୋମଣି କମିଟି ତରଫରୁ ତାହାର ତଦନ୍ତ କରିବା ପାଇଁ ଘୋର ଦାବି କରାଗଲ, ପ୍ରତ୍ୟେକ ଶିଖଙ୍କ ଦୁଃଖଭରା ହୃଦୟକୁ ଏହିପରି ଭାବେ ନିରାଦର କରିବାମାନଙ୍କୁ ବିରୋଧରେ ପଦକ୍ଷେପ ନେବାପାଇଁ ଦାବି କରାଗଲା। ଦୁଇ-ତିନି ମାସ ଯାଏଁ ସରକାର ଏହା ସ୍ୱୀକାର କରି ନ ଥିଲା। ପରନ୍ତୁ ମୁଖ୍ୟମନ୍ତ୍ରୀ ଶ୍ରୀ ସଚ୍ଚର ନିଜ ପ୍ରଣାଳୀ ଅନୁଯାୟୀ ଏହାର ତଦନ୍ତ କରାଇଲେ ଓ ସାନ୍ତ୍ୱନା ପାଇଥିଲେକି କେତେଜଣମାନଙ୍କ ତରଫରୁ ଏହି ଘୃଣିତ କାର୍ଯ୍ୟ କରାଯାଇଥିଲା। ସେଥିଯୋଗୁଁ ୨୫ କାର୍ତ୍ତିକ (୧୦ ନଭେମ୍ବର) ଦିନ ଶ୍ରୀ ସଚ୍ଚର ସାହେବ ଶ୍ରୀ ଅକାଳ ତଖ୍ତ ସାହିବଠାରେ ହାଜର ହୋଇ ସଙ୍ଗତମାନଙ୍କ ଉପସ୍ଥିତ (ଧାର୍ମିକ) (ସଭା) ଦୀବାନ ମଧ୍ୟରେ ଦୁଃଖ ପ୍ରକଟ କରିଥିଲେ।

ଏହି ଆନ୍ଦୋଳନ ସମୟରେ ପଞ୍ଜାବ ବିଧାନସଭା ର ୧୫, ପୈପସୁ ଏସ୍‌ମ୍ବଲି ର୮, ପାର୍ଲାମେଣ୍ଟର ୨ ଓ ପଞ୍ଜାବ କାଉନ୍‌ସିଲର ତିନିଜଣ ସଭ୍ୟ ଜେଲ ଯାଇଥିଲେ। ଶିରୋମଣି ଗୁରୁଦ୍ୱାରା ପ୍ରବନ୍ଧକ କାଉନ୍‌ସିଲ ର ୧୧୦ ସଭ୍ୟ ଓ ତାହାର ୪ଜଣ

ସଚିବ, ଶ୍ରୀ ଦରବାର ସାହିବ ର ମୁଖ୍ୟଗ୍ରନ୍ଥି ଓ ଅକାଳ ତଖ୍ତ ଓ ଶ୍ରୀ କେଶଗଡ଼ ସାହିବ ର ଜଥୋଦାର ସାହେବମାନେ ମଧ୍ୟ ଗିରଫ ହୋଇଥିଲେ। ଭଉଣୀ ଓ ମାତାମାନେ ମଧ୍ୟ ପଛରେ ନ ଥିଲେ,୪୧୨ ଜଣ ଗିରଫ ହୋଇଥିଲେ, ସର୍ଦ୍ଦାର କପୂର ସିଂହଜୀ ହିସାର ଜେଲ୍‌ଠାରେ ବନ୍ଦୀ ହୋଇଥିଲେ। ୫/୬ ଜଣ ସିଂହ ଗଣ୍ଡଗୋଳ ଆରମ୍ଭ କରିଦେଲେ ଓ ସେମାନଙ୍କୁ ଅସୁସ୍ଥତା ଯୋଗୁଁ ଜେଲ୍‌ରୁ ବାହାର କରାଯାଇଥିଲା।

## ସୀମାବନ୍ଦୀ କମିଶନର ରିପୋର୍ଟ

ଭାରତ ସରକାର ଦେଶର ସୁବାମାନଙ୍କ ସୀମା ଅଦଳବଦଳ କରିବାପଇଁ ତିନିଜଣିଆ ସୀମାବନ୍ଦୀ କମିଶନ ନିଯୁକ୍ତି କରାଇଲା। ସେମାନଙ୍କୁ ପଞ୍ଜାବ ସୁବା ଦେଶ ମଧ୍ୟରେ ନିଯୁକ୍ତି ଦିଆଗଲା। ଅକାଳୀ ଭାଇମାନଙ୍କ ବ୍ୟତୀତ ଜଥେଦାର ମୋହନ ସିଂହ ନାଗୋକେ ପୂର୍ବ ଜଥେଦାର। ଶ୍ରୀ ଅକାଳ ତଖତ୍ ସାହିବର ବିଧାୟକ ଓ ସର୍ଦ୍ଦାର ତେଜା ସିଂହ ସାଂସଦ ତଥା କେତେଜଣ କଂଗ୍ରେସ ଭାଇମାନେ ନିଜର ମେମୋରେଣ୍ଡମ୍ ଜମା କରାଇ ପଞ୍ଜାବୀ ସୁବାମାନଙ୍କୁ ସାହାଯ୍ୟ କରାଇଥିଲେ। ପରନ୍ତୁ କମିଶନ ରିପୋର୍ଟର ନାରା ପରେ ୨୪ ଆଶ୍ୱିନ (୧୦ ଅକ୍ଟୋବର, ୧୯୫୫) ଦିନ ପଞ୍ଜାବଠାରେ ଭୀଷଣ ବନ୍ୟା ଯୋଗୁଁ ସାଧାରଣତଃ ଭାବେ ଶିଖ ଜଗତରେ ସଙ୍କଟ ଘେରି ରହିଥିଲା। ଘୋଷଣା କରାଯାଇଥିଲା ଓ ପଞ୍ଜାବୀ ସୁବା ତ କଣ ଆହୁରି ଏହିଦ୍ୱାରା ପଞ୍ଜାବୀ ତତ୍ତ୍ୱ ସମାପ୍ତ କରିବାପାଇଁ ଚେଷ୍ଟା ଥିଲା। ପଞ୍ଜାବ ପୈପସୁ ଓ ହିମାଚଳପ୍ରଦେଶଠାରେ ଏକତ୍ରିତ କରିବାପାଇଁ କମିଶନ ପ୍ରସ୍ତାବ ଦେଲେ। ତାହା ଶିଖମାନଙ୍କ ପ୍ରତି ଘୋର ରୋଷ ପ୍ରକଟ କରିଥିଲା। ସେଥିରେ ପଣ୍ଡିତ ନେହେରୁ ଜୀ ଦୁଃଖ ଭରି ବିଚାର ଦେଇଥିଲେ, କିନ୍ତୁ ସାମ୍ପ୍ରଦାୟିକ ହିନ୍ଦୁମାନେ ଏହାର ଘୋର ସ୍ୱର ଉତ୍ତୋଳନ କରିଥିଲେ।

## ଆଞ୍ଚଳିକ କମିଟି

ସୀମାବନ୍ଦୀ କମିଶନର ରିପୋର୍ଟ ଶିଖମାନଙ୍କୁ ବିପରୀତ ତାହା ସ୍ୱାଭାବିକ ଥିଲା। ପରନ୍ତୁ ପଞ୍ଜାବୀ ସୁବାମାନଙ୍କ ଭାଷଣ ଓ ସର୍ବସାଧାରଣ ସଭାର ବିଦାୟ ଯୋଗୁଁ ଖାଲସା ପନ୍ଥର ମସ୍ତକ ଉଚ୍ଚା ହୋଇଥିଲା। ସେଥିଯୋଗୁଁ ଅକାଳୀ ଦଳର

ପ୍ରତିନିଧିମାନଙ୍କୁ ବିଚାର ବିମର୍ଷ ସହ ସମାଧାନ କରାଗଲା ଓ ପଞ୍ଜାବକୁ ହିନ୍ଦୀ ଓ ପଞ୍ଜାବୀ ଆଞ୍ଚଳିକ କମିଟି ଦିଆଗଲା।

ପରେ ପୁଣି ସେଇ ଘଟଣା। ନାମକୁମାତ୍ର ଆଞ୍ଚଳିକ ହୋଇଥିଲା। କିନ୍ତୁ ପଞ୍ଜାବୀ ଉନ୍ନତି ସକାଶେ କୌଣସି ପ୍ରକାର ଦୃଢ଼ ପଦକ୍ଷେପ ହୋଇ ନ ଥିଲା, କେବଳ ପଞ୍ଜାବୀ ଆଗ୍ରହୀ ଅକାଳୀ ନେତା ସରକାରୀ ଶାନ୍ତିଠାରୁ ଏହାକୁ ବିପରୀତ କରାଇଦେଲେ।

ଏହା ଦେଖି ଶିରୋମଣି ଅକାଳୀ ଦଳ ପଞ୍ଜାବୀ ସୁବାର ଦାବି କରି ପୁଣି ଅଗ୍ରସର କରାଇଲେ ଓ କଂଗ୍ରେସୀ ଶିଖମାନେ ଓ କଂଗ୍ରେସ ସରକାର ଏହି ଦାବିକୁ ବନ୍ଦ କରିବାପାଇଁ ଶିରୋମଣି କମିଟିର ଅକାଳୀ ପ୍ରଭାବକୁ ନିମ୍ନଗାମୀ କରିବାପାଇଁ ଷଡଯନ୍ତ୍ର କରିଲେ। ୧୯୫୮ ନଭେମ୍ବର (ସମ୍ବତ ୨୦୧୪) ଦିନ ଶିରୋମଣି କମିଟୀକୁ ଅଧିକୃତ କରିବାପରେ ସେମାନଙ୍କ ତରଫରୁ ପୁଣି ଦିଲ୍ଲୀ ଗୁରୁଦ୍ୱାରମାନଙ୍କୁ ଅଧିକୃତ କରିବାପାଇଁ ଚେଷ୍ଟା କରିଥିଲେ ଓ ଏହି ଚେଷ୍ଟା ସଫଳ ହୋଇନଥିଲା। ପରନ୍ତୁ ପବିତ୍ର ଗୁରୁଦ୍ୱାରମାନଙ୍କ ପ୍ରତି ଘୋର ଅପମାନ ଓ ଅବ୍ୟବସ୍ଥା ହୋଇଥିଲା ଓ ତାହା ଶିଖମାନଙ୍କ ଦ୍ୱାରା ହିଁ ହୋଇଥିଲା। ବୁଦ୍ଧିମାନୀ ଶିଖମାନଙ୍କର ସେତେବେଳେ ଲଜ୍ଜା ଜନିତ ମସ୍ତକ ତଳକୁ ହୋଇଯାଇଥିଲା।

ତାହାପରେ ଶିରୋମଣି କମିଟିର ନୂତନ ଭୋଟ ହୋଇଥିଲା। ୧୯୬୦ (ସମ୍ବତ ୨୦୧୬) ସମୟର ଘଟଣା ତାହା ବହୁତ ସଂଘର୍ଷଜନିତ ସହ ଅକାଳୀ ଦଳ ପୁଣି ବହୁ ମତ ସହ ବିଦାୟ ହୋଇଥିଲା। ଶିଖ ଜଗତ କଂଗ୍ରେସ ବିଚାରମାନଙ୍କୁ ଶିଖମାନଙ୍କର ସରକାରୀ ସାହାଯ୍ୟ ମିଳିବା ଯୋଗୁଁ ମଧ ସେମାନେ ପରାଜୟ ହୋଇଥିଲେ। ପଞ୍ଜାବୀ ସୁବାମାନଙ୍କ ପ୍ରଶ୍ନ ପୁଣି ମର୍ମାହତ ହୋଇଗଲା।

## ପୁଣି ପଞ୍ଜାବୀ ସୁବା ଆନ୍ଦୋଳନ

ଇତିହାସ ପଢ଼ି ଆପଣମାନେ ବୁଝିପାରିଲେ କି ଏହି ଗୁରୁଦ୍ୱାର ମଞ୍ଚକୁ ଶିଖମାନଙ୍କଠାରୁ ଛଡ଼ାଇ ନେବାପାଇଁ ସବୁପ୍ରକାର ଆଇନ ଓ ଶାସକୀୟ ବଳ ପ୍ରୟୋଗ କରୁଥିଲେ। ମୋଗଲମାନେ ତ ସୀମାପାର ହୋଇଥିଲେ, ପରନ୍ତୁ ଏହି ଅତ୍ୟାଚାର ସେମାନଙ୍କୁ ଡୁବାଇ ଦେଇଥିଲା। ଶିଖ ରାଜ୍ୟ ପରେ ଇଂରାଜୀଙ୍କ ସମୟ ଆସିଥିଲା।

ସେମାନେ ମଧ୍ୟ ମହନ୍ତଙ୍କ ମାଧ୍ୟମରେ ଗୁରୁଦ୍ୱାରର ଅଧିକାର ଦେବାପାଇଁ ବହୁତ ଚେଷ୍ଟା କରିଥିଲେ। ପରନ୍ତୁ ଗୁରୁଦ୍ୱାର ସୁଧାର ଆନ୍ଦୋଳନର ଅନ୍ତହୀନ ଶାନ୍ତମୟୀ ବଳିଦାନ ସବୁ ସେମାନଙ୍କ ଷଡଯନ୍ତ୍ର ଧୂଳିସାତ୍ କରାଇଦେଲା ଓ ଶେଷରେ ଗୁରୁଦ୍ୱାର ପ୍ରତ୍ୟକ୍ଷ ରୂପେ ଶିଖମାନଙ୍କ ପ୍ରବନ୍ଧ ମଧ୍ୟରେ ଆସିଗଲା।

ଦେଶ ସ୍ୱାଧୀନ ପରେ କଂଗ୍ରେସୀ ଶିଖଙ୍କ ରୂପ ଧାରଣ କରି ସରକାରଙ୍କ ତରଫରୁ ପୁଣି ଏହି ଚେଷ୍ଟା କରାଗଲା। ପରନ୍ତୁ ପ୍ରତ୍ୟେକ ଭୋଟରେ ସେମାନଙ୍କ ପରାଜୟ ହୋଇଥିଲା। ସମ୍ବତ ୨୦୧୬ ଭୋଟ ବେଳେ ଅକାଳୀ ଦଳଙ୍କ ବିଜୟ କେବଳ ପଞ୍ଜାବୀ ସୁବା ସୁଦ୍ଧା ଥିଲା, ସେଥିଯୋଗୁଁ ବାଧ୍ୟତାପୂର୍ବକ ଏଥିପ୍ରତି ସେମାନଙ୍କ ପଦକ୍ଷେପ ନେବା ଉଚିତ ଥିଲା। ସେଥିଯୋଗୁଁ ସେମାନେ ପ୍ରଚାର ଆରମ୍ଭ କରିଦେଲେ ଓ ସରକାରଙ୍କ ଆଞ୍ଚଳିକ ପଦ୍ଧତିକୁ ପାଞ୍ଚବର୍ଷ ଯାଏଁ ଆରମ୍ଭ ନ କରିବା ପାଇଁ ଦୋଷ ଲଗାଯାଇଥିଲା। ଏହି ପ୍ରତିଶ୍ରୁତି ଅବିସ୍ମରଣୀୟ ଥିଲା, ପରନ୍ତୁ ଯାହାର ହାତରେ ଲାଠି ତାହାର ମସୀ, ଏହି କଥା ଥିଲା।

୧୯୫୫ ସମୟରେ ଏହି ଆନ୍ଦୋଳନକୁ ସମାପ୍ତ କରାଇ ପୁଣି ସମାଧାନର କାଗଜପତ୍ର ଆଲମାରି ମଧ୍ୟରେ ବନ୍ଦ କରାଯାଇଥିଲା ଓ ପଞ୍ଜାବୀକୁ ଧକ୍କା ଚାଲୁ ରହିଲା। ପଞ୍ଜାବ ବାସୀ ହିନ୍ଦୁ ବୀର ସାମ୍ପ୍ରଦାୟିକତାର ଶିକାର ହୋଇ ପଞ୍ଜାବୀକୁ ମାତୃଭାଷା ଅସ୍ୱୀକାର ହୋଇଗଲା। ଏତେବେଡ଼ ମିଛ କହିଥିବାମାନଙ୍କୁ, ପଞ୍ଜାବ ଜନ୍ମଭୂମି ହୋଇ ପଞ୍ଜାବୀ ଭାଷାକୁ ଅସ୍ୱୀକାର କରିବା ସାମ୍ପ୍ରଦାୟିକ ବିରୋଧରେ ଏକ୍ସନ ନେବା ଉଚିତ ହୁଅନ୍ତା। ପରନ୍ତୁ ସରକାର ମଧ୍ୟ ସାମ୍ପ୍ରଦାୟିକତାକୁ ସାଥିରେ ରଖିଲା। ତାହା ନିଜର ସାମ୍ପ୍ରଦାୟିକତାର ଛାପର ଲାଠି ବଳପୂର୍ବକ ସହ ଶିଖମାନଙ୍କୁ ପ୍ରହାର କରିବା ଆରମ୍ଭ ହୋଇଗଲା। ମହାଶା ପ୍ରେସ ପ୍ରଥମେ ଏହି ସାମ୍ପ୍ରଦାୟିକତାର ନେତା ହେଲା, ସେଥିଯୋଗୁଁ ସେ ସମଗ୍ର ବିଶ୍ୱକୁ ମୁଣ୍ଡରେ ରଖିଲା। ଅକାଳୀ ଦଳ ଶାନ୍ତିମୟୀ ଯୋଜନା ତିଆରି କରିଲା। ପରନ୍ତୁ ତାହାର 'ଭଙ୍ଗାରୁଜା'ର ଯୋଜନା କହି, ତାହା ଉପରେ ଆକସ୍ମିକ ଆଇନର ଲାଠି ପ୍ରହାର କରିଦେଲା।

ପଞ୍ଜାବ ସରକାର ଗୋଟିଏ ରାତି ମଧ୍ୟରେ ସବୁ ମହାନ୍ ଅକାଳୀ ନେତା ଓ କର୍ମଚାରୀମାନଙ୍କୁ ଗିରଫ କରିଲା ଓ ଏହିପରି ଭାବେ ଯୋଜନା ପ୍ରସ୍ତୁତ କରିଲେ କି ଆନ୍ଦୋଳନ ସୃଷ୍ଟି ନ ହେଉ, ପରନ୍ତୁ ଯେଉଁ ମାଲିକର ପନ୍ଥ ତାହାକୁ ସ୍ୱୀକାର ନ ଥିଲା, ସେଥିଯୋଗୁଁ ଆନ୍ଦୋଳନ କରି ଚାଲିଲା ଓ ପାଞ୍ଚମାସ ଯାଏ

ଲାଗି ରହିଲା । ପରନ୍ତୁ ସରକାର ଅଟଳ ରହିଲା ଓ ଅକାଳୀମାନେ ବାହାରିପାରିନଥିଲେ ।

ଏହି ପାଞ୍ଚ ମାସ ମଧ୍ୟରେ କଣ ହୋଇଥିଲା ତତ୍ ସମ୍ପର୍କୀୟ ଏତିକି ଲେଖିବା ଯଥେଷ୍ଟ ଅଟେ କି, ଅଧିକରୁ ଅଧିକ ନିୟମ କଡା ହୋଇଥିଲା । ଲାଠିଚାର୍ଜ, ଟିୟର ଗ୍ୟାସ୍ ପ୍ରୟୋଗ ଓ ବହୁତ ସିଂହ ଶିକାର ହୋଇଥିଲେ ଓ ସରକାର ଏହିପରି ପ୍ରଚାର କଲେ କି ସିଂହ ପଥର ଫୋପାଡ଼ି ପରିବେଶ ଖରାପ କରୁଛନ୍ତି । ଦିଲ୍ଲୀଠାରେ ୧୨ ଜୁନ୍ ଦିନ ଶୋଭାଯାତ୍ରା ବିଶେଷ ଭାବେ ଏହି ବିଷୟକୁ ଲକ୍ଷ୍ୟ କରି କରାଯାଇଥିଲା ଓ ଶିଖ ହୋଇଥିବା ଯୋଗୁଁ ବହୁତଙ୍କୁ ମାଡ଼ ମିଳିଥିଲା । ସାମ୍ପ୍ରଦାୟିକ ଖବରକାଗଜ ବିଷୟ ନାହିଁ, ପରନ୍ତୁ ନିରପେକ୍ଷ ଖବରକାଗଜ ମଧ୍ୟ ଏହି ଅତ୍ୟାଚାର ଲାଠିଚାର୍ଜର ଫଟୋ ଛପାଇ ନିରପେକ୍ଷ ତଦନ୍ତର ଦାବି କରିଥିଲେ, କିନ୍ତୁ ତଦନ୍ତ କରିବ କିଏ ?

ଗୁରୁଦ୍ୱାରମାନଙ୍କ ବିରୋଧରେ ନାକାବନ୍ଦୀ ଓ ଯିବା - ଆସିବା ମାନଙ୍କ ସୀମାଠାରୁ ଅଧିକ ତଦନ୍ତ । କଛାଧାରୀ ଓ କଳା ପଗଡ଼ୀଙ୍କୁ ଏହାର ବିଶେଷ ଲକ୍ଷ୍ୟ ରଖାଗଲା ଓ ପୁଣି ଏହି ଆନ୍ଦୋଳନ ବିରୋଧରେ ଅଧିକରୁ ଅଧିକ ପ୍ରଚାର କରାଗଲା । ଅଲ ଇଣ୍ଡିଆ କଂଗ୍ରେସ ଓ ପଞ୍ଜାବ କଂଗ୍ରେସର ପ୍ରଧାନମାନେ ଏହିପରି କି ଭୁଲ ପ୍ରକ୍ରିୟା କରିଥିଲେ, ଯାହାକି ପଞ୍ଜାବର ପ୍ରତ୍ୟେକ ଗ୍ରାମ ଦ୍ୱିଭାଷୀ ଅଟନ୍ତି ଓ ଯଦି ପଞ୍ଜାବୀ ସୁବା ହୋଇଯିବ, ତାହାହେଲେ ସୁବାମାନଙ୍କ ଠାରୁ ଶିଖ୍ମାନଙ୍କ ପାକିସ୍ତାନ ଭଳି ବିଭକ୍ତ ହେବାକୁ ପଡ଼ିବ ଓ ସେମାନଙ୍କୁ ପଞ୍ଜାବକୁ ହିଁ ଆସିବାକୁ ପଡିବ । ୧୯୪୭ ଖ୍ରୀଷ୍ଟାବ୍ଦ ବିଭାଜନର ଦୃଶ୍ୟ ଦେଇ ପଞ୍ଜାବୀ ସୁବାଙ୍କ ପକ୍ଷର ଲୋକଙ୍କୁ ଦୃଢ଼ତା ସହ ମତିଭ୍ରମ କରାଗଲା ଓ ଗଣ୍ଡଗୋଳ ବଢ଼ାଇବା ପାଇଁ ଅଧିକରୁ ଅଧିକ ଚେଷ୍ଟା କରାଗଲା । କିନ୍ତୁ ଏତେ ସ୍ୱଷ୍ଟ ଭ୍ରମ- ବୟାନ କିଏ ଉତ୍ତର ଦେଇପାରିବ, କେବଳ ଚିଫ୍ ଖାଲସା ଦୀବାନଙ୍କ ଭଳି ନରମ- ବିଚାର ଯୁକ୍ତ ବ୍ୟକ୍ତିଙ୍କ ଭଳି ତାହାର ବିରୋଧରେ ବୟାନ ଦେଇ ପଚାରିଥିଲେ କି, ଯଦି କେରଳ, ଆନ୍ଧ୍ର, ମହାରାଷ୍ଟ୍ର, ଗୁଜୁରାଟ ହୋଇଥିବାବେଳେ ଏମିତି ହୋଇନଥିଲା, ପଞ୍ଜାବୀ ସୁବା ସକାଶେ ଏମିତି କାହିଁକି ହେଉଅଛି ? ଯାହାକି ଏହାର ଦାବି ମଧ୍ୟ ସେହି ସୁବାଙ୍କ ତରଫରୁ କରାଯାଉଛି ।

ପରନ୍ତୁ ଏହାଠାରୁ ଅଧିକ ଆଗକୁ ସରକାର ଚାଲିଗଲା । ଆଜିଯାଏଁ ଗୁଳି ଚଳାଇବା ଗୋଟିଏ ଦୃଷ୍ଟାନ୍ତ ମିଳି ନାହିଁ ଓ କୋରିୟା ଠାରେ ଆମେରିକୀୟ ବନ୍ଦୀ

ସୈନ୍ୟଙ୍କୁ ମାରି ଖାଇ ମଧ୍ୟ ଜନରଲ ଥମାସାଙ୍କୁ ଗୁଳି ଚଳାଇବାକୁ ଦେଇ ନ ଥିବା କଂଗ୍ରେସୀ ରାଜ୍ୟଠାରେ ଏହି ଘଟଣା ହୋଇଛି କି ବଠିଣ୍ଡା ଜେଲରେ ଖରାପ ଖାଦ୍ୟ ଓ ଭୁଲ ପ୍ରଣାଳୀରେ କ୍ଷମା ମଗାଇବା ଉପରେ ଜୋର ଦେଇଥିବା ବିରୋଧରେ ବିରୋଧ କରିବା ଓ ଶସ୍ତ୍ରହୀନ ଅକାଳୀ ବନ୍ଦୀଙ୍କୁ ଗୁଳି ମରାଯାଇଥିଲା ଓ ସରକାରୀ ରିପୋର୍ଟ ଅନୁଯାୟୀ ୪ଜଣ ଅକାଳୀ ସର୍ଦ୍ଦାର ଜସବନ୍ତ ସିଂହ, ସର୍ଦ୍ଦାର ଚରଣ ସିଂହ, ସର୍ଦ୍ଦାର ନାଦର ସିଂହ ଓ ରଣଜିତ ସିଂହଙ୍କୁ ସେହି ସ୍ଥାନରେ ହତ୍ୟା କରଯାଇଥିଲା ଓ ୧୦୦ ଠାରୁ ଅଧିକ ଗମ୍ଭୀର ଭାବେ ଆହତ ହୋଇଥିଲେ। ସେମାନଙ୍କ ମଧ୍ୟରୁ ୧୪-୧୫ ଜଣ ଗମ୍ଭୀର ଭାବେ ଆହତ ହୋଇଥିଲେ। ଏହାର ବିରୋଧରେ ଖୁବ୍ ବଡ଼ ଶୋଭାଯାତ୍ରା ବାହାର କରାଗଲା। ପଟିୟାଲାଠାରେ ପୁଣି ଗୁଳି ଚଳାଯାଇଥିଲା ଓ ତିନିଜଣ ସିଂହ ସନ୍ତ ଜୀବନ ସିଂହ, ସର୍ଦ୍ଦାର ହଜାର ସିଂହ ଓ ସର୍ଦ୍ଦାର ହରି ସିଂହ ଶହୀଦ ହୋଇଥିଲେ। ବହୁତ ଆହତ ହୋଇଥିଲେ। ୧୦୦ ଠାରୁ ଅଧିକ ସିଂହ ୧୪୪ ଧାରା ଭଙ୍ଗ କରିବା ସକାଶେ ପୋଲିସ ଉପରେ ଆକ୍ରମଣ କରିବା ଦୋଷ ଯୋଗୁଁ ଗିରଫ ହୋଇଥିଲେ।

(କୋରିୟାର ଯୁଦ୍ଧ ସମୟରେ ଆମେରିକା ଓ ଚୀନର କେତେ କୋଟି ଲୋକ ମରିଥିଲେ। ଶେଷରେ ଜେନେଭା ମିଟିଂ ଅନୁଯାୟୀ ସମାଧାନ ହୋଇଥିଲା ଓ ୩୮ ପୈରେଲାଲ ଲାଇନ ସହ ଯୁଦ୍ଧବନ୍ଦୀ ହୋଇଥିଲା ଓ ଦୁଇ ଦେଶଙ୍କ ବନ୍ଦୀ ହିନ୍ଦୁସ୍ତାନ ନିଜକୁ ନିଜେ ସମ୍ଭାଳିବା ପାଇଁ ପ୍ରସ୍ତାବ ଦେଲା। ଦୁଇଟି କେମ୍ପ ଲଗାଗଲା, ଗୋଟିଏ ଜାଗାରେ ଚୀନ ଓ ଅନ୍ୟଟିରେ ଆମେରିକାର ବନ୍ଦୀ ଥିଲେ ଓ ଜନରଲ ଥମାୟା ସେମାନଙ୍କୁ ଦେଖିବାପାଇଁ ସୈନ୍ୟବଳ ପଠାଇଥିଲେ। ଆମେରିକୀୟ ବନ୍ଦୀମାନଙ୍କୁ ଦେଖିଲେ ଓ ଜନରଲ ଥମାୟାଙ୍କୁ ଗଳାକୁ ଧରିଲେ ଓ କହିଲେ ଆମ୍ଭମାନଙ୍କୁ ମାଖନ ଓ ଡବଲରୋଟି ଖାଇବାକୁ ଦିଅ, ୱାରଲେସ ସହ ଏହି ଖବର ନେହେରୁ ଜୀଙ୍କୁ ବନ୍ଦୀମାନଙ୍କୁ ପରିସ୍ଥିତି ବିଷୟ କୁହାଯାଇଥିଲା, ନେହେରୁ ଜୀ କହିଥିଲେ କି ମରିଯାଅ, ପରନ୍ତୁ ବନ୍ଦୀଙ୍କ ଉପରେ କଠୋର ହୁଅ ନାହିଁ। ସେଥିଯୋଗୁଁ ଜନରଲ ଥମାୟା ମାଡ ଖାଇ ମଧ୍ୟ ଆମେରିକୀୟ ବନ୍ଦୀମାନଙ୍କୁ ଲାଠିଟିଏ ମଧ୍ୟ ମାରି ନ ଥିଲା। ଏହି କାରଣ ଯୋଗୁଁ ଭାରତ ଓ ବିଶେଷକରି ଜନରଲ ଥମାୟାଙ୍କୁ ଦୁନିଆରେ ବହୁତ ସମ୍ମାନ ମିଳିଥିଲା।)

ବି.ବି.ସି ରେଡ଼ିଓ ଲଣ୍ଡନର ସୂଚନା ଅନୁଯାୟୀ ଏହି ଆନ୍ଦୋଳନ ସମୟରେ ପ୍ରାୟ ୪୦ ହଜାର ସିଂହ ଜେଲ ଯାଇଥିଲେ। ୨୮୯ ଆହତ ଓ ୪୪ଜଣ ସିଂହ ଶହୀଦ ହୋଇଥିଲେ। ଏହି ଖବର ବି.ବି.ସି. ରେଡିଓ ବଠିଣ୍ଡା ଜେଲ ଓ ପଟିୟାଲା ଶୋଭାଯାତ୍ରାର ଫାୟରିଂ ପରେ ମିଳିଥିଲା। ପରନ୍ତୁ ଏହାର ବିପରୀତ ସରକାରର ମନ୍ତବ୍ୟ ଅନୁଯାୟୀ ଅଧିକରୁ ଅଧିକ ୨୧ହଜାର ସିଂହ ଜେଲ ଯାଇଥିଲେ, ସର୍ଦ୍ଦାର ଜେଲରୁ ବାହାରିଥିଲେ ଏହା ନିରାଟ ସତ୍ୟ ଅଟେ। ସରକାରର ଏହି ଭୁଲ ନୀତିକୁ ମୁଖ୍ୟମନ୍ତ୍ରୀ ସର୍ଦ୍ଦାର ପ୍ରତାପ ସିଂହ କୈରୋମାନଙ୍କୁ ପଞ୍ଜାବ ମାନିଲା କି ଏହିପରି ଭାବେ କୁହାଯିବ ନାହିଁ କି ଶିଖମାନେ କ୍ଷମା ଯାଚନା କରି ଓ ଫୁସୁଲାଇ ପ୍ରଲୋଭନ ଦେଖାଇ ମୁକ୍ତ ହୋଇ ନ ଥିଲେ। ପରନ୍ତୁ ଶେଷରେ ବଠିଣ୍ଡାର ବଳିଦାନ ଏହି ନୀତିକୁ ଅଟକାଇଥିଲା ଓ ଏହିପରି ମୁକ୍ତ ହେବା କାର୍ଯ୍ୟ କିଛିଦିନ ସକାଶେ ବନ୍ଦ ହୋଇଥିଲା। ପରନ୍ତୁ ସରକାର ଏପରି କାହିଁକି କରିବାକୁ ଚାହୁଁଥିଲା, ଏଥିପାଇଁ କି ଆନ୍ଦୋଳନ କୌଣସି ହିସାବରେ ଝୁଲାଇ ରଖିଦିଆଯାଏ ଓ ଝୁଲାଇ ରଖିବା ଦ୍ୱାରା ବୋଧହୁଏ ଆନ୍ଦୋଳନକାରୀଙ୍କ ମନ ଭାଙ୍ଗିଯିବ।

ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଜୀ କହିଲେ କି, ଅକାଳୀମାନଙ୍କୁ ଭାବିଥିବା ରାଜ୍ୟ ହୋଇପାରିବ ନାହିଁ। ଏମାନଙ୍କ ଆନ୍ଦୋଳନ ପଞ୍ଜାବୀଙ୍କ ପାଇଁ ନୁହେଁ ଏହା ସାମ୍ପ୍ରଦାୟିକ ଅଟେ। ପରନ୍ତୁ ଏହି କଥା ଥିଲା କି ପୁଣି ପଣ୍ଡିତ ଜୀ ପଞ୍ଜାବୀଙ୍କ ରାଜ୍ୟ ଉଚ୍ଚା ସ୍ଥାନ ଦେଇ ଏହି ପ୍ରସ୍ତାବକୁ ସମାପ୍ତ କାହିଁକି କରି ଦିଆଯାଉ ନାହିଁ। ଅକାଳୀମାନଙ୍କ ଏହା ଦାବି ଥିଲା କି ପଞ୍ଜାବୀକୁ ନ୍ୟାୟ ମିଳୁ ଯେମିତି ଅନ୍ୟ ୧୩ ଭାଷା ହୋଇସାରିଛି ଯାହାକି ଅନ୍ୟ ଲୋକ ପଞ୍ଜାବୀ ହୋଇ ମଧ୍ୟ ପଞ୍ଜାବୀ ସହ ଦ୍ରୋହ କରି ଅଶାନ୍ତି ହେଉଅଛି। ତାହାହେଲେ ଶିଖ ପ୍ରେମୀ ପଞ୍ଜାବୀ ରକ୍ଷା ସକାଶେ ଓହ୍ଲାଇଛନ୍ତି। ତେବେ ଏହା ସାମ୍ପ୍ରଦାୟିକ କେମିତି ହୋଇପାରିବ? ସାମ୍ପ୍ରଦାୟିକ ତ ସେମାନେ ହୋଇଛନ୍ତି ଯେଉଁମାନେ ଏହାର ବିରୋଧତା କରୁଛନ୍ତି। କଂଗ୍ରେସର ବଡ଼ ନେତା ସତ୍ୟ ଜାଣି ସାରିଥିଲେ କି ପଞ୍ଜାବୀ ସୁବାର ଦାବି ଜାତୀୟ ସଂଘର୍ଷ ଅନୁସାରେ ପୂରା ଠିକ୍ ଅଟେ। ଭାଷାର ଆଧାର ଯୋଗୁଁ ଯେତେବେଳେ ସମଗ୍ର ଭାରତବର୍ଷରେ (ସୁବା) ରାଜ୍ୟ ହୋଇସାରିଛି ଓ ହୋଇଚାଲିଛି, ତାହା ସବୁଦିନ ସକାଶେ ବନ୍ଦ କରାଯାଉ। ସେଥିଯୋଗୁଁ ଏହି ସତ୍ୟତା ଓ ଦେଶର ହିତାକାଂକ୍ଷୀ କଂଗ୍ରେସୀମାନଙ୍କର ବିଚାର ଥିଲା। ଦ୍ୱିତୀୟରେ ଏହି ପ୍ରସ୍ତାବର ପ୍ରଭାବରେ ପାକିସ୍ତାନ

ଯୁଦ୍ଧ ବେଳେ ଶିଖ ଶୂରବୀରମାନଙ୍କ ବାହାଦୁରିର ବିଶେଷ ଭାବେ ହିନ୍ଦୀ ଲିଡ଼ରମାନଙ୍କୁ ମିଳିଥିଲା । ସନ୍ତୁଜୀ ମଧ୍ୟ ବ୍ରତ ତ୍ୟାଗ କରି ଲଗାତାର ଦାବି କରୁଥିଲେ କି ପଞ୍ଜାବୀତ୍ୱ ପ୍ରଦାନ କରି ଶିଖମାନଙ୍କ ଦାବି ପୂରଣ ଶୀଘ୍ର କରାଯାଉ । କାରଣ ଏହି ରାଜ୍ୟ (ସୁବା) ଏଥିପାଇଁ ପ୍ରଦାନ କରାଯାଉକି ଏହା ହୋଇଯିବା ପରେ ଶିଖମାନଙ୍କୁ ସ୍ୱତନ୍ତ ଓ ଅଧିକ ହକ ପ୍ରାପ୍ତ ହେଉ । ପରନ୍ତୁ ଶିଖ ଶକ୍ତିଶାଳୀ ହୋଇଯିବେ ତାହାଲେ ଶକ୍ତିଶାଳୀ ଭାବେ ପରେ ନିଜର ରକ୍ଷା କରିବେ, ଦେଶ ରକ୍ଷା ପ୍ରଥମେ କରିବେ । ସେଥିଯୋଗୁଁ ଦେଶର ନେତାମାନଙ୍କ ମନରେ ଏହି ପ୍ରଭାବ ପଡ଼ିଥିଲା ।

## ସନ୍ତୁଜୀ ବ୍ରତ ତ୍ୟାଗ କରିଲେ

ବହୁତ ମାସ ଯାଏଁ ଦୃଢ଼ତା ସହ ସନ୍ତୁ ଫତେହ ସିଂହଜୀ ବ୍ରତ ରଖିବା ଓ କ୍ଷୁଧା ଅନଶନ ରଖି ପ୍ରାଣ ତ୍ୟାଗ କରିବା ଶପଥ ନେଲେ, ପରନ୍ତୁ ସରକାର ନୂଆ ଖେଳ ଆରମ୍ଭ କରିଲେ ଓ ମାଷ୍ଟର ତାରା ସିଂହଜୀଙ୍କୁ ଅଚାନକ ଧର୍ମଶାଳା ଜେଲରୁ ମୁକ୍ତ କରାଇ କଥାବାର୍ତ୍ତା କରିବା ପାଇଁ ସନ୍ଦେଶ ପଠାଇଲେ । ସେତେବେଳେ ଭାବନଗରଠାରେ ଅଲଇଣ୍ଡିଆ କଂଗ୍ରେସର ସାଧାରଣ ସମ୍ମିଳନୀ ୭-୮ ଜାନୁୟାରୀ ୧୯୬୧ ସମୟରେ ହୋଇଥିଲା । ଶିରୋମଣି ଅକାଳୀ ଦଳର କାର୍ଯ୍ୟକାରୀ କମିଟୀ ମାଷ୍ଟର ତାରା ସିଂହଜୀଙ୍କୁ କଂଗ୍ରେସ ସମ୍ମିଳନୀଠାରେ ଯାଇ ନେହେରୁଜୀଙ୍କ ସହିତ ମିଶିବା ପାଇଁ ଆଜ୍ଞା ଦେଲେ ଓ ମାଷ୍ଟର ତାରା ସିଂହଜୀ, ସର୍ଦ୍ଦାର ଲକ୍ଷ୍ମଣ ସିଂହଜୀ ଗିଲଙ୍କ ସହିତ ଉଡ଼ାଜାହାଜରେ ସେଠାରେ ପହଞ୍ଚିଲେ । ବହୁତ ଘଣ୍ଟା ଯାଏଁ ପଣ୍ଡିତ ଜବାହରଲାଲ ନେହେରୁ ତଥା ବଡ଼ ବଡ଼ ନେତାମାନଙ୍କ ସହ କଥାବାର୍ତ୍ତା ହୋଇଥିଲେ । ପରନ୍ତୁ କିଛି ଖାସ କଥାର ଫଳାଫଳ ମିଳିନଥିଲା । ବଚନ ଦେବା ଅନୁଯାୟୀ ସବୁ କିଛି ସ୍ୱୀକାର କରାଯିବ ପରନ୍ତୁ ବ୍ରତ ତ୍ୟାଗ କରିବା ଉଚିତ ହେବ ।

ସନ୍ତୁଜୀ କହିଲେ କି ପଞ୍ଜାବୀ ସୁବା (ରାଜ୍ୟ)ର ଘୋଷଣା ବ୍ୟତୀତ ମୁଁ ବ୍ରତ ତ୍ୟାଗ କରିବି ନାହିଁ ଓ କଂଗ୍ରେସୀ ନେତା ବିଶେଷ ଭାବେ (ପଣ୍ଡିତ ନେହେରୁ ଜୀ) ଏହି ବିଶେଷ ଉପରେ ଜୋର ଦେଇଥିଲେ କି, ପ୍ରଥମେ ବ୍ରତ ତ୍ୟାଗ କର ।

## ଦିଲ୍ଲୀର ହୃଦୟବୋଧକ କାଣ୍ଡ

ପରିସ୍ଥିତି ଏମିତି ଥିଲା କି ଜାତିର ବଳିଦାନ ଅକଥନୀୟ ଥିଲା, ସରକାରଙ୍କ ଜେଲ ଭର୍ତ୍ତି ହୋଇସାରିଥିଲା। ସର୍ଦ୍ଦାର ପ୍ରତାପ ସିଂହ କୈରୋଁ, କଂଗ୍ରେସ ହାଇ କମାଣ୍ଡ ଓ ବିଶେଷ ଭାବେ ପଣ୍ଡିତ ନେହେରୁଜୀଙ୍କ କାର୍ଯ୍ୟକଳାପ ପ୍ରଶଂସନୀୟ ଥିଲା ଓ କଂଗ୍ରେସର ଏହି ଖେଳ ଥିଲା କି ଶିଖମାନଙ୍କୁ ଶିଖମାନଙ୍କ ସହ ହିଁ ଲଢ଼ାଯାଉ, ଏହି ନୀତି ସଫଳ ହୋଇଗଲା। କିନ୍ତୁ ଏହାର ଫଳାଫଳ ବାକି ଥିଲା। ମାଷ୍ଟରଜୀଙ୍କ ଭରସା ଦେବା ଓ ଶିରୋମଣି ଅକାଳୀ ଦଳର କାର୍ଯ୍ୟକାରୀ କମିଟୀର ନିଷ୍ପତ୍ତି ଅନୁଯାୟୀ ସନ୍ଥ ମହାଶୟ ବ୍ରତ ତ୍ୟାଗ କରିଲେ ଓ ଜାତିର ବଳିଦାନର କିଛି ବିଶେଷ ଭାବେ ପରିଣାମ ମିଳିନଥିଲା। ବିଶେଷକରି ଦିଲ୍ଲୀ ଠାରେ ୧୨ ଜୁଲାଇର ଘଟଣା ବହୁତ ହୃଦୟବିଦାରକ ଓ ମର୍ମସ୍ପର୍ଶୀ ଥିଲା। ଦିଲ୍ଲୀ ଅକାଳୀ ଦଳ ତରଫରୁ ମଧ୍ୟ ଅନ୍ୟ ସଂଘର୍ଷ ଦାବି ଯୋଗୁଁ ସର୍ଦ୍ଦାର ରଛପାଲ ସିଂହଜୀ, ଦିଲ୍ଲୀ ଆନ୍ଦୋଳନର ଗୁପ୍ତଚରର ନିରୀକ୍ଷଣତା ବହୁତ କାର୍ଯ୍ୟକାରୀ ହୋଇଥିଲା। କେନ୍ଦ୍ର ସରକାର ଗିରଫ କରାଇ ଥକି ଯାଇଥିଲେ ଓ ଦିଲ୍ଲୀର ଏହି ଆନ୍ଦୋଳନକୁ ଶକ୍ତି ପ୍ରୟୋଗ କରି ବନ୍ଦ କରିବାକୁ ଚାହୁଁଥିଲେ (ଦବାଇବା) ପରନ୍ତୁ ୧୨ ଜୁଲାଇ ଦିନ ଏହି ଶକ୍ତି ପ୍ରୟୋଗ ସୀମା ପାର ହୋଇଗଲା। ଗୁରୁଦ୍ୱାର ଶିଶ୍‌ଗଞ୍ଜ ସାମ୍ନାରେ ଓ ଚାନ୍ଦିନୀଚୌକଠାରେ ଥରଟିଏ ପାଇଁ ଇଂରାଜୀମାନଙ୍କ ମର୍ମସ୍ପର୍ଶୀ ଅତ୍ୟାଚାରିତା ମନେପଡିଗଲା। ଟିୟର ଗ୍ୟାସ ଓ ଲାଠି ଚାର୍ଜ ବର୍ଷି ହୋଇ ଚାଲିଲା।

ଏହି ଘଟଣା ମଧ୍ୟ ଦେଇ ସିଂହମାନେ ଆଗକୁ ବଢ଼ିଚାଲିଲେ। କେତେ ସିଂହ ଶହୀଦ ହୋଇଗଲେ ଓ ଶହ ଶହ ଆହତ ହୋଇଥିଲେ। ନିର୍ମମ ଅତ୍ୟାଚାର ଓ ଅତ୍ୟଧିକ ଚାପ ଦେବାପାଇଁ ଏମିତି ନିଷ୍ଠୁର ଓ କଡା ନିୟମ ଶିଖଙ୍କ ବିରୋଧରେ ହୋଇଥିଲା କି କିଏ ଷ୍ଟେସନ ଆଡ଼କୁ ଯାଉଥିବା ଯାତ୍ରୀ ସିନେମା ଯାଉଥିବା ଓ ଆସୁଥିବା, କିଏ ହୋଟେଲରେ ବସି ରୁଟି ଖାଉଥିବା ଓ ବାହାରକୁ ବାହାରୁଥିବା, ସମସ୍ତଙ୍କୁ ବନ୍ଦୀ କରାଗଲା। ମାରପିଟ ଓ ଡରାଇ ଧମକାଇ ଦିଆଯାଉଥିଲା। ପରନ୍ତୁ ଏମାନେ ମଧ୍ୟ ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀଙ୍କ ବାହାଦୁର ଜାତିର ଥିଲେ। ଯେତିକି ଅଧିକ କଡ଼ା ନିୟମ ହେଉଥିଲା, ଯେତେ ଶକ୍ତି ପୋଲିସଙ୍କ ଦବାଇବାକୁ ଚେଷ୍ଟା କରୁଥିଲେ, ତାହା ବଲ ଭଳି ସେତିକି ଡେଇଁ ଡେଇଁ ଓ ଶକ୍ତି ନିଷ୍ଠୁରତାକୁ ପ୍ରତ୍ୟେକ

ଶିଖଙ୍କୁ ସରକାର ବିରୁଦ୍ଧ ହେବାପାଇଁ ବାଧ କରାଉଥିଲା । ଏପରିକି ଯେଉଁ ଖବରକାଗଜ ଯେଉଁ ଆନ୍ଦୋଳନ ଦଳ ବିରୋଧ କରୁଥିଲେ ଓ ସରକାରଙ୍କ ପକ୍ଷରେ ଥିଲେ ସେମାନେ ମଧ୍ୟ ଏହି ନିଷ୍ଠୁରତା ଓ ନିର୍ମମତା ଯୋଗୁଁ ସରକାର ବିରୋଧୀ ହୋଇଗଲେ ଓ ଏହି ଆନ୍ଦୋଳନକାରୀମାନେ ଅକାଳୀ ଆନ୍ଦୋଳନର ଇତିହାସର ପୃଷ୍ଠା ପୁଣିଥରେ ତାଜା କରି ଓଲଟାଇ ଦେଇଥିଲା । କିନ୍ତୁ ଏହି ଲଢ଼ାଇ କାନୁନ୍ ବିରୁଦ୍ଧ ଥିଲା ଓ ଏହି ଆନ୍ଦୋଳନ ଶକ୍ତି ଶିଖମାନଙ୍କ ବଳିଦାନର ଶକ୍ତିଶାଳୀ ରୂପ ଦେଖି ବଳପ୍ରୟୋଗ ହୋଇଥିଲା ।

ବନ୍ଦ ହୋଇ ନ ଥିଲା, କେବଳ ଶିଖ ଜାତିର ବଳିଦାନ ସେମାନଙ୍କୁ ଦୁର୍ବଳ କରି ଗୋଡ଼ ଭାଙ୍ଗି ଦେଇଥିଲା । ପରନ୍ତୁ ଏହି ଶାସନ ନିଜର ଓ ପଞ୍ଜାବଠାରେ ସଂଘର୍ଷ ସିଧାଭାବେ ହୋଇ ଚାଲିଥିଲା । ଯେଉଁଠିକି ସେମାନେ ଶିଖ ଥିଲେ ଓ କେନ୍ଦ୍ର ସରକାର ସହିତ ଯୋଡି ହୋଇ ରହିଥିଲେ । ଏହି କାରଣ ଯୋଗୁଁ ତାହାର ବିରୋଧରେ ସୁପ୍ରିମକୋର୍ଟର ଶୁଣାଣୀ ପାଇ ମଧ୍ୟ ତାହାକୁ ଦୂରେଇ ନ ଥିଲେ । ୧୯୬୨ର ଭୋଟ ସମୟରେ ଜଥେଦାର ମୋହନ ସିଂହଜୀ ତୁଡ଼ର ବିରୋଧରେ ସର୍ଦ୍ଦାର ପ୍ରତାପ ସିଂହଜୀ କୈରୋଁ ଭୋଟ ନ ପାଇ ପ୍ରାୟ ହାରିଗଲେ । ପରନ୍ତୁ ଏହି ପରାଜୟ କେନ୍ଦ୍ର ସରକାର ଚାହୁଁ ନ ଥିଲା । ସେଥିଯୋଗୁଁ କୌଣସି ଭାବେ ତାଙ୍କୁ ଜିତାଇ ଦେଇଥିଲେ । ସେଥିଯୋଗୁଁ ପ୍ରତ୍ୟେକ ପରିସ୍ଥିତି ସହ ପୁଣି ବଚନ ବିରୁଦ୍ଧ ହୋଇ ଚାଲିଥିଲା । ଶିଖମାନଙ୍କ ସବୁ ଦାବି ପୂରଣ କରିବା ପ୍ରତିଶ୍ରୁତି ଦେଇ (ମିଥ୍ୟା) ଦିଲ୍ଲୀ ଆନ୍ଦୋଳନକୁ ଅସଫଳ କରାଇଦେଲେ । ସନ୍ଥଜୀ ବ୍ରତ ତ୍ୟାଗ କରିଦେଲେ ।

## ସରକାରର ସଫଳତା ଓ ପନ୍ଥ ମଧ୍ୟରେ ଘୋର ଅସନ୍ତୋଷ

ଆନ୍ଦୋଳନ ସମୟରେ ଜାତି, ଧନ ଓ ମନ ସହ ସବୁପ୍ରକାର ବଳିଦାନ ଦେଇଥିଲେ । ଅମୃତସର ଓ ଦିଲ୍ଲୀ ଲକ୍ଷ ଲକ୍ଷ ଟଙ୍କା ଆନ୍ଦୋଳନର ସହାୟତା ସକାଶେ ଦେଇଥିଲେ (ଧନ) ମାୟା ତା'ର ରଙ୍ଗ ଦେଖାଇବ ହିଁ ଦେଖାଇବ । କେତେ ଧନ ସନ୍ଥଙ୍କ ବ୍ରତ ଭଗ୍ନ ଓ କେତେ ପରିମାଣ ସରକାର ସୁଯୋଗ ଖୋଜୁଥିଲା । ସଞ୍ଚିତ ସତ୍କାର ଓ ସଂସ୍କାର ସହ ମାଷ୍ଟର ଜୀଙ୍କ ବ୍ରତ ଭଗ୍ନ କରିବା ସହ ଶେଷ ହୋଇଗଲା । ଏହା ମଧ୍ୟ ଉଚିତ ଥିଲା କି ମାଷ୍ଟରଜୀ ଯଦି ବ୍ରତ ତ୍ୟାଗ କରିନଥାନ୍ତେ ତାହେଲେ ସେ ଶରୀର ତ୍ୟାଗ କରିଦିଅନ୍ତେ । ପଞ୍ଜାବୀ ରାଜ୍ୟ ପୁଣି ଥରେ ହୋଇ ପାରନ୍ତା କି

ନାହିଁ, ତାହା ବିଶ୍ୱାସଯୋଗ୍ୟ ନ ଥିଲା। କିନ୍ତୁ ବ୍ରତ ତ୍ୟାଗ କରିବା ଯୋଗୁଁ ମାଷ୍ଟରଜୀଙ୍କ ନେତୃତ୍ୱ ପ୍ରତି ଏମିତି ଭାବେ ଧକ୍କା ଲଗାଇଲା କି ତାହା ଜାତି ନଜରରେ ନିମ୍ନଗାମୀ କରାଇଦେଲା। ପ୍ରକୃତରେ ତାହା ଏମିତି ଥିଲା କି ମାଷ୍ଟରଜୀଙ୍କ ସହିତ ମିଶିବାପାଇଁ ଆସିଥିବା ମାଲିକ ହରଦିତ୍ତ ସିଂହଜୀ, ମହାରାଜା ପଟିଆଲା ତଥା ଅନ୍ୟ ନେତାମାନେ ମଧ୍ୟ ଏହି ପ୍ରସ୍ତାବ ଦେଲେ କି ଆପଣଙ୍କ ମୃତ୍ୟୁ ଯୋଗୁଁ ଲାଭ ପରିବର୍ତ୍ତେ ଶିଖ ଜାତିର କ୍ଷତି ହୋଇଯିବ।

ଉତ୍ତ୍ୟକ୍ତ ପ୍ରକୃତିର ଲୋକମାନେ ଶିଖମାନଙ୍କ ବିରୋଧରେ ପ୍ରଚାର ପ୍ରତ୍ୟେକ ରାଜ୍ୟରେ ହାକିମମାନଙ୍କ କ୍ଷେତ୍ର ଗିରଫ କରାଯାଉଥିଲା। ସେଥିଯୋଗୁଁ ମାଷ୍ଟରଜୀ ନିଜର ବ୍ରତ ତ୍ୟାଗ କରିବା ଉଚିତ। ମାଷ୍ଟରଜୀ ବ୍ରତ ତ୍ୟାଗିବା ସମୟ, ସନ୍ଥ ଫତେହ ସିଂହଜୀଙ୍କ ଭଳି ଅକାଳୀ ଦଳର କାର୍ଯ୍ୟରତ କମିଟିଠାରୁ ରାଜି କରାଯାଇଥିଲା, ପରନ୍ତୁ ଯାହା ହେବାକୁ ଥିଲା ତାହା ହୋଇଗଲା। ବିରୋଧୀମାନେ ମାଷ୍ଟରଜୀଙ୍କ ବିରୋଧରେ ପ୍ରଚାର କରିଚାଲିଲେ ଓ ସରକାରକୁ ସୁଯୋଗ ମିଳିଗଲା। ପଞ୍ଜାବୀ ରାଜ୍ୟ ଦାବି ଗୋଟିଏ କୂଳରେ ଲାଗିଗଲା। ଦୁଇଟି ଅକାଳୀ ଦଳ ହୋଇଗଲେ। ଗୋଟିଏ ଦଳ ମାଷ୍ଟରଜୀଙ୍କ ଓ ଗୋଟିଏ ଦଳ ସନ୍ଥ ଫତେହ ସିଂହଜୀଙ୍କର ଦଳ ମଜଭୁତ ହେବାକୁ ଲାଗିଲା। ସର୍ଦ୍ଦାର ହଜାର ସିଂହଜୀ ଗିଲ ଓ ଜଥେଦାର ମୋହନ ସିଂହଜୀଙ୍କ ତୁଡ, ଯିଏକି ସର୍ଦ୍ଦାର ପ୍ରତାପ ସିଂହଜୀ କୈରୋଁଙ୍କୁ ସରକାର ଜେଲ ଦଣ୍ଡ ଦେଇଥିଲେ। ସନ୍ଥ ମହାଶୟ ସେମାନଙ୍କୁ ମୁକ୍ତ କରାଇବାରେ ସଫଳ ହୋଇଥିଲେ ଓ ତାଙ୍କର ଶକ୍ତି ବଢ଼ିଗଲା। ଶିରୋମଣି କମିଟିର ମଧ୍ୟ ୧୯୬୨ ସମୟରେ ତାଙ୍କ ଅଧୀନସ୍ଥ ହୋଇଗଲା ଓ ପ୍ରଧାନ ସନ୍ଥ ଚନ୍ନଣ ସିଂହଜୀ ମନୋନୀତ ହୋଇଥିଲେ। ପୁଣି ଶିରୋମଣି କମିଟିର ଜେନେରଲ ଭୋଟରେ ସନ୍ଥ ଫତେହ ସିଂହଜୀଙ୍କୁ ବହୁମତ ମିଳିଥିଲା। ସେତେବେଳେ ମାଷ୍ଟର ଜୀ ମନ୍ତବ୍ୟ ପ୍ରକାଶ କରିଲେ କି ଏହି ପରାଜୟ ମୋର ବ୍ରତ ତ୍ୟାଗର କାରଣ ଅଟେ। ସେଥିଯୋଗୁଁ ମାଷ୍ଟର ଜୀ ବ୍ରତ ରଖିବା ମଧ୍ୟ ଭୁଲ କରିଥିଲେ। ପରନ୍ତୁ ତାହାଠାରୁ ମସ୍ତବଡ଼ ଭୁଲ ବ୍ରତ ତ୍ୟାଗ କରିବା।

କଲିକତାର ବାଘମରୀ ଅଞ୍ଚଳର ଘଟଣା ସମସ୍ତଙ୍କୁ ଜଣାଅଛିକି ସେଠାରେ କେମିତି ଶିଖମାନଙ୍କ ସହ ଅନ୍ୟାୟ ଅତ୍ୟାଚାର ହୋଇଥିଲା। ପୋଲିସ ଓ ଜନତାଙ୍କ ତରଫରୁ ଏହା ହୋଇଥିଲା। ଏହି ପରିସ୍ଥିତିକୁ ଶିଖମାନଙ୍କ ବିରୋଧରେ ସେହି ସମୟରେ ସର୍ବସାଧାରଣରେ ତାହା ବିସ୍ତାରିତ କରିବାପାଇଁ ପ୍ରେରଣା ଦିଆଯାଉଥିଲା।

ପଣ୍ଡିତ ନେହେରୁଜୀ ଗୁରୁପୁରଠାରେ 'ପଞ୍ଜାବୀ ସୁବା' ଜିନ୍ଦାବାଦ କହିଥିବା ଶିଖମାନଙ୍କୁ କହିଥିଲେ- ଯଦି ଏହି କଥା ତାହାହେଲେ ତୁମମାନଙ୍କୁ ପଞ୍ଜାବୀ ରାଜ୍ୟକୁ ଯିବା ଉଚିତ ଓ ସେଠାକୁ ଚାଲିଯାଅ। ଏହିପରି ୧୯୬୯ ସମୟରେ ଦିଲ୍ଲୀଠାରେ ମଧ କିଛି କିଛି ଘଟଣା ହୋଇଥିଲା, ଯେତେବେଳେ ଜନସଂଘ ଗୁରୁଦ୍ୱାର ଶିଶଗଞ୍ଜଠାରେ ଆକ୍ରମଣ କରିଲେ ଓ ଗୁରୁଦ୍ୱାରକୁ ନିଆଁ ଲଗାଇବାକୁ ଚେଷ୍ଟା କରିଥିଲେ।)

## ପାଉଁଟେ ସାହିବଠାରେ ରକ୍ତାକ୍ତ ଘଟଣା

ଗୁରୁଦ୍ୱାର ପାଉଁଟା ସାହିବ ଶ୍ରୀ ଦଶମେଶ ଜୀଙ୍କ ଗୋଟିଏ ଐତିହାସିକ ସ୍ଥାନ ଅଟେ। ସେହିଠାରେ ଗୁରୁଜୀ ନାହନର ରାଜା ମେଦନୀ ପ୍ରକାଶକୁ ନିମନ୍ତ୍ରଣ ସହ (୧୭୩୯ ସମ୍ବତ) ଯାଇଥିଲେ। ସେଠାରେ ଗୁରୁ ମହାରାଜଙ୍କ ଦରବାରଠାରେ ୫୨ଜଣ କବି ପହଞ୍ଚିଥିଲେ ଓ ସ୍ୱୟଂ ଗୁରୁ ମହାରାଜ ପୁରାତନ ସାହିତ୍ୟର ଅନୁବାଦ କରିଥିଲେ ଓ କରାଇଥିଲେ। ସେଠାରେ ରାମ ରାଏଙ୍କ ସହିତ ମିଶିଥିଲେ। କହଲୁରର ଭୀମ ଚନ୍ଦ ସତ୍‌ଗୁରୁଜୀଙ୍କ ତେଜ ପ୍ରତାପର ବଢୋତ୍ତରକୁ ସହ୍ୟ କରିପାରୁ ନ ଥିଲା ଓ ଈର୍ଷା କରିବାକୁ ଲାଗିଲା। ସେହି ଈର୍ଷା ଭୟାନକ ରୂପ ଧାରଣ କରିବାକୁ ଲାଗିଲା। ସେ ଭାବୁଥିଲା କି ମୋର ରାଜ୍ୟ ଓ ପ୍ରତାପ ଲୋକପ୍ରିୟ, ଜାକଜକମ ଏହାର ଅଧିକ, ଏହା କେମିତି ହୋଇପାରିବ ? ଭୀମ ଚନ୍ଦ ନିଜର ପୁତ୍ରର ବରଯାତ୍ରୀ ସହ ସେଠାରେ ପହଞ୍ଚିଲା ଓ ସେ ଶ୍ରୀନଗର (ଡୁହୁନ)ଦୁନର ରାଜା ଫତେହ ଶାହର ଘରକୁ ଯିବାକୁ ଚାହିଁଥିଲା। ସେହି ରାସ୍ତାରେ ପାଉଁଟା ସାହେବ ଥିଲା। ତାହା ସହିତ ୧୩-୧୪ଜଣ ରାଜା ଓ ସେମାନଙ୍କ ସୈନ୍ୟ ଦଳ ଥିଲେ। ତାହାର ଈର୍ଷାଳୁ ମନରେ ଏହା ଥିଲାକି ଯିବା ସମୟରେ ଗୁରୁଜୀଙ୍କ ଡୋରାକୁ ଆକ୍ରମଣ କରି ତାଙ୍କୁ ଲୁଟି ଚାଲିଯିବ। ସେ ଚାହୁଁଥିଲା କି କାବୁଲ ଠାରୁ ଆସିଥିବା ବୈଦୂର୍ଯ୍ୟ ଯୁକ୍ତ ଚନ୍ଦୁଆ ତାହାର ମୂଲ୍ୟ ସେତେବେଳେ ଦୁଇ ଲକ୍ଷ ଟଙ୍କାର ଥିଲା, ପଞ୍ଚ କଳା ଶସ୍ତ୍ର, ଧଳା ହାତୀ ତଥା ଅନ୍ୟାନ୍ୟ ବହୁମୂଲ୍ୟ ସାମଗ୍ରୀ ଛଡ଼ାଇ ନିଆଯାଉ। ଆନନ୍ଦପୁରଠାରେ ଏହି ମୂଲ୍ୟବାନ୍ ସାମଗ୍ରୀ ପାଇଁ ସେ କଳହ ସୃଷ୍ଟି କରିଥିଲା। ଅନ୍ତର୍ଯ୍ୟାମୀ ସତ୍‌ଗୁରୁଜୀ ତାହାର ବିଷାକ୍ତ ବିଚାର ବୁଝିପାରି ସେହି ରାସ୍ତାରେ ତାକୁ ଯିବାକୁ ଦେଇ ନ ଥିଲେ। ତାକୁ ବହୁତ ଅସୁବିଧା ଓ ଚକ୍ରବ୍ୟୂହରେ ସମ୍ମୁଖୀନ ହୋଇ ଶ୍ରୀନଗର ଯିବାକୁ ହୋଇଥିଲା।

ଫତେହଶାହ ଗୁରୁଜୀଙ୍କ ମିତ୍ର ହୋଇସାରିଥିଲା । ସେଥିଯୋଗୁଁ ତାହାର କନ୍ୟାର ବିବାହ ମହୋତ୍ସବ ବେଳେ ମହାରାଜ ୧ ଲକ୍ଷ ୨୫ ହଜାର ଟଙ୍କା ଯୌତୁକ ପାଇଁ ପଠାଇଥିଲେ । ପରନ୍ତୁ ଭୀମ ଚନ୍ଦଙ୍କୁ ଯେତେବେଳେ ଏକଥା ଜଣାପଡ଼ିଲା, ସେ ଫତେହଶାହ ଉପରେ ବିରକ୍ତ ହୋଇ କହିଲା କି, ମୁଁ ତୋର ଝିଅକୁ ଶବାରିରୁ ଓହ୍ଲାଇ ନେବି, ଯଦି ତୁମେ ଗୁରୁ ଗୋବିନ୍ଦ ସିଂହ ପଠାଇଥିବା ଜିନିଷ ଫେରସ୍ତ କରିବ । ଯେଉଁ ୫ଶହ ସିଂହ ସେହି ସାମାନ ସହ ଆସିଥିଲେ ସେମାନଙ୍କୁ ବନ୍ଦୀ କରି ରଖ ନଚେତ୍ ସେମାନଙ୍କୁ ମାଡ଼ ଦେଇ ଘଉଡ଼ାଇ ଦିଅ । ଫତେହ ଶାହ ବାଧ୍ୟ ହୋଇ ଭୀମ ଚନ୍ଦର କଥା ମାନିବାକୁ ପଡ଼ିଥିଲା । ପରନ୍ତୁ ସିଂହମାନେ ମଧ୍ୟ ସବୁ କିଛି ସୂଚନା ପାଇସାରିଥିଲେ, ସେଥିଯୋଗୁଁ ସେମାନେ ସବୁ ଜିନିଷ ଯତ୍ନ ସହ ସେଠାରୁ ଚାଲି ଆସିଥିଲେ । କେତେ ପାହାଡ଼ୀ ରାଜା ଫତେହ ଶାହର ଘରକୁ ଆସିଥିଲେ, ଏହିପରି ଭାବେ ସବୁ ପାହାଡ଼ୀ ରାଜା ଏକାଠି ହୋଇଥିଲେ । ଭୀମ ଚନ୍ଦ ଓ ଫତେହ ଶାହର ସୈନ୍ୟମାନେ ବହୁତ ଚେଷ୍ଟା କରିଲେ କିପରି ସିଂହମାନଙ୍କୁ ଅଟକାଇ ସେମାନଙ୍କଠାରୁ ଜିନିଷ ପତ୍ର ଛଡ଼ାଇ ନେବା ପାଇଁ, ପରନ୍ତୁ ସିଂହମାନେ ସେମାନଙ୍କ କାବୁ ହୋଇନଥିଲେ ।

ସିଂହମାନେ ଚାଲିଯିବା ପରେ ପାହାଡ଼ୀ ରାଜାମାନେ ଏକାଠି ହୋଇଗଲେ । ସେମାନେ ଜାଣିଥିଲେ କି ଆମ ସମସ୍ତଙ୍କ ଚଢ଼ାଉ ପରେ ଗୁରୁ ଗୋବିନ୍ଦ ସିଂହ କ'ଣ କରିବ । ଗୁରୁଜୀଙ୍କ ପଠାଣ ସୈନ୍ୟମାନଙ୍କୁ ସେମାନେ ଲୋଭ-ଲାଳସା ଦେଇ ନିଜର କରିଦେଲେ । ସେହି ୫ଶହ ପଠାଣ ପୀର ବୁଦ୍ଧୁ ଶାହ ଗୁରୁଜୀଙ୍କ ପାଖରେ ନେଇକରି ରଖାଇଥିଲା । ସେଥିଯୋଗୁଁ ପଠାଣମାନଙ୍କର ଏହିପରି ଧୋକାବାଜି ବିଶ୍ୱାସଘାତକତା ଶୁଣି ପୀର ବୁଦ୍ଧୁ ଶାହ ନିଜର ୩୦୦ ମୁରୀଦ ଓ ୪ଟି ପୁତ୍ରଙ୍କ ସହ ଗୁରୁଜୀଙ୍କ ସାହାଯ୍ୟ ପାଇଁ ପହଞ୍ଚିଲା । ନାଦୌନ ଗାଁ ନିକଟରେ ଖୁବ୍ ଯୁଦ୍ଧ ହୋଇଥିଲା । ବହୁତ ପଠାଣ ମଧ୍ୟ ମରିଗଲେ । ତିନି - ଚାରି ରାଜା ମଧ୍ୟ ମରିଗଲେ । ଶେଷରେ ଗୁରୁଜୀଙ୍କ ବିଜୟ ହୋଇଥିଲା । ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ ବିଚିତ୍ର ନାଟକ ମଧ୍ୟରେ ଲେଖିଛନ୍ତି –

ଭଇ ଜିତ୍ ମେରୀ ॥
କ୍ରିପା କାଳ କେରୀ ॥

ସେଥିଯୋଗୁଁ ସେଠାରେ ପ୍ରତିବର୍ଷ ହୋଲେ ମହଲ୍ଲେ ର ମେଳା ସମୟରେ ମହଲ୍ଲା ବାହାରେ ଓ ଖୁବ୍ ବଡ଼ ମେଳା ଲାଗେ। ସେଠାର ପ୍ରବନ୍ଧ ବର୍ତ୍ତମାନ ସୁଦ୍ଧା ମହନ୍ତଙ୍କ ଅଧୀନରେ ଥିଲା। ୧୯୬୪, ୨୮ ମାର୍ଚ୍ଚରେ ହୋଇଥିଲା, ଗୋଟିଏ ନିହଙ୍ଗ ସିଂହମାନଙ୍କ ଦଳ ୨୮ ତାରିଖ ଦିନ ସେଠାରେ ପହଞ୍ଚିଲା। ମହନ୍ତଙ୍କ ତରଫରୁ ସେମାନଙ୍କୁ ସତ୍କାର କରାଯାଇ ନ ଥିଲା। ସେମାନେ ସିଂହ ଥିଲେ। ଗୁରୁଙ୍କ ପ୍ରିୟତମ ସେନା ଥିଲେ। ମହନ୍ତ ବିରୋଧରେ ସେମାନଙ୍କ ରାଗ ବଢ଼ିଲା ଓ ଗୁରୁଦ୍ୱାରମାନଙ୍କରେ ଅଖଣ୍ଡ ପାଠ ଆରମ୍ଭ କରିଦିଆଗଲା। ମହନ୍ତ ଗୁରୁଦ୍ୱାରକୁ ନିଜର ସମ୍ପତ୍ତି ଭାବୁଥିଲେ ଓ ନିଜର ମନଇଚ୍ଛା କାମ କରୁଥିଲେ। ଏହି ବିରୋଧତା ସହ ଆନ୍ଦୋଳନ ଆରମ୍ଭ କରିଦେଲେ, ପରନ୍ତୁ ଏହି ଗୁରୁଦ୍ୱାର ସାହିବ ପଞ୍ଜାବଠାରୁ ବାହାରେ ଥିବା ଯୋଗୁଁ ମହନ୍ତ ଅଧୀନରେ ଥିଲା। ମହନ୍ତ ଗୁରୁଦ୍ୱାର ଗୁଡାକୁ ପୂରା ନିହଙ୍ଗମାନଙ୍କୁ ନ ଜଣାଇ ଛାଡ଼ି ଚାଲିଗଲା। ସେ ଅପେକ୍ଷା କରିପାରିଲା ନାହିଁ। ସେ ଭାବିଲା ଏହି ନିହଙ୍ଗମାନେ ବର୍ତ୍ତମାନ ଗୁରୁଦ୍ୱାରା ଛାଡ଼ିବେ ନାହିଁ। ସେ ନିହଙ୍ଗମାନଙ୍କ ଉପରେ ଜବରଦସ୍ତି ଅଧିକାର କରିବା ଦାବି କଲା। ମହନ୍ତର କଥା ସମସ୍ତେ ମାନୁଥିଲେ। ସେ ଉଚ୍ଚପଦସ୍ଥ କର୍ମଚାରୀ ମାନଙ୍କ ସହ ମିଳାମିଶା କରି ଅଦାଲତର ନିଷ୍ପତ୍ତି ନିଜ ହକ୍‌ରେ କରାଇନେଲା। ଅଦାଲତ ଶୁଣାଣି ଅନୁଯାୟୀ ପୋଲିସ୍ ପହଞ୍ଚି ନିହଙ୍ଗମାନଙ୍କୁ ବାହାରି ଯିବା ପାଇଁ କହିଲା, ପରନ୍ତୁ ନିହଙ୍ଗ ସିଂହମାନେ ମାନି ନ ଥିଲେ। ସେମାନେ ଅଖଣ୍ଡ ପାଠ ଆରମ୍ଭ କରିଥିଲେ। ଗୋଟିଏ ପାଠର ଭୋଗ ଲଗାଇ ଦ୍ୱିତୀୟ ଆରମ୍ଭ କରୁଥିଲେ। ୧୫-୨୦ ଦିନ ସବୁ ନିହଙ୍ଗ ସିଂହ ସେଠାରେ ରହୁଥିଲେ। କେବେ କେଉଁ ଅଦାଲତର ଶୁଣାଣି ଏତେ ଶୀଘ୍ର ହେଉ ନ ଥିଲା। ପରନ୍ତୁ ମହନ୍ତ ଓ ହିମାଚଳ ସରକାରର ଏହି ଶୁଣାଣି ଶୀଘ୍ର ହୋଇଗଲା। ଯେତେବେଳେ ନିହଙ୍ଗ - ସିଂହମାନେ ମାନି ନ ଥିଲେ, ପୋଲିସ୍ ବଳ ପ୍ରୟୋଗ କରିଲା, ଗୁଳି ଚଳାଇଲା, ଗୁରୁଦ୍ୱାରର ବଡ ବଡ କବାଟ ଭାଙ୍ଗିଦେଲା। ଗୁଳିମାରି ୧୦-୧୨ ନିହଙ୍ଗ ସିଂହ ଶହୀଦ ହୋଇଗଲେ। ପାଠ ଖଣ୍ଡନ ହୋଇଗଲା। ଏହି କାର୍ଯ୍ୟ ଯୋଗୁଁ ଶିଖ ଜଗତରେ ହଲଚଲ ଖେଳିଗଲା। ସ୍ଥାନ ସ୍ଥାନରେ ଦୂର ନିକଟରୁ ସିଂହ ସେଠାରେ ପହଞ୍ଚିଲେ ଓ ସରକାର ବିରୋଧରେ ଆନ୍ଦୋଳନ କଲେ, ମାଷ୍ଟର ତାରା ସିଂହ ଓ ସନ୍ଥ ଫତେହ ସିଂହ ଦୁହେଁ ସେଠାରେ ପହଞ୍ଚିଲେ। ଶେଷରେ ତଦନ୍ତ ସକାଶେ କମିଶନ ନିଯୁକ୍ତି କରାଗଲା। ଗୁରୁଦ୍ୱାରା ପ୍ରବନ୍ଧ ସେତେବେଳେ ସେହି ସମୟରେ ଅଞ୍ଚଳର ଶିଖମାନଙ୍କ କମିଟିକୁ ଦିଆଗଲା।

ପରନ୍ତୁ କମିଶନର ନିଷ୍ପତ୍ତି ନିହଙ୍ଗ ସିଂହମାନଙ୍କ ବିରୋଧରେ ଥିଲା। ହଁ, ସବୁ ଦିନ ପାଇଁ ମହନ୍ତ ହାତରୁ ପ୍ରବନ୍ଧ ଚାଲିଗଲା, ବର୍ତ୍ତମାନ ଏହା ପ୍ରବନ୍ଧକ କମିଟି ଦ୍ୱାରା ପରିଚାଳିତ ହେଉଅଛି।

ଭାରତ ସରକାରର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଜୀ ଏହି ଘଟଣା ସମୟରେ ଡେରାଡୁନ୍ ଠାରେ ପହଞ୍ଚିଥିଲେ।ଏହା ବିରୋଧରେ ତାଙ୍କୁ ସ୍ମରଣ-ପତ୍ର ଦିଆ ଯାଇଥିଲା, ପରନ୍ତୁ ସେ ସେତେବେଳେ ପ୍ରତିନିଧି ସହିତ କିଛି କଥାବାର୍ତ୍ତା କରି ନ ଥିଲେ। ପରନ୍ତୁ କିଛି ଦିନ ପରେ ଦିଲ୍ଲୀଠାରେ ପହଞ୍ଚି ପଣ୍ଡିତ ନେହେରୁଜୀଙ୍କ ଦେହାନ୍ତ ହୋଇଗଲା ଓ ତାଙ୍କ ସ୍ଥାନରେ ଶ୍ରୀ ଲାଲ ବାହାଦୁର ଶାସ୍ତ୍ରୀ ଭାରତର ପ୍ରଧାନମନ୍ତ୍ରୀ ଭାବେ ମନୋନୀତ ହୋଇଥିଲେ।

## ଚୀନ ଯୁଦ୍ଧ ଓ ଶିଖ ସୈନ୍ୟଙ୍କ ବାହାଦୁରି

୧୯୬୨ ମସିହା ସମୟରେ ଚୀନ ଆକସ୍ମିକ ଭାବେ ଭାରତ ଆକ୍ରମଣ କରିଥିଲା, ପରନ୍ତୁ ସେତେବେଳର ସମୟ ଯାଏଁ 'ଶାନ୍ତ - ସଦ୍‌ଭାବନା'ର ବଚନ ଦେଇ ଆସୁଥିଲା। ସେଥିପାଇଁ କିଏ ଭାବି ନ ଥିଲା 'ହିନ୍ଦୀ-ଚିନୀ' ଭାଇ-ଭାଇ କହିବ। ଚୀନ କେମିତି ଭାବେ ହିନ୍ଦୁସ୍ତାନ ଉପରେ ଆକସ୍ମିକ ଭାବେ ଆକ୍ରମଣ କରିବ ? ଏହି ନୀତି ସବୁ ଦେଶ ପ୍ରୟୋଗ କଲେ ମଧ୍ୟ ଓ ବିଶେଷ ଭାବେ ଏଟମ୍ ବମ୍ ତିଆରି କରିବା ଦେଶ ରୁଷ ଓ ଆମେରିକା ମଧ୍ୟ 'ଶାନ୍ତି ରଖ' ଓ ଆମେ 'ଶାନ୍ତି ପସନ୍ଦ କରୁ' ଏହି ଘୋଷଣା କରି ଆସୁଥିଲେ। ପରନ୍ତୁ ନିଜ ରକ୍ଷାର ପ୍ରବନ୍ଧ ଭଲ ଭାବେ ରଖନ୍ତି, ପରନ୍ତୁ ହିନ୍ଦୁସ୍ତାନୀ ଶାସନ ମଧ୍ୟରେ କେବଳ ଦେଶର ଲୋକଙ୍କୁ ଦବାଇ ରଖିବା ଅଧିକାର ମଧ୍ୟ ମାନିବା ଯାଏଁ ପ୍ରୟୋଗକୁ ସୀମିତ ଥିଲା। ନିଶସ୍ତ୍ର ଲୋକଙ୍କୁ ଗୋଟିଏ ଲାଠି ଦ୍ୱାରା କେହି ମଧ୍ୟ ମାରିପାରିବ, ପରନ୍ତୁ ହତିଆର ଥିବାମାନଙ୍କ ସହ ସାମନା କରିବା ହେଲେ, ବୁଝାଯାଏ କ'ଣ କରାଯିବ। ଚୀନରୁ ଏଟମ୍ ମେସିନଗନ୍‌ର ସାମନା କେମିତି ହେବ। ସେଥିପାଇଁ ଅଳ୍ପ ଦିନ ମଧ୍ୟରେ ଚୀନ ଭାରତ ବର୍ଷକୁ ବହୁତ କ୍ଷତି ପହଞ୍ଚାଇଲା, ୮-୧୦ ହଜାର ଫୌଜିଙ୍କୁ ମାରି ଦେଲା। ନେହେରୁଜୀ ଅପିଲ୍ କଲେ ତୁରନ୍ତ ବର୍ତ୍ତାନିୟା ଓ ଆମେରିକା ଅସ୍ତ୍ରଶସ୍ତ୍ର ପଠାଇଦେଲେ ସୁବିଧା ମଧ୍ୟ କରିଦେଲେ। ନେଫାର ଯୁଦ୍ଧ ସମୟରେ ଭାରତୀୟ ଫୌଜଙ୍କୁ ବହୁତ କ୍ଷତି ହୋଇଥିଲା ଓ  ବଡ଼ ବଡ଼ ଅଞ୍ଚଳକୁ ମାଡ଼ି ବସି ଅଧିକାର କରିଲା, ପରନ୍ତୁ

ଲଦାଖ ଯୁଦ୍ଧରେ ଭାରତୀୟ ସୈନ୍ୟ ବିଶେଷଭାବେ ଶିଖ ଫୌଜ ଦାଉ ସାଧି ଦେଲେ। ନେଫାର ପ୍ରତିଶୋଧ ନେଲେ। ଚୀନ ପୂରା ବଳ ପ୍ରୟୋଗ କରି ମଧ୍ୟ ଲଦାଖ୍‌ର ଉଡ଼ାଜାହାଜ ପଡ଼ିଆକୁ ଅଧିକାର କରିପାରିଲା ନାହିଁ। ଯୁଦ୍ଧ ବନ୍ଦ ହୋଇଗଲା ଓ ଚୀନ ନିଜେ ନିଜେ ପଛକୁ ହଟିଗଲା। ଚୀନ ଭାରତବର୍ଷକୁ ଜାଗ୍ରତ କରାଇ ଦେଲା, ଦୁଇ- ତିନି ବର୍ଷ ମଧ୍ୟରେ ଭାରତ ବର୍ଷ ବହୁତ ଶକ୍ତିଶାଳୀ ହୋଇଗଲା ଓ ହୁସିଆର ହୋଇ ସଜାଗ ହୋଇ ରହିଲା। ପାକିସ୍ତାନ ସରହଦ ଠାରେ ଦୁଷ୍ଟତା କରି ଚାଲିଥିଲା। ସେଥିଯୋଗୁଁ ଦେଶର ଏହି ପରିସ୍ଥିତି ଓ ଶିଖ ଫୌଜ ଦେଶର ରକ୍ଷା ସକାଶେ ଏହିପରି ଜାଗ୍ରତ ଥିଲେ, ଯେମିତି ଦେଶବାସୀଙ୍କୁ ହେବା ଉଚିତ। ଚୀନ ଯୁଦ୍ଧ ସମୟରେ ଶିଖମାନଙ୍କୁ ବିନା କାରଣରେ ସନ୍ଦେହ କରାଯାଉଥିଲା। ଏମାନେ ଦେଶର ହିତକାଂକ୍ଷୀ ନୁହନ୍ତି ଦେଶ ବିରୋଧରେ ବହୁ ଦୂରକୁ ଚାଲି ଯାଇଛନ୍ତି।

**ସନ୍ଥଜୀଙ୍କ ବ୍ରତ ରଖିବା -**

୧୯୬୫ ମସିହା ବେଳେ ସନ୍ଥଜୀ ପୁଣି ବ୍ରତ ରଖି ୧୫ ଦିନ ପରେ ଜଳି ମରିବା ପାଇଁ ଘୋଷଣା କରିଦେଲେ। ସେପ୍ଟେମ୍ବର ୨୫ ତାରିଖ ଦିନ ସନ୍ଥଜୀ ଜଳିବା ଘୋଷଣା କରିଦେଲେ ଓ ଶ୍ରୀ ଅକାଳ ତଖ୍‌ତଜୀ ସହିତ ଲାଗି ରହିଥିବା ଛାତ ଉପରେ ଅଗ୍ନି କୁଣ୍ଡ ତିଆରି କରାଗଲା, ଯେଉଁଠାରେ ସେ ଜଳିବେ, କିନ୍ତୁ ସେହି ଦିନ ପାକିସ୍ତାନ କାଶ୍ମୀର ଯୁଦ୍ଧ ଆରମ୍ଭ ହୋଇଗଲା। ୬ ସେପ୍ଟେମ୍ବର ଦିନ ଭାରତୀୟ ସେନାବାହିନୀ ସୀମା ଠାରେ ଯୁଦ୍ଧ ଲଢ଼ିଲେ ଓ ଖବ୍ ଯୁଦ୍ଧ ହୋଇଥିଲା।

ଯୁଦ୍ଧ ଚାଲିବା ଦେଖି ସନ୍ଥଜୀ ଏହି ଅପିଲ୍ ବନ୍ଦ କରାଇଲେ। ସେତେବେଳେ ଦେଶର ପ୍ରଧାନମନ୍ତ୍ରୀ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ଥିଲେ। ସେଥିପାଇଁ ଦେଶର ନେତାମାନେ ଅପିଲ୍ କରିଲେ କି ସନ୍ଥ ମହାଶୟଙ୍କ ଦ୍ୱାରା ଯଦି ଦେଶ ଉଦ୍ଧାର ହେବ, ତା'ହେଲେ ଆପଣଙ୍କ ରାଜ୍ୟ ମଧ୍ୟ ହୋଇଯିବ। ପରନ୍ତୁ ଦେଶ ଯଦି ପର ଅଧୀନରେ ଚାଲିଯିବ, ତା'ହେଲେ ବରବାଦ ହୋଇଯିବ। ସେତବେଳେ ଆପଣଙ୍କୁ ଦେଶ କିଏ ଦେବ ଓ କିଏ କରିବ, ପରନ୍ତୁ ସନ୍ଥଜୀ ମାନି ନ ଥିଲେ। ଦେଶର ସୈନ୍ୟବାହିନୀର ଜେନେରାଲ ଶିଖ ଥିଲେ ସେ ସ୍ୱୟଂ ଆସି କହିଲେ ସନ୍ଥଜୀ ଏହି ଅନଶନ ତ୍ୟାଗ କର ଓ ସେତେବେଳେ ଗୃହମନ୍ତ୍ରୀ ସମସ୍ତେ ପଞ୍ଜାବ ରାଜ୍ୟର ବିରୋଧୀ ହୋଇଥିଲେ।(ଗୃହମନ୍ତ୍ରୀ ଯେତେଜଣ ହୋଇଥିଲେ।) ଶ୍ରୀ ନନ୍ଦାଜୀ ମଧ୍ୟ ଅପିଲ୍

କରିଲେ ସନ୍ଥଜୀ ଅନଶନ ତ୍ୟାଗ କରନ୍ତୁ । ସନ୍ଥଜୀ ବ୍ରତ ଭଙ୍ଗ କରିଦେଲେ । ସେହି ଅଗ୍ନି କୁଣ୍ଡ ବ୍ୟବହାର ହୋଇନଥିବା ଯୋଗୁଁ ତାହା ଧ୍ୱସ୍ତ କରିବା ଉଚିତ ଥିଲା; କିନ୍ତୁ ତାହା ସେହିପରି ଥିଲା ଓ ତାହା ଉପରେ ଲେଖା ହୋଇ ଥିଲା କି ସନ୍ଥଜୀ ଏହି ଅଗ୍ନିକୁଣ୍ଡରେ ଆହୁତି ଦେବେ ।

## ପଞ୍ଜାବ ସୁବାରୁ ରାଜ୍ୟ ହୋଇଗଲା

ଯୁଦ୍ଧ ସମାପ୍ତ ହୋଇଗଲା । କିଛି ଦିନର ଯୁଦ୍ଧରେ ବହୁତ କ୍ଷୟ କ୍ଷତି ହୋଇଗଲା । ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ଓ ଅନ୍ୟାନ୍ୟ ଉଚ୍ଚ ପଦସ୍ଥ ନେତା (ଶ୍ରୀ ନନ୍ଦାଜୀଙ୍କ ସମେତ) ସମସ୍ତେ ଭାବୁଥିଲେ ପଞ୍ଜାବୀ ସୁବା ରାଜ୍ୟ ହୋଇଯିବା ଠିକ୍ ହେବ । ବାହାଦୁର ଓ ଦେଶ ଭକ୍ତ ଶିଖ ଜାତିର ଏହି ଲମ୍ବା ସମୟର ଦାବି ପୂରା କରାଯାଉ । ପରନ୍ତୁ ଜନସଂଘ ସମ୍ପର୍କୀୟ କଂଗ୍ରେସୀ ଓ ତାହାର ନେତାମାନେ ଏହା ସହ୍ୟ କରିପାରି ନ ଥିଲେ । ପଞ୍ଜାବୀ ଓ ହିନ୍ଦୀ ଆଞ୍ଚଳିକ ସମ୍ମୁଖରେ ୧୯୫୪ ସମୟ ଆସିଯାଇଥିଲା ଓ ପଞ୍ଜାବୀ ଆଞ୍ଚଳିକ ପୂର୍ବରୁ ପଞ୍ଜାବୀ ରାଜ୍ୟ ହୋଇଯିବା ଉଚିତ, ପରନ୍ତୁ ଚାଲାକ ଓ କୂଟପନ୍ଥୀ ସାମ୍ପ୍ରଦାୟିକମାନଙ୍କୁ ଜନସିଂହମାନେ ବିରୋଧ କରୁଥିଲେ । ଏହି ସମ୍ବନ୍ଧିତ ଅଖିଳ ଭାରତୀୟ କଂଗ୍ରେସର ପ୍ରଧାନ ଶ୍ରୀ କାମରାଜଙ୍କ କୋଠି ଉପରେ ଆକ୍ରମଣ ଓ ପଥର ଫୋପାଡ଼ି ପ୍ରଦର୍ଶନ କରାଯାଇଥିଲା । ନନ୍ଦାଜୀ ଗୃହମନ୍ତ୍ରୀ ଥିଲେ । ସେ ଦେଖିଲେ କି କଂଗ୍ରେସ ଉଚ୍ଚପଦସ୍ଥ ବର୍ତ୍ତମାନ ରାଜ୍ୟ ବନାଇବେ । ସେ ଗୋଟିଏ ସୂକ୍ଷ୍ମ ବୁଦ୍ଧି ବାହାର କରିଲେ । ମାର୍ଚ୍ଚ ୧୯, ୧୯୬୬ ଦିନ ପଞ୍ଜାବୀ ରାଜ୍ୟ ପ୍ରସ୍ତାବ ସକାଶେ ଅଖିଳ ଭାରତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରସ୍ତାବ ପାସ୍ କରାଇ ଅଗ୍ରସର କରାଇଦେଲେ । ଏହି ପ୍ରସ୍ତାବ ଯୋଗୁଁ ଜନସଂଘ ଦିଲ୍ଲୀଠାରେ ଓ ପଞ୍ଜାବ ଅମୃତସର, ଜଳନ୍ଧର, ଲୁଧିଆନା ଇତ୍ୟାଦି ସହରଠାରେ ଆନ୍ଦୋଳନ କରିଲେ କି ଯେମିତି ସରକାର ନାହିଁ । ନିଆଁ ଜଳାଗଲା, ଦୋକାନ ଭଙ୍ଗାରୁଜା, ଲୁଟିବା ଓ ସ୍ଥାନ ସ୍ଥାନରେ ଶିଖମାନଙ୍କ ଉପରେ ଓ ଗୁରୁଦ୍ୱାର ଉପରେ ଆକ୍ରୋଷିତ ହୋଇଗଲେ ।

ଦ୍ୱିତୀୟ ତରଫରେ ପଞ୍ଜାବୀ ରାଜ୍ୟର ଦାବି ଓ ଅଧିକାର ବିରୁଦ୍ଧ ଦୁଇ ପକ୍ଷରେ ଶୁଣାଣି ପୂର୍ବରୁ କଂଗ୍ରେସ ନେତା ଦେଇ ଆସୁଥିଲେ, ପରନ୍ତୁ ପଞ୍ଜାବୀ ସୁବାର ବିରୋଧୀମାନଙ୍କ ଏତେ ଆଶା ନ ଥିଲା କି କଂଗ୍ରେସ କାର୍ଯ୍ୟକାରୀ କମିଟୀ

ଏତେ ଶୀଘ୍ର ଏମିତି ପ୍ରସ୍ତାବ ପାସ୍ କରାଇଦେବ, ପରନ୍ତୁ ଯେମିତି ଏହି ପ୍ରସ୍ତାବ ପାସ ହେଲା ପଞ୍ଜାବୀ ରାଜ୍ୟ ବିରୋଧରେ ନିଆଁ ଲଗାଇ ଦେଲେ। ପଞ୍ଜାବୀ ରାଜ୍ୟର ବିରୋଧୀ ଆର୍ଯ୍ୟ ସମାଜ ଓ ଜନସଂଘୀ ବହୁତ ବିରୋଧ କରୁଥିଲେ। ଯେମିତିକି ପଞ୍ଜାବୀ ଭାଷା ଓ ପଞ୍ଜାବୀ ରାଜ୍ୟ ବିରୋଧରେ ସେମାନେ ଶପଥ ନେଇଛନ୍ତି। ସେମାନେ ପ୍ରଚାର ଆରମ୍ଭ କରିଲେ କି ଯଦି ପଞ୍ଜାବୀ ଭାଷା ଲାଗୁ ହୋଇଯିବ ତାହାଲେ ହିନ୍ଦୁ ଶିଖ ପ୍ରଚାରରେ ପ୍ରଭାବିତ ହୋଇ ଗ୍ରହଣ କରି ତାହାର ପଦାସରଣ ହୋଇଯିବେ, କାରଣ ପଞ୍ଜାବୀ ଭାଷା (ଗୁରୁମୁଖୀ ଅକ୍ଷର ଅଟେ) ଶିଖଙ୍କ ଇତିହାସ, ଶିଖଙ୍କ ସଭ୍ୟତା, ଶିଖ ପରମ୍ପରା ଅଧିକ ପ୍ରଚାର ଅଛି। ସେଥିଯୋଗୁଁ ଏହା କାର୍ଯ୍ୟକାରୀ ହେବାଦ୍ୱାରା ହିନ୍ଦୀ ଓ ହିନ୍ଦୁ ପ୍ରତି କ୍ଷତି ହୋଇଯିବ। ଏହାର ପ୍ରଚାର ଦ୍ୱାରା ସରକାର ପଞ୍ଜାବୀ ବିରୋଧୀ ହେବାଯୋଗୁଁ ପରିସ୍ଥିତି ଏମିତି ହୋଇଥିଲା କି ସରକାରର ବିଭାଗୀୟ ଉଚ୍ଚପଦସ୍ଥ କର୍ମଚାରୀ ଓ ପଞ୍ଜାବୀ ବିରୋଧୀମାନଙ୍କ ବହୁମତ ଥିଲା। ହିନ୍ଦୁ ବହୁମତ ଯୋଗୁଁ ଅଫିସରମାନଙ୍କ ମଧ୍ୟରେ ଅଧିକ ଓ ନିମ୍ନସ୍ତରରେ ମଧ୍ୟ ଅଧିକ ହୋଇଥିବା ଯୋଗୁଁ ଅଧିକ ସରକାରୀ ଯାନ୍ତ୍ରିକ ପଞ୍ଜାବୀ ବିରୋଧୀ ଭାବନା ସହ ସମ୍ପୃକ୍ତ ଥିଲେ ଓ ଦ୍ୱିତୀୟରେ ହିନ୍ଦୁ ଖବରକାଗଜର ବହୁମତ ଏହି ସାମ୍ପ୍ରଦାୟିକ ପ୍ରଚାରରେ ବନ୍ୟାକୁ ଆହୁରି ଅଗ୍ରଗାମୀ କରାଇବା ପାଇଁ ସାହାଯ୍ୟ କରୁଥିଲା। ସେଥିଯୋଗୁଁ କଂଗ୍ରେସ କାର୍ଯ୍ୟକାରୀ କମିଟୀର ପ୍ରସ୍ତାବ ପାସ ହେଲେ କଣ ହେବ ? ଜନସଂଘ ଓ ଆର୍ଯ୍ୟସମାଜ ଖୋଲାଖୋଲି ଗଣ୍ଡଗୋଳ କରୁଥିଲେ। ନିଆଁ ଜଳାଇବା ଓ ସରକାରୀ କାର୍ଯ୍ୟ ବାଧା ଦେବା, କଲେଜ, ସ୍କୁଲ ଓ ହସପିଟାଲ ସବୁଆଡ଼େ ଗଣ୍ଡଗୋଳ କରି ଚାଲିଲେ। ବହୁ ସମ୍ପତି ପୋଲିସ ଅଫିସରଙ୍କ ଦ୍ୱାରା କିଛି ସାହାଯ୍ୟ ନ ଥିଲା ଓ ସେମାନେ ନିଆଁ ଜଳାଇବା ଓ ସରକାରୀ ବସ ଜଳାଇବା ସହ ସଫଳ ହୋଇଗଲେ। ଯେଉଁ ଅଳ୍ପସଂଖ୍ୟକ ପୋଲିସ ଅଫିସରମାନେ(ଶିଖ ଅଫିସର) ଏହା ବିରୋଧରେ ନିଜର ଡ୍ୟୁଟି ଅନୁସାରେ କର୍ତ୍ତବ୍ୟ କରିଥିଲେ, ସେଥିଯୋଗୁଁ ସେମାନଙ୍କ ବିରୋଧରେ ଅତ୍ୟାଚାର କରିବା ଘଟଣା ଯୋଡ଼ି ଅତ୍ୟାଚାରୀର ସାର୍ଟିଫିକେଟ ଦିଆ ଯାଇଥିଲା, କାରଣ ପ୍ରଚାର କରିବା ଯାନ୍ତ୍ରିକ (ଖବରକାଗଜ) ମଧ୍ୟ ଅଧିକ ଭାବେ ପଞ୍ଜାବୀ ବିରୋଧୀ ଲୋକମାନେ ହିଁ ଥିଲେ। ପୁଣି ଗଣ୍ଡଗୋଳ କେଉଁଯାଏ ବଢ଼ିବ ? ଏହାର ଗୋଟିଏ ଉଦାହରଣ ଯଥେଷ୍ଟ ଥିଲା କି ରୋହତକ ଭଳି ସହରଠାରେ ତିନି ଜଣ କଂଗ୍ରେସ

କର୍ମଚାରୀ ଜୀବନ୍ତ ଦଗ୍ଧ କରାଗଲା ଓ ତାଙ୍କ ବିରୋଧରେ କିଛି ହୋଇ ନ ଥିଲା (କିଛି ପ୍ରମାଣ ମିଳି ନ ଥିଲା।) କିନ୍ତୁ ପରେ ଜଣେ ଜନସଂଘୀ ବିଧାୟକ (ସେ ସାମ୍ପ୍ରଦାୟିକ ଓ ଦୁଷ୍ଟତା ଇଂରାଜୀ ପ୍ରଚାର କରିବା ନେତା ଥିଲେ)ଙ୍କ ବିରୁଦ୍ଧରେ ପୋଲିସ୍‌ର ବ୍ୟବହାର ଯୋଗୁଁ ପୋଲିସ ଅଫିସର ଲକ୍ଷ୍ୟ ହୋଇଗଲେ, ତାହା ସ୍ପଷ୍ଟ ହୋଇଗଲା। ଏହି କାରଣ ଥିଲା କି ଜଲନ୍ଧର, ଅମୃତସର, ଲଧିଆନା ଇତ୍ୟାଦି ସ୍ଥାନରେ ପଞ୍ଜାବୀ ରାଜ୍ୟ ବିରୋଧରେ ଏହିପରି ଭାବେ ବ୍ୟବହାର ସୃଷ୍ଟି କରାଗଲା। ଏହିପରି ଭାବେ କରିବା ମାନେ ଲୋକଙ୍କ ଦ୍ୱାରା କରାଇ ପୁଣି କହିଲେ। ଏହିପରି ଭାବେ ହେବା ଉଚିତ ନ ଥିଲା। ପଞ୍ଜାବୀ ରାଜ୍ୟର ହକ ପ୍ରାପ୍ତ ଅଧିକାର ସକାଶେ କମିଶନ ନିଯୁକ୍ତି କରାଗଲା। ତାହାର ନିଷ୍ପତ୍ତି ଅନୁଯାୟୀ ପଞ୍ଜାବୀ ରାଜ୍ୟର ମସ୍ତକ ଚଣ୍ଡୀଗଡ଼ ଓ ହୃଦୟ ଭାଖଡ଼ା ଡେମ ଇତ୍ୟାଦି ବ୍ୟବହାର କରି ଅନ୍ୟ ଭାଗ ପଞ୍ଜାବୀ ରାଜ୍ୟର ଭାଗରେ ଆସିଲା। ଏହା ବିରୋଧରେ ଆନ୍ଦୋଳନ ଉଠିଲା, କେନ୍ଦ୍ର ସରକାର ଏହି କ୍ଷେତ୍ରକୁ ସିଧା ଜନଅଧିକାରରେ ରଖିବା ପାଇଁ ଘୋଷଣା କରିଲା।

### ଶ୍ରୀ ଗୋବିନ୍ଦ ସିଂହଜୀଙ୍କ ଶସ୍ତ୍ର

ଯେତବେଳେ ପଞ୍ଜାବ ଇଂରାଜୀଙ୍କ ଅଧିନରେ ଥିଲା, ସେତେବେଳେ ଲାହୋର ଦୁର୍ଗଠାରେ ଭଣ୍ଡାର ଘର ମଧ୍ୟରେ, ଯେଉଁଠାରେ କୋହିନୂର ହୀରା ଓ ଧନସମ୍ପତ୍ତି ଉପରେ ଇଂରେଜ ଅଧିକାର କରି ରହିଥିଲେ, ସେଠାରେ ଗୁରୁ ଗୋବିନ୍ଦ ସିଂହଜୀଙ୍କ ଅସ୍ତ୍ର ଶସ୍ତ୍ର ମଧ୍ୟ ରଖାଯାଇଥିଲା, ଇଂରେଜମାନେ ସେ ସବୁ ଇଂଲଣ୍ଡ ନେଲେ ଓ ସେଠାରେ ଭଣ୍ଡାର ଘରେ ସଜାଇ ରଖିଥିଲେ। ଯେତେବେଳେ ଦେଶ ସ୍ୱାଧୀନ ହେଲା, ତାହା ପରେ ଏହି ଅସ୍ତ୍ରଶସ୍ତ୍ର ଦାବି କରାଯାଉଥିଲା କି ଲଣ୍ଡନଠାରୁ ତାହା ଫେରାଇ ଅଣାଯାଉ। ପରନ୍ତୁ ସରକାରଙ୍କ ଧ୍ୟାନ ସେଥିପ୍ରତି ନ ଥିଲା ଓ ଅଶାନ୍ତି ବଢ଼ିଯିବ ଭାବି ହତିଆର ପ୍ରୟୋଗ ବିରୁଦ୍ଧ ଥିଲା, ପରନ୍ତୁ ଚୀନ ଓ ପାକିସ୍ତାନ ଯୁଦ୍ଧ ପରେ ଭାରତ ଅନୁଭବ କରିଲା କି ଶସ୍ତ୍ର ଅତି ଆବଶ୍ୟକ ଅଟେ। ଶ୍ରୀ ଗୁରୁ ଗୋବିନ୍ଦ ସିଂହ ମହାରାଜ ଏହା ସ୍ପଷ୍ଟ କାହିଁକି କରିଥିଲେ-

ଅସି କ୍ରିପାନ ଖଣ୍ଡୋ ଖଡ଼ଗ , ତୁବକ ତବର ଅରୁ ତୀର।।
ସୈଫ ସିରୋହୀ ସୈହଥୀ, ୟହୀ ହମାରେ ପୀର

ସବୁ ପ୍ରକାର ଶସ୍ତ୍ରକୁ ସତ୍କାର କରାଯାଉଛି-



ଶ୍ରୀଗୁରୁ ଗୋବିନ୍ଦ ସିଂହ ଜୀଙ୍କର ଆଂଶିକ ଅସ୍ତ୍ରଶସ୍ତ୍ର



ଶ୍ରୀଗୁରୁ ଗୋବିନ୍ଦ ସିଂହ ଜୀଙ୍କର୍ ଆଂଶିକ ଅସ୍ତ୍ରଶସ୍ତ୍ର

ଜିତେ ଶସ୍ତ୍ର ନାମଂ ।। ନମସ୍କାର ତାମଂ
ଜିତେ ଅସତ୍ର ଭେୟଂ ।। ନମସ୍କାର ତେୟଂ

ଗୁରୁ ପ୍ରତାପ ସୂରୁଯ ଗ୍ରନ୍ଥ ମଧ୍ୟରେ ଚୂଡ଼ାମଣି ଭାଇ ସନ୍ତୋଷ (ସ) ସିଂହଜୀ ଉଲ୍ଲେଖିତ କରିଛନ୍ତି।

ଶସ୍ତ୍ରନୁ କେ ଅଧୀନ ହୈ ରାଜ
ଯୋ ନା ଧରହ ତିସ ବିଗରହି କାଜ।।

ସେଥିଯୋଗୁଁ ଚୀନ ଯୁଦ୍ଧ ପରେ ଆମର ସରକାର ଇଂରାଜୀ ସରକାରଙ୍କ ଠାରୁ ଦାବି କରିବା ଆରମ୍ଭ କରିଦେଲା କି ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀଙ୍କୁ (କଲଗୀ) ପଞ୍ଚ ଶସ୍ତ୍ର ଓ ତାଙ୍କର ପବିତ୍ର ହତିଆର ଫେରାଇ ଦିଆଯାଉ। ସେଥିଯୋଗୁଁ ଏହି ଦାବି ଲାଗିରହିଲା ଓ ବିଶେଷକରି ପାକିସ୍ତାନ ଯୁଦ୍ଧ ପରେ ଶ୍ରୀ ଶାସ୍ତ୍ରୀ ଭାରତର ପ୍ରଧାନମନ୍ତ୍ରିଜୀଙ୍କ ତରଫରୁ ଏହି ଦାବି ବହୁତ ଜୋର ହୋଇଥିଲା।

ଶେଷରେ ଇଂରାଜୀ ସରକାର ଏହି ଦାବି ମାନିନେଲେ ଓ ସେମାନେ ଏହି ପବିତ୍ର ଶସ୍ତ୍ର ଦେବାପାଇଁ ରାଜି ହୋଇଗଲେ। ପରନ୍ତୁ ଶ୍ରୀ ଗୋବିନ୍ଦ ସିଂହଜୀଙ୍କ (କଲଗୀ) ପଞ୍ଚଶସ୍ତ୍ର ବିଷୟରେ ପଚରାଗଲା ଓ ତାହାର ତଦନ୍ତ କରାଗଲା। ସେଥିଯୋଗୁଁ ଏହି ଶସ୍ତ୍ର ଉଡ଼ାଜାହାଜ ଦ୍ୱାରା ସରକାରୀ କାନୁନ ସହ ଭାରତ ପଠାଗଲା ଓ ଦିଲ୍ଲୀଠାରେ ଜାନୁୟାରୀ ୦୧ - ୧୯୬୬ ମସିହା ଦିନ ଉଡ଼ାଜାହାଜ ପଡ଼ିଆଠାରେ ପହଞ୍ଚିଲା। ସନ୍ଦେହ ଭାରତୀୟ ନେତା, କେତେ ଜଣ ଦୁର୍ବଳ ମନୋଭାବ ତଳକୁ ଆସି ଏହି ଅସ୍ତ୍ରଶସ୍ତ୍ରର ଖୁବ୍ ଭଲ ନଜରରେ ଦେଖି ନ ଥିଲେ, ପରନ୍ତୁ ଚୀନ ଓ ପାକିସ୍ତାନ ଯୁଦ୍ଧ ପରେ ସ୍ୱର୍ଗୀୟ ଶ୍ରୀ ଶାସ୍ତ୍ରିଜୀ ଆମର ରାଷ୍ଟ୍ରପତି ଓ ଅନ୍ୟ ଭାରତୀୟଙ୍କୁ ଖବର ମିଳିଲା କି ଏହି ଅସ୍ତ୍ର ଶସ୍ତ୍ରର କେତେ ମୂଲ୍ୟ, ପବିତ୍ରତା ମହାନତା ଅଟେ। ଶ୍ରୀ ଶାସ୍ତ୍ରିଜୀ ଉକ୍ତ ବିମାନ ବନ୍ଦରଠାରେ ସ୍ପଷ୍ଟ ଶବ୍ଦରେ ଶସ୍ତ୍ର ସବୁର ସ୍ୱାଗତ କରିବା ବେଳେ, ଶ୍ରୀ ରାମଚନ୍ଦ୍ରଜୀ ମହାରାଜ, ଶ୍ରୀ କୃଷ୍ଣ ଭଗବାନ୍ ରାଣା ପ୍ରତାପ, ଶିବାଜୀ, ଶ୍ରୀ ଗୁରୁ ହରଗୋବିନ୍ଦ ସାହିବ ଓ ଦଶମେଶ ପିତାଙ୍କ ତରଫରୁ ଶସ୍ତ୍ର ର ପ୍ରୟୋଗ ଓ ପୂଜା କରିବା ବିଚାର ପ୍ରତି ସତ୍କାର କରିଥିଲେ ।

ଗୁରୁଜୀ ଆରମ୍ଭରୁ ନିଜର ବିଚାର ସ୍ପଷ୍ଟ ଶବ୍ଦରେ କହିଥିଲେ -

ଦେଗୋ ତେଗୋ ଫତହି ନୁସରତ ବେଦ ରଂଗ ।।
ୟାଫତି ଅଜ ନାନକ ଗୁରୁ ଗୋବିନ୍ଦ ସିଂହ।।

ପିତା ଗୁରୁଜୀ କୃପାଣକୁ ଦେବୀ ଚଣ୍ଡିକା, ଦୁଷ୍ଟ ଦମଣୀ କହି ଦର୍ଶାଇଥିଲେ -

ପ୍ରଗଟ ଚଣ୍ଡକା ଖଣ୍ଡକା ଦୁଷ୍ଟ ଦମଣୀ ।।
ଡରେ ଦୁଷ୍ଟ ଦୋଖି ଇହେ ଜବାଲ ଜମନୀ ।।
ରହେ ମ୍ୟାନ ମଧଂ ସମୈ ଦୁଷ୍ଟ ଘାବୈ ।।
ଇହୀ ହୈ ଜବାଲା ଭବାନୀ କହାବୈ ।।

ଲଣ୍ଡନଠାରୁ ଏହି ଶସ୍ତ୍ର ପହଞ୍ଚିଲା -

୧- ଶମଶୀର କା ସିପର: (ତଲବାର ଓ ଡାଲ) ଏହା ମହାରାଜଙ୍କ ତହ୍ନ ୧୮୨୩ ଖ୍ରୀ. ବେଳେ ପେଶାବରର ଭାଇ ଦୟା ସିଂହଜୀ ଙ୍କୁ ଭେଟ କରାଇଥିଲେ ଓ ମହାରାଜା ରଣଜିତ ସିଂହ ପୂର୍ଣ୍ଣ ସତ୍କାର ସହ ଗ୍ରହଣ କରିଥିଲେ ଭାଇ ଦୟା ସିଂହଜୀଙ୍କୁ ପୁରସ୍କାରସ୍ୱରୁପ ଖିଲତ ଓ ଗୋଟିଏ କୂଅର ଜମିଦାରୀ ଦାନ କରିଥିଲେ।

୨- ଦାହ- ବେ ଆହିନୀ- ସାହିବମାନଙ୍କୁ ପବିତ୍ର ସ୍ମରଣ ଜଣେ ପାହାଡ଼ୀ ୧୮୨୩ ଖ୍ରୀ. ମହାରାଜା ରଣଜିତ ସିଂହ ସାହିବଙ୍କୁ ଭେଟ ପ୍ରଦାନ କରି ପୁରସ୍କାର ପ୍ରାପ୍ତ କରିଥିଲା।

୩- ଚକ୍କର- ଏ- ଆହିନୀ ସାହିବଙ୍କୁ ଏହି ଲାହୋରରେ ଚକ୍ର ଭଳି ସୁନା ପାଣି ଚଢ଼ାଯାଇଥିଲା। ମହାରାଜା ରଣଜିତ ସିଂହଙ୍କୁ ଜଣେ ଅକାଳୀ ସିଂହ (ନିହଙ୍ଗ) ଅଟକଠାରେ ଭେଟ କରାଇଥିଲେ।

୪- ଶମଶୀର ତେଗ ସାହିବଙ୍କୁ ଏହା ଧନ୍ୟବାଦ ସ୍ମରଣ ସ୍ୱରୂପ ଜଣେ ବାବା ଭାରତୀଙ୍କ ପାଖରେ ଥିଲେ, ଯାହାକି ମହାରାଜା ରଣଜିତ ସିଂହଜୀ ୧୮୨୧ ଖ୍ରୀ. ସମୟ ପ୍ରାପ୍ତ କରି ନିଜର ଭଣ୍ଡାରଠାରେ ରଖାଯାଇଥିଲା।

୫- କଲଗୀ-ଏ-କଚ: ଏହି ସାହିବଙ୍କୁ କାଚ ଯୁକ୍ତ ଥିଲା କଲଗୀ ଯାହାକୁ ସାହିବ ଶ୍ରୀ ଗୁରୁ ନାନକ ଦେବଜୀଙ୍କ ବଂଶଧର ଜଣେ ବେଦୀ କାଚ (ଶଶୀ)ସାହିବ ଜାଦାଙ୍କ ନିକଟ ବୈରୋବାଲଠାରେ ଥିଲା, ୧୮୨୪ ଖ୍ରୀ. ସମୟରେ ମହାରାଜା ସାହିବଙ୍କୁ ଦିଆଯାଇଥିଲା।

୬- ନେଜା: ଦଶମେଶ ପିତାଙ୍କ ପବିତ୍ର ନେଜା ଅବଚଳ ନଗର ସ୍ଥିତ ସିଂହମାନେ ମହାରାଜା ରଣଜିତ ସିଂହଙ୍କୁ ଭେଟ କରାଇଥିଲେ।

୭- ବର୍ଚ୍ଛୀ: ସାହିବଙ୍କ ଏହା ପବିତ୍ର ବର୍ଚ୍ଛୀ କମଲାଗଡ଼ (ମଣ୍ଡୀ)ର ରାଜାଙ୍କ ପାଖରେ ଥିଲା, ଯିଏକି ଏହାର ନିତ୍ୟ ପୂଜା କରୁଥିଲେ। ଏହି ପବିତ୍ର ସ୍ମରଣୀୟ

ମହାରାଜା ରଣଜିତ ସିଂହଙ୍କ ଫୌଜମାନେ ଇଂରାଜୀ ଜେନେରାଲ ବଁତୁରାଙ୍କୁ କମଳାଗଡର ଦୁର୍ଗ ବିଜୟ ପ୍ରାପ୍ତ ସମୟରେ ମିଳିଥିଲା, ତାହା ସେ କୁମାର ନୌନିହାଲ ସିଂହଙ୍କୁ ୧୮୩୯ ଖ୍ରୀ. ଭେଟ କରାଇଥିଲେ।

୮- ବର୍ଚ୍ଛା: ସାହିବା ଏହା ପବିତ୍ର ବର୍ଚ୍ଛା ଖାଲସା ଫୌଜମାନେ ୧୮୪୩ ସମୟରେ ଜମ୍ମୁ ବିଜୟ ପ୍ରାପ୍ତ ସମୟରେ ପ୍ରାପ୍ତ କରିଥିଲେ ଓ ପୂରା ସେନାବାହିନୀ ଏହାର ସତ୍କାର ଓ ପୂଜା କରୁଥିଲେ।

ଏହି ପବିତ୍ର ଶସ୍ତ୍ର ସମ୍ବନ୍ଧିତ ଉପରୋକ୍ତ ଇତିହାସ ରାୟ ମିସର ମେଘରାଜ ଉକ୍ତ ସମ୍ପର୍କୀୟ କାର୍ଯ୍ୟ ସମ୍ପୃକ୍ତ ଯିଏକି ଭଣ୍ଡାରଠାରେ ଏହି ଶସ୍ତ୍ର ପଠାଇବା ସମୟରେ ୧୨ ତାରିଖ ନଭେମ୍ବର ୧୮୫୦ ଲିଖିତ ରୂପେ ସାଥିରେ ଯାଇଥିଲେ। ଏହି ମହାନ୍ ଐତିହାସିକ ସ୍ମରଣୀୟ ସହିତ ମହାରାଜା ରଣଜିତଙ୍କ ଗୋଟିଏ ସୁନ୍ଦର ସୁବର୍ଣ୍ଣ ଚୌକି ମଧ୍ୟ ଥିଲା। ଏହି ସମୂହ ବସ୍ତୁଗୁଡ଼ିକ ଗୋଟିଏ ବିଶେଷ ବାକ୍ସ ମଧ୍ୟରେ ବନ୍ଦ କରି ଲାହୋରର ଡେପୁଟୀ କମିଶନର ୨୩-୯-୧୮୫୧ ଦିନ ଜଣେ ଜମାଦାର, ୨ ଜଣ ହାବିଲଦାର ଓ କେତେଜଣ ସିପାହୀମାନଙ୍କୁ ଦାୟିତ୍ୱରେ ଅମ୍ବାଲା ପଠାଇଥିଲେ। ଲର୍ଡ ଡେଲହାଉସୀ ସେଥିରେ ସମ୍ପୃକ୍ତ ଥିଲେ। ପରେ ମହାରାଜା ରଣଜିତ ସିଂହଙ୍କ ଗୋଟିଏ ତଲବାର ଓ ସୁବର୍ଣ୍ଣ ଚୌକି କଲିକତାଠାରୁ ୫-୨-୧୮୫୩ ଦିନ ବୋସଫୋରସ ନାମକ ସମୁଦ୍ରୀ ଜାହାଜ ଦ୍ୱାରା ଇଂଲଣ୍ଡ ପଠାଇଦେଲେ ଓ ସାହିବାଙ୍କ ପବିତ୍ର ଶସ୍ତ୍ର ଲର୍ଡ ଡେଲହାଉସୀ ପାଖରେ ରହିଗଲା।

ଠିକ୍ ଏକ ଶତାବ୍ଦୀ ପରେ ଦେଶ ସ୍ୱାଧୀନ ଉପରାନ୍ତ ପଞ୍ଜାବ ସରକାରଙ୍କ ତରଫରୁ ଏହି ପବିତ୍ର ଶସ୍ତ୍ରକୁ ଦେଶକୁ ଫେରାଇ ଆଣିବା ଚେଷ୍ଟା ଆରମ୍ଭ କରିଲା। ଶ୍ରୀ ଏମ.ଏସ. ରଁଧାବା ଆଇ.ସି.ଏସ. ଯିଏ ପ୍ରଥମେ ଅମ୍ବାଲା ଡିଭିଜନର କମିଶନର ଥିଲେ, ସେ ଇଂଲଣ୍ଡ ଯାଇଥିଲେ। ନିଜର ଜଣେ ମିତ୍ର ମି. ଆର୍ଚ୍ଚରର ଘର ଭୁଲି ଏହି ଗଳିର ଅନ୍ୟ କାହାର ଘରେ ପହଞ୍ଚିଗଲେ। ଯେତେବେଳେ ତାଙ୍କୁ ସେହି ଘରେ ବସିବାପାଇଁ କହିଲେ, ସେତେବେଳେ ସେ ମହାରାଜା ରଣଜିତ ସିଂହଙ୍କ ବଂଶଧରର ଫଟୋ ଦେଖିଲେ, ତାହାପରେ ସେ ମି. ଆର୍ଚ୍ଚରର ଘର ଭୁଲି ଏହି ଗଳିର ଅନ୍ୟ କାହାର ଘରେ ପହଞ୍ଚିଗଲେ। ଯେତେବେଳେ ତାଙ୍କୁ ସେହି ଘରେ ବସିବା ପାଇଁ କହିଲେ, ସେତେବେଳେ ସେ ମହାରାଜାର ରଣଜିତ ସିଂହଙ୍କ ବଂଶଧରର ଫଟୋ ଦେଖିଲେ। ତାହାପରେ ସେ ମି. ଆର୍ଚ୍ଚରଙ୍କୁ ପଚାରିଲେ। ମିଷ୍ଟର ଆର୍ଚ୍ଚର ଏଥି

ସମ୍ପର୍କରେ ଖବର ଲଗାଇ ଉତ୍ତର ଦେବାପାଇଁ ବଚନ ଦେଲେ ଓ ତଦନ୍ତ କଲାପରେ ଏହି ପବିତ୍ର ଶସ୍ତ୍ରର ଖବର ମିଳିଲା । ଠିକ୍ ୧୩ ବର୍ଷର ଅକଥନୀୟ ଚେଷ୍ଟା ପରେ ଏହି ପବିତ୍ର ଶସ୍ତ୍ର ସ.କେବଲ ସିଂହ ଓ ସ. କବଲଜୀତ ସିଂହଜୀ ଯେଉଁମାନେ କି ଭାରତୀୟ ରାଷ୍ଟ୍ରଦୂତ ଇଂଲଣ୍ଡ ଅଫିସଠାରେ ନିଯୁକ୍ତ ଥିଲେ, ସେମାନଙ୍କ ଚେଷ୍ଟା ସହ ଲେଡି ଲଣ୍ଡସେ ଯିଏ ଲର୍ଡ ଡେଲହାଉସୀର ବଂଶଧର ଥିଲେ, ନିକଟରୁ ପ୍ରାପ୍ତ କରିବାପରେ ୧.୧.୧୯୬୬ ଦିନ ପୁନଃ ଦେଶକୁ ଫେରିଆସିଥିଲା । ଗୁରୁଦ୍ୱାରା ବଡ଼ୀ ଶିଖ ସଙ୍ଗତଠାରୁ ଆରମ୍ଭ ହୋଇଥିଲା ।

## ଗୁରୁଦ୍ୱାର ବାଘମରୀ କଲିକତାର ପରିସ୍ଥିତି

କୁହାଯାଇଛି କି ଏହି ଅଞ୍ଚଳଠାରେ ନୀଚ ଓ ଦୁଷ୍ଟ ମନୋଭାବ ଯୋଗୁଁ ନିର୍ଦ୍ଦିଷ୍ଟ ଭାବେ ସେଠାର ବିଧାୟକମାନଙ୍କ ତତ୍ତ୍ୱାବଧାନରେ ଗୁରୁଦ୍ୱାରର ଧନସମ୍ପତ୍ତି ଅଧିକାର କରିବା ଯୋଜନା ହୋଇଥିଲା, ତାହା ସଫଳ ହୋଇପାରିଲା ନାହିଁ । ଯେତେବେଳେ ବଦମାସ ଓ ଦୁଷ୍ଟ ଲୋକମାନେ ଗୁରୁଦ୍ୱାରକୁ ଆକ୍ରମଣ କରିଲେ, ସେବାକାରୀଙ୍କ ସଂଖ୍ୟା କମ ଥିଲା, ବହୁତ ଦିନ ଯାଏଁ ଭିତରକୁ ପ୍ରବେଶ କରିବାପାଇଁ ଦିଆଯାଇ ନ ଥିଲା । ସେମାନେ ବାହାରୁ ଇଟା, ପଥର ମାରିଚାଲିଲେ, ଭିତରେ ଅଳ୍ପସଂଖ୍ୟକ ସିଂହ ନିଜକୁ ବଞ୍ଚାଇ ରହିଲେ । କିନ୍ତୁ ସେମାନେ ନିଜର ପ୍ରାଣ ସମର୍ପି ଦେଇଥିଲେ ଓ କାହାକୁ ଭିତରେ ପଶିବାକୁ ଦେଇନଥିଲେ । ଏହିପରି ଭାବେ ସଫଳତା ପ୍ରାପ୍ତ କରିପାରିନଥିଲେ । ସେମାନେ ନିଜେ ପୋଲିସ ଡକାଇଲେ ଓ ପୋଲିସ ସେମାନଙ୍କୁ ସାହାଯ୍ୟ ପରିବର୍ତ୍ତେ ଭିତରେ ଘେରାଉ ହୋଇ ରହିଥିବା ସିଂହଙ୍କୁ ସାହଯ୍ୟ ନକରି ଭିତରେ ସିଂହମାନଙ୍କୁ ଗୁଳି ଚଳାଇଲେ । ସେମାନଙ୍କୁ ଆହତ କରି, କେତେକଙ୍କୁ ଶହୀଦ କରାଇ ଏହି ଭିଡ଼ ଭିତରକୁ ପଠାଇଦେଲେ । ଭିଡ଼ ଭିତରେ ପଶି ନିଆଁ ଲଗାଇଦେଲେ । ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କ ପ୍ରତି ଅନ୍ୟାୟ ଓ ଅନିଷ୍ଟ କରିଲେ । ଦୁଃଖର ବିଷୟ ଏହା ଥିଲା କି ପୋଲିସ ପାଖରେ ଛିଡ଼ା ହୋଇ ଏହା କରାଇଲା । ଏହା ମଧ୍ୟ କୁହାଯାଇଛି କି ସେଠାର ବିଧାୟକ ଯିଏକି ବାମପନ୍ଥୀର କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇ ଭୋଟ ପାଇଥିଲା, ସେ ଏମିତି କାର୍ଯ୍ୟ କରାଇଲା । ଜଣେ ମନ୍ତ୍ରୀ ମଧ୍ୟ ଏହି ପାର୍ଟିର ଶୁଣାଯାଇଛି କି ପଛରେ ତାହାର ହାତ ଥିଲା ।

ଏହି ଘଟଣା ପରେ କଲିକତାର ଶିଖମାନେ ସ୍ଥିର କରିଲେ କି ସେମାନେ ଯାଇ ଗୁରୁଦ୍ୱାର ବାଘମରୀ ଠାରେ ଶ୍ରୀ ଗୁରୁ ଗ୍ରନ୍ଥ ସାହିବଙ୍କ ପ୍ରକାଶ କରାଇବେ। ଗୋଟିଏ ଶୋଭାଯାତ୍ରା ୨୯.୩ ଦିନ ଗୁରୁଦ୍ୱାରା ବଡ଼ୀ ଶିଖସଙ୍ଗତଠାରୁ ହୋଇଥିଲେ। ଶୋଭାଯାତ୍ରା ସାମ୍ନାରେ ୫/୭ଜଣ ସିଂହ ଥିଲେ। ପଛରେ ଜଣେ ସିଂହ ସ.ଦର୍ଶନ ସିଂହଜୀ ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କ ପବିତ୍ର ବୀଡ ନିଜର ମସ୍ତକ ଉପରେ ବିରାଜମାନ କରାଇଥିଲେ ଓ ତାଙ୍କ ପଛରେ ୨୫୦/୩୦୦ ସିଂହ ଶବ୍ଦ କର୍ତ୍ତନ କରି ଚାଲିଥିଲେ। ଶୋଭାଯାତ୍ରା ମହାତ୍ମା ଗାନ୍ଧୀ ରୋଡଠାରୁ ଖୁବ୍ ଶାନ୍ତି ପୂର୍ବକ ଆରମ୍ଭ ହୋଇଥିଲା। ପରନ୍ତୁ ଏହି ଶୋଭାଯାତ୍ରା କଲେଜ ରୋଡ ପହଞ୍ଚିଲା, ସେତେବେଳେ ଇଟା, ପଥର ବମ୍ୱୋ, ଗୁଳି ଓ ସୋଡ଼ା ବୋତଲ ଦ୍ୱାରା ପାଖାପାଖି ଘରୁ ଫୋପାଡ଼ିବା ଆରମ୍ଭ କରିଦେଲେ। ପୋଲିସ ଏହି ଶୋଭାଯାତ୍ରାକୁ ଲାଠିଚାର୍ଜ କରିଲା, ଲୌହ ଗ୍ୟାସ ଫୋପାଡ଼ିଲା ଓ ପୁଣି ଗୁଳି ଚଳାଇଲା। ସାମ୍ନାରେ ଥିବା ସିଂହମାନେ ଅଲଗା ହୋଇଗଲେ। ପରନ୍ତୁ ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କ ବୀଡ଼ ଯିଏ ଉଠାଇ ରଖିଥିଲେ, ସେହି ସିଂହ ଓ ତାଙ୍କର ୨୫୦/୩୦୦ଙ୍କ ସହିତ ଆଗକୁ ଚାଲିଗଲେ।

ମାଣିକତାଲା ପୋଲଠାରେ ପୋଲିସ ପୁଣି ଏହି ଶୋଭାଯାତ୍ରାକୁ ଅଟକାଇଲା ଓ ଆଗକୁ ଯିବାପାଇଁ ମନା କରିଲା। ସେଠାରେ ସିଂହମାନେ ଧାରଣା ଦେଇ ବସିଗଲେ ଓ କହିଲେ, 'ଆମ୍ଭେ ସତ୍‌ଗୁରୁଜୀଙ୍କ ଶବାରୀ ବାଘମାରୀ ଗୁରୁଦ୍ୱାର ନେଇଯାଉଅଛୁ, ପଛକୁ ଫେରିବୁ ନାହିଁ, ଯଦି ଆଗକୁ ଯିବାକୁ ଦିଆଯିବ ନାହିଁ ଆମ୍ଭେ ଏହିଠାରେ ଶହୀଦ ହୋଇଯିବୁ। ପୋଲିସ ଗୁଳି ଚଳାଇବାପାଇଁ ପୋଜିସନ ନେଲା, ପରନ୍ତୁ ପଛରୁ କଥାବାର୍ତ୍ତା କରି ତିନି ଘଣ୍ଟା ଲଗାଇଦେଲେ। ଏହି ଦଳ ଜଥା ପଛକୁ ନ ଫେରିବା ଦେଖି ପଶ୍ଚିମବଙ୍ଗାଳର ଉପମୁଖ୍ୟମନ୍ତ୍ରୀ ଶ୍ରୀ ଜ୍ୟୋତିବସୁ ଘଟଣାସ୍ଥଳରେ ପହଞ୍ଚିଗଲେ। ସେମାନେ ଶୋଭାଯାତ୍ରାର ନେତାମାନଙ୍କ ସହ କଥାବର୍ତ୍ତା କରିଲେ ଓ ସେମାନଙ୍କ ହକ ଓ ସତ୍ୟତା ବୁଝିପାରି ଆଗକୁ ଅଗ୍ରସର ହେବାପାଇଁ ଆଜ୍ଞା ଦେଲେ ଓ ସେ ସ୍ୱୟଂ ଗୁରୁଦ୍ୱାର ସାହିବ ଯାଏଁ ଏହି ଶୋଭାଯାତ୍ରା ସହ ଗଲେ ଓ ସେତେବେଳେ ଶ୍ରୀ ଗୁରୁ ଗ୍ରନ୍ଥ ସାହିବଙ୍କ ପ୍ରକାଶ କରାଗଲା। ପରଦିନ ୩୦ ମାର୍ଚ୍ଚ ସକାଳ ଶ୍ରୀ ଗୁରୁ ଗ୍ରନ୍ଥ ସାହିବଙ୍କ ଅଖଣ୍ଡ ପାଠ ଆରମ୍ଭ କରାଗଲା, ତାହାର ପ୍ରଥମ ଭୋଗ ଏପ୍ରିଲ ୧ ତାରିଖ ଦିନ ହୋଇଥିଲା। ଏହିପରି ଭାବେ କଲିକତାର ସିଂହମାନଙ୍କ ଆଶ୍ଚର୍ଯ୍ୟଜନକ ବାହାଦୁରି ଓ ବଳିଦାନର ପ୍ରମାଣ ଦେଇଥିଲେ ଓ ଶୋଭାଯାତ୍ରା ସହ

ନିଜର ଲକ୍ଷ୍ୟରେ ପହଞ୍ଚିଥିଲେ। ସିଂହମାନେ ବାଘମରୀ ପହଞ୍ଚିବା ପାଇଁ ଅରଦାଶ କରିଥିଲେ ଓ ତାହା ପୂରା କରି ନିଶ୍ୱାସ ନେଇଥିଲେ।

ଏହି ଦୁଃଖଦାୟୀ ଘଟଣା ପରେ ଶିଖ ଜଗତରେ ହାହାକାର ଖେଳିଯାଇଥିଲା। ପ୍ରାୟ ସବୁ ପାର୍ଟିର ନେତା ଏହାର ତଦନ୍ତ ସକାଶେ ପହଞ୍ଚିଥିଲେ ଓ ଦେଖିଲେ କି ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କ ପୃଷ୍ଠା ପୃଷ୍ଠା ଚିରି ଫାଡ଼ି ଜଳାଇ ଦେଇଥିଲେ। କେତେ ପୃଷ୍ଠା ଅଧା ଜଳିଥିଲା। ସେଠାରେ ଟ୍ରଙ୍କ ଖୋଲା ହୋଇ ରହିଥିଲା। ଯେଉଁଠାରୁ ସେହି ପବିତ୍ର ବୀଡ ଶ୍ରୀ ଗୁରୁ ଗ୍ରନ୍ଥ ସାହିବଜୀଙ୍କୁ ବାହାର କରି ଜଳାଯାଇଥିଲା। ରୁମାଲେ (ବସ୍ତ୍ର, ଯାହାକି ଶ୍ରୀ ଗ୍ରନ୍ଥ ସାହିବଜୀଙ୍କ ବସ୍ତ୍ର ହିସାବରେ ବ୍ୟବହୃତ ହୁଏ) ଜଳାଇବା ସମସ୍ତେ ଦେଖୁଥିଲେ। ଭିତରୁ ଗୁରୁଦ୍ୱାର ଜଳାଯାଇଥିଲା, ଝରକା ଜଳାଯାଇଥିଲା। ତାହାର ପାଉଁଶ ଏପଟେ ସେପଟେ ପଡ଼ିଥିଲା। ତାହାର ପଛପଟେ ଲଙ୍ଗରର ଜିନିଷପତ୍ର ଜଳାଯାଇଥିଲା। ଶ୍ରୀ ଗୁରୁ ଗୋବିନ୍ଦ ସିଂହଜୀ ମହାରାଜଙ୍କ ମଣିଷ ଉଚ୍ଚ ଫଟୋ ଯାହାକି ଘୋଡ଼ା ଉପରେ ଚଢ଼ିଥିବା ତାହା ଜଳାଇଦେଲେ। ବାକି ଅନ୍ୟାନ୍ୟ ଜିନିଷପତ୍ର ମଧ୍ୟ ବଖରା ମଧ୍ୟରେ ପାଉଁଶ ହୋଇଯାଇଥିଲା। କାନ୍ଥ ଭାଙ୍ଗି ତଳେ ପଡ଼ିଥିଲା। ସେହିପଟୁ ଭିଡ଼ ସେହିଭିତରେ ପଶିଥିଲେ। ସେହି ସମାଧି ଯାହାକୁ ସେମାନେ ମନ୍ଦିର ତିଆରି କରିବାପାଇଁ ଚେଷ୍ଟା କରିଥିଲେ। ସେଥିଯୋଗୁଁ ବହୁତ ଦୁର୍ବଳ ଅବସ୍ଥାରେ ଥିଲା। ଯାହାକି ଶହ ଶହ ବର୍ଷ ଧରି କିଏ ମରାମତି କରାଇନଥିଲେ ନା କିଏ କିଛି ଯତ୍ନ ନେଇନଥିଲା। ତାହାର ତିଆରି ବିଷୟରେ ବୁଝାଯାଇଛି, ତାହା ଜଣେ ଶିଖଙ୍କ ସମାଧି ଥିଲା, ଯାହାର ୪ଟି କବାଟ ଥିଲା। ଶିଖ ଗୁରୁମାନେ ମଧ୍ୟ ଏହି ଭ୍ରମ ଦିଶାକୁ ସ୍ପଷ୍ଟ କରିଥିଲେ। ମନ୍ଦିରମାନଙ୍କର ସାଧାରଣ ଦ୍ୱାର ଗୋଟିଏ ହୋଇଥାଏ।

## ସୈକ୍ୟୁଲରଜମ୍‌ର ଭୁଲ୍ ପ୍ରୟୋଗ

ଚୀନ୍ ଯୁଦ୍ଧ ପୂର୍ବରୁ ଆମର ସୈକ୍ୟୁଲରଜମ୍‌ର ଅଧିକାର ଦାବି କରୁଥିବା ଭାରତ ସରକାରଙ୍କୁ ଏହି ସମ୍ପର୍କରେ ମଧ୍ୟ ସାମ୍ପ୍ରଦାୟିକତା ଦୃଷ୍ଟିରେ ଆସିଥଲା କି ସୈନ୍ୟ ମଧ୍ୟ ଶିଖ ଫୌଜ, ଡୋଗରା ଓ ଜାଠ୍, ହିନ୍ଦୁ ଓ ମୁସଲମାନନାମା ଅଲଗା ଅଲଗା ରେଜିମେଣ୍ଟ କ'ଣ? ଏହା ଅବ୍ୟବସ୍ଥା ଶାସନ (ଇଂରାଜୀ)ମାନେ ଲଗାଇଥିଲେ। ସେଥିଯୋଗୁଁ ଏହା ଜରୁରୀ ନୁହଁ। ଏହା ଭାରତବର୍ଷର ସୈକ୍ୟୁଲରଜମ୍

ନୀତି ବିରୁଦ୍ଧ ଅଟେ, ଠିକ୍ ଏହା ଥିଲା କି ସୈକ୍ୟୁଲରଜମ୍‌ର ପର୍ଦ୍ଦା ଭିତରେ ଏକ ପ୍ରକାରର ସାମ୍ପ୍ରଦାୟିକ ପ୍ରଭାବ ଫୌଜଯାଏଁ ନଯାଇ ପାରିବ, କିନ୍ତୁ ଚାଲିଯାଇଥିଲା। ଶିଖ୍, ଡୋଗରା, ଜାଟ୍ ଓ ମରାଠା ଇତ୍ୟାଦି ସବୁ ରେଜିମେଣ୍ଟ୍‌କୁ ଭାଙ୍ଗି ଦେଇ ମିଶ୍ରିତ କରାଗଲା।

ନିଃସନ୍ଦେହ ଇଂରେଜମାନେ ବିଦେଶୀ ଥିଲେ ଓ ସେମାନେ ଦେଶର ପ୍ରତ୍ୟେକ ବିଷୟ ନିଜ ନୀତି ସହ କରିଥିଲେ। ପରନ୍ତୁ ଏହା ତାଙ୍କ ନୀତି ସହ ନ ଥିଲା, କେବଳ ଏହି ବିଷୟ ଲଢ଼େଇ ଓ ଯୁଦ୍ଧ ସହ ସମ୍ବନ୍ଧିତ ରହିଥିଲା ଓ ବାହାଦୁରମାନଙ୍କ ବାହାଦୁରିକୁ ସେମାନେ ସମ୍ମାନ କରୁଥିଲେ। ପୁରସ୍କାର, ଯୋଶ ଓ ଅନ୍ୟାନ୍ୟ ବିଷୟରେ ସାହାଯ୍ୟ କରୁଥିଲେ। ହିନ୍ଦୁ ରେଜିମେଣ୍ଟ୍ ନିଜ ହିନ୍ଦୁ ଧର୍ମ, ମୁସଲମାନ ରେଜିମେଣ୍ଟ୍ ନିଜ ଧର୍ମ ଓ ଶିଖ ଧର୍ମ ନିଜର ଶିଖ ନୀତି ପରମ୍ପରା ସହ ଯୋଡ଼ି ହୋଇ ରହିବା ପ୍ରେରଣା ଥିଲା, ଯେଉଁ ସିପାହୀ ନିଜ ଧର୍ମ ପରମ୍ପରା ଓ ନୀତି ଭଙ୍ଗ କରୁଥିଲା, ସେ ନିଜ ଦେଶର ରକ୍ଷା ଓ ପରାମର୍ଶର ପ୍ରବନ୍ଧତା କେମିତି କରିବ? ଏହା ମଧ୍ୟ ଫୌଜମାନଙ୍କ ଫୌଜ ଧର୍ମ ସହ ଦଢ଼ ରଖିବା ଉଦ୍ଦେଶ୍ୟ ଥିଲା, ପରନ୍ତୁ ଆମ ସରକାର ଏହି ନୀତିକୁ ନଷ୍ଟ କରିଦେଲେ। ଚୀନ ଯୁଦ୍ଧ ସମୟରେ ସରକାର ନିଜ ଭୁଲ ହୃଦୟଙ୍ଗମ କରିପାରିଲେ ଓ ଚୀନର ଯୁଦ୍ଧ ପରେ ପୂର୍ବ ଭଳି ପୁନଃ ରେଜିମେଣ୍ଟ୍‌କୁ ରୂପ ଦିଆଗଲା, ଯାହା ପୂର୍ବ ଭଳି କରାଗଲା। ବିଶେଷ ଭାବେ ଶିଖ ଫୌଜୀମାନଙ୍କୁ ଯାହାକୁ ଅଧିକ ଭଙ୍ଗ ଓ ଶିଖ ଧର୍ମରୁ ଦୂରେଇ ରଖିବା ଯତ୍ନ କରାଯାଇଥିଲା, ତାହା ସବୁ ଛାଡ଼ି ଫୌଜୀମାନଙ୍କୁ ପୂର୍ବ ଭଳି ରଖାଗଲା।

ଭାରତଠାରେ ଶ୍ରୀ ଶାସ୍ତ୍ରିଜୀଙ୍କ ପ୍ରଧାନମନ୍ତ୍ରୀ ପଦ ଗ୍ରହଣ ପରେ ଶିଖମାନଙ୍କ ପ୍ରତି ଯେଉଁ ଭେଦଭାବ ହେଉଥିଲା, ସେଥିରେ ପ୍ରଭେଦ ହୋଇଥିଲା, ପରିବର୍ତ୍ତନ ଆସିଥିଲା, ତାହା ପୂର୍ବରୁ ଶିଖମାନଙ୍କ ପ୍ରତି କେନ୍ଦ୍ରର ଯେଉଁ ବିଚାର ଥିଲା ତାହା ଅଛପା ନୁହଁ।

ସ୍ୱର୍ଗୀୟ ଶ୍ରୀ ଶାସ୍ତ୍ରିଜୀ ୧୯୬୫ ସମୟରେ ପାକିସ୍ତାନ ଯୁଦ୍ଧ ପରେ ଗୁରୁଦ୍ୱାର ବଙ୍ଗଳା ସାହିବଠାରେ ଗୋଟିଏ ବିଶେଷ ସମାଗମ ବେଳେ ସମ୍ବୋଧନ କରି କହିଥିଲେ – ଏହି ଯୁଦ୍ଧରେ ବିଜୟ ମୁକୁଟ ପଞ୍ଜାବୀଙ୍କ ମସ୍ତକରେ ଶୋଭମାନ ଓ ବିଶେଷ ଭାବେ ବାହାଦୁର ଶିଖ ଜାତିଙ୍କୁ ଏଥିପାଇଁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଯୋଗ୍ୟ ଅଟନ୍ତି। ଶିଖ ଜାତି ନିଜର ପୁରାତନ ଇତିହାସ ପୃଷ୍ଠା ଓଲଟାଇ ଏହା ପ୍ରମାଣିତ କରିଦେଲେ କି

ଏହି ସାହସୀ ଓ ଯୋଦ୍ଧା ଜାତି ଦେଶ ପ୍ରତି ବିଶ୍ୱାସଯୋଗ୍ୟ ଓ ଦେଶର ଶାନ୍ତି ଓ ରକ୍ଷା ସକାଶେ ମାଟିରେ ମିଶିବା ଯୋଗ୍ୟ ଅଟନ୍ତି।

ପରନ୍ତୁ ଦୁଃଖର ବିଷୟ ଶ୍ରୀ ଶାସ୍ତ୍ରିଜୀଙ୍କୁ ଶୀଘ୍ର ଡାକରା ଆସିଲା ଓ ସେ ଅଚାନକ କଥାବାର୍ତ୍ତା ପାଇଁ ରୁଷ ଯାଇଥିଲେ। ସେହିଦିନଠାରୁ ସେ ସବୁଦିନ ପାଇଁ ଅଲଗା ହୋଇଗଲେ।

## ଦିଲ୍ଲୀ ଚାନ୍ଦିନୀଚୌକର ପୋଲିସ ଥାନା

ଦିଲ୍ଲୀ ସହରର ପୋଲିସ ଥାନା ସେହିଠାରେ ହୋଇଥିଲା କି ଯେଉଁଠାରେ ସାହିବ ଶ୍ରୀ ଗୁରୁ ତେଗ ବାହାଦୁରଜୀ ଶହୀଦ ହୋଇଥିଲେ। ଭାଇମତୀ ଦାସ ଓ ଭାଇ ଦୟାଲା ଜୀ ମଧ୍ୟ ଏହିଠାରେ ଶହୀଦ ହୋଇଥିଲେ। ଏହାପୂର୍ବରୁ ଔରଙ୍ଗଜେବର ମଧ୍ୟ ପୋଲିସ ଥାନା ଜେଲ ଏହି ସ୍ଥାନରେ ଥିଲା। ଏଥିଯୋଗୁଁ ଏହି ସ୍ଥାନ ଏମିତି ଶହୀଦ ସ୍ଥାନ ଥିଲା ଯାହାକି ଶହୀଦ୍ ପୂର୍ବରୁ ମୋଗଲ ଶାସନ ପୁଣି ଇଂରାଜୀ ଶାସନ ଓ ବର୍ତ୍ତମାନ ନିଜର ଶାସନ ସମୟରେ ମଧ୍ୟ ଏହି ପୋଲିସ ଥାନା ଚାଲି ଆସୁଅଛି।

ଇଂରେଜ ଗୋଟିଏ ବିଦେଶୀ ଶାସକ ଥିଲା। ଏହି ପୋଲିସ ଥାନା ସ୍ଥାନ ସେହି ସମୟଠାରୁ ଶିଖମାନେ ଦାବି କରି ଆସୁଥିଲେ, ପରନ୍ତୁ ଏହି ଇଚ୍ଛା ଶିଖମାନଙ୍କ କେମିତି ପୂରଣ ହୁଅନ୍ତା। ଭାବନ୍ତୁ ଏଥିପ୍ରତି କେହି ଧ୍ୟାନ ଦେଇନଥିଲେ। ଯାହାକି ଆଜି ପଞ୍ଜାବୀ ରାଜ୍ୟଠାରୁ ବହୁତ ବଡ଼ ହୋଇଥାନ୍ତା। ପରନ୍ତୁ ଶିଖମାନେ ଦେଶଭକ୍ତ ଥିଲେ। ସେମାନେ ଦେଶକୁ ଖଣ୍ଡ ବିଖଣ୍ଡିତ କରିବାପାଇଁ ଖୁସି ନ ଥିଲେ। ସେହି ସମୟରେ ଏଇ ସମ୍ବନ୍ଧିତ ତଥ୍ୟ ଯୋଗୁଁ ବଡ଼ ବଡ଼ ନେତା ମଧ୍ୟ ଏହା କହିଥିଲେ କି ଶିଖମାନେ ଆମର ଭାଇ ଓ ସେମାନେ ଆମ ସାଥିରେ ରୁହନ୍ତୁ, ଆମେ ସେମାନଙ୍କୁ ଭାଇ ପରି ରଖିବୁ। ପରନ୍ତୁ ସ୍ୱାଧୀନ ପରେ ବର୍ଷେ ଦୁଇ ବର୍ଷ ପରେ ଶିଖମାନଙ୍କ ମଧ୍ୟରେ ଭେଦଭାବ ଆରମ୍ଭ ହୋଇଗଲା ଇଂରାଜୀ ସମୟରେ ପଞ୍ଜାବ ରାଜ୍ୟର ରାଜ୍ୟ ଭାଷା ଉର୍ଦ୍ଦୁ ଥିଲା, କାରଣ ମୁସଲମାନମାନେ ପଞ୍ଜାବଠାରେ ବହୁ ସଂଖ୍ୟାରେ ଥିଲେ। ପରନ୍ତୁ ସେମାନେ ଯିବା ପରେ ପଞ୍ଜାବଠାରେ ପଞ୍ଜାବୀ ଭାଷାକୁ ରାଜ୍ୟ ଭାଷା ଭାବେ ଗ୍ରହଣ କରିବାପାଇଁ ଦାବି କରାଗଲା ଓ ରାଜ୍ୟକୁ ଭାଷା ହିସାବରେ ବାଣ୍ଟି ଦିଆଗଲା। ପରନ୍ତୁ ପଞ୍ଜାବୀ ଠାରେ ପଞ୍ଜାବୀକୁ ବହୁ ସଂଖ୍ୟାରେ ବଳପୂର୍ବକ ଧକ୍କା ଦିଆଯାଇଥିଲା। କଂଗ୍ରେସୀ ନେତା ମଧ୍ୟ ବୁଝିପାରିଲେ କି ବର୍ତ୍ତମାନ ଆମ୍ଭମାନଙ୍କୁ

କିଏ କଣ କରିପାରିବ। ଇଂରେଜ ସମୟରେ ଶିଖମାନେ ଶିଖଙ୍କୁ, ହିନ୍ଦୁମାନେ ହିନ୍ଦୁଙ୍କୁ ଓ ମୁସଲମାନମାନେ ମୁସଲମାନଙ୍କୁ ଭୋଟ ଦେଉଥିଲେ। ସେହିପରିଭାବେ ଠିକ୍ ନେତା ନିର୍ଣ୍ଣୟ କରାଯାଉଥିଲା। କିନ୍ତୁ ସେମାନେ ମଧ ପଞ୍ଜାବୀଙ୍କୁ ଈର୍ଷା କରିବାକୁ ଲାଗିରହିଥିଲେ। ସେମାନେ ଏହି କଥାକୁ ଯେମିତି ସହ୍ୟ କରିପାରନ୍ତେ କି ଜଣେ ଶିଖ ସଭ୍ୟ ସେମାନଙ୍କ ଇଚ୍ଛା ବିରୋଧରେ ହୋଇପାରିବ। ସେଥିଯୋଗୁଁ ପଞ୍ଜାବୀକୁ ଯେଉଁ ଶାସନ ମିଳିଥାନ୍ତା, ନିଶ୍ଚୟ ମିଳନ୍ତା, ଶିଖମାନଙ୍କୁ ଏହି ଭୋଟ ଦେବା ଅଧିକାରକୁ ମଧ ଶୂନ୍ୟ କରାଗଲା, ଭାବନାର ଭୋଟ ବିତର୍କ ହୋଇଗଲା।

ଏହି କଥା ଯୋଗୁଁ ଶିଖମାନଙ୍କ ମଧରେ ଘୋର ରୋଷ ହୋଇଥିଲା। ପରନ୍ତୁ କଣ କରିପାରିବେ, ଆନ୍ଦୋଳନ ବ୍ୟତୀତ। ଏହି ଆନ୍ଦୋଳନ ପଞ୍ଜାବୀ ରାଜ୍ୟର ଦାବି ରୂପ ଧାରଣ କରିଲା। ବହୁତ ବଳ ପ୍ରୟୋଗ ହୋଇଥିଲା, ତାହା ନିଃସନ୍ଦେହ, ଜେଲ ଓ ଜରିମାନା ମଧ ହୋଇଥିଲା, ପରନ୍ତୁ ଦାବି ଦୃଢ଼ତା ସହ ଶକ୍ତିଶାଳୀ ଥିଲା, କାରଣ ବହୁସଂଖ୍ୟକ ସାମ୍ପ୍ରଦାୟିକ ତତ୍ତ୍ୱ ସେତେବେଳେ ଶିଖମାନଙ୍କ ସଂସ୍କୃତି ଓ ସ୍ୱରକୁ ଗୋଡ଼ରେ ଦଳି ଦେବାପାଇଁ ଲକ୍ଷ୍ୟ ରଖାଯାଇଥିଲା। ନିଶ୍ଚିତ ଭାବେ ଶିଖମାନେ ଏହିପରି ଭାବେ ଘୋର ଅନ୍ୟାୟ ଯୋଗୁଁ ବହୁତ ଅଶାନ୍ତିରେ ଥିଲେ। ପରନ୍ତୁ ଯେତେବେଳେ ନିଜ ମଧରେ ଆକ୍ରମିତ ହୋଇଗଲେ ସେତେବେଳେ ଶିଖମାନେ ସବୁ ତ୍ୟାଗ କରି ଦେଶ ରକ୍ଷା ନିମନ୍ତେ ସମର୍ପିତ ଭାବେ ଭାଗ ପାଇଲେ ଓ ପ୍ରକୃତ ନିଷ୍ଠାଯୁକ୍ତ ଦେଶସେବକ ଭାବେ ପ୍ରମାଣିତ ହୋଇଗଲେ।

ଶିଖମାନଙ୍କ ଏହି ଦେଶପ୍ରେମ ଶେଷରେ ବିରୋଧୀମାନଙ୍କୁ ମଧ ଦୁଃଖୀ କରାଇ ହୃଦୟଙ୍ଗମ କରାଇଦେଲା। ସେମାନେ ମଧ ଶିଖମାନଙ୍କ ସହ ହୋଇଥିବା ଅନ୍ୟାୟ ଅତ୍ୟାଚାର ହୃଦୟଙ୍ଗମ କରିପାରିଲେ। ସେଥିଯୋଗୁଁ ଆଜି ପଞ୍ଜାବୀ ରାଜ୍ୟର ସ୍ଥିତି ହୋଇରହିପାରିଛି। ସେହି ସମୟରେ ଦେଶର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଜୀ ଥିଲେ। ସେହି ସମୟରେ ହିଁ କେନ୍ଦ୍ର ସରକାର ଶିଖମାନଙ୍କ ଏହି ପୁରାତନ ଦାବି - "ଦିଲ୍ଲୀର ନ୍ୟାୟାଳୟ ଶିଖମାନଙ୍କୁ ଦିଅ" ମାନି ନେଲେ। ବର୍ତ୍ତମାନ ଖବର ଏହା ଥିଲା କି ଏହି ନ୍ୟାୟାଳୟ ଓ ପୋଲିସ ଥାନାର ପ୍ରାଚୀର, ୨ ଅକ୍ଟୋବର, ୧୯୬୮ ଦିନ ଗୁରୁଦ୍ୱାର ଶିଶଗଞ୍ଜ ଦିଲ୍ଲୀର ଗୁରୁଦ୍ୱାର କମିଟୀ ଅଧୀନସ୍ଥ କରାଯିବ। ଜଥେଦାର ସନ୍ତୋଷ ସିଂହଜୀ ଏହି କାର୍ଯ୍ୟ ସମ୍ପନ୍ନ ସକାଶେ ଦିନରାତି ଲାଗି ରହିଲେ। ଶେଷରେ ସଫଳତା ପ୍ରାପ୍ତ ହୋଇଥିଲେ।

## ୧୯୬୬ ସମୟର ଶିରୋମଣି କମିଟୀର ଭୋଟ

ପାକିସ୍ତାନ ଯୁଦ୍ଧ ପୂର୍ବରୁ ଜଣାନଥିଲା କି ପାକିସ୍ତାନ ଏହିପରି ଭାବେ ଆକ୍ରମଣ କରିବ ଓ ଏହାପୂର୍ବରୁ ବାତାବରଣ ଅନ୍ୟପ୍ରକାର ଥିଲା। ଶିଖ ଜାତି ମଧ୍ୟରେ ପଞ୍ଜାବୀ ରାଜ୍ୟ ହୋଇପାରୁ ନ ଥିବା ଯୋଗୁଁ ନିରାଶମୟ ହୋଇ ରହିଥିଲେ ଓ ଘୋର ଅସନ୍ତୋଷ ଖେଳି ରହିଥିଲା। ମାଷ୍ଟର ତାରା ସିଂହଜୀ ନିଶ୍ଚିତଭାବେ ପରାଜୟ ହୋଇଯାଇଥିଲେ ଓ ଜାତିର ମଜବୁତ ଭାଗ ତାଙ୍କ ବିରୋଧରେ ଥିଲା, ତଥାପି ସେ ନିଜର ହଠ (ପନ୍ଥକଙ୍କ ନିକଟରେ) ପରାଜୟ ହୋଇନଥିଲେ, କାରଣ ଏମିତି ସନ୍ଥ ଫତେହ ସିଂହଙ୍କ ବିରୋଧ କରି ଯେମିତି ବହୁତ ଥର ପରିସ୍ଥିତି ସୃଷ୍ଟି ହୋଇସାରିଥିଲା ଓ ସେ ପୁଣି ବିରୋଧୀଙ୍କ ପାଖରେ ବିଜୟ ହୋଇ ଆସୁଥିଲେ। ସେଥିଯୋଗୁଁ ତାଙ୍କର ଏହି ବିଚାରଧାର, ତାଙ୍କୁ ପଛକୁ ହଟିବା ପାଇଁ ଆଜ୍ଞା ଦେଇ ନ ଥିଲା, ନିଃସନ୍ଦେହ ଥରେ ବ୍ରତ ଭଙ୍ଗ କରିବାଯୋଗୁଁ ପଶ୍ଚାତ୍ତାପ କରିଥିଲେ ପରନ୍ତୁ ବିରୋଧତା ଯୋଗୁଁ ଓ ତାଙ୍କ ବିରୋଧରେ ତୀକ୍ଷ୍ଣ ପ୍ରଚାରର ପ୍ରହାର ଯୋଗୁଁ ସ୍ୱୟଂ ପୂର୍ବ ଭଳି ବିରୋଧୀମାନଙ୍କ ବିରୋଧତା ସହ୍ୟ କରିପାରିନଥିଲେ କିମ୍ୱା ଅନ୍ୟ ସ୍ଥାନକୁ ଯାଇପାରି ନ ଥିଲେ। ସନ୍ଥଜୀ ଫତେହ ସିଂହଜୀ ନିଶ୍ଚିତଭାବେ ବ୍ରତ ପାଳନ କରିଥିଲେ। ପାକିସ୍ତାନ ଯୁଦ୍ଧ ଯୋଗୁଁ ବ୍ରତ ଭଙ୍ଗ କରିଥିଲେ ଓ ଦୁଇ ଦଳର ନେତାଙ୍କୁ ବରାବର ହିସାବ ମିଳିଥିଲା। ପରନ୍ତୁ ଧୂଆଁଧାର ପ୍ରଚାର ଜଣେ ଅନ୍ୟକୁ ନିନ୍ଦା କରିବା ଦ୍ୱାରା ଫଳାଫଳ ଖରାପ ବାହାରିଥିଲା। ସବୁ ମଣିଷ ଦ୍ୱାରା ଭୁଲ ହୋଇଥାଏ ଓ କୌଣସି ଗୁରୁ କିମ୍ୱା ପରମେଶ୍ୱରଙ୍କ ବ୍ୟତୀତ ସମସ୍ତଙ୍କ ଦ୍ୱାରା ଭୁଲ ହୋଇଥାଏ। ପରନ୍ତୁ ଦୁଇ ଦଳର ଜଣେ ଅନ୍ୟକୁ ଦୋଷୀ ସାବ୍ୟସ୍ତ କରାଇଚାଲିଲେ ଓ ଜାତିକୁ ଭୁଲିଯାଇ ନିଜ ନିଜର ପଛରେ ବ୍ୟସ୍ତ ରହିଲେ। ପରିଣାମ ଶେଷରେ ୱାହେଗୁରୁଜୀ ଗୁରୁଜୀଙ୍କ ହାତରେ ଥିଲା। ଦୁଇ ଜଣ ଲଢ଼ିବା ଦ୍ୱାରା ଜଣେ ନିଶ୍ଚୟ ହାରିବ, ପରନ୍ତୁ ଲଢ଼ିବା ଦଳ, ଲଢିବା ସମୟରେ ଏହି କଥା ବିଚାର କରିନଥିଲେ ଯଦି ବିଚାର କରନ୍ତେ ତାହାଲେ ୱାହେଗୁରୁଙ୍କ ଭରସା ମରିବା-ମାରିବା ଯୁଦ୍ଧ ଲଢିପାରନ୍ତେ ଓ ଶହୀଦ ପ୍ରାପ୍ତ କରନ୍ତେ, ପରନ୍ତୁ ଏହି ବିଚାର ମଧ୍ୟ ପଥଭ୍ରଷ୍ଟ ହୋଇ ଭାଇ ଭାଇ ମଧ୍ୟରେ ମରିବା ଯୁଦ୍ଧରେ ସଫଳତା ହୋଇପାରନ୍ତା ନାହିଁ। ପରନ୍ତୁ ପ୍ରକୃତରେ ଏହି ଲଢ଼ାଇ ପଛରେ କାମ କରୁଥିବା ଧନ ଓ ମାୟାର ପ୍ରଶଂସା ଥିଲା। ସେଥିଯୋଗୁଁ ବର୍ତ୍ତମାନ ଗୁରୁଶିଖ ଆପଣ

ନିଜେ ବିଚାର କରନ୍ତୁ କି ପରସ୍ପର ଲଢ଼ିବା ଯୋଗୁଁ ପନ୍ଥକ ମଧ୍ୟରେ ମତଭେଦ କାହିଁକି ଲାଗି ରହିଛି।

ଶିରୋମଣି କମିଟିର ୧୪୦ଟି ସ୍ଥାନରେ ମତଦାନ ହୁଏ, ସେଥିଯୋଗୁଁ ଦୁଇ ଦଳର ସେହି ସଂଖ୍ୟାର ପ୍ରତିନିଧି ପ୍ରତିନିଧିତ୍ୱ କରିଥିଲେ। ଏହି ମତଦାନ ସମୟରେ ନିରୋଲ ଶିଖମାନଙ୍କ ଭୋଟ ହୋଇଥାଏ। ଯେଉଁ କାରଣ ବିରୋଧୀ ଶାସକ ଅଭିଳାଷୀଙ୍କ ପ୍ରତ୍ୟେକ ଥର ଶିରୋମଣି କମିଟି ସହ ପରାସ୍ତ ହୁଏ ଓ ୧୯୪୭ ପରେ ୧୯୫୪, ୧୯୬୦ ଦୁଇଥର ଭୋଟ ସମୟରେ ପନ୍ଥକ ଜଥେଦାର, ଶିରୋମଣି ଅକାଳୀ ଦଳର ଭୋଟରେ ବିଜୟ ହୋଇଥିଲେ। ଦୁଇଥର ଭୋଟରେ ପନ୍ଥକ ଜଥେବନ୍ଦୀ, ଶିରୋମଣି ଅକାଳୀ ଦଳର ଭୋଟରେ ବିଜୟ ପ୍ରାପ୍ତ ହୋଇଥିଲା ଓ ସରକାରୀ ଦଳର ପରାଜୟ ହୋଇଥିଲା, ପରନ୍ତୁ ୧୯୬୬ ଭୋଟ ପରେ ଅଲଗା ଚେହେରା ଥିଲା। ଦୁଇ ଅକାଳୀ ଦଳ (ସନ୍ଥ ଦଳ ଓ ମାଷ୍ଟର ଦଳ)ଙ୍କ ମଧ୍ୟରେ ମୁହାଁମୁହିଁ ଲଢ଼େଇ ହୋଇଥିଲା, ଦୁହେଁ ଜଣେ ଅନ୍ୟଙ୍କୁ ନିନ୍ଦା କରିଚାଲିଲେ, କଂଗ୍ରେସୀ, ପନ୍ଥ ଦୋଷୀ ଓ ଶପଥ ଉଙ୍କି କହି ଚାଲିଲେ, ପରନ୍ତୁ ପରିଣାମ ବାହାରିବା ବେଳେ ପୁଣି ମାଷ୍ଟର ତାରା ସିଂହଜୀଙ୍କୁ ମାନିବାକୁ ପଡ଼ିଥିଲା ଓ ସେ ଶୁଣାଇଥିଲେ କି ମୋର ବ୍ରତ ଭଙ୍ଗ ଯୋଗୁଁ ହିଁ ମୋର ଆଜି ଏହି ଦଶା ହୋଇଛି। ସନ୍ଥ ଦଳକୁ ଶତାଧିକ ସ୍ଥାନ ମିଳିଲା ଓ ସେ ପ୍ରମାଣ କରିଦେଲେ କି ଜାତି ତାଙ୍କ ସହିତ ଅଛି। ସନ୍ଥଜୀ ସେବାରେ ଧ୍ୟାନ ଦେଲେ, ସେବା କରି କରି ଓ କୀର୍ତ୍ତନର ଆନନ୍ଦ ପାଇବ। ଜୀବନ ସମୟ ପ୍ରାପ୍ତ କରି ମାର୍ଶଲ ଜାତିକୁ ଅଗ୍ରସର କରାଇ ଜୀବନ ବିତାଇଲେ।

## ଜେତୁ ମାଷ୍ଟରଜୀ କାହିଁକି ହାରିଲେ ?

ପ୍ରକୃତରେ ମାଷ୍ଟରଜୀ ଜାତିର ପ୍ରତିନିଧିତ୍ୱ ବହୁତ ଦିନରୁ ଦାୟିତ୍ୱ ନେଇଥିଲେ। ସେ ନିଜର ବିରୋଧୀ ଜନ୍ମ କରାଇଥିଲେ, ପରନ୍ତୁ ସେ ଏହି ଧ୍ୱନି "ଜାତି ବିପଦରେ ଅଛି" ଜାତି ପ୍ରତି ପ୍ରଭାବ ପଡ଼ିଲା ଓ ବିରୋଧୀମାନଙ୍କ ବିରୁଦ୍ଧ 'ଧୋକାଦାର'ର ଧ୍ୱନି ଯୋଗୁଁ ସଫଳତା ହୋଇଚାଲିଲା। ତାଙ୍କର ନିର୍ଭୀକତା ଓ ସଙ୍କୋଚତା କାରଣ ଯୋଗୁଁ ଜାତି ବିରୋଧରେ ଧୂଆଁଧାର ବଦନାମ ସହିତ ସେ ସଫଳତା ହୋଇପାରି ନ ଥିଲା ଓ ସେ ଜିତିଚାଲିଲେ। ଦେଶ ଭାଗ ବାଣ୍ଟି ହେବା ପୂର୍ବରୁ ସାଧାରଣ ଲୋକଙ୍କ ଧ୍ୟାନ ଏଥିପ୍ରତି ନ ଥିଲା, ପରନ୍ତୁ ଯେବେ ଗୁରୁଦ୍ୱାର ଆକ୍ଟ ହେଲା ଜାତି

ମଧ୍ୟରେ ଲଢ଼ାଇ ଓ ଝଗଡ଼ାର ମୂଳଦୁଆ ହୋଇଗଲା। ୧୯୪୭ ପୂର୍ବରୁ ଯେତେବେଳେ ମାଷ୍ଟରଜୀ ପନ୍ଥକ କ୍ଷେତ୍ରରେ ଆଗକୁ ବଢ଼ିଲେ, ସର୍ବପ୍ରଥମ ସ. ବାହାଦୁର ମହତାବ ସିଂହଙ୍କୁ ପରାସ୍ତ କରିଲେ। ପୁଣି ବାବା ଖଡ଼କ ସିଂହଙ୍କୁ ଏହି ପନ୍ଥକର ଘେର ମଧ୍ୟରୁ ବାହାରି ଚାଲିଯିବାପାଇଁ ବାଧ୍ୟ କରାଇଲେ ଓ ସେ ଦିଲ୍ଲୀ ଯାଇ କଂଗ୍ରେସୀ ହୋଇଗଲେ। ପୁଣି ସ. ଅମର ସିଂହ ଶେର-ଏ ପଞ୍ଜାବକୁ ସେ ହରାଇଲେ, ସରସୁନ୍ଦର ସିଂହ ମଜୀଠିଏ ସହ ସଂଘର୍ଷ କରିଲେ। ୧୯୪୭ ପରେ ଅକାଲୀ ଦଳର ଲୋକପ୍ରିୟ ନେତା ଜଥେଦାର ଉଧମ ସିଂହ ନାଗୋକେ କଂଗ୍ରେସ ସହ ମିଶିଲେ ଓ ମାଷ୍ଟରଜୀଙ୍କୁ ଛାଡ଼ିଦେଲେ। ଶିରୋମଣି କମିଟିକୁ ଅଧିକାର କରିଲେ। ମାଷ୍ଟରଜୀ ବହୁତ ଥର ତାଙ୍କଠାରୁ ହାରିଥିଲେ। ପରନ୍ତୁ ମନ ଭାଙ୍ଗି ନଥିଲା ଓ ଶିରୋମଣୀ କମିଟୀ ଅକାଲୀ ଦଳର ଝଣ୍ଡାକୁ ଉଚା ରଖିଥିଲେ। କଂଗ୍ରେସୀ ସରକାରଙ୍କ ସାହାଯ୍ୟ ଦ୍ୱାରା ୧୯୫୪ ଯାଏଁ ଶିରୋମଣି କମିଟି ତାଙ୍କ ପାଖରେ ରହୁଥିଲା। ପରନ୍ତୁ ଏହି ବର୍ଷ ଶିରୋମଣୀ କମିଟୀର ସାଧାରଣ ଭୋଟରେ ମାଷ୍ଟରଜୀଙ୍କୁ ଏତେ ସଫଳତା ହୋଇଥିଲା କି ଦୁନିଆଁ ଆଶ୍ଚର୍ଯ୍ୟ ହୋଇଗଲା। ଜଥେଦାର ନାଗୋକେ ଦଳ ଜଣେ ମଧ୍ୟ ସଫଳତା ପାଇ ନ ଥିଲା। କଂଗ୍ରେସ ତାଙ୍କୁ ଲୋଭ ଦେଖାଇ ଲୋକଙ୍କୁ କିଣିବାକୁ ଲାଗିଲା ଓ ମାଷ୍ଟରଜୀଙ୍କୁ ଦୁଇ ତିନି ବର୍ଷ ପରେ ଶିରୋମଣି କମିଟି ଛାଡ଼ିବାକୁ ପଡ଼ିଥିଲା। ସ.ପ୍ରେମ ସିଂହ ଲାଲପୁରା ପ୍ରଧାନ ହୋଇଗଲେ। ଏହି ସମୟରେ ମଧ୍ୟ ବିରୋଧୀମାନେ (ଜ୍ଞାନୀ କରତାର ସିଂହ ଘଡ଼େ)ଙ୍କ ତରଫରୁ ସାମ୍ନା କରିବାପାଇଁ ଅକାଲୀ ଦଳ ଗଢ଼ିଥିଲେ। ପରନ୍ତୁ ଏହିଥର ୧୭ ଜାନୁୟାରୀ ୧୯୬୦ମସିହାରେ ଦ୍ୱିତୀୟଥର ସାଧାରଣ ଭୋଟ ହୋଇଥିଲା। ସେତେବେଳେ ମାଷ୍ଟରଜୀ ବହୁମତ ସହ ବିଜୟ ହୋଇଥିଲେ। ମାଷ୍ଟରଜୀ ଅସଲରେ ମାଷ୍ଟର ଥିଲେ। ସେ ନେତା ଗଢ଼ିବା ମାଷ୍ଟର ଥିଲେ। କଂଗ୍ରେସରେ ଯୋଗ ଦେଇଥିବା ଶିଖ ଲିଡରମାନଙ୍କୁ ଚିହ୍ନି ନିଅନ୍ତୁ। ସ.ପ୍ରତାପ ସିଂହଜୀଙ୍କ ଠାରୁ ନେଇ ଜ୍ଞାନୀ କରତାର ସିଂହ, ସର୍ଦ୍ଦାର ହୁକୁମ ସିଂହ, ସର୍ଦ୍ଦାର ସ୍ୱର୍ଣ୍ଣ ସିଂହଜୀ, ସର୍ଦ୍ଦାର ଜ୍ଞାନ ସିଂହ, ରାଡେବାଲା, ସର୍ଦ୍ଦାର ଅମର ସିଂହ ଝବାଲ, ସର୍ଦ୍ଦାର ଜସବନ୍ତ ସିଂହ, ସର୍ଦ୍ଦାର ସମ୍ପୂର୍ଣ୍ଣ ସିଂହଜୀ 'ରାମା' ଇତ୍ୟାଦି ସମସ୍ତେ ମାଷ୍ଟରଜୀଙ୍କୁ ତାଲିମ କରାଇଥିଲେ ଓ ମାଷ୍ଟରଜୀଙ୍କ ସାହାଯ୍ୟ ଯୋଗୁଁ ଅଗ୍ରସର ହୋଇଗଲେ। ପରନ୍ତୁ ଆଗକୁ ଯାଇ ସୁଯୋଗ ପାଇବା ସଙ୍ଗେ ସଙ୍ଗେ କଂଗ୍ରେସୀ ହୋଇଗଲେ ଓ ମାଷ୍ଟରଜୀ ପୁଣି ଲଢ଼ାଇ କରି କରି

ରହିଗଲେ। ପରନ୍ତୁ ଶେଷରେ ସନ୍ଥ ଫତେହ ସିଂହଜୀ ଏହି ବ୍ରତ ଛଡ଼ାଇବା ପାଇଁ - 'ଆପଣଙ୍କ ସମସ୍ତ ଦାବି ସ୍ୱୀକାର କରାଗଲା' ଓ ପୁଣି ଥରେ ସେ ବ୍ରତ ରଖି, ପୁଣି ଭଙ୍ଗ କରିବା କାରଣ ଯୋଗୁଁ ସନ୍ଥ ଫତେହ ସିଂହଙ୍କ ସହ ସଂଘର୍ଷ ପରେ ପରାଜୟ ହୋଇଥିଲେ ଓ ନିର୍ମମ ଭାବେ ପରାସ୍ତ ହୋଇଥିଲେ। ପରନ୍ତୁ ଗୋଟିଏ ମଜାର ବିଷୟ ଥିଲା କି ଶେଷରେ ସେ ନିଜେ ଆଗକୁ ଟାଣି ଆଣିଥିବା ନେତା ଦ୍ୱାରା ହାରିଗଲେ।

## କୁଣ୍ଡ ସ୍ଥିର ରଖିବା ବିଷୟ

ଶହୀଦମାନଙ୍କ ସ୍ମରଣ ସକାଶେ ଶହୀଦମାନେ ଶହୀଦ ହୋଇଯିବା ପରେ, ସେମାନଙ୍କ ସ୍ମରଣକୁ ଚିର ସ୍ମରଣୀୟ ରଖିବାପାଇଁ, ପରନ୍ତୁ ଏହା ମଧ୍ୟ ଗୋଟିଏ କଳିଯୁଗର ଚମତ୍କାର ବୁଝିବାକୁ ପଡ଼ିବ କି ଶହୀଦ ନ ହୋଇ ମଧ୍ୟ ନିଜର ଅନ୍ୟାନ୍ୟ ଦାବି ଭୁଲି ଯାଇ ଶହୀଦ ହୋଇଥିବା ଦାବି ମଧ୍ୟ କରିଥିଲେ। ସେମାନେ ଭାବୁଥିଲେ କି ଯେଉଁମାନେ ପ୍ରାଣ ବଞ୍ଚାଇବା ପାଇଁ ସାହାଯ୍ୟ କରିଥିଲେ ସେମାନଙ୍କ ସ୍ମରଣ ସକାଶେ, ଶହୀଦ ସହ ତୁଳନା କରୁଥିଲେ ଓ ନିଜେ ବଞ୍ଚିଥିବା ଅବସ୍ଥାରେ ଜାତି ସେମାନଙ୍କୁ ସତ୍କାର କରୁ, ଯାହାକି ପ୍ରକୃତ ଶହୀଦ ହୋଇଥିବା ସିଂହ ଶହୀଦ ହୋଇଥିବା ପରେ ହେଉଅଛି।

ସନ୍ଥ ଫତେହ ସିଂହଜୀ ସର୍ବପ୍ରଥମେ ଅନଶନ ରଖିଥିଲେ। ସେ ନିଜ ଇଚ୍ଛା ଓ ଜାତି ସହ ପରାମର୍ଶ ସହ ରଖିଥିଲେ, ପରନ୍ତୁ ଜାତିର ଅନୁରୋଧ ଯୋଗୁଁ ସେ ଅନଶନ ଭଙ୍ଗ କରିଥିଲେ। ସରକାର ପ୍ରତ୍ୟକ୍ଷ ଭାବେ ନ ମାନି ପରୋକ୍ଷ ଭାବେ କେତେକାଂଶ ଦାବି ମାନିଥିଲା। ବୋଧହୁଏ ସେମାନଙ୍କ ମନରେ ଦୟା ଥିଲା କି ନାହିଁ, ଦାବି ନ ମାନିବା ମଧ୍ୟ ବହୁତ କାରଣ ଥିଲା, ତଥାପି ତାହା ଅନଶନ, ଜାତିର ସର୍ବସମ୍ମତି ସହ ତ୍ୟାଗ କରିଥିଲେ ତାହା କେତେକ ସୀମା ଯାଏଁ ଠିକ୍ ଥିଲା। ପରେ ମାଷ୍ଟରଜୀ ମଧ୍ୟ ନିଜର ଅନଶନ ଏହି ବିଚାର ଯୋଗୁଁ ଭଙ୍ଗ କରିଥିଲେ ଓ ସରକାର ସନ୍ଥ ଫତେହ ସିଂହଜୀଙ୍କ ଅନଶନ ଭଙ୍ଗ ସମୟ ବେଳେ ସରକାର ଏହି ବିଷୟ ପ୍ରତି ଅଟଳ ଥିଲା କି ଶିଖମାନଙ୍କ ଦାବି ପୂରା ହେଉ, କିନ୍ତୁ ପ୍ରାୟ ଏକ ବର୍ଷ ପରେ ଜାତିର ନେତା ଭାବେ ମାଷ୍ଟରଜୀଙ୍କ ସ୍ଥାନ ଅଧିକାର କରି ସନ୍ଥ ଫତେହ ସିଂହଜୀ ମାଷ୍ଟରଜୀଙ୍କ ବିରୋଧରେ ଲାଗିପଡ଼ିଲେ। ଏକତା ସହ ଯାହା ପ୍ରାପ୍ତ କରି ହୁଅନ୍ତା

ତାହା ଏହି ବିଷୟକୁ ଏହି ବିରୋଧତା ଯୋଗୁଁ ପୂରା ଅମ୍ଳତା ପ୍ରଦାନ କରିଦେଲା ଓ ବିଷୟ ଯେଉଁଠାରୁ ଆରମ୍ଭ ହୋଇଥିଲା ସେଠାକୁ ଫେରିଆସିଲା। ବଳିଦାନ, ଜେଲ ଓ ତ୍ୟାଗ ସମର୍ପଣ ସବୁ କିଛି ସମାପ୍ତ ହୋଇଗଲା। ସନ୍ତୁଜୀ ଏହି ବିଷୟ ଉପରେ ବିଶ୍ଳେଷଣ ଦେଇଥିଲେ କି ଯାହା ମାଷ୍ଟରଜୀଙ୍କ ଶତଚେଷ୍ଟା ଯୋଗୁଁ ସେ ଜଣେ ଅଜ୍ଞାତ ଓ ସାଧାରଣ କର୍ମଚାରୀଠାରୁ ଆଗକୁ ବଢ଼ି ବଢ଼ି ଏହି ପର୍ଯ୍ୟନ୍ତ ପହଞ୍ଚିଯାଇଥିଲେ କି ମାଷ୍ଟରଜୀଙ୍କ ଠାରୁ ନେତୃତ୍ୱରେ ଏତେ ଆଗକୁ ବଢ଼ିଯାଇଥିଲେ ପରନ୍ତୁ ଏମିତି ସ୍ଥାନରେ ପହଞ୍ଚି, ଇତିହାସ ଏହାର ସାକ୍ଷୀ ରହିଛି କି କାହାରିକୁ ଆଗକୁ ବଢ଼ିବା ଓ ପ୍ରସିଦ୍ଧ ହେବାପାଇଁ ସ୍ୱପ୍ନର ଅଧୀନତା ଅନ୍ୟକୁ କୃତଜ୍ଞତାକୁ ସ୍ମରଣ ହୋଇ ନ ଥାଏ। ଦ୍ୱିତୀୟ ପର୍ଯ୍ୟାୟରେ ନିଜର ପଦ ବଢ଼ାଇ ଓ ଶକ୍ତି (ଶିରୋମଣି କମିଟି) ଜନ୍ମ କରାଇ ସନ୍ତୁଜୀ ପଞ୍ଜାବୀ ରାଜ୍ୟ ସକାଶେ ଶ୍ରୀ ଅକାଳ ତଖତ୍ ନିକଟସ୍ଥ ପଞ୍ଜାବୀ ରାଜ୍ୟ ପ୍ରାପ୍ତ ସକାଶେ ଅନଶନ ରଖିଲେ ଓ ତାହା ସହିତ ୧୫ ଦିନ ପରେ ଜଳି ମରିବା ପାଇଁ ଘୋଷଣା କରିଲେ। କିନ୍ତୁ ମଣିଷର ହାତରେ କଣ ଅଛି ଯଦି ପରମେଶ୍ୱରଙ୍କୁ ସ୍ୱୀକାର ହୋଇନଥାଏ।

ସନ୍ତୁଜୀ ଅନଶନ ରଖିଲେ ଅଳ୍ପ ଦିନ ପରେ ପାକିସ୍ତାନ ଓ ହିନ୍ଦୁସ୍ତାନର ଯୁଦ୍ଧ ଆରମ୍ଭ ହୋଇଗଲା। ସମସ୍ତଙ୍କ ଧ୍ୟାନ ସେପଟକୁ ଚାଲିଗଲା। ସନ୍ତୁଜୀଙ୍କ ଅପିଲ କରିଥିବା ଅନଶନ ଭଙ୍ଗ ହୋଇଗଲା। ପରନ୍ତୁ ସେ ମାନି ନ ଥିଲେ ଶିଖ ଫୌଜ ଜନରଲ ତାଙ୍କ ନିକଟକୁ ଆସିଥିଲେ ଶ୍ରୀ ଅକାଳ ତଖତ୍ ସାହିବଠାରେ ପହଞ୍ଚିଥିଲେ ଓ ସେ ମଧ୍ୟ ସନ୍ତୁଜୀଙ୍କୁ ଅନଶନ ଭଙ୍ଗ କରିବାପାଇଁ କହିଲେ କିନ୍ତୁ ସନ୍ତୁଜୀ ମାନିନଥିଲେ। ହିନ୍ଦୁସ୍ତାନର ଗୃହମନ୍ତ୍ରୀ ଶ୍ରୀ ନନ୍ଦାଜୀଙ୍କ ଅପିଲ ମଧ୍ୟ ସେ ଫେରସ୍ତ କରାଇଲେ। ପରନ୍ତୁ ଶେଷରେ ଅନଶନ ଭଙ୍ଗ କରିଲେ। କାରଣ ଭୟାନକ ଯୁଦ୍ଧ ଚାଲିଥିଲା।

ଦେଶ ରକ୍ଷାର ପ୍ରଶ୍ନ ଉଠିଥିଲା। ଏହି ବିରୋଧତା ଓ ପ୍ରତ୍ୟେକ ବିରୋଧ ବିଚାର ଛାଡ଼ିବା ଆବଶ୍ୟକ ଥିଲା। ପଣ୍ଡିତ ନେହେରୁଜୀଙ୍କ ସ୍ଥାନରେ ସେତେବେଳେ ଶ୍ରୀ ଶାସ୍ତ୍ରିଜୀ ପ୍ରଧାନମନ୍ତ୍ରୀ ଥିଲେ। ଦେଶର ନେତୃତ୍ୱତାର ପରିବର୍ତ୍ତନ ଆସିଯାଇଥିଲା। ଦ୍ୱିତୀୟରେ ଶିଖ ଫୌଜୀଙ୍କ ସାହସିକତା ସର୍ବୋଚ୍ଚ ଥିଲା। ପ୍ରାଣମୂର୍ଚ୍ଛା କରି ଶତ୍ରୁଙ୍କୁ ଦମନ କରିବାପାଇଁ ଲଢୁଥିଲେ। ଦେଶ ରକ୍ଷା ପାଇଁ ନିଜର ପ୍ରାଣ ମୂର୍ଚ୍ଛା କରିଚାଲିଲେ। ଏହି ବିଷୟ ବିରୋଧୀମାନେ ମଧ୍ୟ ଦେଖିଲେ ଓ ନିର୍ମଳ ହୃଦୟର ନେତାମାନେ ମଧ୍ୟ

ଦେଖିଲେ। କଠିନ ପରିସ୍ଥିତି ସମୟରେ ଶିଖ ଫୌଜମାନେ ବିଜୟ ପ୍ରାପ୍ତ କରିଲେ ଶିଖ ସାହସୀ ସିପାହୀମାନେ ବିରୋଧୀମାନଙ୍କୁ ନାକ ଘୋଷାରି ଦେଇଥିଲେ। ଏହି ବିଷୟ ପାକିସ୍ତାନୀଙ୍କ ହୃଦୟରେ ରୋଷ ଜାଗ୍ରତ କରାଇଥିଲା। ତାହା ସେଠାରେ ହିନ୍ଦୁଙ୍କୁ ମଧ୍ୟ ଦୁଃଖ ଲାଗିଥିଲା।

କିଛି ଦିନ ପରେ ଯୁଦ୍ଧ ସମାପ୍ତ ହୋଇଗଲା। ପରନ୍ତୁ ଶିଖ ଫୌଜୀଙ୍କ ସାହସିକତା ଯୋଗୁଁ ହିନ୍ଦୁ ନେତାଙ୍କ ମନରେ ଏମିତି ଭାବନା ଆସିଲାକି 'ଶିଖମାନଙ୍କ ଦାବି' 'ପଞ୍ଜାବୀ ରାଜ୍ୟ' ସାମ୍ପ୍ରଦାୟିକ ନୁହେଁ ଏହା ସ୍ୱରର ଆଧାର ଅଛି ତଥା ଅନ୍ୟ ସ୍ୱର ମଧ୍ୟ ଅନ୍ୟ ରାଜ୍ୟ ଭଳି ଅଟେ। ସେଥିଯୋଗୁଁ ମାର୍ଚ୍ଚ ୯, ୧୯୬୬ ଦିନ କଂଗ୍ରେସ କାର୍ଯ୍ୟକାରୀ କମିଟୀ ପଞ୍ଜାବୀ ରାଜ୍ୟ ଦେବା ପ୍ରାପ୍ତ ପାଇଁ ରେଜ୍ୟୁଲେସନ ପାସ କରାଇଲା। ପାକିସ୍ତାନଠାରେ ମଧ୍ୟ ଶିଖଙ୍କ ଦାବି ପକ୍ଷରେ ରେଡ଼ିଓରେ ପ୍ରଚାର ଆରମ୍ଭ ହୋଇଗଲା। ନିଶ୍ଚିତ ରୂପେ ତାହା ହୃଦୟରୁ ଥିଲା କି ଅନ୍ୟ କଣ ଥିଲା କିନ୍ତୁ ପାକିସ୍ତାନ ରେଡ଼ିଓରେ ଗୁରୁବାଣୀର ଶବ୍ଦ ଓ ଶିଖମାନଙ୍କ ଅଧିକାରର ପ୍ରଚାର ଆରମ୍ଭ ହୋଇଗଲା।

ପଞ୍ଜାବୀ ରାଜ୍ୟ ମାନିବାକୁ ରାଜି ହୋଇଗଲେ, ପରନ୍ତୁ ବିରୋଧୀ ବର୍ତ୍ତମାନ ସୁଦ୍ଧା ଗୁଞ୍ଜିତ ହେଉଥିଲେ ଓ ସେମାନେ କମିଶନ ଦାବି କରି ଚଣ୍ଡୀଗଡ଼, ଭକ୍ରା ଡ୍ୟାମ ତଥା ଅନ୍ୟାନ୍ୟ ଅଞ୍ଚଳ, ଯାହାକି ପଞ୍ଜାବର କ୍ଷେତ୍ରୀୟ ଅଞ୍ଚଳ, ପଞ୍ଜାବୀ ସ୍ୱୀକାର ହୋଇଥିବା ସ୍ଥାନକୁ ଛଡ଼ାଇ ନେଇ ହରିୟାଣାକୁ ଦେଲେ। ପରନ୍ତୁ ଯେତେବେଳେ ସ୍ୱର ଉଠାଗଲା, ସେତେବେଳେ କେନ୍ଦ୍ର ଚଣ୍ଡୀଗଡ ଭାକ୍ରା ଡ୍ୟାମ ତଥା ଅନ୍ୟ କେତେକ ଅଞ୍ଚଳ ସିଧା ନିଜ ଅଧୀନରେ ରଖିଲା ଓ ସେହି ସ୍ଥାନ କାହାରିକୁ ମିଳିଲା ନାହିଁ।

ସନ୍ଥଜୀ ଡିସେମ୍ବର ମାସରେ ଚଣ୍ଡୀଗଡ, ଭାକ୍ରା ଡ୍ୟାମ ତଥା ଅନ୍ୟ ପଞ୍ଜାବୀ ଅଞ୍ଚଳକୁ ପ୍ରାପ୍ତ କରିବାପାଇଁ ପୁଣି ଅନଶନ ରଖିବା ପାଇଁ ଘୋଷଣା କରିଲେ। କିନ୍ତୁ ଦୁଃଖର ବିଷୟ ଏହିଥର ଅନଶନ ରଖି କିଛି ପ୍ରାପ୍ତ ନ କରି ଭଙ୍ଗ କରିଦେଲେ। ସର୍ଦ୍ଦାର ହୁକୁମ ସିଂହଜୀ ତଥା ତାଙ୍କୁ ଦିଆଯାଇଥିବା ଭରସାର ଆଧାରରେ ଅନଶନ ଭଙ୍ଗ କରିଥିଲେ।

## ମିଳିତ ସରକାର

ସେତେବେଳର ସମୟ ସଙ୍କଟ। ହିନ୍ଦୁ-ଶିଖଙ୍କ ବିରୋଧ ଶିଖର ସୀମାରେ ପହଞ୍ଚିସାରିଥିଲା। ୧୯୬୭ ସମୟରେ ପଞ୍ଜାବୀ ରାଜ୍ୟ ହେବାପରେ ଭୋଟ

ହୋଇଥିଲା । ଭୋଟ ବହୁତ ସଂଘର୍ଷମୟ ଥିଲା । ପନ୍ଥ ମଧ୍ୟରେ ଖୁବ୍ ଅସନ୍ତୋଷ ଥିଲା ଓ ଭୋଟରେ ଦୁଇ ପକ୍ଷରେ ନିଜ ନିଜର ପ୍ରତିନିଧିମାନେ ପ୍ରତିନିଧିତ୍ୱ କରିଲେ । ଯାହାର ବିରୋଧୀ ଭଲ ଭାବେ ଲାଭ ଉଠାଇଲେ । ସନ୍ଥଜୀଙ୍କ ଦଳର କେବଳ ୨୪ ଓ ମାଷ୍ଟରଜୀଙ୍କ ଦଳକୁ କେବଳ ୨ଟି ସ୍ଥାନ ମିଳିଲା । ପରନ୍ତୁ ଏହି ବିରୋଧତା ଯୋଗୁଁ ଜନସଂଘକୁ ବିଶେଷ ଭାବେ ଲାଭ ହୋଇଥିଲା । ଆଗକୁ ସଂସଦ ସଭ୍ୟ ପଞ୍ଜାବଠାରୁ କେହି ହୋଇ ନ ଥିଲା । ଏହିଥର ଦୁଇ ଜଣ ହୋଇଗଲେ ଓ ଅମୃତସର ସହରର ବିଧାନସଭାକୁ ତିନୋଟି ସ୍ଥାନ ଜନସଂଘକୁ ମିଳିଲା । ଦ୍ୱିତୀୟ ପଟରେ କଂଗ୍ରେସୀ ନିଃସନ୍ଦେହ ଭାବେ ବହୁମତ ସହ ବହୁତ ସ୍ଥାନରେ ବିଜୟ ହୋଇଥିଲା । ପରନ୍ତୁ ବହୁମତ ଯୋଗାଡ଼ କରିପାରିଲା ନାହିଁ, ୪୮ଟି ସ୍ଥାନ ନେଇଥିଲା । ପରନ୍ତୁ ପ୍ରକୃତିର ଖେଳ କଣ ଥିଲା ? ଜଣେ ଅନ୍ୟଙ୍କୁ ସହ୍ୟ କରିପାରିଲେ ନାହିଁ ଜନସଂଘୀ ଓ ଅକାଳୀ ମିଶିଗଲେ । ଏହି ଦୁଇ ଦଳର ସାମ୍ପ୍ରଦାୟିକ ଓ ଦେଶ ସକାଶେ କ୍ଷତିକାରକ ବୁଝିବା ମାନେ କମ୍ୟୁନିଷ୍ଟ ସହ ମିଶିଗଲେ । ସମସ୍ତେ ମିଶି ମିଳିତ ସରକାର ଗଢ଼ିଲେ । ଏମାନେ ସବୁଠାରୁ ଅଧିକ ଲାଭ ହୋଇଥିଲା କି ଦୋଷ ଦେବା କମ କରି ପ୍ରେମ ହୋଇଗଲା । ପରନ୍ତୁ ଏହି ମିଳିତ ସରକାର ହେବା ପରେ ପଞ୍ଜାବୀକୁ ସମ୍ପୂର୍ଣ୍ଣ ଭାବେ ସମାପ୍ତ କରିଦିଆଗଲା ।

## ଗିଲ୍ ସରକାର

ପଞ୍ଜାବୀ ରାଜ୍ୟରେ ପଞ୍ଜାବୀ (ଗୁରୁମୁଖୀ ଲିପି ଅକ୍ଷର) ଚଳାଇବା ଅଭାବ ଯୋଗୁଁ ଫ୍ରଣ୍ଟ ବିରୋଧ କରିଲା ଓ ୮ମାସ ଏହି ସରକାର ଚଳାଇବା ବଦଳରେ ଭାଙ୍ଗିଗଲା । ସର୍ଦ୍ଦାର ଗୁରୁନାମ ସିଂହ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେଲେ ଓ ସର୍ଦ୍ଦାର ଲକ୍ଷ୍ମଣ ସିଂହ ଗିଲ କଂଗ୍ରେସୀ ସଭ୍ୟଙ୍କ ଯୋଗ ସହ ସରକାର ଗଢ଼ିଲେ । ଏହି ସରକାର ସର୍ଦ୍ଦାର ଲକ୍ଷ୍ମଣ ସିଂହ ମୁଖ୍ୟମନ୍ତ୍ରୀ ପଞ୍ଜାବୀକୁ ରାଜ୍ୟ ଭାଷାରେ ମହତ୍ତ୍ୱ ଦେଇ ତାକୁ ବୈଶାଖୀର ଶୁଭ ଅବସର ସମୟରେ ସଚିବାଳୟଠାରେ ଯୋଗ କରାଇବା ଘୋଷଣା କରିଲା । ଏହି ଖୁସିରେ ଚଣ୍ଡୀଗଡ଼ଠାରେ ତିନିଦିନ ସମାଗମ ହୋଇଥିଲେ ଓ ସ୍ଥାନ ସ୍ଥାନରେ ବିଶେଷ ଭାବେ ଉତ୍ସବ ହୋଇଥିଲା । ମ୍ୟୁନିସିପାଲିଟିମାନଙ୍କରେ ରାଜ୍ୟରେ ଉଚ୍ଚପଦସ୍ଥ ଅଧିକାରୀ ଓ ଉଚ୍ଚ ନ୍ୟାୟାଳୟର କାର୍ଯ୍ୟାଳୟ ଭାଷା ପଞ୍ଜାବୀ କରିବାପାଇଁ ସରକ୍ୟୁଲାର ପଠାଗଲା ଓ ଆଦେଶ ଦିଆଗଲା କି ବର୍ତ୍ତମାନଠାରୁ ସମସ୍ତ ପଞ୍ଜାବୀ

ଭାଷା ସହ ଆରମ୍ଭ ହେଉ। ଏହି ସରକାର ଆହୁରି ବହୁତ ଭଲ କାମ କରିଥିଲା। ପରନ୍ତୁ ଫତେହ ସିଂହଜୀ ଏହାର ବିରୋଧ ଲଗାତାର କରିଚାଲିଥିଲେ। ଓ ଶେଷରେ ଏଥିଯୋଗୁଁ ସେ ମନ୍ତ୍ରୀମଣ୍ଡଳ ଭାଙ୍ଗିଥିଲେ ଓ ପଞ୍ଜାବଠାରେ ଗଭର୍ଣ୍ଣର ଶାସନ ଲାଗୁ ହୋଇଥିଲା। ପୁଣି ଭୋଟ ହୋଇ ଥିଲା। ପ୍ରଥମ ବିଧାନସଭା ମଧ୍ୟ ଭାଙ୍ଗିଥିଲା।

## ବୀର ଖାଲସା ଦଳ

ବୀର ଖାଲସା ଦଳ (ଫୌଜୀଙ୍କ ଭଳି ପେରେଡ କରିବା ମାନେ)ଙ୍କ ଦଳବନ୍ଧର ଆବଶ୍ୟକତା ଅଧିକତା ସହ ଅନୁଭବ କରାଯାଇଥିଲା। ଯେତେବେଳେ ଦେଶ ଭାଗ ବାଣ୍ଟିହେବା ପୂର୍ବରୁ ମୁସଲମାନମାନଙ୍କ (ଚାମଚା) ବେଲଚା ପାର୍ଟି ଓ ହିନ୍ଦୁମାନଙ୍କର ମହାବୀର ଦଳ ନାମକ ଦଳ ବଳବତ୍ତର ହୋଇଥିଲା। ବୀର ଖାଲସା ଦଳର ସର୍ବଭାରତୀୟ ଅକାଳୀ ସମ୍ମିଳନୀ, ଅଟାରୀର ସମ୍ମିଳନୀ ସମୟରେ ର୍‍ୟାଲି ହୋଇଥିଲା, ତାହା ଚମତ୍କାର କରାଇଦେଲା। ସ୍ଥାନ ସ୍ଥାନରେ ବୀର ଖାଲସା ଦଳର ୟୁନିଟ ସେଠାରେ ପହଞ୍ଚି ରାଲିରେ ଯୋଗ ଦେଇଥିଲେ। ଦେଶ ଭାଗ ବାଣ୍ଟି ହେବାପରେ ଏହି କାର୍ଯ୍ୟକୁ ଶିରୋମଣି ଅକାଳୀ ଦଳ ପୁଣି ସିଧା ହାତକୁ ନେଇଥିଲା। ଲୁଧିୟାନା, ଜଲନ୍ଧର, ଅମୃତସର ଓ ପଟିୟାଲା ଇତ୍ୟାଦି ଏହି ଆନ୍ଦୋଳନ ଗଢ଼ିଥିଲା। ୧୯୫୬ ସମୟରେ ସର୍ବ ହିନ୍ଦୀ ଅକାଳୀ ସମ୍ମିଳନୀ ଅମୃତସରର ଅବସର ସମୟରେ ପୁଣି ଥରେ ଏହି ପରେଡ କରିବା ଦଳ ଚମତ୍କାର ପୂର୍ବକ ଶୋଭାଯାତ୍ରା ରାଲି କରିଥିଲା। ଠିକ୍ ଏହି ସମାରୋହ ବେଳେ ସର୍ବଭାରତୀୟ ଓ ଜନସଂଘମାନେ ମଧ୍ୟ ମୁହାଁମୁହିଁ ହେବାପାଇଁ ଅଖିଳ ଭାରତୀୟ ସମ୍ମିଳନୀ କରିଥିଲା। ପରନ୍ତୁ କଂଗ୍ରେସୀ ଓ ସିଂହଙ୍କ ଖବରକାଗଜରେ ଭୁଲ ଖବର ଛପାଇଲା ଓ ଖାଲସାଙ୍କ ମାନମର୍ଯ୍ୟାଦା ସହ ସମ୍ମିଳନୀର ଜାମଜକମ ମଜାକୁ କ୍ଷତି ପହଞ୍ଚାଇଲା, କିନ୍ତୁ ଏହା ଭୁଲ ଥିଲା। ପରନ୍ତୁ ସତ୍ୟ ସତ୍ୟ ଅଟେ। ବହୁତ ଦିନ ଯାଏଁ ଏହି ଦଳର ଦଳପତି ଭାବେ ମାଷ୍ଟର ତାରା ସିଂହଜୀ ରହିଥିଲେ।

ପରନ୍ତୁ ଯେତେବେଳେ ଜାତି ମଧ୍ୟରେ ରୋଷ ବଢ଼ିଲା, ସେତେ[illegible]କେ ଏହି ଦଳ ଉପରେ ମଧ୍ୟ ଏହାର ପ୍ରଭାବ ପଡ଼ିଥିଲା। କେଉଁ କେଉଁ ସ୍ଥାନରେ ଦଳ ରହୁଥିଲେ ଓ କେଉଁ କେଉଁଠାରେ ଏହାର ରାଲି ହେଉଥିଲା। ପରନ୍ତୁ ସବୁ ପ୍ରକାର ଶକ୍ତି ଏହି ରାଲି ମଧ୍ୟରେ ନ ଥିଲା।

ବର୍ତ୍ତମାନ ଦିଲ୍ଲୀ ଗୁରୁଦ୍ୱାର କମିଟୀର ମୁଖ୍ୟ ଜଥେଦାର ସନ୍ତୋଷ ସିଂହଜୀ ଓ ତାଙ୍କର ସାଥିମାନଙ୍କ ପରିଶ୍ରମ ସହ ଏହି ଦଳର ଅସ୍ତିତ୍ୱ ଆସିଗଲା। ଜଥେଦାର ସନ୍ତୋଖ (ସ) ସିଂହଜୀ ସରଦାରେ-ଆଜମ୍ ଭାବେ ବଛାଗଲା। ଜଲନ୍ଧର ଓ ଲୁଧିୟାନା ଇତ୍ୟାଦି ସ୍ଥାନରେ ପୁଣି ୟୁନିଟ୍ ଖୋଲାଗଲା।

## ଧର୍ମର ସ୍ରୋତ ଗୁରୁଦ୍ୱାର

ସତ୍‌ଗୁରୁଜୀ ମହାରାଜ ଗୁରୁଦ୍ୱାର ଧର୍ମର ସ୍ରୋତ ଓ ଧର୍ମର ଗୁଣକୁ ପ୍ରଚଳିତ କରିବାପାଇଁ ସେଣ୍ଟର ନିର୍ମାଣ କରାଇଥିଲେ ଓ ପ୍ରକୃତରେ ଏହି ଧର୍ମ ସ୍ଥାନଠାରେ ସତ୍ୟ ଓ ଆଦର୍ଶ ସେବା ମନୋଭାବ ଓ ଗୁରୁ ଶିଖଙ୍କ ପ୍ରେମ ଝରି ପଡୁଥାଏ। ପରନ୍ତୁ ଦୁଃଖର ସହ ଲେଖିବାକୁ ପଡୁଛି କି ଏହି ପବିତ୍ର ମହାନ୍ ଗୁରୁଦ୍ୱାର ବର୍ତ୍ତମାନ ରାଜନୀତି ଓ ପାର୍ଟି ଅବିଶ୍ୱାସତାର ସାହାଯ୍ୟ ଦେଉଥିବା ସ୍ଥାନ ହୋଇଗଲା। ଶୁଣିବାକୁ ମିଳୁଥିଲା ଅନୈତିକତା ଓ ଭ୍ରଷ୍ଟାଚାର ସରକାରୀ କାର୍ଯ୍ୟାଳୟମାନଙ୍କରେ ସରକାରୀ ଅଦାଲତମାନ ଚାଲିଲା। ବର୍ତ୍ତମାନ ଯେତେବେଳେ ପ୍ରାୟ ସବୁ ଗୁରୁଦ୍ୱାରମାନଙ୍କ ପ୍ରବନ୍ଧର ମୁଖ୍ୟ ସୂତ୍ର ନିରୋଲ ଶିରୋମଣି କମିଟି ହାତକୁ ଆସିଲା, ଧାରା ୮୫ ଅନୁଯାୟୀ ଗୁରୁଦ୍ୱାର କମିଟୀ ସବୁ ନଷ୍ଟ ହୋଇଗଲା। ସେହିଦିନଠାରୁ ସବୁ ଖରାପ ମନୋଭାବ ଓ ଭ୍ରଷ୍ଟାଚାର ଏହି ପବିତ୍ର ସ୍ଥାନଠାରେ ଆକ୍ରମଣ କରିଦେଲା।

ଶିରୋମଣି କମିଟିର କାର୍ଯ୍ୟାଳୟ, ଗୋଟିଏ ଧାର୍ମିକ ସଂସ୍ଥା ଥିଲା। ପରନ୍ତୁ ପାର୍ଟି ପ୍ରବନ୍ଧ କାରଣ ଯୋଗୁଁ ସଚ୍ଚୋଟ ପୁରୁଷ ଓ ସଚ୍ଚୋଟ ଧାର୍ମିକ ପୁରୁଷ ଏହି ପଟକୁ ଆସିପାରୁ ନ ଥିଲା। ଯଦି କିଏ ଆସୁଥିଲା ତାହାର ବୁଦ୍ଧି କାମ କରିବାପାଇଁ ଦିଆଯାଉ ନ ଥିଲା। ପ୍ରଚାର ଯୋଗୁଁ ସଚ୍ଚୋଟ ବ୍ୟକ୍ତିର ଆବଶ୍ୟକତା ହେଉ ନଥିଲା, କାରଣ ଏହି ସ୍ଥାନକୁ ସେହି ବ୍ୟକ୍ତି ଯିବ, ଯାହାକୁ ଦୋଷ ଲଗାଇବା ଓ ଲାଗିବା ହେଉ, କାହାକୁ ସମ୍ମାନ କରିବା ହେଉ ଓ କାହା ଦ୍ୱାରା କରିବା ହେଉ, କାହା ପାଖରେ ମୁଣ୍ଡ ନୁଆଁଇବା ହେଉ କିମ୍ବା କାହାର ମୁଣ୍ଡ ନୁଆଁଇବାକୁ ପଡ଼େ, ଏହି ପ୍ରକୃତ ମନୋରଥ ଯାହା ପାଖରେ ସେହି ପ୍ରବନ୍ଧ ମହନ୍ତଙ୍କ ପାଖରୁ ଛଡ଼ାଇ ନିଆଯାଇଥିଲା, ତାହା ଲୁପ୍ତ ହୋଇଗଲା।

ଦେଖିବାକୁ ତ ସବୁ କିଛି ଠିକ୍‌ଠାକ୍ ହୋଇ ଚାଲିଛି। କାଗଜରେ ଲିଖିତ ହିସାବରେ ବିଜ୍ଞ ବ୍ୟକ୍ତିମାନଙ୍କ ପ୍ରତି ଏହା ବହୁତ କଠିନ କାର୍ଯ୍ୟ? ପରନ୍ତୁ ଯେଉଁ

ଗୁରୁ ଶିଖ ପ୍ରେମୀ, ଗୁରୁ ଶିଖଙ୍କ ଶ୍ରେଷ୍ଠ ସମ୍ମାନନୀୟ, ଗୁରୁଙ୍କ ଶ୍ରଦ୍ଧା ଭରସା ଓ ଶୁଦ୍ଧତା ଧାରଣା କରିଥିବା ବଳିଦାନ ସହ ମହନ୍ତଙ୍କ ବିପରୀତ ବୁଦ୍ଧି ଓ ନଷ୍ଟ କର୍ମ ଓ ସ୍ୱଇଚ୍ଛା ସହ କଠୋରତାକୁ ନଷ୍ଟ କରାଯାଇଥିଲା ।

ଧୀରେ ଧୀରେ ସେମିତିକା ମାୟା (ଧନ) ଲୋଭୀ ଓ ଶିକାରୀ ବ୍ୟକ୍ତିଙ୍କ ଏହି ପବିତ୍ର ପ୍ରବନ୍ଧ ମଧ୍ୟରେ ପ୍ରବେଶ ହୋଇଯିବା ଜଣାପଡୁଛି । ସତ୍ୟତା ହେଉଛି ଏହା, ପରନ୍ତୁ କେତେ ମୋର ବୀରଙ୍କୁ ଏହି ସତ୍ୟତା କଷ୍ଟଦାୟକ ହୋଇପାରେ । ପରନ୍ତୁ ଲେଖାଯାଇଛି କି ଏହା ମଙ୍ଗଳ ସକାଶେ, କୌଣସି ଖରାପ ପାଇଁ ନୁହଁ ।

ପ୍ରକୃତ କଥା ଏହାକି, ଗୁରୁପନ୍ଥର ମାଲିକ ଅଟନ୍ତି । ଗୁରୁ ପନ୍ଥ ସମ୍ମୁଖରେ ଉଚିତ କଥା ପରିବେଶ କରିବା ଠିକ୍ ଲାଗେ । ପରନ୍ତୁ ଭ୍ରମ ଓ ଭୁଲ ସକାଶେ କ୍ଷମା ଯାଚନା କରୁଛି ।

ତାହା ସହିତ ସମସ୍ତ ମନୁଷ୍ୟ ଜଗତ କଣ୍ଢେଇ ଅଟନ୍ତି, ସଂସାରର ରଚନାକାର ପ୍ରଭୁଙ୍କ ଏହି ରଚନା ଅଟେ । ସଂସାରର ଚଳପ୍ରଚଳ ଓ ପ୍ରୟୋଗର ପ୍ରପଞ୍ଚର ଚାଲାକି ରଖିବାପାଇଁ ସେହି ପ୍ରଭୁ ଏହିଠାରେ ସତ୍ୟ ମିଥ୍ୟାର ଯୁଦ୍ଧ ଲଗାଇ ରଖିଛନ୍ତି । କେବେ ମିଥ୍ୟା ବ୍ୟକ୍ତି ଶକ୍ତିଶାଳୀ ହୋଇଯାଏ କେବେ ସତ୍ୟ ଏହିପରି ଭାବେ ସୃଷ୍ଟି ସଂସାର ଚାଲି ଆସୁଅଛି । ପରନ୍ତୁ ସତ୍ୟର ପ୍ରଶଂସା ଓ ମିଥ୍ୟାର ନିନ୍ଦା, ଏହା ମଧ୍ୟ ମନୁଷ୍ୟକୁ ଶିଖିବା ଉଚିତ । ଏହି ଅନୁସାରେ ସଂସାରର ସଂହାର ଓ ଉଦ୍ଧାର କାର୍ଯ୍ୟ ଚାଲିଆସୁଛି । ପ୍ରଭୁଙ୍କ ନାମ ସତ୍ୟ ଅଟେ ଓ ଶେଷରେ ଏହି ସତ୍ୟତାର ବିଜୟ ବରଦାନ ହୋଇଥାଏ । ସେଥିଯୋଗୁଁ ସତ୍ୟ ପୁରୁଷ ହେବାପାଇଁ ଚେଷ୍ଟା କର ଓ ସତ୍ୟ ସହିତ ରୁହ । ସତ୍ୟବ୍ୟକ୍ତିଙ୍କୁ ସତ୍‌ଗୁରୁ ଓ ପ୍ରଭୁ ସହାୟତା କରନ୍ତି ।



Special thanks to

Sardar Harbhajan Singh

33 Bollington Road

Oadby Leicester

LE2. 4ND UK

for all the support and encouragement

## Mrs. Sadhana Patri (1968)



Born in Ganjam district of Odisha. She has spent almost twenty three years at Gangtok (Sikkim) where she came in contact with some distinguished and learned Sikh Gurus. Eventually she achied solace by going through the precious, Guru Grantha Saheb and other philosophical texts of Sikhism and she learnt "Gurumukhi" for the purpose. Earlier Sadhana has translated "Brief History and Teachings of Sikh Gurus" and the translation of "Sunder Gutka" is now in the Process.

Sadhana now lives at Bhubaneswar with her husband and only daughter.